# ରୁଦ୍ରାଭିଷେକ ପଦ୍ଧତି

(ଶ୍ରୌତମନ୍ତ୍ରଭାବାନୁବାଦ ସହିତ)




ସଂକଳକ

ଶ୍ରୀ ନୀଳକଣ୍ଠ ପତି

# ରୁଦ୍ରାଭିଷେକ ପଦ୍ଧତି

(ଶ୍ରୌତମନ୍ତ୍ର ମାନଙ୍କର ଓଡ଼ିଆ ଭାବାନୁବାଦ ସହିତ)

ସଂକଳକ - **ଶ୍ରୀ ନୀଳକଣ୍ଠ ପତି**

# ରୁଦ୍ରାଭିଷେକ ପଦ୍ଧତି
## (ଶ୍ରୌତମନ୍ତ୍ରମାନଙ୍କର ଭାବାନୁବାଦ ସହିତ)

**Rudrabhiseka Paddhati**

**Prof. Dr. Nilakantha Pati,**
Ex Vice Chancellor, Sri Jagannath Sanskrit University, Puri
Gopaljeew Lane, Sipasarubali, Baliapanda,
Puri 752001 ; (M) 9437308189

*The views & opinions expressed in this work are the author's own and the facts are as reported by him, and the publisher is no way liable for the same.*

1st Edition 2022 | MC

© aumbooks 2022

isbn : 978-93-91510-79-4(pb)
isbn : 978-93-91510-86-2(epub)

*No part of this book may be reproduced, or stored in a retrieval system, or transmitted in any form or by any means, electronic, mechanical, photocopying, recording, or otherwise, without express written permission of the publisher.*

*Type set by the author in PM-7*
*& Printed at* MTL, Manipal -576104

*Published By :*

**AUMBOOKS** *;* [AUM FOUNDATION®]
Dolamandapa sahi, Puri –752001 ODISHA
e-mail: info@aumbooks.in | www.aumbooks.in

Price: ₹ 249/- Only

# ଅସ୍ତି କିଞ୍ଚିତ୍ ନିବେଦନମ୍

ଓଁ ବିଶ୍ୱଗ୍ରାସାୟ ବିଳସତ୍ କାଳକୂଟବିନାଶିନେ
ତତ୍କଳଙ୍କାଙ୍କିତଗ୍ରୀବନୀଳକଣ୍ଠାୟ ତେ ନମଃ ॥

ଭଗବାନ୍ ଶଙ୍କର ଯେପରି ଦେବମାନଙ୍କ ମଧ୍ୟରେ ମହାଦେବ ଓ ଈଶ୍ୱରଙ୍କ ମଧ୍ୟରେ ମହେଶ୍ୱର ଠିକ୍ ସେହିପରି ତାଙ୍କ ବିଷୟକ ଉପାସନାପଦ୍ଧତି, ଅଭିଷେକ ଏପରିକି ସ୍ତବସ୍ତୁତି ଇତ୍ୟାଦି ମଧ୍ୟ ଅନନ୍ତ ଆନନ୍ଦର ଉତ୍ସ । ଏଣୁ ମୋ ଭଳି ଜଣେ ନଗଣ୍ୟ ଭକ୍ତ ପକ୍ଷରେ ସେ ସୁତରାଂ ଅବାଙ୍ମନସଗୋଚର ତତ୍ତ୍ୱ । ସେପରି ଗୂଢ଼ ତତ୍ତ୍ୱକୁ ଶବ୍ଦମାଧ୍ୟମରେ ପ୍ରକାଶ କରିବାର ପ୍ରୟାସ ଧୃଷ୍ଟତା ବା ଦୁଃସାହସ ବ୍ୟତିରେକେ ଆଉ କ'ଣ ବା ହୋଇପାରେ । ଏ ପ୍ରସଙ୍ଗରେ ଭଗବାନ୍ ଆଦିଶଙ୍କରାଚାର୍ଯ୍ୟଙ୍କ ଉକ୍ତି ଏକାନ୍ତ ଆଶ୍ୱାସପ୍ରଦ ଯଥା– 'ପ୍ରଣନ୍ତୁଂ ସ୍ତୋତୁଂ ବା କଥମକୃତପୁଣ୍ୟଃ ପ୍ରଭବତି' । ଏଣୁ ମୋର କିଛି ଉତ୍ତମପ୍ରାରବ୍ଧ ଥିଲା ଯାହାଫଳରେ ବାଲ୍ୟକାଳରୁ ପରମପୂଜ୍ୟ ପିତୃଦେବଙ୍କ ମୁଖରୁ ଶିବତାଣ୍ଡବସ୍ତୋତ୍ର ଆଗ୍ରହରେ ଶୁଣି ମନେରଖିବା ସହିତ ବ୍ରତୋପନୟନ ପରଠାରୁ ଏବେର ଏ ପରିଣତ ବୟସ ପର୍ଯ୍ୟନ୍ତ ରୁଦ୍ରାଭିଷେକ ନିତ୍ୟକର୍ମ ରୂପରେ ଅଙ୍ଗୀକୃତ । ହୁଏତ ଏପରି ମନୋଭାବକୁ ଅନୁଭବ କରି ମୋର ସ୍ୱର୍ଗୀୟା ସ୍ନେହଶୀଳା ମାତାମହୀ ମୋ ନାମ 'ନୀଳକଣ୍ଠ' ବୋଲି ରଖିଥିଲେ । କିନ୍ତୁ ଏ ସମସ୍ତଙ୍କର ବହୁ ଊର୍ଦ୍ଧ୍ୱରେ ଅନ୍ୟ ଏକ ମହାନ୍ ବ୍ୟକ୍ତିତ୍ୱର ସଂସର୍ଗ ଥିଲା ଯେଉଁ ସ୍ପର୍ଶମଣିର ଅଦୃଷ୍ଟ ସ୍ପର୍ଶରେ ଓ ଗଭୀର ଆନ୍ତରିକତାଭରା ଅଲୌକିକ ଆଶୀର୍ବାଦରେ ଏ ଅଧମ ଆଜି ଦୈବୀବାଙ୍ମୟୀର ଆରାଧନାରେ ବ୍ରତୀ ହୋଇ ଏପର୍ଯ୍ୟନ୍ତ ଶିକ୍ଷା ଓ ସଂସ୍କାରକ୍ଷେତ୍ରରେ କିଞ୍ଚିତ୍ମାତ୍ରାରେ ପ୍ରତିଷ୍ଠିତ ହୋଇପାରିଛି । ସେହି ବାଗ୍‌ଦେବତାବତାର ଓ ପରମ ଛାତ୍ରବତ୍ସଳ ତଥା ଦିଗନ୍ତବିସ୍ତୃତ ପାଣ୍ଡିତ୍ୟ ଓ ସୌଜନ୍ୟ ସମ୍ଭାରର ମୂର୍ତ୍ତିମାନ୍ ବିଗ୍ରହସ୍ୱରୂପ ମୋର ପ୍ରାତଃ ସ୍ମରଣୀୟ ଗୁରୁଦେବ ଶାଳିକୋଠାଗ୍ରାମନିବାସୀ **'ପଣ୍ଡିତ ଶ୍ରୀ ରବିନାରାୟଣ ରଥଶର୍ମା'** ମହୋଦୟ, ଯାହାଙ୍କର ପ୍ରେରଣା ଓ ପ୍ରୋତ୍ସାହନ ସମ୍ବଳିତ ନିର୍ଦ୍ଦେଶଦ୍ୱାରା ଏହି କୃତି ଖଣ୍ଡିକ

ଆଜି ପରିପ୍ରକାଶ ହୋଇପାରିଛି । ଏଣୁ 'ସାକ୍ଷାତ୍ ପରଂବ୍ରହ୍ମ' ସ୍ୱରୂପ ସେହି ସୌମ୍ୟ ମୂର୍ତ୍ତିମାନ୍ ଗୁରୁଦେବଙ୍କ ପରମପାବନ ପଦଯୁଗଳରେ ପ୍ରଣତିତତି ନିବେଦନପୂର୍ବକ ମୋଭଳି ଅନେକ ଅଧମଙ୍କୁ ଧନ୍ୟତାର ପାତ୍ରତାରେ ପରିଣତ କରିବାର ଯେଉଁ ବିଧାତାଙ୍କ ରେଖାଙ୍କିତ ତାଙ୍କର କରକମଳ, ସେଥିରେ ଏହି ସାମାନ୍ୟ କୃତିଟିକୁ ସଶ୍ରଦ୍ଧ ସମର୍ପଣ କରି ଆଜି ନିଜକୁ ଧନ୍ୟ ମଣୁଅଛି । ବହୁଦିନ ପୂର୍ବରୁ କୌଣସି ଏକ ମାହେନ୍ଦ୍ରବେଳାରେ ତାଙ୍କ ମୁଖକମଳରୁ ହଠାତ୍ ନିଃସୃତ ହୋଇଥିଲା ଯେ – 'ନୀଳକଣ୍ଠ ! ତୁ ଯଦି ପାରିବୁ ରୁଦ୍ରାଭିଷେକ ମନ୍ତ୍ରଗୁଡ଼ିକର ଓଡ଼ିଆ ଅନୁବାଦ କର' – ଏପରି ଆବେଗଭରା ଅନ୍ତରର ନିର୍ଦ୍ଦେଶ ଆଜି ଏହି କ୍ଷୁଦ୍ର ପୁସ୍ତକ ଆକାରରେ ପ୍ରକାଶ ପାଇପାରିଥିବାରୁ ମୁଁ ତାଙ୍କ ଶ୍ରୀଚରଣରେ ଅନେକାନେକ କୃତଜ୍ଞତା ନିବେଦନ କରି ନିଜକୁ କୃତକୃତ୍ୟ ମଣୁଅଛି ।

ବର୍ତ୍ତମାନ ମାନବ ସମାଜ ବିଶେଷକରି ଆମର ଆର୍ଯ୍ୟସଭ୍ୟତା ଏକ ଘଡ଼ିସନ୍ଧି ମୁହୂର୍ତ୍ତରେ ଉପନୀତ । ସମାଜ ଆଜି ତଥାକଥିତ ଅତ୍ୟାଧୁନିକ ସଭ୍ୟତାର ମାୟାଜାଲରେ ଆବଦ୍ଧ । ଯାହାଫଳରେ ଆମ ଆର୍ଷପରମ୍ପରା ଓ ଆଚାର୍ଯ୍ୟ ମନୁପ୍ରଣୀତ ମାନବ ସଂସ୍କାର ସମ୍ପୂର୍ଣ୍ଣ ଭାବରେ ଧ୍ୱସ୍ତ ବିଧ୍ୱସ୍ତ ହେବାକୁ ବସିଛି । ଗୁଣକର୍ମବିଭାଗ ଅନୁସାରେ ଈଶ୍ୱରସୃଷ୍ଟ ବର୍ଣ୍ଣବ୍ୟବସ୍ଥା ଆଜି ପ୍ରଶ୍ନବାଚୀ । ବ୍ରାହ୍ମଣଭାବରେ ନିଜକୁ ପରିଚୟ ଦେବା ତ ଦୂରର କଥା ଏପରିକି ହିନ୍ଦୁବୋଲି କହିବାକୁ ମଧ୍ୟ କେତେକ ସଙ୍କୋଚବୋଧ କରୁଅଛନ୍ତି । ଏହାଠାରୁ ଅଧିକ ହୀନମନ୍ୟତା ଆଉ କ'ଣ ବା ହୋଇପାରେ । 'ବର୍ଣ୍ଣାନାଂ ବ୍ରାହ୍ମଣୋ ଗୁରୁଃ' – ଅର୍ଥାତ୍ ଯୁଗେ ଯୁଗେ ବ୍ରାହ୍ମଣମାନେ ହିଁ ସମାଜକୁ ଦିଗ୍‌ଦର୍ଶନ ଦେବା ସହିତ ସଙ୍କଟରୁ ମଧ୍ୟ ରକ୍ଷାକରି ଆସିଅଛନ୍ତି ଏଣୁ ସେ ପୁରୋହିତ ପଦବାଚ୍ୟ । 'ଦେବୋ ଭୂତ୍ୱା ଦେବଂ ଯଜେତ'– ଅର୍ଥାତ୍ ନିଜେ ଆଚରଣରେ ଦେବତା ସଦୃଶ ହେଲେ ଯାଇ ସେ ଦେବପୂଜା ପାଇଁ ଯୋଗ୍ୟ ଏହା ଶାସ୍ତ୍ରଘୋଷିତ । କିନ୍ତୁ ଆମେ ଯଦି ଆଜି ଆତ୍ମନିରୀକ୍ଷଣ କରିବସିବୁ ତାହେଲେ ହୃଦ୍‌ବୋଧ ହୋଇପାରିବ ଯେ ଆମେ ବ୍ରାହ୍ମଣମାନେ କେଉଁ ସ୍ତରରେ ପହଞ୍ଚିଛୁ । ବ୍ରାହ୍ମଣମାନେ

ଦେବଦାନବମାନବ ସମସ୍ତଙ୍କ ପାଇଁ ସମ୍ମାନାର୍ହ ଏହାର ପ୍ରକୃଷ୍ଟ ଉଦାହରଣ ଭଗବାନ୍ ବିଷ୍ଣୁଙ୍କ ବକ୍ଷସ୍ଥଳରେ ଶ୍ରୀବତ୍ସବ୍ରାହ୍ମଣଙ୍କ ପାଦଚିହ୍ନଧାରଣଠାରୁ ଆରମ୍ଭକରି କୃଷ୍ଣାବତାରରେ ଗରିବ ବ୍ରାହ୍ମଣ ସୁଦାମାର ପାଦସେବା ପର୍ଯ୍ୟନ୍ତ ଏପରି ଅନେକ ଉଦାହରଣ ଆମ ଶାସ୍ତ୍ରରେ ବର୍ଣ୍ଣିତ ଅଛି । ଭଗବାନ୍ ବିଷ୍ଣୁଙ୍କ ଅନେକ ନାମ ମଧ୍ୟରୁ 'ବ୍ରହ୍ମଣ୍ୟଦେବ, ବ୍ରାହ୍ମଣପ୍ରିୟ' ଇତ୍ୟାଦି ସୁବିଦିତ । ବ୍ରାହ୍ମଣମାନଙ୍କର ଅଭୀଷ୍ଟ ଓ ଆରାଧ୍ୟ ଦେବତା ହେଉଛନ୍ତି ଶିବ । କାରଣ ବ୍ରାହ୍ମଣ ଶବ୍ଦର ଅଭିପ୍ରେତ ଅର୍ଥ ହେଉଅଛି ବିଦ୍ୱାନ୍ ବା ଜ୍ଞାନୀ । ଜ୍ଞାନର ଅଧୀଶ୍ୱର ଶିବ, ଏ ବିଷୟରେ ଶାସ୍ତ୍ରୋକ୍ତି ଯଥା – 'ଜ୍ଞାନଂ ଚ ଶଙ୍କରାଦିଚ୍ଛେତ୍' । ଏ ସମସ୍ତ ବିଷୟକୁ ଦୃଷ୍ଟିରେ ରଖି ଏବଂ ସର୍ବତୋପରି ମୋ ପୁଣ୍ୟଶ୍ଲୋକ ଗୁରୁଦେବଙ୍କ ନିର୍ଦ୍ଦେଶକୁ ପାଳନ କରିବାପାଇଁ ଏ ପୁସ୍ତକଟିର ଅବତାରଣା । ଅନ୍ୟ ଏକ ମହତ୍ତ୍ୱପୂର୍ଣ୍ଣ ବିଷୟ ହେଉଅଛି ଯେ ଆମ କର୍ମକାଣ୍ଡ ବା ପୂଜାପଦ୍ଧତି ବିଷୟକୁ ନେଇ ବିଶେଷକରି ଓଡ଼ିଆରେ ଛପା ହୋଇଥିବା ପୁସ୍ତକଗୁଡ଼ିକ ପ୍ରାୟ ଅନେକ ପ୍ରମାଦଯୁକ୍ତ ଯାହାକି ପୂଜକ ଓ ପାଠକମାନଙ୍କ ପାଇଁ ମଧ୍ୟ ଅନିଷ୍ଟକାରକ । ଏ ବିଷୟରେ ଶାସ୍ତ୍ରୋକ୍ତି–

ମନ୍ତ୍ରୋ ହୀନଃ ସ୍ୱରତୋ ବର୍ଣ୍ଣତୋ ବା ମିଥ୍ୟାପ୍ରଯୁକ୍ତୋ ନ ତମର୍ଥମାହ ।
ସ ବାଗ୍‌ବଜ୍ରଂ ଯଜମାନଂ ହିନସ୍ତି ଯଥେନ୍ଦ୍ରଶତ୍ରୋ ସ୍ୱରତୋଽପରାଧାତ୍ ॥

ପ୍ରକରଣାନ୍ତର୍ଗତ ଅର୍ଥ – 'ଇନ୍ଦ୍ରଶତ୍ରୁର୍ବର୍ଦ୍ଧସ୍ୱ' – ଏହି ମନ୍ତ୍ରରେ ବୃତ୍ରାସୁର ଇନ୍ଦ୍ରଙ୍କ ଅନିଷ୍ଟପାଇଁ ଓ ନିଜର ଇଷ୍ଟପ୍ରାପ୍ତିପାଇଁ ଯଜ୍ଞକରୁଥିଲେ ମାତ୍ର ଇନ୍ଦ୍ରପଦର ଉଚ୍ଚାରଣରେ ବିଭ୍ରାଟ ଯଥା ଇନ୍ଦ୍ରସ୍ୟ ଶତ୍ରୁ ଏହିପରି ୬ଷ୍ଠୀ ତତ୍‌ପୁରୁଷ ସମାସ ଅଭିପ୍ରେତ ସ୍ଥଳରେ ଇନ୍ଦ୍ରପଦର ଅନୁଦାତ୍ତସ୍ୱର ସ୍ଥାନରେ ଆଦି ଉଦାତ୍ତ ଉଚ୍ଚାରଣ ହେତୁ ଭିନ୍ନାର୍ଥ ଅର୍ଥାତ୍ ଇନ୍ଦ୍ର ଏବ ଶତ୍ରୁଃ ଅସ୍ୟ ଏହିପରି ବହୁବ୍ରୀହି ସମାସ ଘଟିତ ଅର୍ଥଦ୍ୱାରା ନିଜ (ବୃତ୍ରାସୁର)ର ଅନିଷ୍ଟ ସାଧିତ ହେବା ସହିତ ଇନ୍ଦ୍ରଙ୍କର ହିତସାଧିତ ହେଲା । ଏଣୁ ମନ୍ତ୍ରମାନଙ୍କର ଶୁଦ୍ଧ ଉଚ୍ଚାରଣ ସହିତ ଅର୍ଥଜ୍ଞାନ ଆହରଣ କରିବା ଏକାନ୍ତ ବାଞ୍ଛନୀୟ । ଶାସ୍ତ୍ରରେ ମଧ୍ୟ ମନ୍ତ୍ରର ଲକ୍ଷଣ ବିଷୟରେ କୁହାଯାଇଅଛି– 'ପ୍ରୟୋଗସମକାଳିକାର୍ଥସ୍ମାରକତ୍ୱମ୍ ମନ୍ତ୍ରତ୍ୱମ୍' । ଅନେକ ସମୟରେ କେତେକ କୌତୁହଳୀ ପାଠକମଧ୍ୟ ମନ୍ତ୍ରମାନଙ୍କର ଅର୍ଥଜାଣିବାପାଇଁ ଅତ୍ୟନ୍ତ ଆଗ୍ରହ ପ୍ରକାଶ

କରିଥାଆନ୍ତି । ଏ ପରିପ୍ରେକ୍ଷୀରେ ଯଥାସାଧ୍ୟ ଭ୍ରମନିର୍ମୁକ୍ତ ମନ୍ତ୍ରାର୍ଥ ସହିତ ପୁସ୍ତକ ଖଣ୍ଡିଏ ସ୍ୱଜାତିଭାଇ ପୂଜକବ୍ରାହ୍ମଣଙ୍କ ହାତରେ ଟେକିଦେବାପାଇଁ ମୋର ଇଚ୍ଛା ଅନେକ ଦିନରୁ ରହି ଆସିଅଛି । ଅବଶ୍ୟ ସେ ମହଦିଚ୍ଛା କେତେମାତ୍ରାରେ ଏହାଦ୍ୱାରା ସଫଳ ହୋଇପାରିବ ତାହା ଆପଣମାନଙ୍କର ବିଚାର ସାପେକ୍ଷ୍ୟ । ଏ ବିଷୟରେ ବିଶିଷ୍ଟ ଦାର୍ଶନିକ କୁମାରିଲଭଟ୍ଟଙ୍କ ଉକ୍ତି ଯଥା – 'ନ ହି ସଦ୍‌ବର୍ତ୍ମନା ଗଚ୍ଛନ୍ ସ୍ଖଳିତେଷ୍ୱପୋଦ୍ୟତେ' । ଅର୍ଥାତ୍ ସନ୍ମାର୍ଗଗାମୀଙ୍କ ପାଇଁ ସ୍ଖଳନ (ଭ୍ରମପ୍ରମାଦାଦି ତ୍ରୁଟି) ଅପବାଦଯୋଗ୍ୟ ନୁହେଁ । ସେ ପୁଣି ଆଉ ଏକ ଗୁରୁତ୍ୱପୂର୍ଣ୍ଣ କଥା କହିଅଛନ୍ତି–

'ନ ଚାତ୍ରାତୀବ କର୍ତ୍ତବ୍ୟଂ ଦୋଷଦୃଷ୍ଟିପରଂ ମନଃ ।
ଦୋଷୋ ହ୍ୟବିଦ୍ୟମାନୋଽପି ତଚ୍ଚିତ୍ତାନାଂ ପ୍ରକାଶତେ ॥'

ଅର୍ଥାତ୍ ସର୍ବଥା ଦୋଷାନ୍ୱେଷଣକାରୀଙ୍କ ମନ ଦୋଷୈକଦୃକ୍ ହେବାଦ୍ୱାରା ଦୋଷ ନଥିଲେ ମଧ୍ୟ ତାଙ୍କୁ ଅନେକ ସମୟରେ ଦୋଷ ହିଁ ଦେଖାଯିବ । ଯେହେତୁ କବିଙ୍କ ଭାଷାରେ 'ମଣିମୟ ଗୃହ ମଧ୍ୟେ ପଶ୍ୟତି ପିପୀଳିକା ଛିଦ୍ରମ୍' । ଏଣୁ 'ଗଚ୍ଛତଃ ସ୍ଖଳନଂ କ୍ୱାପି' – ଏହି ନ୍ୟାୟରେ ଯଦି କୌଣସି ସ୍ଥାନରେ ଅନିଚ୍ଛାକୃତ ଦୋଷ ପରିଲକ୍ଷିତ ହୁଏ ତାହେଲେ ଉଦାରମନା ସହୃଦୟ ସୁହୃଦ୍ ପାଠକ ଓ ଶମଦମାଦି ସାତ୍ତ୍ୱିକଗୁଣସମ୍ପନ୍ନ ଶିବୋପାସକମାନେ ଏ ବରାକକୁ କ୍ଷମାଦେବେ ବୋଲି ବିନମ୍ର ଅନୁରୋଧ ସହିତ ଦୃଢ଼ ବିଶ୍ୱାସ ମଧ୍ୟ ରହିଛି । ଏକଥା ମଧ୍ୟ ସ୍ପଷ୍ଟ କରିବାକୁ ଉଚିତ୍ ମନେକରୁଅଛି ଯେ ମୋର ବେଦରେ ବିଶେଷ ପ୍ରବେଶ ନାହିଁ ତଥାପି ପୁଣ୍ୟଶ୍ଳୋକ ଗୁରୁଦେବଙ୍କ ନିର୍ଦ୍ଦେଶ ଓ ଭଗବାନ୍ ଶିବଙ୍କ ପ୍ରତି ଅଗାଧ ବିଶ୍ୱାସ, ଅତୁଟ ଭକ୍ତି ଓ ଏକନିଷ୍ଠଶ୍ରଦ୍ଧା ଏ ଦିଗରେ ମୋତେ ବାଧ୍ୟ କଲେ ଏ ବିଷୟରେ କିଛି ଅଧ୍ୟୟନ କରି ତାତ୍ତ୍ୱିକ ବିଷୟକୁ ଆପଣମାନଙ୍କ ଦୃଷ୍ଟିକୁ ଆଣିବା ପାଇଁ, କାରଣ କବିଙ୍କ ଭାଷାରେ – 'ବାଗ୍‌ବୃତ୍ତିରଳ୍ପସାରାଽପି ଶ୍ରଦ୍ଧଧାନସ୍ୟ ଶୋଭତେ ।'

ସାମ୍ପ୍ରତିକ ବସ୍ତୁବାଦୀ ଓ ଅଧିକାଂଶ ନାସ୍ତିକ ଚିନ୍ତାଧାରା ସମ୍ପନ୍ନ ଯୁବସମାଜ ଏ ସବୁ ପୂଜାପଦ୍ଧତି ଉପରେ ଅନାସ୍ଥାଭାବ ପ୍ରକାଶକରି 'ଏଥିରୁ କ'ଣ ମିଳିବ'–

ଏହିପରି ଅବାନ୍ତରଯୁକ୍ତି ଉପସ୍ଥାପନ କରୁଅଛନ୍ତି । ଏଭଳି ଅଭାବନୀୟ ପରିସ୍ଥିତିରେ ଆଉ କେତେଜଣ ପ୍ରାଚୀନପନ୍ଥୀ ବୁଦ୍ଧିଜୀବୀମାନେ ମଝି ନଦୀରେ ନୌକାରେ ରହିଲାଭଳି ନା ପ୍ରାଚୀନ ପରମ୍ପରାକୁ ଛାଡ଼ିପାରୁଛନ୍ତି ନା ଆଜିର ବୈଷୟିକ ବିଚାରପଦ୍ଧତିରେ ପର୍ଯ୍ୟବସିତ ତଥାକଥିତ ଆଧୁନିକତାକୁ ଆଦରି ନେଇ ପାରୁଛନ୍ତି । ଏଣୁ ଏମାନେ 'ନ ଯଯୌ ନ ତସ୍ଥୌ' ଅବସ୍ଥାରେ ଶ୍ୱାସରୁଦ୍ଧ ହୋଇ କାଳାତିପାତ କରିବାକୁ ବାଧ ହେଉଅଛନ୍ତି । ଏପରି ବିଷମ ପରିସ୍ଥିତିରେ ଆଗାମିକାଲିର ସକାଳ ସୂର୍ଯ୍ୟୋଦୟକୁ ଅପେକ୍ଷା କରି ଆଶାରେ ଓ ଅପେକ୍ଷାରେ ଦିନ ପରେ ଦିନ ଗଡ଼େଇ ଚାଲିଛନ୍ତି, ଯାହାକି କବିବର ଭାରବିଙ୍କ ଭାଷାରେ—

'ଉତ୍ପତ୍ସ୍ୟତେଽସ୍ତି ମମ କୋଽପି ସମାନଧର୍ମା ।
କାଲୋହ୍ୟୟଂ ନିରବଧିଃ ବିପୁଳା ଚ ପୃଥ୍ୱୀ ।।'

ମାତ୍ର ଏ ସମସ୍ତ ଜାଗତିକ ଦୁର୍ବିପାକର କେବଳ ଏକମାତ୍ର ସମାଧାନର ମାର୍ଗ ପରମକାରୁଣିକ ଭଗବାନ୍ ଭୋଳାନାଥଙ୍କ ଆରାଧନା ବା ଉପାସନା, କାରଣ ଯେ ହଳାହଳ ବିଷକୁ ପାନକରି ସଂସାରକୁ ସୁଖପ୍ରଦାନ କରିପାରନ୍ତି ସେ ହିଁ ଆମକୁ ଏ କୁପରିଣତିରୁ ରକ୍ଷା କରିବା ପାଇଁ ଏକମାତ୍ର ସମର୍ଥ ବୋଲି କେତେକ ପରିଣାମଦର୍ଶୀ ବୁଦ୍ଧିଜୀବୀଙ୍କ ଆଶା ଓ ବିଶ୍ୱାସ । ପ୍ରାଣୀମାନଙ୍କର ଆଧ୍ୟାତ୍ମିକ, ଆଧିଭୌତିକ ଓ ଆଧିଦୈବିକ ଏଭଳି ତ୍ରିତାପରୁ ରକ୍ଷାପାଇବାପାଇଁ ଏପରିକି ପୂର୍ବାର୍ଜିତ ପ୍ରାରବ୍ଧକର୍ମଫଳରେ ମଧ୍ୟ ହ୍ରାସ ନିମିତ୍ତ ଭଗବାନ୍ ଶଙ୍କରଙ୍କ ପ୍ରମୁଖ ଆରାଧନା ପଦ୍ଧତି 'ରୁଦ୍ରାଭିଷେକ' ଶାସ୍ତ୍ରବିହିତ । ଏଣୁ ଶିବଭକ୍ତମାନେ 'ଅକର୍ମ କର୍ମଦାୟକ' ଭାବନା ନେଇ ତାଙ୍କଠାରେ ଦୃଢ଼ ଆସ୍ଥା ଓ ବିଶ୍ୱାସ ରଖି ନିଜକୁ ସମର୍ପଣ କରିବାଦ୍ୱାରା ସର୍ବବିଧ ବିପଦରୁ ରକ୍ଷା ପାଇଥାଆନ୍ତି । ଏପରି ମହଦୁଦ୍ଦେଶ୍ୟକୁ କିଛିମାତ୍ରାରେ ଚରିତାର୍ଥ କରିବାପାଇଁ ଏ ପୁସ୍ତକଟିର ଅବତାରଣା ।

ଉଲ୍ଲେଖଯୋଗ୍ୟ ଯେ ଲୌକିକ ବା ବ୍ୟାବହାରିକ ସଂସ୍କୃତ ଓ ବୈଦିକ ସଂସ୍କୃତ ଭାଷା ମଧ୍ୟରେ ଅନେକ ପାର୍ଥକ୍ୟ ରହିଅଛି । ଏଣୁ ବୈଦିକମନ୍ତ୍ରମାନଙ୍କର ଆକ୍ଷରିକ ଅନୁବାଦ ଅତ୍ୟନ୍ତ ଦୁଃସାଧ୍ୟ ଏପରିକି ପାଠକମାନଙ୍କ ପାଇଁ ମଧ୍ୟ

କେତେକାଂଶରେ ଅରୁଚିକର ମଧ୍ୟ ହୋଇପାରେ, ଏହି ଆଶଙ୍କାରେ ଏଥିରେ ମନ୍ତ୍ରମାନଙ୍କର କେବଳ ଭାବାର୍ଥକୁ ପ୍ରକାଶ କରାଯାଇଅଛି ଯାହାକି ଶୁକ୍ଳ ଯଜୁର୍ବେଦର ପ୍ରସିଦ୍ଧ ଆଚାର୍ଯ୍ୟ ଉବଟାଚାର୍ଯ୍ୟ ତଥା ଆଚାର୍ଯ୍ୟମହୀଧରଙ୍କ ଭାଷ୍ୟ ଉପରେ ପର୍ଯ୍ୟବସିତ । ଏ ଦୃଷ୍ଟିରୁ ମୋର ଏଥିରେ ବିଶେଷ କିଛି ଅବଦାନ ନାହିଁ କହିଲେ ଚଳେ ଯାହାକି ପ୍ରସିଦ୍ଧ ନୈୟାୟିକ ଉଦୟନାଚାର୍ଯ୍ୟଙ୍କ ଉକ୍ତିରେ-

କୁତୋ ବା ନୂତନଂ ବସ୍ତୁ ବୟମୁତ୍ପ୍ରେକ୍ଷିତୁଂ କ୍ଷମାଃ ।
ବଚୋବିନ୍ୟାସବୈଚିତ୍ର୍ୟମାତ୍ରମତ୍ର ବିଧୀୟତେ ॥

ରୁଦ୍ରାଭିଷେକର ସ୍ୱରୂପ ଓ ପ୍ରକାରଭେଦ ବିଷୟରେ ଗ୍ରନ୍ଥର ଉପୋଦ୍‌ଘାତରେ ବିଶେଷଭାବରେ ଆଲୋଚନା କରାଯାଇଅଛି । ବିଶେଷତଃ ଆମ ଓଡ଼ିଶାର ଶିବୋପାସକମାନେ କେତେକ ସ୍ଥଳରେ ଶତରୁଦ୍ରୀ ପୁଣି ଆଉ କେତେକ ସ୍ଥାନରେ ରୁଦ୍ରାଷ୍ଟାଧ୍ୟାୟୀ ତାହା ପୁଣି କାଣ୍ୱ ଓ ମାଧ୍ୟନ୍ଦିନ ଶାଖା ଭେଦରେ ପୃଥକ୍ ପୃଥକ୍ ଅଭିଷେକ ପଦ୍ଧତି ଅବଲମ୍ବନ କରୁଥିବା ଦେଖିବାକୁ ମିଳେ । ଏପରିକି ମନ୍ତ୍ରାନ୍ତର୍ଗତ ପଦ ଓ ବର୍ଣ୍ଣରେ ଉଚ୍ଚାରଣ ଗତ ଭିନ୍ନତା ବିଶେଷକରି ମାଧ୍ୟନ୍ଦିନ ଶାଖାରେ ଯଥା ପୁରୁଷସୂକ୍ତର ପ୍ରଥମମନ୍ତ୍ର – 'ସହସ୍ରଶୀର୍ଷା ପୁରୁଷ'- ଏଠାରେ ଶୀର୍ଷାର 'ଷ' ବର୍ଣ୍ଣକୁ ଖ ଆକାରରେ ଅର୍ଥାତ୍ ଶୀର୍ଖା ଏବଂ ପୁରୁଷ ପଦର 'ଷ' କୁ ମଧ୍ୟ 'ପୁରୁଖ' ଏହି ରୂପରେ ଉଚ୍ଚାରଣ କରନ୍ତି । କାଣ୍ୱଶାଖୀୟ ମାନେ ମଧ୍ୟ 'ଡ'କାର ସ୍ଥାନରେ 'ଳ'କାର ଯଥା ପୁରୁଷ ସୂକ୍ତର ୫ମ ମନ୍ତ୍ରସ୍ଥ 'ତତୋ ବିରାଡ଼ଜାୟତ' – ଏଠାରେ ବିରାଡ଼ପଦର 'ଡ' ସ୍ଥାନରେ 'ଳ'- 'ବିରାଳଜାୟତ' – ଏହିପରି ଉଚ୍ଚାରଣ କରିଥାଆନ୍ତି । ଅବଶ୍ୟ ଏ ବିଷୟରେ 'ରଲୟୋର୍ଡଲୟୋଶ୍ଚୈବ ଶସୟୋର୍ବବୟୋସ୍ତଥା'- ଏହିପରି ବ୍ୟତିକ୍ରମର ଶାସ୍ତ୍ରୀୟ ମାନ୍ୟତା ଅଛି । ଏ ସମସ୍ତ ବିଷୟରେ ସମ୍ୟକ୍ ଧାରଣାପାଇଁ ପରିଶିଷ୍ଟରେ ବିଶଦ ବିବରଣୀ ପ୍ରଦର୍ଶିତ ହୋଇଅଛି । ଏହା ସହିତ ଶାଖା ଭେଦ ଅନୁସାରେ ସଂହିତାନ୍ତର୍ଗତ କେତେକ ମନ୍ତ୍ରମାନଙ୍କରେ ଆଂଶିକ ଭାବରେ ଉପଲବ୍ଧ ପରିବର୍ତ୍ତନ ମଧ୍ୟ ପରିଶିଷ୍ଟରେ ସନ୍ନିବେଶିତ । ଦକ୍ଷିଣଭାରତରେ ପ୍ରଚଳିତ ମାଧ୍ୟନ୍ଦିନ ଶାଖାର ରୁଦ୍ରାଷ୍ଟାଧ୍ୟାୟୀରେ ୧୦ଗୋଟି ଅଧ୍ୟାୟରେ ମୋଟ ମନ୍ତ୍ରସଂଖ୍ୟା ୨୧୩ (ଅଧ୍ୟାୟ ଅନୁସାରେ ୧୦+୨୨+୧୭+୧୭+୬୬+୮+୭+୨୯+ ୨୪+୧୩)

ଅଟେ ଏବଂ ଉତ୍ତରଭାରତର ବିଶେଷକରି ବାରାଣସୀ ପ୍ରଭୃତି କ୍ଷେତ୍ରରେ କାଣ୍ୱଶାଖୀୟରୁଦ୍ରାଷ୍ଟାଧ୍ୟାୟୀର ମୋଟ ମନ୍ତ୍ରସଂଖ୍ୟା ୨୦୬ (ଅଧ୍ୟାୟ ଅନୁସାରେ ୫+୨୨+୧୭+୧୭+୬୪+୮+୭+୨୯+୨୪+୧୩) ଅଟେ । ଏତଦ୍‌ବ୍ୟତୀତ ଶୁକ୍ଳଯଜୁର୍ବେଦାନ୍ତର୍ଗତ କାଣ୍ୱଶାଖୀୟ ରୁଦ୍ରାଭିଷେକର 'ଶତରୁଦ୍ରୀ ପଦ୍ଧତି'ରେ ସଂହିତାର ବିଭିନ୍ନ ଅଧ୍ୟାୟରୁ ସଂଗୃହୀତ ଏବଂ କେତେକ ମନ୍ତ୍ରର ପୁନରାବୃତ୍ତି ସହିତ ଶହେଗୋଟି ମନ୍ତ୍ରଦ୍ୱାରା ଅନୁଷ୍ଠିତ ହୁଏ । ଏହିପରି ପ୍ରୟୋଗବିଧିର ଭିନ୍ନତାକୁ ଲକ୍ଷ୍ୟକରି ଗ୍ରନ୍ଥରେ ତିନିପ୍ରକାର ପ୍ରମୁଖ ଅଭିଷେକର ଓଡ଼ିଆ ଭାବାର୍ଥ ସମନ୍ୱିତ ମନ୍ତ୍ରମାନଙ୍କୁ ପୃଥକ୍ ପୃଥକ୍ ଭାବରେ ଉପସ୍ଥାପନ କରାଯାଇଅଛି । ଏହା ସତ୍ତ୍ୱେ ଯଦି କିଛି ଅମେଳ ବା ଅସମାହିତ ଅଂଶ ମନ୍ତ୍ରମାନଙ୍କରେ କେଉଁଠି ହେଲେ ଶଙ୍କା ବା ସନ୍ଦେହର ବିଷୟୀଭୂତ ହୁଏ ତା ପାଇଁ ମୁଁ କ୍ଷମାପ୍ରାର୍ଥୀ କାରଣ ଶ୍ରୌତମନ୍ତ୍ରମାନ ଆର୍ଷଦୃଷ୍ଟି ପ୍ରଭବ ହେତୁ ସେଥିରେ କୌଣସି ପ୍ରକାର ପରିବର୍ତ୍ତନ ଆମ ଅଧିକାରର ଅନ୍ତର୍ଭୁକ୍ତ ନୁହେଁ । କେତେକ ମନ୍ତ୍ରାନ୍ତର୍ଗତ ପଦମାନଙ୍କ ମଧ୍ୟରେ '୨', '୩' ଅଙ୍କର ଉଲ୍ଲେଖ ଅଛି । ଯାହା '୨'-ଦୀର୍ଘ, '୩'-ପ୍ଳୁତ ସ୍ୱର ଭାବରେ ଉଚ୍ଚାରଣ କରିବାପାଇଁ ନିର୍ଦ୍ଦେଶ ରୂପରେ ବୁଝିବାକୁ ପଡ଼ିବ । ମନ୍ତ୍ରମାନଙ୍କର ଅର୍ଥ ନିରୂପଣ ପ୍ରସଙ୍ଗରେ କାଣ୍ୱଶାଖୀୟ ସଂହିତାର ଭାଷ୍ୟ ଓ ବ୍ୟାଖ୍ୟା କେତେକ ସ୍ଥଳରେ ସନ୍ଦିଗ୍ଧ ଓ ଅସ୍ପଷ୍ଟଥିବା ହେତୁ ମାଧ୍ୟନ୍ଦିନ ସଂହିତାର ଭାଷ୍ୟ ଓ ବ୍ୟାଖ୍ୟାକୁ ଆଶ୍ରୟ କରିବାକୁ ପଡ଼ିଅଛି । ଅବଶ୍ୟ ଏଥିରେ ବିଶେଷ କିଛି ପାର୍ଥକ୍ୟ ଭାବାନୁବାଦରେ ପରିଲକ୍ଷିତ ହେବନାହିଁ । ସେହିପରି ଏ ପୁସ୍ତକରେ ମନ୍ତ୍ରମାନଙ୍କର କ୍ରମିକ ସଂଖ୍ୟା ମାଧ୍ୟନ୍ଦିନ ରୁଦ୍ରାଷ୍ଟାଧ୍ୟାୟୀ ଅନୁସାରେ ସ୍ଥିରୀକୃତ ହୋଇଥିଲେ ମଧ୍ୟ ସେଗୁଡ଼ିକ ଅର୍ଥନିରୂପଣ ପ୍ରସଙ୍ଗରେ ଶାଖା ଅନୁସାରେ ସଂହିତାର ବିଭିନ୍ନ ଅଧ୍ୟାୟମାନଙ୍କରୁ ଅନ୍ୱେଷଣ କରି ଏଥିରେ ସନ୍ନିବେଶିତ କରାଯାଇଅଛି । ଏହି ପୁସ୍ତକ ପ୍ରସ୍ତୁତି ନିମିତ୍ତ ଶୁକ୍ଳ ଯଜୁର୍ବେଦ ବାଜସନେୟୀ ସଂହିତା ଅନ୍ତର୍ଗତ ମାଧ୍ୟନ୍ଦିନଶାଖା ସମ୍ମତ ବାରାଣସୀସ୍ଥିତ 'ବ୍ୟାସ ପ୍ରକାଶନ' ସଂସ୍ଥାଦ୍ୱାରା ପ୍ରକାଶିତ ତଥା ପ୍ରବକ୍ତା ଶ୍ରୀ ରମେଶ ଉପାଧ୍ୟାୟଙ୍କ ଦ୍ୱାରା ସମ୍ପାଦିତ 'ଶୁକ୍ଳ ଯଜୁର୍ବେଦୀୟ ରୁଦ୍ରାଷ୍ଟାଧ୍ୟାୟୀ' ତଥା ଶ୍ରୀପାଦ ଦାମୋଦର ସାତବଲେକର ମହୋଦୟଙ୍କ ସମ୍ପାଦନାରେ ସ୍ୱାଧ୍ୟାୟମଣ୍ଡଳ, ପାରଡ଼ିନଗରମ୍,

ଗୁଜୁରାତ ପକ୍ଷରୁ ପ୍ରକାଶିତ ଶୁକ୍ଳଯଜୁର୍ବେଦୀୟ 'କାଣ୍ୱସଂହିତା' ଏବଂ ବ୍ୟାଖ୍ୟାକାର ଓ ସମ୍ପାଦକ ଡା. ରାମକୃଷ୍ଣ ଶାସ୍ତ୍ରୀ ମହାଶୟଙ୍କ ଦ୍ୱାରା ଚୌଖମ୍ବା ବିଦ୍ୟାଭବନ ବାରାଣସୀ ଆନୁକୂଲ୍ୟରେ ପ୍ରକାଶିତ 'ଶ୍ରୀମଦ୍‌ବାଜସନେୟିମାଧ୍ୟନ୍ଦିନ-ଶୁକ୍ଳଯଜୁର୍ବେଦସଂହିତା' ଗ୍ରନ୍ଥମାନ ଆଧାର ରୂପରେ ସ୍ୱୀକୃତ ।

ଗ୍ରନ୍ଥ ପ୍ରସ୍ତୁତି ସମୟରେ ଦୁର୍ବୋଧ ଓ ସନ୍ଦିଗ୍ଧ ବିଷୟକୁ ନେଇ ଭାରତର ଅନେକ ବିଶିଷ୍ଟ ବୈଦିକ ବିଦ୍ୱାନ୍‌ମାନଙ୍କ ଅକୁଣ୍ଠିତ ପରାମର୍ଶ ଓ ସାହାଯ୍ୟ ଗ୍ରହଣକରିଅଛି । ସେମାନଙ୍କ ମଧ୍ୟରୁ ବିଶେଷଭାବରେ ବିଦ୍ୟାନଗରୀ କାଶୀର ପ୍ରସିଦ୍ଧ ବିଦ୍ୱାନ୍ ଓ କାଶୀର ବାବାବିଶ୍ୱନାଥଙ୍କ ପୂଜକ ଆଚାର୍ଯ୍ୟ ସୋମନାଥ ବାଜପେୟୀ, ମୋର ପରମମିତ୍ର ପ୍ରଫେସର ରାମପୂଜନ ପାଣ୍ଡେୟ ଓ ଶ୍ରଦ୍ଧେୟ ଅନ୍ତେବାସୀ ଡକ୍ଟର ତ୍ର୍ୟମ୍ବକନାଥ ପାଣ୍ଡେୟଙ୍କ ଆନ୍ତରିକ ସହାନୁଭୂତି ଏବଂ ହାର୍ଦ୍ଦିକ ସମର୍ଥନ ପାଇଁ ମୁଁ ସେମାନଙ୍କ ପାଖରେ ସବିଶେଷ ଋଣୀ । ଗ୍ରନ୍ଥୋଦ୍ଧୃତ ସ୍ତୋତ୍ରାନ୍ତର୍ଗତ ଶ୍ଳୋକମାନଙ୍କରେ ଏକାଧିକ ପାଠଭେଦ ପରିଲକ୍ଷିତ ହୋଇଥିଲେ ମଧ୍ୟ ଯେଉଁ ପାଠଟି ଅନେକଙ୍କ ଦ୍ୱାରା ଗୃହୀତ ତଥା ଅଧିକ ପ୍ରାସଙ୍ଗିକ ବୋଲି ଆପାତତଃ ପ୍ରତୀତ ହୋଇଅଛି ତାହାକୁ ହିଁ ଏଥିରେ ଗ୍ରହଣ କରାଯାଇଅଛି । ଏଥିରେ ଯଦି କାହାକୁ ଅସ୍ୱସ୍ତିକର ବୋଧହୁଏ ତାହେଲେ ମୁଁ ସେଥିପାଇଁ କ୍ଷମାପ୍ରାର୍ଥୀ । ଗ୍ରନ୍ଥକୁ ସାକାର ରୂପଦେବାପାଇଁ D.T.P. କର୍ତ୍ତା 'ଦାଶ୍ କମ୍ପ୍ୟୁଟର' ସଂସ୍ଥାର ସଞ୍ଚାଳକ ଶ୍ରଦ୍ଧେୟ ବିଜୟ କୁମାର ଦାଶଙ୍କ ଅବଦାନ ଅନବଦ୍ୟ । ପୁଣି ଏହାକୁ ଲୋକଲୋଚନକୁ ଆଣିବାରେ ଗୁରୁଦାୟିତ୍ୱ ବହନ କରିଥିବା 'ଓମ୍ ପ୍ରତିଷ୍ଠାନ', ପୁରୀର ତତ୍ତ୍ୱାବଧାରକ ଆଦରଣୀୟ ଶରତ୍ ବାବୁଙ୍କ ନିକଟରେ ମୁଁ ଆଧମର୍ଣ୍ଣ୍ୟ ପ୍ରକଟ କରୁଅଛି । ପରିଶେଷରେ ଶିବୋପାସକ ଓ ଶିବଭକ୍ତମାନଙ୍କ ଅନୁଗ୍ରହପ୍ରାର୍ଥୀ ଏହି ଗ୍ରନ୍ଥୋପସ୍ଥାପକ, ସହୃଦୟ ପାଠକ ଓ ନିଷ୍ପାପର ଶିବପୂଜକଙ୍କ କରକମଳରେ ଏହାକୁ ଉତ୍ସର୍ଗକରି ନିଜକୁ କୃତାର୍ଥ ମଣିବା ସହିତ ମୋର ପରମାରାଧ୍ୟ ପ୍ରାତଃ ସ୍ମରଣୀୟ ଗୁରୁଦେବଙ୍କ ଆଦେଶକୁ କିଞ୍ଚିନ୍ମାତ୍ରାରେ ସାକାରରୂପ ଦେବାରେ ମୋ ଅନ୍ତଃକରଣରେ ପ୍ରେରଣା, ସାହସ ଓ ସାମର୍ଥ୍ୟପ୍ରଦାୟକ ଅନ୍ତର୍ଯ୍ୟାମୀ ପରମକାରୁଣିକ ଭଗବାନ୍ ବାବା ଭୋଲାନାଥଙ୍କ ପଦାରବିନ୍ଦରେ ପ୍ରଣତିତତି ନିବେଦନପୂର୍ବକ ବିଶ୍ୱବାସୀଙ୍କ ନିକଟରେ ବିନମ୍ର ନିବେଦନ କରୁଅଛି କି 'ଶିବେତି ମନ୍ତ୍ରଭୂଷଣା ଜଗଜ୍ଜୟାୟ ଜାୟତାମ୍ ।' । ଇତି ଶମ୍ ।

ବିଦ୍ୱଚ୍ଚରଣକମଳଚଞ୍ଚରୀକ

**ଶ୍ରୀ ନୀଳକଣ୍ଠ ପତି**

## ସଂକେତ ସୂଚୀ

ଅ.ଅଧ୍ୟାୟଃ

ଈ.ଉପ – ଈଶାବାସ୍ୟୋପନିଷଦ୍

କ.ଉପ – କଠୋପନିଷଦ୍

କା.ଶା. – କାଣ୍ୱଶାଖା

କା.ସଂ. – କାଣ୍ୱସଂହିତା

କୂ.ପୁ. – କୂର୍ମପୁରାଣମ୍

କେନ.ଉପ – କେନୋପନିଷଦ୍

ତୈ.ଆ. – ତୈତ୍ତିରୀୟାରଣ୍ୟକମ୍

ତୈ.ଉପ – ତୈତ୍ତିରୀୟୋପନିଷଦ୍

ଭ.ଗୀ – ଭଗବଦ୍‌ଗୀତା

ମ. – ମନ୍ତ୍ର

ମ.ସଂ – ମନ୍ତ୍ରସଂଖ୍ୟା

ମା.ଶା. – ମାଧ୍ୟନ୍ଦିନ ଶାଖା

ମା.ସଂ – ମାଧ୍ୟନ୍ଦିନ ସଂହିତା

ଯୋ.ଦ. – ଯୋଗଦର୍ଶନମ୍

ବି.ଦ୍ର. – ବିଶେଷ ଦ୍ରଷ୍ଟବ୍ୟ

ବୃ.ଆ.ଉପ – ବୃହଦାରଣ୍ୟକୋପନିଷଦ୍

ଶୁ.ଯ.ବେ – ଶୁକ୍ଳଯଜୁର୍ବେଦ

ଶ୍ରୀ.ଭା. – ଶ୍ରୀମଦ୍‌ଭାଗବତମ୍

ଶ୍ୱେ.ଉପ – ଶ୍ୱେତାଶ୍ୱେତରୋପନିଷଦ୍

ସଂ. – ସଂଖ୍ୟା

—×—

## ସୂଚୀପତ୍ର

# ଉପୋଦ୍‌ଘାତ

## ଓଁ ନମସ୍ତାରାୟ

## ଆମ ସ୍ୱରୂପ ଆନନ୍ଦମୟ

ଉପନିଷଦ୍‌ରେ ବର୍ଣ୍ଣିତ ଅଛି ଯେ ଦିନେ ଋଷିପୁତ୍ର ଭୃଗୁ ପିତା ବରୁଣଙ୍କ ପାଖରେ ବ୍ରହ୍ମଜ୍ଞାନ ବିଷୟରେ ଜିଜ୍ଞାସା ଉପସ୍ଥାପନ କଲେ । ଋଷି ବରୁଣ କହିଲେ - 'ଯତୋ ବା ଇମାନି ଭୂତାନି ଜାୟନ୍ତେ । ଯେନ ଜାତାନି ଜୀବନ୍ତି । ଯତ୍ ପ୍ରୟନ୍ତ୍ୟଭିସଂବିଶନ୍ତି । ତଦ୍ ବିଜିଜ୍ଞାସସ୍ୱ । ତଦ୍ ବ୍ରହ୍ମ ଇତି' - (ତୈତ୍ତିରୀୟ ଉପନିଷଦ୍-୩/ ୧) । ଅର୍ଥାତ୍ ଯାହାଙ୍କଠାରୁ ଏହି ଭୂତଭୌତିକ (ଆକାଶାଦି) ଜଗତ୍ ଉତ୍ପନ୍ନ, ଯାହାଙ୍କଠାରେ ଏହାର ସ୍ଥିତି ଏବଂ ଯାହାଙ୍କଠାରେ ଏହା ବିଲୟ ହୁଏ, ତାହାଙ୍କୁ ଜାଣ, ସେ ହିଁ ବ୍ରହ୍ମ । ଏହାପରେ ପୁଣି କୁହାଯାଇଅଛି- 'ଆନନ୍ଦୋ ବ୍ରହ୍ମେତି ବ୍ୟଜାନାତ୍, ଆନନ୍ଦାଦ୍ଧ୍ୟେବ ଖଲ୍ୱିମାନି ଭୂତାନି ଜାୟନ୍ତେ । ଆନନ୍ଦେନ ଜାତାନି ଜୀବନ୍ତି । ଆନନ୍ଦଂ ପ୍ରୟନ୍ତି ଅଭିସଂବିଶନ୍ତି ଇତି' - (ତୈ.ଉପ.୩/୬) ଅର୍ଥାତ୍ ଆନନ୍ଦକୁ ହିଁ ବ୍ରହ୍ମ ରୂପରେ ଜାଣ । ଆନନ୍ଦରୁ ଏ ସମସ୍ତ ପାଞ୍ଚ ଭୌତିକ ଜଗତ୍ ଜାତ, ସେଇଥିରେ ସ୍ଥିତ ଏବଂ ସେହି ଆନନ୍ଦରେ ହିଁ ବିଲୟ । ଏଥିରୁ ଆମେ ସ୍ପଷ୍ଟ ଜାଣିପାରୁଅଛୁ ଯେ ଆନନ୍ଦସ୍ୱରୂପ ବ୍ରହ୍ମ ବା ପରମାତ୍ମାଙ୍କଠାରୁ ଆମର ଉତ୍ପତ୍ତି । ଏଣୁ ସ୍ୱାଭାବିକ ଭାବରେ ଆମେ ସମସ୍ତେ ସେହି ଆନନ୍ଦକୁ ପ୍ରାପ୍ତ ହେବା ପାଇଁ ସର୍ବଦା ଚେଷ୍ଟିତ କାରଣ ଆମ ଜୀବନର ସର୍ବସ୍ୱ ହେଉଛି ଆନନ୍ଦ ପ୍ରାପ୍ତି । ବସ୍ତୁତଃ ଆମ ପାଖରେ ଏପରିକି ଏ ବିଶ୍ୱବ୍ରହ୍ମାଣ୍ଡର ପ୍ରତିକୋଣ ଅନୁକୋଣରେ ଆନନ୍ଦର ସତ୍ତା ନିତ୍ୟ ବିଦ୍ୟମାନ । ଯାହାକୁ ଉପଲବ୍ଧ କରି ଭାବୁକ କବି ମୁକ୍ତକଣ୍ଠରେ ଗାଇ ଉଠିଛନ୍ତି-

'କି ସୁନ୍ଦର ଆହା କି ଆନନ୍ଦମୟ ଏହି ବିଶାଳ ସଂସାର,
ଧନ୍ୟ ମହାପ୍ରଭୁ ମହିମା ତୁମର ଅଟେ ଅନନ୍ତ ଅପାର ।'

(ଭକ୍ତକବି ମଧୁସୂଦନ ରାଓ)

କିନ୍ତୁ ଅତ୍ୟନ୍ତ ବିସ୍ମୟକର କଥା ଏହିକି ଯେ କସ୍ତୂରୀ ମୃଗ ଯେପରି ନିଜ ନାଭିରେ

ଥିବା କସ୍ତୂରୀକୁ ଅଜ୍ଞାନତା ବଶତଃ ଜାଣିନପାରି ଇତସ୍ତତଃ ଖୋଜି ଖୋଜି ଶେଷରେ ନିରାଶ ହୋଇ ମୃତ୍ୟୁ ବରଣ କରିଥାଏ, ଠିକ୍ ସେହିପରି ଆମେ ସମସ୍ତେ ନିଜ ଅନ୍ତର୍ନିହିତ ଆନନ୍ଦସ୍ୱରୂପକୁ ଉପଲବ୍ଧି କରିନପାରି ବାହାର ବିଷୟମାନଙ୍କରେ ତାହାକୁ ଜୀବନସାରା ଖୋଜି ବୁଲୁଥାଉ ଅଥବା ପ୍ରକାରାନ୍ତରରେ କହିବାକୁ ଗଲେ ଶବ୍ଦ-ସ୍ପର୍ଶ-ରୂପ-ରସ-ଗନ୍ଧ-ଏହି ପାଞ୍ଚଗୋଟି ପ୍ରମୁଖ ବିଷୟ ଓ ତଜ୍ଜନିତ ଅସୀମ ଅବାନ୍ତର ବିଷୟ ଗୁଡ଼ିକଠାରୁ ଆମେ ଆନନ୍ଦର ଆଶାୟୀ ହୋଇ ପ୍ରତି ମୁହୂର୍ତ୍ତରେ ମନରେ ସେ ନିମିତ୍ତ ଗଭୀର ଆଶାପୋଷଣ କରୁଅଛୁ । ପରିଶେଷରେ ମରୀଚିକାରେ ପାଣି ପାଇବାପାଇଁ ଧାବମାନ ଭ୍ରାନ୍ତ ପଥିକ ଯେପରି ନୈରାଶ୍ୟମୟ ହାହାକାର ମଧ୍ୟରେ ଅବସନ୍ନ ହୋଇ ମରଣାପନ୍ନ ହୋଇଥାଏ, ଠିକ୍ ସେହିପରି ଅଜ୍ଞାନବଶତଃ ଆମେ ମାୟିକ ବିଷୟନିଷ୍ଠ ଯେଉଁ କ୍ଷଣିକ ଆନନ୍ଦ ତାହାକୁ ପାଇବା ପାଇଁ ସର୍ବଦା ଏପରିକି ଆଜୀବନ ବୃଥା ଚେଷ୍ଟାରତ । ମାତ୍ର ତତ୍ତ୍ୱଜ୍ଞାନୀ ବିବେକୀମାନଙ୍କ ପାଇଁ ପରିଣାମ, ତାପ ଓ ସଂସ୍କାର ଦୃଷ୍ଟିରୁ ଏ ସମସ୍ତ ବିଷୟନିଷ୍ଠ ଆନନ୍ଦ କ୍ଷଣସ୍ଥାୟୀ ଏଣୁ ମିଥ୍ୟା ଓ ପ୍ରତୀତି ମାତ୍ର । ତଥାପି ଆଧ୍ୟାତ୍ମିକ, ଆଧିଭୌତିକ ଓ ଆଧିଦୈବିକ- ଏପରି ତ୍ରିତାପତପ୍ତ ମନୁଷ୍ୟମାନେ ଏଥିରୁ କିଛି ମାତ୍ରାରେ ହେଉପଛେ ଟିକିଏ ତ୍ରାହି ପାଇବା ପାଇଁ ସେହି ବସ୍ତୁନିଷ୍ଠ ଆନନ୍ଦକୁ ହିଁ ଆପଣେଇ ନେଇ କଥଞ୍ଚିତ୍ ଜୀବନଯାପନ କରିବା ସହିତ ବାରମ୍ବାର ଜନ୍ମ ମୃତ୍ୟୁରୂପକ ସଂସାରଚକ୍ରରେ ଆବର୍ତ୍ତିତ ହେବାକୁ ବାଧ୍ୟ ହେଉଅଛନ୍ତି । କିନ୍ତୁ ପରିତାପର ବିଷୟ ଏହିକି ଯେ ଆମ ପାଖରେ ଅଖଣ୍ଡ ଆନନ୍ଦର ଖଣି ଥାଉ ଥାଉ ଅଜ୍ଞତା ହେତୁ ଆମେ ତା ପ୍ରତି ଧ୍ୟାନ ନ ଦେଇ ଏଭଳି ବାହ୍ୟ ବସ୍ତୁଗତ ଆଭାସିକ ଆନନ୍ଦ ପଛରେ ଧାବମାନ ହେବା ଏକାନ୍ତ ଅଦୂରଦର୍ଶିତା ଓ ଅପରିଣାମଦର୍ଶିତା ବ୍ୟତୀତ ଆଉ କ'ଣ ହୋଇପାରେ ? ସେହି ଶାଶ୍ୱତ ଓ ଚିରନ୍ତନ ଆତ୍ମନିଷ୍ଠ ଆନନ୍ଦକୁ ନେଇ ଆମେ ବଞ୍ଚି ରହିଛୁ ଯାହାର ପ୍ରମାଣ ଯଥା – 'ଏତସ୍ୟୈବାନନ୍ଦସ୍ୟ ଅନ୍ୟାନି ଭୂତାନି ମାତ୍ରାମୁପଜୀବନ୍ତି' – 'ବୃହ:ଉପ:-୪/୩/୩୨ ), ପୁଣି ରସୋ ବୈ ସଃ, ରସଂ ହ୍ୟେବାୟଂ ଲବ୍ଧ୍ୱା ଆନନ୍ଦୀ ଭବତି, କୋ ବା ହ୍ୟେବାନ୍ୟାତ୍, କଃ ପ୍ରାଣ୍ୟାତ୍, ଯଦେଷ ଆକାଶ ଆନନ୍ଦୋ ନ ସ୍ୟାତ୍'-(ତୈ.ଉପ.-୨/୭/୧) ।

ଅର୍ଥାତ୍ ଏହି ବ୍ରହ୍ମାନନ୍ଦର ସାମାନ୍ୟ ମାତ୍ର ଆନନ୍ଦର କଣିକାଦ୍ୱାରା ପ୍ରାଣୀମାନେ ବଞ୍ଚି ରହିଛନ୍ତି । ସେ ରସ ସ୍ୱରୂପ, ସେହି ରସ ରୂପକ ଆନନ୍ଦକୁ ଜୀବ ଲାଭକରି ସୁଖ ଅନୁଭବ କରୁଅଛି । ଯଦି ଏହି ଆକାଶ ଆନନ୍ଦ ନ ହୁଅନ୍ତା ତାହେଲେ କେହି ପ୍ରାଣୀ ଆନନ୍ଦ ପ୍ରାପ୍ତ ହୁଅନ୍ତେ ନାହିଁ କି ପ୍ରାଣଧାରଣ ମଧ କରିପାରନ୍ତେ ନାହିଁ – ଏହି ଶ୍ରୁତିବାକ୍ୟରେ ଆକାଶ ଶବ୍ଦଦ୍ୱାରା ଆତ୍ମା ବା ବ୍ରହ୍ମକୁ ଲକ୍ଷ୍ୟ କରାଯାଇଅଛି କାରଣ ଆକାଶ ବ୍ରହ୍ମ ବା ଆତ୍ମାଠାରୁ ସାକ୍ଷାଦୁତ୍ପନ୍ନ ଯେଉଁ ଆକାଶ ଆବାଳବୃଦ୍ଧବନିତା ସମସ୍ତଙ୍କ ପାଇଁ ସୁପରିଚିତ । ଆକାଶରୁ ସମସ୍ତଙ୍କ ଉତ୍ପତ୍ତି ବିଷୟରେ କୁହାଯାଇଅଛି – 'ତସ୍ମାଦ୍‌ବା ଏତସ୍ମାଦାତ୍ମନ ଆକାଶଃ ସମ୍ଭୂତଃ, ଆକାଶାଦ୍ ବାୟୁଃ, ବାୟୋରଗ୍ନିଃ, ଅଗ୍ନେରାପଃ, ଅଦ୍‌ଭ୍ୟଃ ପୃଥିବୀ, ପୃଥିବ୍ୟା ଔଷଧୟଃ, ଔଷଧିଭ୍ୟୋଽନ୍ନମ୍, ଅନ୍ନାତ୍ ପୁରୁଷଃ, ସ ବା ଏଷ ପୁରୁଷୋଽନ୍ନରସମୟଃ' (ତୈ.ଉପ. ୨/୧) । ଅର୍ଥାତ୍ ସେହି ଆତ୍ମାଙ୍କଠାରୁ ଆକାଶ ଜାତ, ଆକାଶରୁ ବାୟୁ, ବାୟୁରୁ ଅଗ୍ନି.... ଇତ୍ୟାଦି । ଏଣୁ ଆକାଶ ସାକ୍ଷାତ୍ ଆନନ୍ଦମୟ । ବ୍ୟବହାର କ୍ଷେତ୍ରରେ ମଧ ଆମେ ଯେତେବେଳେ ଅତ୍ୟନ୍ତ ଦୁଃଖରେ ମ୍ରିୟମାଣ ହୋଇପଡୁ ସେତେବେଳେ ଆକାଶକୁ ଚାହିଁ କିଛି ମାତ୍ରାରେ ଦୁଃଖର ଲାଘବ ସହିତ ଆନନ୍ଦ ମଧ ଅନୁଭବ କରିଥାଉ । ଏ ସମସ୍ତ ଦୃଷ୍ଟିରୁ ଆମେ ଏହି ସିଦ୍ଧାନ୍ତରେ ଉପନୀତ ହେଲୁ ଯେ ଆମ ଆତ୍ମା ଆନନ୍ଦର ଉତ୍ସ ଯାହାକି ଚିନିରେ ତିଆରି ହୋଇଥିବା ମିଠା ଯେପରି ସ୍ୱରୂପତଃ ମଧୁର, ଠିକ୍ ସେହିପରି ଆତ୍ମା ସ୍ୱରୂପରେ ଆନନ୍ଦମୟ । ସାଂସାରିକ ଅବସ୍ଥାରେ ପରମାନନ୍ଦମୟ ଯେଉଁ ପରମାତ୍ମା ତାଙ୍କର ଆମେ ଅଂଶବିଶେଷ । ଏଥିରୁ ସହଜେ ଅନୁମେୟ ଯେ ଯଦି ଅଂଶମାତ୍ର ଆତ୍ମା ଆନନ୍ଦମୟ ତା ହେଲେ ପରମାତ୍ମା ନିଶ୍ଚୟ ପରମ ଆନନ୍ଦମୟ ଅଟନ୍ତି । ଏଥିରେ ତିଳେମାତ୍ର ସନ୍ଦେହର ଅବକାଶ ନାହିଁ ।

ଏକଥା ମଧ ସତ୍ୟ ଯେ ଆଜିର କୃତ୍ରିମ ଅଭାବର ଶୀକାର ହୋଇ ଘୋର ଅଶାନ୍ତି ଓ ଦୁଃଖମୟ ଜୀବନ ପ୍ରବାହର ପ୍ରାତ୍ୟହିକ ଜଞ୍ଜାଳମୟ ତଥାକଥିତ କାର୍ଯ୍ୟବ୍ୟସ୍ତତା ଭଳି ଅସନ୍ତୋଷର ବହ୍ନିରେ ଜଳି ଜଳି ଏହି ଭାରାକ୍ରାନ୍ତ ଜୀବନଯାପନ କରୁଥିବା ବିଶ୍ୱବାସୀଙ୍କ ପାଇଁ ସମୁଦ୍ର ମନ୍ଥନୋଦ୍‌ଭବ ହଳାହଳ

ବିଷପାନ କରି ଅଥଚ ବିଶ୍ୱକୁ ଅମୃତ ପ୍ରଦାନ କରିଥିବା ମହାଦେବ, ନୀଳକଣ୍ଠ ହିଁ ଏକମାତ୍ର ସହାୟ ଓ ଶରଣପ୍ରଦାତା । ଏଥିପାଇଁ ଅମୃତପାନକରି ଦେବତାମାନେ ଦେବ, ମାତ୍ର ସେ ବିଷପାନ କରି ମହାଦେବ, ଅନ୍ୟମାନେ ଈଶ୍ୱର ଅଥଚ ସେ ମହେଶ୍ୱର । କାଳସ୍ୱରୂପ ବିଷଧର ସର୍ପମାନେ ଯାହାଙ୍କ ଗଳାର ଆଭରଣ ତେଣୁ ସେ କାଳର ମଧ୍ୟ କାଳ ମହାକାଳ ସ୍ୱରୂପ । ଏପରିକି ବିଷମୟ ସଂସାରକୁ ବିନାଶକରି ନିଜ ଶରଣାଗତ ଭକ୍ତଙ୍କୁ ମୋକ୍ଷରୂପକ ଅମୃତତ୍ୱ ପ୍ରଦାନ ପାଇଁ ତଥାଚ ନିଜ ପରିବାରର ମଧ୍ୟ (କଳ୍ପିତ) ବିଷମତାରୁ ରକ୍ଷା ପାଇବା ନିମିତ୍ତ ସେ ସର୍ବଦା ତାଣ୍ଡବନୃତ୍ୟରତ । ଯେଉଁ ତାଣ୍ଡବନୃତ୍ୟରୁ ଅମୃତତ୍ୱର ଆସ୍ୱାଦନ ନିମିତ୍ତ ଦେବ, ଦାନବ, ଯକ୍ଷ, ରାକ୍ଷସ, ଭୂତ, ପ୍ରେତ, ପିଶାଚ, ବେତାଳ, ଗନ୍ଧର୍ବ ଇତ୍ୟାଦି ସେହି ନୃତ୍ୟରେ ଯୋଗଦାନ କରିଥାଆନ୍ତି । ଏହି ପରିପ୍ରେକ୍ଷୀରେ ସଂସାରଦାବାନଳଦଗ୍ଧ ଆମ୍ଭମାନଙ୍କର ମଧ୍ୟ ତାଙ୍କ ଅଲୌକିକ ଆନନ୍ଦ ପ୍ରଦାନକାରୀ ଅମୃତମୟ ତାଣ୍ଡବନୃତ୍ୟରୁ କିଛିମାତ୍ରାରେ ଆନନ୍ଦପ୍ରାପ୍ତ ହେବା ପାଇଁ ପ୍ରଯତ୍ନ କରିବା ବିଧେୟ । କାରଣ ଆମେ ମଧ୍ୟ ବାସ୍ତବ ଦୃଷ୍ଟିରେ ସେହି ଅମୃତର ସନ୍ତାନ । ଯେଉଁଥିପାଇଁ ଆମ ଦିବ୍ୟଦ୍ରଷ୍ଟା ଋଷିମାନେ କହିଅଛନ୍ତି – 'ଶୃଣ୍ୱନ୍ତୁ ସର୍ବେ ଅମୃତସ୍ୟ ପୁତ୍ରାଃ' । ଶିବଙ୍କ ତାଣ୍ଡବନୃତ୍ୟ ବିଶ୍ୱନିର୍ମାଣରେ ନୂତନତ୍ୱର ପ୍ରତୀକ, ତତ୍ ସଂଲଗ୍ନ ମୃଦଙ୍ଗବାଦ୍ୟ ଅମଙ୍ଗଳ ଧ୍ୱଂସ ପୂର୍ବକ ମଙ୍ଗଳ ପ୍ରଦାନର ଦ୍ୟୋତକ, ପରିପାଟୀ ରୂପରେ ଜଟାଜୁଟରୁ ନିର୍ଗତ ଗଙ୍ଗାପ୍ରବାହ ଜୀବନର ଉଚ୍ଛ୍ୱାସ, ଆଭୂଷଣ ବା ଅଙ୍ଗରାଗରୂପକ ଶ୍ମଶାନର ଚିତାଭସ୍ମ ପରମ ବୈରାଗ୍ୟର ସୂଚକ । ଏଣୁ ସଂକ୍ଷେପରେ ପ୍ରକୃତିର ବିବିଧସ୍ୱରୂପ ଓ ସମସ୍ତ ଲୀଳା ଏଥିରେ ସମାହିତ । ନଟରାଜ ଅର୍ଦ୍ଧନାରୀଶ୍ୱରରୂପ ଶିବ ଆମକୁ ସଂସାର ରଙ୍ଗମଞ୍ଚରେ ଅନୁକ୍ଷଣ ନଚାଉଛନ୍ତି ଏବଂ ଏହି ଅଭିନୟ ନିମିତ୍ତ ଯେଉଁ ଅଭିନେତୃତ୍ୱର ପ୍ରକୃଷ୍ଟ ସ୍ୱରୂପ ୮୦ଲକ୍ଷ ବା ୮୪ଲକ୍ଷ ଯୋନି ଭ୍ରମଣପରେ ମାନବରୂପରେ ଆମକୁ ପ୍ରାପ୍ତ ହେଲା ସେଥିପାଇଁ ତାଙ୍କ ପ୍ରତି କୃତଜ୍ଞତା ବା କୃତବେଦିତା ନିବେଦନ ନିମିତ୍ତ ସେବକ, ଭକ୍ତ, ଉପାସକ ବା ପୂଜକ ଯେଉଁ ଆବେଗଭରା ହୃଦୟର ଭକ୍ତ୍ୟର୍ଘ ସ୍ୱରୂପ ବାକ୍ୟପୁଷ୍ପ ସମର୍ପଣ କରନ୍ତି ତାହାହିଁ ମନ୍ତ୍ର, ସ୍ତବ ବା ସ୍ତୁତି

ଭାବରେ ପରିଚିତ । ଶାସ୍ତ୍ରରେ କୁହାଯାଇଅଛି ଯେ –

ମନ ଏବ ମନୁଷ୍ୟାଣାଂ କାରଣଂ ବନ୍ଧମୋକ୍ଷୟୋଃ,

ବନ୍ଧାୟ ବିଷୟାସକ୍ତିଃ ମୁକ୍ତ୍ୟୈ ନିର୍ବିଷୟଂ ମନଃ ।

ଅର୍ଥାତ୍ ଆମ ମନହିଁ ବନ୍ଧନ ଓ ମୁକ୍ତି ନିମିତ୍ତ ଏକମାତ୍ର କାରଣ । ମନରେ ବିଷୟ ପ୍ରତି ଯେଉଁ ଆସକ୍ତି ତାହା ବନ୍ଧନ ପାଇଁ ଏବଂ ବିଷୟାସକ୍ତିରହିତ ମନ ମୁକ୍ତି ପାଇଁ କାରଣ ହୋଇଥାଏ । ସାଂସାରିକ ଅବସ୍ଥାରେ ଆମେ ମନଦ୍ୱାରା ପ୍ରଭାବିତ ହେଉଥିବା ହେତୁ ସୁଖ-ଦୁଃଖ, ମଙ୍ଗଳ-ଅମଙ୍ଗଳ, ଶାନ୍ତି-ଅଶାନ୍ତି, ବନ୍ଧନ-ମୁକ୍ତି ଏ ସମସ୍ତ ଭାବନା ଓ ତଜ୍ଜନିତ ଅନୁଭବ ମନରୁ ହିଁ ଜାତ ହୁଏ । ସେହି ମନର ପ୍ରସନ୍ନତା ବେଳେ କୌଣସି ପ୍ରାସଙ୍ଗିକତା ବା ବାଧ୍ୟବାଧକତା ନଥାଇ ମଧ୍ୟ ସ୍ୱତଃ ସ୍ଫୁର୍ତ୍ତ ଭାବରେ ହୃଦୟର କେଉଁ ଅନ୍ତରତମ ଦେଶରୁ ଗୁଣୁ ଗୁଣୁ ହୋଇ ବାହାରିଆସେ ବେସୁରିଆ ଗୀତର ମୂର୍ଚ୍ଛନା ଯାହା ପ୍ରାୟ ସମସ୍ତଙ୍କର ଊଣା ଅଧିକେ ଅନୁଭବ ସିଦ୍ଧ । ଗାଁ ମାନଙ୍କରେ ଗୃହବଧୂମାନେ ବ୍ରାହ୍ମ ମୁହୂର୍ତ୍ତରୁ ଉଠି ଯେତେବେଳେ ଘରର ଅଗଣା ଓ ସମ୍ମୁଖଭାଗକୁ ଗୋମୟରେ ଲେପି ଚିତା (ଝୁଟୀ) ଲେଖନ୍ତି ବା ରଙ୍ଗ ବେରଙ୍ଗ ମୁରୁଜ ପକାଇଥାଆନ୍ତି, ସେତେବେଳେ ପାହାନ୍ତିଆ ପବନର ମୃଦୁ ସ୍ପର୍ଶରେ ପୁଲକିତ ମନରୁ ଆପେ ଆପେ ବାହାରି ଆସେ ଗୁଣୁ ଗୁଣୁ ସ୍ୱରର ଯେକିଛି ଗୀତ । ଗଭୀର କୂପରୁ ପାଣି କାଢ଼ିବା ବେଳେ ବା ସୁଦୂରବର୍ତ୍ତୀ ନଦୀ ବା ଜଳାଶୟରୁ ମାଠିଆରେ ପାଣି ଆଣୁଥିବା ସମୟରେ ମଧୁମକ୍ଷିକାଭଳି ସେମାନେ ଗୁଣୁ ଗୁଣୁ ଥାଆନ୍ତି । ଆଗକାଳରେ ପରିବାରର ସଦସ୍ୟମାନଙ୍କ ଭୋଜନ ନିମିତ୍ତ ସ୍ତ୍ରୀଲୋକମାନେ ଉଲୁଖଳ-ମୁଷଳ ବା ଢ଼ିଙ୍କୀ ଦ୍ୱାରା ଚାଉଳ ପ୍ରସ୍ତୁତି ପାଇଁ ଧାନକୁଟିବା ବେଳେ ଅଥବା ପଥର ଚକିରେ ଗହମ ବା ବିରି ପେଷିବା ସମୟରେ ସେମିତି ମନ୍ଦ୍ର ଓ ମଧୁର ସ୍ୱରରେ ଗୀତଗାଇ କଷ୍ଟକୁ ସାମାନ୍ୟ ଲାଘବ କରୁଥିବାର ଚିତ୍ର ଏବେ ମଧ୍ୟ ଆମ ମନରେ ଆଙ୍କି ହୋଇଯାଏ । ଚାଷୀଭାଇମାନେ ସକାଳୁ ସକାଳୁ ଚାଷଜମିରେ ହଳ କଲାବେଳେ, ବିହନ ବୁଣିବା ବା ଶସ୍ୟ ଅମଳ କରିବା ସମୟରେ ମଧ୍ୟ ମନମତାଣିଆ ଗ୍ରାମ୍ୟଗୀତ ଗାଇଥାଆନ୍ତି ଯାହାଦ୍ୱାରା କେବଳ ଯେ ଶ୍ରମ ଲାଘବ

ହୁଏ ତା ନୁହେଁ ମନର ପ୍ରସନ୍ନତା ମଧ୍ୟ ବଜାୟ ରହିଥାଏ । ଗୁଜୁରାଟ ଓ ରାଜସ୍ଥାନ ଭଳି ରାଜ୍ୟର ଗ୍ରାମମାନଙ୍କରେ ଏକାଧିକ ପାଣିଭର୍ତ୍ତି ମାଠିଆ ଗୋଟିକ ପରେ ଅନ୍ୟ ଗୋଟିକ ଏପରି ମୁଣ୍ଡରେ ଥୋଇ ସ୍ତ୍ରୀଲୋକମାନେ ସମବେତଭାବରେ ଗୀତଗାଇଚାଲିଥିବାର ଦୃଶ୍ୟପଟ ଏବେ ମଧ୍ୟ ଦେଖାଯାଏ । ଦକ୍ଷିଣ ଭାରତର ମହାରାଷ୍ଟ୍ର ପ୍ରଭୃତି କେତେକ ପ୍ରାନ୍ତରେ ନାରୀମାନେ ଭୋଜନ ପରିବେଷଣ କଲାବେଳେ ସୁମଧୁର ଗୀତଗାଇ ସୁସ୍ୱାଦୁ ଭୋଜନକୁ ଅଧିକ ରଚିକର କରି ତୋଳନ୍ତି । ମଥୁରା ପ୍ରଭୃତି ସ୍ଥାନରେ ଦଧିମନ୍ଥନ ସମୟରେ ମନ୍ଥନ ଦଣ୍ଡର ବେଗ ସହିତ ନୂପୂର ପରିହିତ ପାଦର ତାଳେ ତାଳେ ରମଣୀମାନଙ୍କର ନୃତ୍ୟ ଓ ଗୀତର ପରିବେଶ ସମସ୍ତଙ୍କୁ ବିମୋହିତ କରିଥାଏ । ଏହିପରି ବିଭିନ୍ନ ପ୍ରସଙ୍ଗରେ ଆମ ସମାଜର କର୍ମଜୀବୀ ପୁରୁଷ ଓ ମହିଳାମାନଙ୍କ ଯେକିଛି ମନଗଢ଼ା ଓ ମନଲାଖି ପୁରାତନ ଗୀତର ତାଳେ ତାଳେ ନୃତ୍ୟର ମଧ୍ୟ ଦୃଶ୍ୟ ପ୍ରକୃତିର ସୌନ୍ଦର୍ଯ୍ୟକୁ ସୁବର୍ଣ୍ଣରେ ସୁଗନ୍ଧ ଭରିଦେବାଭଳି ସମସ୍ତଙ୍କୁ ନୈସର୍ଗିକ ଆନନ୍ଦରେ ଆମୋଦିତ କରିଥାଏ । ଯାହାକୁ କବିକୁଳଗୁରୁ କାଳିଦାସ 'ଅଭିଜ୍ଞାନ ଶାକୁନ୍ତଳମ୍' ନାମକ ନାଟକରେ ଅତି ମର୍ମସ୍ପର୍ଶୀ ଭାବରେ ବର୍ଣ୍ଣନା କରିଅଛନ୍ତି ଯଥା –

ରମ୍ୟାଣି ବୀକ୍ଷ୍ୟ ମଧୁରାଂଶ୍ଚ ନିଶମ୍ୟ ଶବ୍ଦାନ୍
ପର୍ଯ୍ୟୁତ୍ସୁକୋ ଭବତି ଯତ୍ ସୁଖିତୋଽପି ଜନ୍ତୁଃ ।
ତଚ୍ଚେତସା ସ୍ମରତି ନୂନମବୋଧପୂର୍ବଂ
ଭାବସ୍ଥିରାଣି ଜନନାନ୍ତରସୌହୃଦାନି ।

କିନ୍ତୁ ଏହା ନିରାଟ ସତ୍ୟ ଯେ ଏ ସମସ୍ତପ୍ରକାର ଆନନ୍ଦର ଭଣ୍ଡାର ଓ ମୂର୍ତ୍ତିମାନ୍ ବିଗ୍ରହ ସ୍ୱରୂପ ହେଉଛନ୍ତି ମହାଦେବ ଶିବ । ତାଙ୍କର ସମସ୍ତ ଆଭୂଷଣ ଓ ଅଙ୍ଗ-ସଜ୍ଜାର ପରିପାଟୀ ଭୀତିପ୍ରଦଭଳି ପ୍ରତୀତ ହେଉଥିଲେ ମଧ୍ୟ ତାଙ୍କ ଦର୍ଶନରେ ଏପରିକି ସ୍ମରଣରେ ବା ନିବିଷ୍ଟ ଚିତ୍ତରେ ସ୍ତୁତିଗାନ ଦ୍ୱାରା ମନରେ କେତେ ଯେ ଅଲୌକିକ ଆନନ୍ଦର ଧାରା ପ୍ରବାହିତ ହୋଇଥାଏ ତାହା ପ୍ରାୟ ସମସ୍ତଙ୍କର ବ୍ୟକ୍ତିଗତ ଅନୁଭବସିଦ୍ଧ ।

## ଆନନ୍ଦ ପ୍ରାପ୍ତିର ଉପାୟ-

ପୂର୍ବରୁ ଆଲୋଚିତ ହୋଇଅଛି ଯେ ବାସ୍ତବରେ ସୁଖ ବା ଦୁଃଖ କୌଣସି ବସ୍ତୁନିଷ୍ଠ ନୁହେଁ । ତାହା କେବଳ ଆମର ମାନିସକ ଚିନ୍ତାଧାରା ଉପରେ ପର୍ଯ୍ୟବସିତ । ଉଦାହରଣ ସ୍ୱରୂପ ଆମକୁ ଯେତେବେଳେ ଗରମ ଲାଗେ ସେତେବେଳେ ଆମେ ଥଣ୍ଡା ପବନ ସେବନ ରୂପକ ସୁଖ ପାଇବା ପାଇଁ ପଙ୍ଖା ବା ଏ.ସି. ଅଥବା କୁଲର ଇତ୍ୟାଦିକୁ ଉପଯୋଗ କରିଥାଉ । ମାତ୍ର ଏ ସମସ୍ତ ଉପକରଣ ଯଦି ଯଥାର୍ଥରେ ଅର୍ଥାତ୍ ସ୍ୱାଭାବିକ ଭାବରେ ସୁଖପ୍ରାପ୍ତିର ସାଧନ ହୁଅନ୍ତେ, ତା ହେଲେ ତାହା ଥଣ୍ଡା ଦିନରେ ଅର୍ଥାତ୍ ଶୀତକାଳରେ ମଧ୍ୟ ଆମ ପାଇଁ ସୁଖପ୍ରଦ ହୋଇଥାଆନ୍ତେ । କିନ୍ତୁ ଶୀତଦିନରେ ଆମପାଇଁ ତାହା ଅଦରକାରୀ ହୋଇଥାଏ । ଯଦି ରସଗୋଲାର ମାଧୁର୍ଯ୍ୟ ଆମ ଶରୀର ପାଇଁ ହିତକାରୀ ହୁଅନ୍ତା ତା ହେଲେ ତାହା ମଧୁମେହ (ଡାଇବିଟିସ୍) ରୋଗୀପାଇଁ ଦୁଃଖର କାରଣ ହୁଅନ୍ତା ନାହିଁ । ଏ ସମସ୍ତ ବିଷୟ ନିରାଟ ଓ ଅକାଟ୍ୟ ସତ୍ୟ ବୋଲି ଆମେ ସମସ୍ତେ ଜାଣି ମଧ୍ୟ ମୋହଗ୍ରସ୍ତ ମନଦ୍ୱାରା ପ୍ରଭାବିତ ହୋଇ ଆମେ ଅଶାଶ୍ୱତ ବା ଅନିତ୍ୟ, କ୍ଷଣିକ ଓ ବସ୍ତୁନିଷ୍ଠ ସୁଖକୁ ଧନ ମାଧ୍ୟମରେ ପାଇବାପାଇଁ ଆଜୀବନ ଚେଷ୍ଟାରତ । ଏପରିକି ଧନାଢ଼୍ୟ ବ୍ୟକ୍ତି ମଧ୍ୟ ଆହୁରି ଅଧିକରୁ ଅଧିକ ଧନପ୍ରାପ୍ତି ପାଇଁ ଅନବରତ ଚେଷ୍ଟିତ ଓ ଲାଳାୟିତ । କିନ୍ତୁ ବିଧାତାଙ୍କର ବିଡ଼ମ୍ବନା ଯେ ତତ୍ତ୍ୱଜ୍ଞାନୀ ମୁନିଋଷିମାନେ ବିଷୟ ସୁଖଭୋଗରୁ ଅନେକ ଦୂରରେ ଥାଇ ଏପରିକି ଆଖି, କାନ, ନାକ ଇତ୍ୟାଦି ସମସ୍ତ ବିଷୟ ଭୋଗର ଉପକରଣ ବା ମାଧ୍ୟମ ରୂପକ ଇନ୍ଦ୍ରିୟଗୁଡ଼ିକୁ ଅବରୁଦ୍ଧକରି ଯେଉଁ ଅନ୍ତର୍ନିହିତ ଅଖଣ୍ଡ ଓ ଶାଶ୍ୱତ ସୁଖ ବା ଆନନ୍ଦ ଅନୁଭବ କରିଥାଆନ୍ତି ତାହା ଆମଭଳି ବିଷୟବାସନା ଜଡ଼ିତ ସାଂସାରିକଙ୍କ ପାଇଁ ଏକାନ୍ତ କଳ୍ପନାତୀତ । ଏ ବିଷୟରେ ଗୋଟିଏ ପ୍ରାଚୀନ ଘଟଣା ଉପସ୍ଥାପନ କରୁଅଛି ।

ଆଗକାଳରେ ଗ୍ରୀସ୍ ଦେଶରେ ଜଣେ ଧନାଢ଼୍ୟ ଅଥଚ ଧନଲୋଲୁପ ବ୍ୟକ୍ତି ଶୁଣିବାକୁ ପାଇଲେ ଯେ ସେ ଯଦି ଗିରି ଗହ୍ୱରରେ ରହୁଥିବା ସନ୍ଥ ସକ୍ରେଟୀସ୍‌ଙ୍କୁ କୌଣସି ଉପଢ଼ୌକନ ମାଧ୍ୟମରେ ଆପ୍ୟାୟିତ କରିପାରିବେ

ତାହେଲେ ତାଙ୍କର ଧନ ବହୁଗୁଣିତ ହୋଇଯିବ । ଏହା ଶୁଣି ସେହି ଧନାଢ଼୍ୟ ବ୍ୟକ୍ତିଜଣକ ଦିନେ ଗୋଟିଏ ସୁନ୍ଦର ସବାରୀରେ ସକ୍ରେଟିସ୍‌ଙ୍କୁ ବସାଇ ବିଭିନ୍ନ ବଡ଼ ବଡ଼ ନାମୀ ଦାମୀ ବସ୍ତୁଥିବା ଦୋକାନମାନଙ୍କୁ ନେଇଗଲେ ଏବଂ ସକ୍ରେଟିସ୍‌ଙ୍କୁ ଅନୁରୋଧ କଲେ ଯେ ସେ ତାଙ୍କର ମନପସନ୍ଦ ଯେକିଛି ବସ୍ତୁକୁ ଗ୍ରହଣ କରି ତାଙ୍କୁ କୃତାର୍ଥ କରନ୍ତୁ । ତାଙ୍କ ଅନୁରୋଧ ଅନୁସାରେ ସକ୍ରେଟିସ୍ ମଧ୍ଯ ଅଗତ୍ୟା ଅନେକ ଦୋକାନ ଓ ବଜାର ବୁଲି ବହୁ ମୂଲ୍ୟବାନ୍ ପଦାର୍ଥ ଗୁଡ଼ିକୁ ଦେଖି ଚାଲିଲେ ଏବଂ ଯେତେବେଳେ ସନ୍ଧ୍ୟା ଉପନୀତ ହେଲା ଓ ସମସ୍ତ ବଜାର ମଧ୍ୟ ସରିଆସିଲା ସେତେବେଳେ ସେହି ଧନୀ ବ୍ୟକ୍ତିର ମନୋଭାବକୁ ଜାଣିପାରି ସନ୍ଥ ସକ୍ରେଟିସ୍ ହଠାତ୍ ଅନ୍ତିମ ଦୋକାନରୁ ବାହାରି ଆସି ମୁକ୍ତାକାଶ ତଳେ ଅତି ଆନନ୍ଦ ବିଭୋର ହୋଇ ହସ ହସ ମୁହଁରେ ପାଗଳପ୍ରାୟ ନାଚିବାକୁ ଲାଗିଲେ ଓ ସେହି ବ୍ୟକ୍ତିକୁ ମଧ୍ୟ ତାଙ୍କ ସହିତ ନାଚିବାକୁ କହିଲେ । କିଛି ସମୟ ପରେ ଧନୀ ବ୍ୟକ୍ତିଜଣକ ସକ୍ରେଟିସ୍‌ଙ୍କ ଏପରି ମନଖୋଲା ହସ ଓ ଅଲୌକିକ ଆନନ୍ଦାନୁଭବ ସମ୍ବଳିତ ଭାବାବେଗର ପରିପ୍ରକାଶ ସ୍ୱରୂପ ଉଦ୍ଦଣ୍ଡ ନୃତ୍ୟର ଦିବ୍ୟ ଆସ୍ୱାଦନ ପାଇ ସମସ୍ତ ବିଷୟ ଅବଗତ ହେବା ସହିତ ଧନ ଲୋଲୁପତାର କୁପରିଣାମ ଏବଂ ବିଷୟ ବାସନାଜନିତ ସୁଖର ଅନିତ୍ୟତାକୁ ଉପଲବ୍ଧି କରି ଅଖଣ୍ଡ ଆନନ୍ଦର ସ୍ୱାଦ ପାଇବା ପାଇଁ ସକ୍ରେଟିସ୍‌ଙ୍କର ଶରଣାପନ୍ନ ହେଲେ ଓ ବିଳାସବ୍ୟସନମୟ ଜୀବନକୁ ତ୍ୟାଗ କରି ତାଙ୍କର ଶିଷ୍ୟତ୍ୱ ଗ୍ରହଣ କଲେ । ତ୍ୟାଗଦ୍ୱାରା ହିଁ ମୋକ୍ଷପ୍ରାପ୍ତି ସମ୍ଭବ ଯାହା ଶ୍ରୁତି ବାକ୍ୟରେ- 'ତ୍ୟାଗେନୈକେ ଅମୃତତ୍ୱମାନଶୁଃ' ଏଣୁ 'ତେନ ତ୍ୟକ୍ତେନ ଭୁଞ୍ଜୀଥା' ଅର୍ଥାତ୍ ତ୍ୟାଗପୂର୍ବକ ଭୋଗ ହିଁ ଶ୍ରେୟସ୍କର । ବସ୍ତୁତଃ ଆମେ ଯଦି ବିବେକର ସହିତ ବିଚାର କରି ବସିବା ତାହେଲେ ଏହା ସ୍ୱତଃ ସିଦ୍ଧ ପ୍ରତୀତି ହେବ ଯେ ଯେପରି ଜଣେ ବିବେକୀ ମଣିଷ କର୍ତ୍ତବ୍ୟ ଦୃଷ୍ଟିରୁ ପୁତ୍ର କନ୍ୟା ଜନ୍ମ ହେବା ପୂର୍ବରୁ ସେମାନଙ୍କ ଭବିଷ୍ୟତ ପାଇଁ ସବୁ ବ୍ୟବସ୍ଥା କରିଥାଆନ୍ତି, ଠିକ୍ ସେହିପରି ବିଶ୍ୱସ୍ରଷ୍ଟା ଜଗତର ପିତା ପରମେଶ୍ୱର ପ୍ରତ୍ୟେକ ପ୍ରାଣୀଙ୍କୁ ଜନ୍ମପୂର୍ବରୁ ତାଙ୍କର ପ୍ରାରବ୍ଧ ଏବଂ ଯୋଗ୍ୟତା ଅନୁସାରେ ସବୁ ଯୋଗେଇ ଦେଇ ଅଛନ୍ତି । ମାତ୍ର ଦୁଃଖ ଓ

ପରିତାପର ବିଷୟ ଏହିକି ଯେ ଆମେ ଆମର ନିର୍ବୋଧତା ଓ ଅଦୂରଦର୍ଶିତା ହେତୁ ମନରେ କୃତ୍ରିମ ଅଭାବ ସୃଷ୍ଟିକରି ପାଗଳ ପ୍ରାୟ ଅଧିକରୁ ଅଧିକ ପାଇବା ଆଶାରେ ନ୍ୟାୟ-ଅନ୍ୟାୟ, ଉଚିତ ଅନୁଚିତ ବିଚାର ନକରି ଅର୍ଥୋପାର୍ଜନରେ ଲାଗି ପଡ଼ିଛୁ । ବିଚାର କରି ଦେଖନ୍ତୁ ପରିବାରରେ ପିଲାଟିଏ ଜନ୍ମ ହେବା ପୂର୍ବରୁ ଜନ୍ମଦାତ୍ରୀ ମା'ଙ୍କ ହୃଦୟରେ ଶିଶୁର ବଞ୍ଚିରହିବା ପାଇଁ ପରମାତ୍ମା ନୈସର୍ଗିକ ଉପାୟରେ ଦୁଗ୍ଧପାନ ନିମିତ୍ତ ବ୍ୟବସ୍ଥା କରିଥାଆନ୍ତି । ଏହିପରି ଏ ସମଗ୍ର ବିଶ୍ୱବ୍ରହ୍ମାଣ୍ଡରେ ସୃଷ୍ଟି, ପାଳନ ଓ ସଂହାର ମଧ୍ୟ ବିଶ୍ୱପିତା ପରମାତ୍ମାଙ୍କ ହାତରେ ଏହା ଯୁକ୍ତିସିଦ୍ଧ ଏଣୁ ଏକାନ୍ତ ବିଶ୍ୱାସ ଯୋଗ୍ୟ । ଏ କଥାକୁ ସ୍ମୃତିଶାସ୍ତ୍ରରେ ପ୍ରତିପାଦନ କରାଯାଇଅଛି -

'ଭୋଜନାଚ୍ଛାଦନେ ଚିନ୍ତା ବୃଥା କୁର୍ବନ୍ତି ବୈଷ୍ଣବାଃ,
ଯୋଽସୌ ବିଶ୍ୱମ୍ଭରୋ ଦେବଃ ସ କିଂ ନ ପୂରୟିଷ୍ୟତି ।'

ଅର୍ଥାତ୍ ଯେଉଁମାନେ ଈଶ୍ୱରାଶ୍ରିତ ସେମାନେ ନିଜର ଭୋଜନ ଏବଂ ପରିଧାନ ବିଷୟରେ ବୃଥା ଚିନ୍ତା କରନ୍ତିନାହିଁ କାରଣ ଯେ ବିଶ୍ୱମ୍ଭର (ବିଶ୍ୱର ଧାରଣ ଓ ପୋଷଣ କର୍ତ୍ତା) ସେ କ'ଣ ଭକ୍ତର ଏହି ଆବଶ୍ୟକତାକୁ ପୂରଣ କରନ୍ତି ନାହିଁକି ? ଏହା ମଧ୍ୟ ଅତି ସହଜବୋଧ ବିଷୟ ଯେ ଯେଉଁ ମହେଶ୍ୱର ସଂସାର ମଙ୍ଗଳପାଇଁ ସମୁଦ୍ର ମନ୍ଥନୋତ୍ଥିତ ହଳାହଳ ବିଷକୁ ପାନ କରି ନୀଳକଣ୍ଠ ହୋଇପାରନ୍ତି ତାଙ୍କ ପାଇଁ ଶରଣାପନ୍ନର ସାମାନ୍ୟ ଦୁଃଖ କଷ୍ଟ ହରଣ କରିବା ଅତି ନଗଣ୍ୟ ନୁହେଁ କି ?

## ଶିବୋପାସକ ବ୍ରାହ୍ମଣର ପ୍ରକୃତ ପରିଚୟ-

ପୂର୍ବୋକ୍ତ ଶାସ୍ତ୍ରୀୟ ପର୍ଯ୍ୟାଲୋଚନାରୁ ଆମେ ଜାଣିପାରୁଛୁ ଯେ ପ୍ରାଣୀ-ମାତ୍ରକେ ଦୁଃଖ ପରିହାର ପୂର୍ବକ ଅଖଣ୍ଡ ସୁଖ ବା ପୂର୍ଣ୍ଣାନନ୍ଦ ପ୍ରାପ୍ତି ପାଇଁ ସର୍ବଦା ଚେଷ୍ଟିତ । ଏଣୁ ସଂସାର ଦାବାନଳ ଦଗ୍ଧ ମନୁଷ୍ୟଙ୍କ ପାଇଁ ସମସ୍ତ ନିଗମ ଆଗମ ପ୍ରତିପାଦ୍ୟ ପରମ କଲ୍ୟାଣକାରୀ, ଚରମ ବୈରାଗୀ, ମହାଯୋଗୀ ଓ କୈବଲ୍ୟ ପ୍ରଦାତା ମହେଶ୍ୱର ହିଁ ଏକମାତ୍ର ଆଶ୍ରୟ ସ୍ଥଳ । କାରଣ ସନାତନ ଧର୍ମ ଓ ସଂସ୍କୃତିରେ ସାର୍ବତ୍ରିକ, ସାର୍ବକାଳିକ, ସୈଦ୍ଧାନ୍ତିକ ପ୍ରାମାଣିକ ଗ୍ରନ୍ଥ

ବେଦ । ଯେଉଁଥିରେ ସର୍ବ ପ୍ରଥମେ ଶିବହିଁ ଉପାସ୍ୟ ରୂପରେ ଆଦୃତ । ଶିବଙ୍କ ଆରାଧନା ନିମିତ୍ତ ବେଦର ଅନେକ ମନ୍ତ୍ର ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବରେ ଉଦ୍ଦିଷ୍ଟ । ବିଶେଷତଃ ବ୍ରାହ୍ମଣମାନଙ୍କ ପାଇଁ ଶିବହିଁ ଏକାନ୍ତ ଆରାଧ୍ୟ ଏଣୁ ସେ ଇଷ୍ଟଦେବ । ମହେଶ୍ୱର ଶିବ ନିଜେ ମଧ୍ୟ ଭକ୍ତାନୁଗ୍ରହ ପାଇଁ ବ୍ରାହ୍ମଣ ବା ବଟୁରୂପରେ ଅନେକ କ୍ଷେତ୍ରରେ ଆବିର୍ଭୂତ ହୋଇଥିବାର ପ୍ରମାଣ ପୁରାଣ ଶାସ୍ତ୍ରମାନଙ୍କରେ ଉପଲବ୍ଧ । ସେ ବ୍ରାହ୍ମଣଙ୍କ ପ୍ରିୟ ଏବଂ ବ୍ରାହ୍ମଣ ମଧ୍ୟ ଶିବଙ୍କ ପ୍ରିୟ । ଏକଥା ସ୍କନ୍ଦପୁରାଣରେ ଯଥା – 'ବିପ୍ରସ୍ୟ ତୁ ସଦୈବାହଂ ଶୁଚେରପ୍ୟଶୁଚେରପି', ଅର୍ଥାତ୍ ଶୁଚି (ପବିତ୍ର) ଅଥବା ଅଶୁଚି (ଅପବିତ୍ର) ଅବସ୍ଥାରେ ମଧ୍ୟ ବେଦାଧ୍ୟାୟୀ ବ୍ରାହ୍ମଣମାନଙ୍କ ପାଇଁ ମୁଁ (ଶିବ) ସର୍ବସ୍ୱ ଅଟେ । ଏଠାରେ ବିପ୍ର ପଦ ବେଦାଧ୍ୟୟନରତ ବ୍ରାହ୍ମଣଙ୍କୁ ହିଁ ବୁଝାଏ ଯଥା–

'ଜନ୍ମନା ଜାୟତେ ଶୂଦ୍ରଃ ସଂସ୍କାରାଦ୍ ଦ୍ୱିଜ ଉଚ୍ୟତେ,
ବେଦାଭ୍ୟାସାଦ୍ ଭବେଦ୍ ବିପ୍ରଃ ବ୍ରହ୍ମ ଜାନାତି ବ୍ରାହ୍ମଣଃ ।'

ଏ ପ୍ରମାଣ ଅନୁସାରେ ନିତ୍ୟ ବେଦାଧ୍ୟାୟୀ ବ୍ରାହ୍ମଣ ହିଁ ବିପ୍ର ପଦବାଚ୍ୟ ଓ ବ୍ରହ୍ମ ଅର୍ଥାତ୍ ବେଦ, ଏଣୁ ବୈଦିକ ଜ୍ଞାନସମ୍ପନ୍ନ ବିପ୍ରଙ୍କୁ ବ୍ରାହ୍ମଣ କୁହାଯାଏ । କଥିତ ଅଛି 'ଦେବୋଭୂତ୍ୱା ଦେବଂ ଯଜେତ' ଅର୍ଥାତ୍ ପୂଜକ ବ୍ରାହ୍ମଣ ନିଜେ ଦେବତାଙ୍କ ଭଳି ଶୁଦ୍ଧ ସାତ୍ତ୍ୱିକ ଆଚରଣ ସମ୍ପନ୍ନ ତଥା କାୟମନୋବାକ୍ୟରେ ଶୁଚି ମଧ୍ୟ ହେବା ଉଚିତ । ଶାସ୍ତ୍ରରେ ଅଛି –

'ଦୈବାଧୀନଂ ଜଗତ୍ ସର୍ବଂ ମନ୍ତ୍ରାଧୀନଂ ତୁ ଦୈବତମ୍ ।
ତେ ମନ୍ତ୍ରାଃ ବ୍ରାହ୍ମଣାଧୀନାସ୍ତସ୍ମାତ୍ ବ୍ରାହ୍ମଣଦୈବତମ୍ ॥'

ଅର୍ଥାତ୍ ସମଗ୍ର ଜଗତ୍ ଦେବତାଙ୍କ ଅଧୀନ ଏବଂ ଦେବତାମାନେ ମନ୍ତ୍ରାଧୀନ, ମାତ୍ର ମନ୍ତ୍ର ଯେହେତୁ ବ୍ରାହ୍ମଣଙ୍କ ଅଧୀନ ତେଣୁ ବ୍ରାହ୍ମଣମାନେ ହିଁ ଦେବତାଙ୍କ ପ୍ରତିନିଧି ବା ପ୍ରତିରୂପ ସ୍ୱରୂପ । ପ୍ରତ୍ୟେକ ବ୍ରାହ୍ମଣଙ୍କ ପକ୍ଷରେ ଷଟ୍‌କର୍ମ ଯଥା ଯଜନ-ଯାଜନ, ଅଧ୍ୟୟନ-ଅଧ୍ୟାପନ ଓ ଦାନ-ପ୍ରତିଗ୍ରହ ଅବଶ୍ୟ କର୍ତ୍ତବ୍ୟ । ଅର୍ଥାତ୍ ପ୍ରଥମେ ନିଜ ଘରେ ପୂଜାପାଠ ଇତ୍ୟାଦି କରିବା ପରେ ଯାଜନ ଅର୍ଥାତ୍ ଯଜମାନବୃତ୍ତି, ପ୍ରଥମେ ଅଧ୍ୟୟନ ତା ପରେ ଅଧ୍ୟାପନା, ସେହିପରି ପ୍ରଥମେ

ଦାନ କରିବା ତା ପରେ ପ୍ରତିଗ୍ରହ ଅର୍ଥାତ୍ ଅନ୍ୟଠାରୁ ଦାନ ଗ୍ରହଣ କରିବା । ଏହାଦ୍ୱାରା ବ୍ରାହ୍ମଣର ବ୍ରାହ୍ମଣତ୍ୱ ବଜାୟ ରହିଥାଏ । ଏହା ବ୍ୟତୀତ ପ୍ରତ୍ୟେକ ଦୈବ ଓ ଶ୍ରାଦ୍ଧାଦି ପାରଲୌକିକ କର୍ମର ଆରମ୍ଭରେ ଶାସ୍ତ୍ର ନିର୍ଦ୍ଦେଶ ଅଛି ଯେ- 'କୃତନିତ୍ୟକ୍ରିୟଃ' ଅର୍ଥାତ୍ ବ୍ରାହ୍ମଣ ପ୍ରଥମେ ନିତ୍ୟକର୍ମ କରିବା ପରେ ଏ ସମସ୍ତ କର୍ମରେ ପ୍ରବୃତ୍ତ ହେବେ । ଏଠାରେ ନିତ୍ୟକ୍ରିୟା ଶବ୍ଦରେ ସନ୍ଧ୍ୟାବନ୍ଦନାଦି ଉପଲକ୍ଷିତ । ଶାସ୍ତ୍ରରେ କୁହାଯାଇଅଛି-

'ବିପ୍ରଃ ବୃକ୍ଷସ୍ତସ୍ୟ ମୂଳଂ ତୁ ସନ୍ଧ୍ୟା ଶାଖା ବେଦୋ ଧର୍ମକର୍ମାଣି ପତ୍ରମ୍ ।
ତସ୍ମାନ୍ ମୂଳଂ ଯତ୍ନତଃ ରକ୍ଷଣୀୟଂ ଛିନ୍ନେ ମୂଳେ ନୈବ ଶାଖା ନ ପତ୍ରମ୍ ॥'

ଏ ସୃଷ୍ଟିରେ ବ୍ରାହ୍ମଣ ମହାଦ୍ରୁମ ସଦୃଶ ଯାହାର ମୂଳ ହେଉଛି ସନ୍ଧ୍ୟା, ଶାଖା ବେଦ ଓ ସମସ୍ତ ଧର୍ମାଚରଣ ସେ ଗଛର ପତ୍ର ସଦୃଶ । ତେଣୁ ସେହି ମହାଦ୍ରୁମର ମୂଳକୁ ସମସ୍ତଙ୍କର ପ୍ରଯତ୍ନ ସହିତ ରକ୍ଷା କରିବା କର୍ତ୍ତବ୍ୟ କାରଣ ବୃକ୍ଷର ମୂଳ କଟିଗଲେ ଶାଖା ଓ ପତ୍ର ସବୁ ସ୍ୱତଃ ନଷ୍ଟ ହୋଇଯାଏ ।

ଏହି ପ୍ରମାଣ ଅନୁସାରେ ପ୍ରତ୍ୟେକ ଉପନୀତ ବ୍ରାହ୍ମଣଙ୍କ ପକ୍ଷରେ ତ୍ରିସନ୍ଧ୍ୟା ଅଗତ୍ୟା ଦ୍ୱିସନ୍ଧ୍ୟା ଅଥବା ଅତ୍ୟନ୍ତାଶକ୍ତ ସ୍ଥଳରେ ଆପାତତଃ ଏକ ସନ୍ଧ୍ୟା (ପ୍ରାତଃ ସନ୍ଧ୍ୟା) ଏକାନ୍ତ ଅପରିହାର୍ଯ୍ୟ । ଶ୍ରୁତିରେ ଅଛି 'ଅହରହଃ ସନ୍ଧ୍ୟାମୁପାସୀତ' (ପ୍ରତ୍ୟହ ସନ୍ଧ୍ୟା କର୍ତ୍ତବ୍ୟ) । ଯାହା ଆଚରଣ କଲେ କେତେକଙ୍କ ମତରେ ଫଳପ୍ରାପ୍ତି ହୁଏ କେତେକଙ୍କ ମତରେ ଫଳ ନାହିଁ ମାତ୍ର ଏହା ନକଲେ ଅନିଷ୍ଟ ନିଶ୍ଚିତ । ବ୍ରାହ୍ମଣ ଯଦି ସନ୍ଧ୍ୟା ନ କରେ ତାହେଲେ ସେ ପତିତ ହୋଇଯାଏ । ଏପରିକି ଅଶୌଚ ବେଳେ ବା ବାହାରକୁ ଯାତ୍ରା କଲାବେଳେ ମାନସିକ ସନ୍ଧ୍ୟାଚରଣ କରିବାର ବ୍ୟବସ୍ଥା ମଧ୍ୟ ଶାସ୍ତ୍ରରେ ବିହିତ ଅଛି । ଯେପରି ପ୍ରତ୍ୟେକ କର୍ମରେ ଅଧିକାରୀ ହେବାପାଇଁ ଯୋଗ୍ୟତା ବା ପାତ୍ରତାର ଅପେକ୍ଷା ଥାଏ, ଠିକ୍ ସେହିଭଳି ବ୍ରାହ୍ମଣ ପାଇଁ ପାତ୍ରତ୍ୱର ଲକ୍ଷଣ ହେଲା କୃତନିତ୍ୟକ୍ରିୟ ଇତ୍ୟାଦି । 'ପତନାତ୍ ତ୍ରାୟତେ ଆତ୍ମାନମ୍' - ଇତି ପାତ୍ରଃ । ଅର୍ଥାତ୍ ଯେ ନିଜକୁ ଅଧଃପତନରୁ ବା ପତିତ ହେବାରୁ ରକ୍ଷା କରିବା ପାଇଁ ତଥା ସଦ୍‌ଗତି ପ୍ରାପ୍ତି ନିମିତ୍ତ ଚେଷ୍ଟା କରେ ସେ ହିଁ ଶିବଙ୍କ ଉପାସନା ପାଇଁ ପାତ୍ର ପଦବାଚ୍ୟ । ଏଣୁ

ସନ୍ଧ୍ୟାପଦ୍ଧତିର ଆତ୍ୟନ୍ତିକ ଆବଶ୍ୟକତା ଦୃଷ୍ଟିରୁ ଯଦ୍ୟପି ଏହି ବହିରେ ଏହା ଆପାତତଃ ଅପ୍ରାସଙ୍ଗିକ ତଥାପି ବହୁଜନହିତାୟ ରୁଦ୍ରାଭିଷେକ କର୍ମାରମ୍ଭ ପୂର୍ବରୁ କାଶ୍ମୀରୀ ପଣ୍ଡିତ ଶ୍ରୀ ବିହାରୀଲାଲକୃତ 'ଯଜୁର୍ବେଦୀୟ ନିତ୍ୟକର୍ମ ପଦ୍ଧତି' ପୁସ୍ତକ ଅନୁସାରେ ସନ୍ଧ୍ୟାବିଧି ଉଲ୍ଲେଖ କରାଯାଇଅଛି ।

**ଶିବୋପାସକଙ୍କ ଲକ୍ଷଣ -**

'ବିନା ଭସ୍ମତ୍ରିପୁଣ୍ଡ୍ରେଣ ବିନା ରୁଦ୍ରାକ୍ଷମାଳୟା,
ବିନା ମାଲୁରପତ୍ରେଣ ବିଫଳଂ ଶିବପୂଜନମ୍ ॥'

ଅର୍ଥାତ୍ 'କପାଳରେ ଭସ୍ମ ତ୍ରିପୁଣ୍ଡ୍ର (ବାମରୁ ଡାହାଣକୁ ତିନିରେଖା), ଗଳାରେ ରୁଦ୍ରାକ୍ଷମାଳା ଓ ହାତରେ ତ୍ରିଶାଖା ବେଲପତ୍ର' ଏହା ଶିବୋପାସକଙ୍କ ପାଇଁ ସୁତରାଂ ଆବଶ୍ୟକ । ଏ ବିଷୟରେ କିଛି ମାତ୍ରାରେ ଲାଘବ ମଧ୍ୟ ବ୍ରହ୍ମାଣ୍ଡପୁରାଣରେ ଯଥା -

'ଊର୍ଦ୍ଧ୍ୱପୁଣ୍ଡ୍ରଂ ମୃଦା କୁର୍ଯ୍ୟାତ୍, ତ୍ରିପୁଣ୍ଡ୍ରଂ ଭସ୍ମନା ସଦା ।
ତିଳକଂ ବୈ ଦ୍ୱିଜଃ କୁର୍ଯ୍ୟାତ୍ ଚନ୍ଦନେନ ଯଦୃଚ୍ଛୟା ॥'

ଏ ପ୍ରସଙ୍ଗରେ ଅନ୍ୟତମ ଉଲ୍ଲେଖଯୋଗ୍ୟ ଓ ମହତ୍ତ୍ୱପୂର୍ଣ୍ଣ ବିଷୟ ହେଉଅଛି ଯେ ଆରାଧନା ବା ଉପାସନା ନିମିତ୍ତ ଉଚ୍ଚାରିତ ମନ୍ତ୍ରମାନଙ୍କର ନିର୍ଭୁଲ ଓ ସ୍ପଷ୍ଟ ଉଚ୍ଚାରଣ । ବେଦ ମନ୍ତ୍ରପାଠ ବେଳେ ସ୍ୱର (ହ୍ରସ୍ୱ, ଦୀର୍ଘ, ଉଦାତ୍ତ, ଅନୁଦାତ୍ତ, ସ୍ୱରିତ ଇତ୍ୟାଦି) ସହିତ ସ୍ପଷ୍ଟ ଶୁଦ୍ଧ ଉଚ୍ଚାରଣ ଅପରିହାର୍ଯ୍ୟ । କିନ୍ତୁ ଅଭିଷେକ ବା ପୂଜା ସମୟରେ ସ୍ୱର ନିମିତ୍ତ ହସ୍ତ ଓ ଅଙ୍ଗୁଳି ଚାଳନା ବ୍ୟତିରେକେ କେବଳ ହ୍ରସ୍ୱ ଓ ଦୀର୍ଘ ସ୍ୱର ପ୍ରତି ଧ୍ୟାନ ଦେଇ ସ୍ପଷ୍ଟ ଓ ନିର୍ଭୁଲ ଉଚ୍ଚାରଣରେ ଅଧିକ ଗରୁତ୍ୱ ଦିଆଯାଏ ।

**ଜୀବ ହିଁ ଶିବ, ଶିବୋପାସନା ସହଜ ଓ ସୁଲଭ-**

ଶିବ ଓ ଜୀବ ଆତ୍ୟନ୍ତିକ ଭାବରେ ଓତପ୍ରୋତ ରୂପରେ ପରସ୍ପର ଜଡ଼ିତ । କେବଳ କାୟମନୋବାକ୍ୟରେ ନିଷ୍କାମ ଓ ସମର୍ପଣ ଭାବନା ସହିତ 'ଓଁ ନମଃ ଶିବାୟ' - ଏହି ପଞ୍ଚାକ୍ଷର ମନ୍ତ୍ର ଉଚ୍ଚାରଣ ତଥା ଅନ୍ତରରେ -

ଆତ୍ମା ତ୍ୱଂ ଗିରିଜା ମତିଃ ସହଚରାଃ ପ୍ରାଣାଃ ଶରୀରଂ ଗୃହମ୍,
ପୂଜା ତେ ବିଷୟୋପଭୋଗରଚନା ନିଦ୍ରା ସମାଧିସ୍ଥିତିଃ ।
ସଞ୍ଚାରଃ ପଦୟୋଃ ପ୍ରଦକ୍ଷିଣାବିଧିଃ ସ୍ତୋତ୍ରାଣି ସର୍ବାଃ ଗିରଃ,
ଯଦ୍‌ଯତ୍ କର୍ମ କରୋମି ତତ୍ତଦଖିଳଂ ଶମ୍ଭୋ ! ତବାରାଧନମ୍ ॥

–ଏହିଭଳି ଆତ୍ମୀୟତାର ଓ ଆନ୍ତରିକତାର ଚିନ୍ତାଧାରା ଉଦ୍ରେକ କରିବାପାଇଁ ପଡ଼ିବ । ଏହାଦ୍ୱାରା ଅନ୍ତର୍ଯାମୀ ମହାଦେବ ଆମର ଯୋଗକ୍ଷେମ ଅବଶ୍ୟ ବହନ କରିବେ । (ଏହା କିୟଦଂଶରେ ମୋର ବ୍ୟକ୍ତିଗତ ଅନୁଭବ ।) ଜୀବନର ଅନ୍ତିମ ଶ୍ୱାସ ପର୍ଯ୍ୟନ୍ତ ଯଦି ଏହିପରି ଚିନ୍ତାଧାରା ନିରନ୍ତର ଭାବରେ ଚାଲୁ ରହିଥିବ ତାହେଲେ ଶିବଙ୍କଠାରୁ ସାଯୁଜ୍ୟମୁକ୍ତିର ସୌଭାଗ୍ୟ ଅବଶ୍ୟ ମିଳିପାରିବ । ଏଣୁ ସ୍ମୃତିଶାସ୍ତ୍ରରେ ନିର୍ଦ୍ଦେଶ ଦିଆଯାଇଅଛି – 'ପ୍ରତ୍ୟହଂ ଶିବଂ ପୂଜୟେତ୍' । ବିନାୟକ ଯେପରି ବିଘ୍ନବିନାଶକ ଏଣୁ ସର୍ବାଦୌ ତାଙ୍କୁ ସ୍ମରଣ କରାଯାଇଥାଏ, ଠିକ୍ ସେହିପରି ଶିବ ମଙ୍ଗଳକାରକ ତେଣୁ ତାଙ୍କୁ ପ୍ରତ୍ୟେକ ମାଙ୍ଗଳିକ କାମରେ ପ୍ରଥମେ ପୂଜା କରିବାର ବିଧାନ ଅଛି । ତାହେଲେ କେବଳ ଯେ କର୍ମର ଫଳ ମଙ୍ଗଳ ପ୍ରଦାୟକ ହେବ ତା ନୁହେଁ ଅଧିକନ୍ତୁ ଶିବଭକ୍ତଙ୍କର ସମଗ୍ର ଜୀବନ ମଧ୍ୟ ମଙ୍ଗଳମୟ ହୋଇପାରିବ । ଏଣୁ ଶାସ୍ତ୍ରରେ କୁହାଯାଇଅଛି –

''ଯୋ ଲିଙ୍ଗଂ ପୂଜୟେନ୍ନିତ୍ୟଂ ଶିବଭକ୍ତିପରାୟଣଃ ।
ମେରୁତୁଲ୍ୟୋଽପି ତସ୍ୟାଶୁ ପାପରାଶିର୍ଲୟଂ ବ୍ରଜେତ୍ ।
ଲିଙ୍ଗପୂଜାଂ ବିନା ଦେବି ଅନ୍ୟପୂଜାଂ କରୋତି ଯଃ ।
ବିଫଳା ତସ୍ୟ ପୂଜା ସ୍ୟାଦନ୍ତେ ନରକମାପ୍ନୁୟାତ୍ ।
ତସ୍ମାତ୍ ଲିଙ୍ଗଂ ମହେଶାନି ପ୍ରଥମଂ ପରିକଳ୍ପୟେତ୍ ।
ଶାକ୍ତୋ ବା ବୈଷ୍ଣବୋ ବାପି ଶୈବୋ ବା ପରମେଶ୍ୱରି !
ଆଦୌ ଲିଙ୍ଗଂ ସମଭ୍ୟର୍ଚ୍ଚ୍ୟ ବିଲ୍ୱପତ୍ରୈର୍ବରାନନେ ॥''

ଲିଙ୍ଗାର୍ଚ୍ଚନ ଚନ୍ଦ୍ରିକାରେ –

'ଲିଙ୍ଗପୂଜାଂ ବିନା ଦେବି ଅନ୍ୟ ପୂଜାଂ କରୋତି ଯଃ ।
ବିଫଳା ତସ୍ୟ ପୂଜା ସ୍ୟାଦନ୍ତେ ନରକମାପ୍ନୁୟାତ୍ ॥'

ବିଶେଷ କାମନା ପୂର୍ତ୍ତି ନିମିତ୍ତ ରୁଦ୍ରାଭିଷେକରେ ନିର୍ଦ୍ଦିଷ୍ଟ ଦ୍ରବ୍ୟମାନଙ୍କର ଆବଶ୍ୟକତା ଥାଏ । ମାତ୍ର ନିତ୍ୟ ଉପାସନା ନିମିତ୍ତ ବିଶେଷଦ୍ରବ୍ୟ ସମ୍ଭାରର ମହତ୍ତ୍ୱ ନଥାଏ । କେବଳ ନିଶ୍ଚଳ ଭକ୍ତିପୂର୍ଣ୍ଣ ହୃଦୟରେ ସାମାନ୍ୟ ପାଣି ଢାଳେ ତାଙ୍କ ଉପରେ ଢାଳିଦେଲେ ସେ ସନ୍ତୁଷ୍ଟ ହୋଇ ଥାଆନ୍ତି । ତେଣୁ ସେ ଆଶୁତୋଷ ନାମରେ ପ୍ରସିଦ୍ଧ । ସେ ଚରମ ତ୍ୟାଗର ମୂର୍ତ୍ତିମାନ୍ ବିଗ୍ରହ, ପରମ ବୈରାଗ୍ୟର ଅନ୍ତିମ ଶିଖର, ଯୋଗୀମାନଙ୍କ ମଧ୍ୟରେ ମହାଯୋଗୀ । ତାଙ୍କ ଉପାସନା ବା ଅର୍ଚ୍ଚନା ପଦ୍ଧତି ଅତି ସାଧାରଣ, ସହଜ ଓ ସୁଲଭ ମଧ୍ୟ ଏ ବିଷୟରେ ପ୍ରସିଦ୍ଧି ଅଛି-

'ମୃଦା ମୂର୍ତ୍ତିର୍ବିଲ୍ୱଦଳେନ ପୂଜା ଅଯତ୍ନଲଭ୍ୟଂ ମୁଖମେବ ବାଦ୍ୟମ୍ ।
ତଥାପି ସାଯୁଜ୍ୟଫଳଂ ଦଦାତି ନିଃସ୍ୱସ୍ୟ ବିଶ୍ୱେଶ୍ୱର ଏବ କର୍ତ୍ତା ॥'

ଅର୍ଥାତ୍ କୌଣସି ଆଭୂଷଣ ବା ସାଜସଜ୍ଜା ବ୍ୟତିରେକେ କେବଳ ମେଞ୍ଚାଏ ମାଟିରେ ଗଢ଼ା ମୂର୍ତ୍ତି (ଲିଙ୍ଗ) ଯାହା ମୃତ୍ତିକାଶଙ୍କର ରୂପରେ ଆରାଧ୍ୟ, ସହଜରେ ମିଳି ଯାଉଥିବା ବିଲ୍ୱପତ୍ରରେ[୧] ପୂଜା, ବିନା ପ୍ରଯତ୍ନରେ ମୁଖରୁ ନିର୍ଗତ

---

୧. ବେଲପତ୍ର ତୋଳିବାର ମନ୍ତ୍ର ଓ ନିୟମ :-

ମନ୍ତ୍ର : ବିଲ୍ୱବୃକ୍ଷ ମହାଭାଗ ମାଳୂର ଶ୍ରୀଫଳ ପ୍ରଭୋ !
ଶଙ୍କରପୂଜାନାର୍ଥାୟ ତ୍ୱତ୍ ପତ୍ରାଣି ଚିନୋମ୍ୟହମ୍ ।

ଏହି ମନ୍ତ୍ର ପଢ଼ି ବୃକ୍ଷକୁ ପ୍ରଣାମ ପୂର୍ବକ ଅନୁଗ୍ରହ ପ୍ରାର୍ଥନା କରି ପୂଜକ ନିଜେ ତ୍ରିଶାଖା ବେଲପତ୍ରକୁ ତୋଳିବେ । ପୂଜକ ନିଜେ ତୋଳିବା ପାଇଁ ଶାସ୍ତ୍ର ନିର୍ଦ୍ଦେଶ ଯଥା - 'ପତ୍ରଂ ପୁଷ୍ପଂ ଫଳଂ ତୋୟଂ ପୂଜାର୍ଥଂ ସ୍ୱୟମାହରେତ୍' । ବେଲପତ୍ର ତୋଳିବାର ନିୟମ ଯଥା - 'ପକ୍ଷାନ୍ତଦ୍ୱାଦଶୀସାୟଂମଧ୍ୟାହ୍ନଭିନ୍ନକାଳତଃ ।

ପୁଣି - ଶାଖା ଭଙ୍ଗଂ ନ କୁର୍ବୀତ ନୈବ ଆରୋହୟେତ୍ ତରୁମ୍ ।
ବରମାରୁହ୍ୟ ଚିନ୍ନୁୟାତ୍ ଶାଖାଭଙ୍ଗଂ ନ କଥଞ୍ଚିତ୍ ॥

ଅର୍ଥାତ୍ - ଅମାବାସ୍ୟା, ପୂର୍ଣ୍ଣିମା, ଦ୍ୱାଦଶୀ- ଏହି ତିଥିମାନଙ୍କରେ ତଥା ମଧ୍ୟାହ୍ନ ଓ ସନ୍ଧ୍ୟା ସମୟରେ ବେଲପତ୍ର ତୋଳିବା ଉଚିତ୍ ନୁହେଁ । ବୃକ୍ଷକୁ ଚଢ଼ିବା ଏବଂ ଶାଖା ଡାଳକୁ ଭାଙ୍ଗିବା ମଧ୍ୟ ଦୋଷାବହ । ଅଗତ୍ୟା ଗଛକୁ ଚଢ଼ି ତୋଳାଯାଇପାରେ ମାତ୍ର ବେଲଗଛର ଡାଳକୁ ଭାଙ୍ଗି ପତ୍ର ତୋଳିବା ନିଷିଦ୍ଧ ଅଟେ ।

'ବମ୍ ବମ୍' – ଏହି ଧ୍ୱନିରୂପକ ବାଦ୍ୟ – ଏହିପରି ଜଣେ ଅତ୍ୟନ୍ତ ନିଃସ୍ୱ ଦରିଦ୍ର ପୂଜକ ବା ଭକ୍ତଙ୍କୁ ମଧ୍ୟ ସେ (ଶିବ) ସାଯୁଜ୍ୟ ଅର୍ଥାତ୍ ସାକ୍ଷାତ୍ ମୁକ୍ତି ରୂପକ ଦୁର୍ଲଭ ଫଳ ପ୍ରଦାନ କରି ଥାଆନ୍ତି । ମନ୍ତ୍ରହୀନ, କ୍ରିୟାହୀନ, ଭକ୍ତିହୀନ ଓ ମନ୍ତ୍ରର ଅର୍ଥଜ୍ଞାନରହିତ ଜଣେ ଅଜ୍ଞ ବ୍ରାହ୍ମଣ ମଧ୍ୟ ଯଦି ନିଷ୍କାମ ଭାବରେ କେବଳ 'ଓଁ ନମଃ ଶିବାୟ' – ଏହି ଷଡ଼କ୍ଷର ମନ୍ତ୍ର ଉଚ୍ଚାରଣ କରି ଶିବଲିଙ୍ଗରେ ଜଳଲାଗି କରେ ତାହେଲେ ସେ ପରମ ଦୟାଳୁ ଓ ବ୍ରାହ୍ମଣପ୍ରିୟ ମହାଦେବ ଶିବଙ୍କ ଅତ୍ୟନ୍ତ ପ୍ରିୟଭକ୍ତ ହୁଏ ଓ ଶିବ ତାଙ୍କୁ ମୁକ୍ତି ପ୍ରଦାନ କରନ୍ତି । ଯାହା ନନ୍ଦୀ ପୁରାଣରେ ଯଥା –

'ଗୋଭୂହିରଣ୍ୟବସ୍ତ୍ରାଦିବଳିପୁଷ୍ପନିବେଦନେ ।
ଜ୍ଞେୟୋ ନମଃ ଶିବାୟେତି ମନ୍ତ୍ରଃ ସର୍ବାର୍ଥସାଧକଃ ।
ସର୍ବମନ୍ତ୍ରାଧିକଶ୍ଚାୟମୋଙ୍କାରାଦ୍ୟଃ ଷଡ଼କ୍ଷରଃ,
ତନ୍ମନ୍ତ୍ରଜାପୀ ତତ୍‌କର୍ମରତସ୍ତଦ୍‌ଗତମାନସଃ ।
ନିଷ୍କାମଃ ପୁରୁଷୋ ରାଜନ୍ ସ ରୁଦ୍ରପଦମଶ୍ନୁତେ ॥'

ମହାଦେବଙ୍କ ଅର୍ଚ୍ଚନା ପଦ୍ଧତି ମଧ୍ୟରୁ ଲିଙ୍ଗପୂଜା ପ୍ରସିଦ୍ଧ ଓ ବ୍ୟାପକ ।

**ଶିବଲିଙ୍ଗ ପ୍ରତୀକାତ୍ମକ –**

ଆମ ଦେଶରେ ବିଶେଷକରି ଆମ ରାଜ୍ୟରେ ଏଭଳି କୌଣସି ଗ୍ରାମ ବା ସହର ନାହିଁ ଯେଉଁଠାରେ ଏକାଧିକ ଶିବ ମନ୍ଦିର ନଥିବେ । କେଉଁ ଅନାଦିକାଳରୁ ଅତି ପ୍ରାଚୀନ ମନ୍ଦିର ମଧ୍ୟରେ ଶିବଲିଙ୍ଗ ବିଦ୍ୟମାନ ଥିବେ ଏବଂ ମନ୍ଦିର ସମ୍ମୁଖ ଭାଗରେ ମହାଦେବଙ୍କ ବାହନ ବୃଷଭ ବା ନନ୍ଦୀ ବସିରହି ଅପଲକ ନୟନରେ ଗର୍ଭଗୃହସ୍ଥ ସ୍ୱାମୀ ମହାଦେବଙ୍କୁ ଚାହିଁ ରହିଥାଏ ଆଦେଶ ଅପେକ୍ଷାରେ । ବିଦେଶରେ ମଧ୍ୟ ଏପରିକି ଆରବ୍ ଦେଶର ଇସ୍‌ଲାମ୍ ସମ୍ପ୍ରଦାୟର ପ୍ରସିଦ୍ଧ ଧର୍ମପୀଠ ମକ୍କାରେ ମଧ୍ୟ ଶିବଲିଙ୍ଗ ଅଦ୍ୟାବଧି ବିରାଜମାନ ଅଛନ୍ତି ବୋଲି ଶୁଣିବାକୁ ମିଳେ । ସାଧାରଣତଃ ଶିବଲିଙ୍ଗ ଦୁଇପ୍ରକାରର ଦେଖାଯାଆନ୍ତି । କେତେକ ସ୍ଥାନରେ ସେ ସ୍ୱୟମ୍ଭୂ ଲିଙ୍ଗରୂପରେ ପୁଣି ଆଉ କେତେକ ସ୍ଥାନରେ ସ୍ଥାପିତ ଲିଙ୍ଗରୂପରେ ପୂଜା ପାଆନ୍ତି । ସ୍ୱୟମ୍ଭୂ ଅର୍ଥାତ୍ ଯେଉଁଠାରେ ଭକ୍ତଙ୍କ

କଲ୍ୟାଣ ନିମିତ୍ତ ସ୍ୱୟଂ ଶିବ ଭୂଗର୍ଭରୁ ଆବିର୍ଭୂତ ହୁଅନ୍ତି ଯାହାଙ୍କୁ ଗ୍ରାମ୍ୟଭାଷାରେ ପାତାଳଫୁଟା ମହାଦେବ ଅର୍ଥାତ୍ ପାତାଳରୁ ବାହାରିଥିବା ଲିଙ୍ଗ ବୋଲି କୁହାଯାଏ ଏବଂ ଅନ୍ୟତ୍ର ପାଷାଣାଦି ଦ୍ୱାରା ଲିଙ୍ଗ ଓ ଶକ୍ତି ବା ଆଧାରପୀଠ ନିର୍ମାଣ କରି ପ୍ରାଣପ୍ରତିଷ୍ଠା ପ୍ରଭୃତି ଶାସ୍ତ୍ରୋକ୍ତ ବିଧାନଦ୍ୱାରା ସ୍ଥାପନା କରାଯାଇଥାଏ ତାହା ସ୍ଥାପିତ ଲିଙ୍ଗ ପଦବାଚ୍ୟ । ଶିବଲିଙ୍ଗ ସ୍ଥାପିତ ହୁଅନ୍ତୁ ଅଥବା ସ୍ୱୟମ୍ଭୂ, ଉଭୟ ସ୍ଥଳରେ ସେ ଉତ୍ତରାଭିମୁଖୀ ହେବେ । ଶାସ୍ତ୍ରବାକ୍ୟ ଯଥା–

'ଗୃହେ ପ୍ରତ୍ୟଙ୍ ମୁଖାଃ ଦେବାଃ ଗୌରୀଭାସ୍କରକେଶବାଃ,
ଅନ୍ୟତ୍ର ପ୍ରାଙ୍ମୁଖାଃ ସର୍ବେ ଯାମ୍ୟୌଦଙ୍ମୁଖୌ ଗିରିଜେଶ୍ୱରୌ ॥'

ଅର୍ଥାତ୍ ଘରମାନଙ୍କରେ ଦେବୀ, ସୂର୍ଯ୍ୟ ଓ ବିଷ୍ଣୁଙ୍କ ପ୍ରତିମା ସର୍ବଦା ପଶ୍ଚିମାଭିମୁଖୀ । ଅନ୍ୟଠାରେ ପୂର୍ବାଭିମୁଖୀ ହେବେ । ମାତ୍ର ସବୁ କ୍ଷେତ୍ରରେ ଗଣେଶ ଦକ୍ଷିଣାଭିମୁଖୀ ଓ ଶିବ ଉତ୍ତରାଭିମୁଖୀ ପ୍ରନାଳ (ସୋମସୂତ୍ର) ବା ନେତ୍ରନଳା ମଧ୍ୟ ଉତ୍ତର ଦିଗକୁ ରହିବ ।

ଏତଦତିରିକ୍ତ ଶିବଙ୍କ ପୂର୍ଣ୍ଣାବୟବ ବିଶିଷ୍ଟ ଧାତବ ମୂର୍ତ୍ତି ବିଜେ ପ୍ରତିମା ବା ଚଳନ୍ତୀ ବିଗ୍ରହରୂପରେ ଶୈବପୀଠ ମାନଙ୍କରେ ଦେଖିବାକୁ ମିଳନ୍ତି । ନେପାଳ ରାଜ୍ୟର ରାଜଧାନୀ କାଠମାଣ୍ଡୁଠାରେ ଶିବଙ୍କର ପଞ୍ଚମୁଖ ବିଶିଷ୍ଟ ମୂର୍ତ୍ତି ପୂଜା ପାଆନ୍ତି । ଏସବୁ ସତ୍ତ୍ୱେ ଶିବଙ୍କ ଲିଙ୍ଗପୂଜା ବିଷୟରେ ସ୍କନ୍ଦ ପୁରାଣରେ ବର୍ଣ୍ଣନା କରାଯାଇଅଛି ଯଥା –

'ଆକାଶଂ ଲିଙ୍ଗମିତ୍ୟାହୁଃ ପୃଥିବୀ ତସ୍ୟ ପୀଠିକା
ଆଲୟଃ ସର୍ବଦେବାନାଂ ଲୟନାଲ୍ଲିଙ୍ଗମୁଚ୍ୟତେ ।'

ଅର୍ଥାତ୍ ସର୍ବତ୍ର ବ୍ୟାପକ ଆକାଶ ଯାହାଙ୍କର ଚିହ୍ନ ବା ସ୍ୱରୂପ ଓ ପୃଥିବୀ ଯାହାଙ୍କର ଆଧାର, ଯେ ସମସ୍ତ ଦେବତାମାନଙ୍କ ଏକମାତ୍ର ଆଶ୍ରୟ ପ୍ରଦାୟକ ଓ ସମସ୍ତେ ଯାହାଙ୍କଠାରେ ବିଲୀନ ହୁଅନ୍ତି ତାହାଙ୍କୁ ଶିବ ଲିଙ୍ଗ ବୋଲି କୁହାଯାଏ । ଶିବ ସର୍ବତ୍ର ବିଦ୍ୟମାନ ହେତୁ ତାଙ୍କ ଲିଙ୍ଗସ୍ୱରୂପ ପାଷାଣ ଆଦି ପାଞ୍ଚଭୌତିକ ଉପାଦାନରୁ ନିର୍ମିତ । ଏପରିକି ବରଫଦ୍ୱାରା ମଧ୍ୟ ପ୍ରାକୃତିକ ଉପାୟରେ ସ୍ୱତଃ ନିର୍ମିତ ଅମରନାଥଙ୍କ ପ୍ରସିଦ୍ଧି ସର୍ବତ୍ର ବିଶ୍ରୁତ । ଏତଦତିରିକ୍ତ ବିଲ୍ୱପତ୍ର, ପୁଷ୍ପ

ପ୍ରଭୃତି ସାତ୍ତ୍ୱିକ ବା ପବିତ୍ର ପଦାର୍ଥମାନଙ୍କରେ ମଧ୍ୟ ତାଙ୍କର ଉପସ୍ଥିତି ପରିକଳ୍ପନା କରି ପୂଜା କରିବାର ପ୍ରଥା ମଧ୍ୟ ପ୍ରଚଳିତ । ଏଥିରୁ ସ୍ପଷ୍ଟ ପ୍ରତୀତ ହେଉଅଛି ଯେ ଶିବଙ୍କ ସର୍ବବ୍ୟାପକତ୍ୱ ସ୍ୱରୂପ ହେତୁ ସେ କୌଣସି ନିର୍ଦ୍ଦିଷ୍ଟ ସ୍ଥାନରେ ସୀମୀତ ହୋଇ ରହନ୍ତି ନାହିଁ ।

**ପ୍ରତିମା ପ୍ରତୀକାତ୍ମିକା -**

ଶାସ୍ତ୍ରରେ ପ୍ରତ୍ୟେକ ପଦାର୍ଥର ଦୁଇପ୍ରକାର ପରିମାଣ ବିଷୟରେ ଉଲ୍ଲେଖ ରହିଅଛି । ପ୍ରଥମଟି ପରିଛିନ୍ନ ଯାହାକୁ ବ୍ୟାପ୍ୟ ବା ମୂର୍ତ୍ତ ବୋଲି କୁହାଯାଏ, ଯେଉଁଥିରୁ ମୂର୍ତ୍ତି ଶବ୍ଦକୁ ନେଇ ପ୍ରତିମାର ପରିକଳ୍ପନା, ଦ୍ୱିତୀୟଟି ବ୍ୟାପକ ବା ବିଭୂ ପରିମାଣ । ଏଣୁ ଦେବତାମାନଙ୍କ ଉପାସନା ନିମିତ୍ତ ଯେଉଁ ମୂର୍ତ୍ତି ବା ପ୍ରତିମା ନିର୍ମାଣ କରାଯାଏ, ତାହା ବିଭୁ ବା ବ୍ୟାପକ ସତ୍ତାର ପ୍ରତୀକ ସ୍ୱରୂପ । ଏହାର ପ୍ରକୃଷ୍ଟ ଉଦାହରଣ ଶିବଲିଙ୍ଗ ଓ ବିଶ୍ୱପ୍ରସିଦ୍ଧ ଚତୁର୍ଧା ମୂର୍ତ୍ତି ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର ଓ ମା ସୁଭଦ୍ରା ତଥା ଚକ୍ରରାଜ ସୁଦର୍ଶନ । ଯେହେତୁ ଏମାନେ ସମସ୍ତେ ପ୍ରତୀକାତ୍ମକ ତେଣୁ ନିର୍ଦ୍ଦିଷ୍ଟ ସ୍ୱରୂପ କିଛିନାହିଁ କହିଲେ ଅଯଥାର୍ଥ ହେବନାହିଁ । ଏଣୁ ଶ୍ରୀବିଗ୍ରହ କେତେବେଳେ ଗଜାନନ ରୂପରେ ତ ପୁଣି କେତେବେଳେ ନାଗାର୍ଜୁନ (ଯୋଦ୍ଧା) ବେଶରେ, ପୁଣି ରାମଲକ୍ଷ୍ମଣ, ବଳରାମ କୃଷ୍ଣ ଇତ୍ୟାଦି ନାନା ଆକାରରେ ସେ ବସ୍ତ୍ରାଳଂକାରାଦିରେ ବିଭୂଷିତ ହୋଇ ଭକ୍ତମାନଙ୍କ ଅଭିଳାଷ ଅନୁସାରେ ଦର୍ଶନ ଦେଇ ତାଙ୍କୁ କୃତାର୍ଥ କରି ଥାଆନ୍ତି । ବିଶେଷକରି ଭଗବାନ୍ ବିଷ୍ଣୁଙ୍କ ଆୟୁଧ ସୁଦର୍ଶନ ଯାହା ସ୍ୱରୂପରେ ଚକ୍ର ମାତ୍ର ରତ୍ନସିଂହାସନରେ ସେ ଦଣ୍ଡରୂପରେ ବିରାଜମାନ । ଆମ ଆରାଧ୍ୟ ଦେବତାମାନଙ୍କ ମଧ୍ୟରୁ କେତେବେଳେ କିଏ ଦିଗମ୍ବର ପୁଣି କିଏ ପୀତାମ୍ବର ବା ନୀଳାମ୍ବର, କେତେବେଳେ ଏକାନନ, ପୁଣି ଚତୁରାନନ ତ ପୁଣି ପଞ୍ଚାନନ, ଷଡାନନ, କେତେବେଳେ ଦ୍ୱିବାହୁ, ପୁଣି ଚତୁର୍ବାହୁ, ଷଡ୍‌ବାହୁ, ଅଷ୍ଟଭୂଜ, ଷୋଡ଼ଶଭୂଜ ଏପରିକି ସହସ୍ର ବାହୁ ମଧ୍ୟ, କେଉଁଠି ଦ୍ୱିନୟନ ତ ପୁଣି ତ୍ରିନୟନ ଓ ସହସ୍ରନେତ୍ରଧାରୀ ମଧ୍ୟ । ସେ ହସ୍ତପଦ ଶୂନ୍ୟ ପୁଣି ବିଶ୍ୱରୂପ । ଅବଶ୍ୟ ଏ ସମସ୍ତ ବିବିଧତା ଇଚ୍ଛାମୟ ପରମାତ୍ମାଙ୍କ ସ୍ୱେଚ୍ଛା ସମ୍ଭୂତ । ଯେଉଁ ପରମାତ୍ମା

ଈଶ୍ୱର ଅଣିମାଦି ଅଷ୍ଟ ଐଶ୍ୱର୍ଯ୍ୟ ସମ୍ପନ୍ନ ତାଙ୍କ ପାଇଁ ଏହା କିଛି ଅସମ୍ଭବ ନୁହେଁ । କାରଣ ଯେ ପ୍ରଭୁ ସେ 'ଅକର୍ତ୍ତୁମନ୍ୟଥାକର୍ତ୍ତୁଂ କର୍ତ୍ତୁଂ ବା ପ୍ରଭବତି' – ଅର୍ଥାତ୍ ପ୍ରଭୁ ଯେହେତୁ ସର୍ବଶକ୍ତିମାନ୍ ତେଣୁ ସେ ସ୍ୱ ଇଚ୍ଛାରେ ସବୁ କରିପାରନ୍ତି, ନ କରି ବି ପାରନ୍ତି ଅଥବା ଅନ୍ୟପ୍ରକାରେ ମଧ୍ୟ କରିପାରନ୍ତି । ଏ ସମସ୍ତ ବିଷୟର ସମାଧାନ ପାଇଁ ପ୍ରତୀକାତ୍ମକ ମୂର୍ତ୍ତିର ପରିକଳ୍ପନା ଯେଉଁଥିରେ ବହୁ ଦୂରଦୃଷ୍ଟି ସମ୍ପନ୍ନ ଚିନ୍ତାଧାରା ସମ୍ୟକ୍ ସମାହିତ । ଏଣୁ ଏବେ ଆମେ ମୂର୍ତ୍ତି ବା ପ୍ରତିମାର ପ୍ରତୀକାତ୍ମକ ସ୍ୱରୂପର ଯାଥାର୍ଥ୍ୟ ବା ତାତ୍ତ୍ୱିକତା ଉପରେ ବିଶ୍ଳେଷଣ କରିବା ।

ପ୍ରତୀକ ଶବ୍ଦର ଅର୍ଥ କୌଣସି ବସ୍ତୁ ବିଷୟକ ସାମାନ୍ୟ ଜ୍ଞାନ ବା ସୂଚନା । ଏହା ଯେପରି ମୋଟରଯାନ ଚାଳକପାଇଁ ମାର୍ଗସୂଚନା (Road Signal) ଯଥା ଯେଉଁଠି ସୂଚନା ଫଳକ (Signal Board / Hoarding) ରେ ଯଦି ଦୌଡ଼ୁଥିବା ଛାତ୍ରର ଛବି ଥାଏ, ତା ହେଲେ ଆଗରେ ବିଦ୍ୟାଳୟ ଥିବା କଥା ଗାଡ଼ିଚାଳକ ଜାଣିପାରେ ଇତ୍ୟାଦି । ସେହିଭଳି ରେଳଗାଡ଼ିର ଚାଳକ ରେଲ୍ ଲାଇନ୍ ପାଖରେ ନିର୍ଦ୍ଦିଷ୍ଟ ସୂଚନା ବା ପ୍ରତୀକ ଦେଖି ଜାଣିପାରେ ଆଗରେ Level Crossing ଇତ୍ୟାଦି କିଛି ଅଛି । ନିର୍ମାଣ ଯନ୍ତ୍ରୀ ପ୍ରଥମେ କେତେକ ବିନ୍ଦୁ ବା ରେଖାଦ୍ୱାରା ପ୍ରତୀକ ରୂପରେ ସୁବୃହତ୍ ଅଟ୍ଟାଳିକାର ନକ୍ସା ତିଆରି କରେ ଏବଂ ତାହାରି ଆଧାରରେ ନିର୍ମାଣ ହେବାକୁ ଥିବା ନଭଶ୍ଚୁମ୍ବୀ ପ୍ରାସାଦର ସୂଚନା ଗୃହସ୍ୱାମୀଙ୍କୁ ଦେଇଥାଏ । ଗଣନା କ୍ଷେତ୍ରରେ ସଂଖ୍ୟା ବା ଅଙ୍କଗୁଡ଼ିକ ମଧ୍ୟ ପ୍ରତୀକ ସ୍ୱରୂପ । ଯେପରି '୧' (ଏକ) ସଂଖ୍ୟା ପାଇଁ ଗୋଟିଏ ଗାର ବା କାଠି ଖଣ୍ଡିଏ ଏବଂ କ୍ରମଶଃ ୨–୩–୪–୫–ଇତ୍ୟାଦି ସଂଖ୍ୟାର ଗଣତି ପାଇଁ ପ୍ରତୀକରୂପରେ ସେତିକି କାଠି ବା ଗାରଟାଣି ଅନ୍ୟଙ୍କ ମନରେ ସଂଖ୍ୟାବିଷୟକ ଜ୍ଞାନଜାତ କରାଯାଇଥାଏ । ଏହା କେବଳ ଆମ ଦେଶରେ ନୁହେଁ ଅଧିକନ୍ତୁ ପୃଥିବୀର ଅନ୍ୟତମ ପ୍ରାଚୀନ ଦେଶ ରୋମ୍ ଯେଉଁ ସଭ୍ୟତାରେ ମଧ୍ୟ ଏହି ପ୍ରତୀକାତ୍ମକ ଗାଣିତିକ ସଂଖ୍ୟା ଗଣନାର ପରମ୍ପରା କାଠି ବା ଗାର ମାଧ୍ୟମରେ ହେଉଥିଲା ଯାହା ଆଜି ପର୍ଯ୍ୟନ୍ତ ବ୍ୟବହାର ହୋଇ ଆସୁଅଛି ଯଥା– I (one), II (Two), III (Three), IV (Four), V (Five), X (Ten) ଇତ୍ୟାଦି

ଯାହାକୁ ଆମେ ଆଜି ବି Roman letter ବା Roman figure ବୋଲି ବ୍ୟବହାର କରୁଅଛୁ । ଏପରି ଅନେକ ସ୍ଥଳରେ ପ୍ରତୀକାତ୍ମକ ବ୍ୟବହାରର ପ୍ରଚଳନ ମାନବ ସଭ୍ୟତାରେ ପ୍ରଚଳିତ ଅଛି । ଏ ସମଗ୍ର ବିଶ୍ୱବ୍ରହ୍ମାଣ୍ଡ ଯାହା ସ୍ଥୂଳରୂପରେ ପ୍ରକୃତି ପଦବାଚ୍ୟ ତାହା ମଧ୍ୟ ପ୍ରତୀକସ୍ୱରୂପ । ଯାହା ମାଧ୍ୟମରେ ଅର୍ଥାତ୍ ମିଥ୍ୟା, ଅଳିକ, ଅବାସ୍ତବ ଓ ଅଶାଶ୍ୱତ ରୂପକ ଯେଉଁ ମାୟା ବା ପ୍ରକୃତିରୂପକ ପଦାର୍ଥ ମାଧ୍ୟମରେ ଆମେ ସତ୍ୟ, ଦିବ୍ୟ, ବାସ୍ତବ ଓ ଚିରନ୍ତନ ତତ୍ତ୍ୱ ପରଂବ୍ରହ୍ମ ପରମାତ୍ମାଙ୍କ ସତ୍ତାକୁ ଅନୁଭବ କରିପାରିବୁ । ଯେଉଁ କଥାକୁ ବେଦ 'ନେତି ନେତି' ଯୁକ୍ତିଦ୍ୱାରା ପ୍ରତିପାଦନ କରିବା ସହିତ 'ଦୃଶ୍ୟତେ ତ୍ୱଗ୍ରୟା ବୁଦ୍ଧ୍ୟା....' ଏପରି ଅନୁସନ୍ଧାନ ବା ମାର୍ଗାନ୍ୱେଷଣର ଯୁକ୍ତି ମଧ୍ୟ ଉପସ୍ଥାପିତ କରନ୍ତି । ତେଣୁ ଭଗବାନ୍ ମହେଶ୍ୱରଙ୍କ ଅନୁଗ୍ରହ ପାଇବାପାଇଁ ତାଙ୍କ ପ୍ରତୀକସ୍ୱରୂପ ଶିବଲିଙ୍ଗଙ୍କ ଉପାସନା ଆମ ପାଇଁ ଏକାନ୍ତ ଆବଶ୍ୟକ । ଏ ବିଷୟରେ ପାଶ୍ଚାତ୍ୟ ବିଦ୍ୱାନ୍‌ମାନେ ମଧ୍ୟ ଅନୁକୂଳ ମତ ପୋଷଣ କରିଥାଆନ୍ତି । ଯଥା -

'True symbolism, far from being invented by man, springs from nature itself. The whole of nature is but the symbol of a higher reality. What we picture as the aspects of divinity are essentially the abstract prototypes of the forms of the manifest world.'

– Danie Lou Alain – 'Hindu Polytheism'.

(ପ୍ରକୃତ ପ୍ରତୀକବାଦ ମନୁଷ୍ୟଙ୍କ ଦ୍ୱାରା ଆବିଷ୍କୃତ ହୋଇନାହିଁ, ତାହାର ପ୍ରକୃତିରୁ ହିଁ ସୃଷ୍ଟି । କାରଣ ସମଗ୍ର ପ୍ରକୃତି ମଧ୍ୟ ଏକ ମହାନ୍ ସତ୍ତାର ପ୍ରତୀକ ମାତ୍ର । ଯାହା ଦିବ୍ୟଦ୍ରଷ୍ଟାମାନଙ୍କୁ ଦିବ୍ୟ ସତ୍ତା ରୂପରେ ପ୍ରତୀତ ହେଉଅଛି ତାହା ସମସ୍ତ ସାଂସାରିକ ବସ୍ତୁମାନଙ୍କର ଆକୃତିଗତ ଭାବାତ୍ମକ ପ୍ରତିରୂପ ଅଟେ ।)

ସେହିପରି 'Introduction to Hindu Symbolism' ବହିରେ I.K. Taimini ମଧ୍ୟ କହିଅଛନ୍ତି ଯେ - The symbology of Mahesha or Shiva as he is generally referred to, is the richest and most

profound in the whole field of Hindu symbolism. It involves practically every philosophic concept of the highest spiritual significance and accept truths relating to the innermost realities of life.

(ହିନ୍ଦୁ ଧର୍ମର ପ୍ରତୀକବାଦ ବିଷୟରେ ମହେଶ ଅଥବା ଶିବଙ୍କ ପ୍ରତୀକାତ୍ମକତା ସବୁଠାରୁ ସମୃଦ୍ଧ ଓ ଗୁରୁତ୍ୱପୂର୍ଣ୍ଣ ଅଟେ । ଯେଉଁଥିରେ ଶ୍ରେଷ୍ଠ ଆଧ୍ୟାତ୍ମିକତାର ମହତ୍ତ୍ୱପୂର୍ଣ୍ଣ ପ୍ରତ୍ୟେକ ଦାର୍ଶନିକ ବିଚାରଧାରା ସହିତ ଗୂଢ଼ ସତ୍ୟର ମଧ୍ୟ ସମାବେଶ ହୋଇଅଛି, ଯାହା ମାନବଜୀବନର ଅନ୍ତରତମ ରହସ୍ୟ ସହିତ ନିବୀଡ଼ଭାବରେ ସମ୍ବନ୍ଧିତ ।)

ଉଲ୍ଲେଖଯୋଗ୍ୟ ଯେ ଐଶ୍ୱରୀୟ ଦିବ୍ୟ ସତ୍ତାକୁ ଯେକୌଣସି ପ୍ରତିମା ବା ମୂର୍ତ୍ତି ମାଧ୍ୟମରେ ଆବଦ୍ଧ କରି ରଖିବା 'ଗାଗର ମେ ସାଗର' – ଅର୍ଥାତ୍ ମାଠିଆ ଭିତରେ ସମୁଦ୍ରକୁ ଭର୍ତ୍ତିକରି ରଖିବା ଭଳି ଏକାନ୍ତ ଅସମ୍ଭବ ଓ ବିଫଳ ପ୍ରୟାସ ମଧ୍ୟ । ଯାହା ଉପନିଷଦ୍‌ରେ ସ୍ପଷ୍ଟ ଭାବରେ ଅନେକଥର କୁହାଯାଇଅଛି ଯଥା –

ଯଦ୍ ବାଚା ଅନଭ୍ୟୁଦିତଂ ଯେନ ବାଗଭ୍ୟୁଦ୍ୟତେ,
ତଦେବ ବ୍ରହ୍ମ ତ୍ୱଂ ବିଦ୍ଧି ନେଦଂ ଯଦିଦମୁପାସତେ ॥

କେନ.ଉପ. ୧/୧/୪

ଯନ୍ମନସା ନ ମନୁତେ ଯେନାହୁର୍ମନୋ ମତମ୍,
ତଦେବ ବ୍ରହ୍ମ ତ୍ୱଂ ବିଦ୍ଧି ନେଦଂ ଯଦିଦମୁପାସତେ ॥

କେନ.ଉପ:-୧/୧/୫

ଅର୍ଥାତ୍ ଯାହା ବାକ୍ୟଦ୍ୱାରା ପ୍ରକାଶିତ ହୋଇପାରିବ ନାହିଁ ଅଥଚ ଯାହାଦ୍ୱାରା ବାକ୍ୟ ସ୍ଫୁରିତ ହୁଏ, ତାହାଙ୍କୁ ହିଁ ବ୍ରହ୍ମରୂପରେ ଜାଣ । ଏଣୁ ଦେଶକାଳ ଇତ୍ୟାଦିରେ ସୀମୀତ ବସ୍ତୁ ଯାହାଙ୍କୁ ଆମେ ଉପାସନା କରୁଅଛୁ ସେ ବ୍ରହ୍ମ ନୁହନ୍ତି ।

ଯାହାଙ୍କୁ ମନଦ୍ୱାରା ମନନ, ଚିନ୍ତନ କରିହେବ ନାହିଁ, ଅଥଚ ଯାହାଙ୍କଦ୍ୱାରା ମନ ମନନ କରିପାରେ ତାହାଙ୍କୁ ବ୍ରହ୍ମରୂପରେ ଜାଣ । ଏଣୁ ଦେଶକାଳାଦିରେ ପରିଚ୍ଛିନ୍ନ ବସ୍ତୁକୁ ଯାହା ଆମର ଉପାସ୍ୟ ତାହା ବ୍ରହ୍ମ ନୁହେଁ ।

ଏଣୁ ଏଥିରୁ ସ୍ପଷ୍ଟ ପ୍ରତୀତ ହେଉଅଛି ଯେ ଅବ୍ୟକ୍ତ, ଅଚିନ୍ତ୍ୟ ଓ ଅବର୍ଣ୍ଣନୀୟ ଏପରିକି ସମସ୍ତ ଇନ୍ଦ୍ରିୟଙ୍କ ଦ୍ୱାରା ଅପ୍ରାପ୍ୟ ତତ୍ତ୍ୱ ସମ୍ବନ୍ଧୀୟ ଆମ ପୂର୍ବଜ ମହର୍ଷି ଓ ମହାତ୍ମାମାନେ ତାଙ୍କ ଦିବ୍ୟଦୃଷ୍ଟି ଓ ତପସ୍ୟାଦ୍ୱାରା ପ୍ରାପ୍ତ ଅନୁଭବକୁ ଆଶ୍ରୟକରି ଆମଭଳି ସାଧାରଣଲୋକ (ଉପାସକ)ଙ୍କ ସକାମ ଉପାସନା ନିମିତ୍ତ ପରିକଳ୍ପିତ ପ୍ରତୀକାତ୍ମକ ନାମ ଓ ରୂପଦ୍ୱାରା ସନ୍ନିବେଶିତ ପ୍ରତିମା ବା ମୂର୍ତ୍ତିର ବ୍ୟବସ୍ଥା କରିଅଛନ୍ତି । ତେଣୁ ଶାସ୍ତ୍ରରେ କୁହାଯାଇଅଛି – 'ଅଶ୍ମାଂପି ଯାତି ଦେବତ୍ୱଂ ମହଦ୍‌ଭିଃ ସୁପ୍ରତିଷ୍ଠିତମ୍' – ଅର୍ଥାତ୍ ସାମାନ୍ୟ ପଥର ମଧ୍ୟ ମହତ୍ ଲୋକଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇ ଦେବତ୍ୱକୁ ପ୍ରାପ୍ତ ହୋଇଥାଏ । ଏକଥା ଶ୍ୱେତାଶ୍ୱେତର ଉପନିଷଦ୍‌ରେ ଯଥା –

ତେ ଧ୍ୟାନଯୋଗାନୁଗତା ଅପଶ୍ୟନ୍ ଦେବାତ୍ମଶକ୍ତିଂ ସ୍ୱଗୁଣୈର୍ନିଗୂଢାମ୍ ।
ଯଃ କାରଣାନି ନିଖିଳାନି ତାନି କାଳାତ୍ମଯୁକ୍ତାନ୍ୟଧିଷ୍ଠତ୍ୟେକଃ ॥

ଶ୍ୱେ.ଉପ.–୧/୧/୩

ଅର୍ଥାତ୍ ସେହି ବ୍ରହ୍ମଜ୍ଞାନୀମାନେ ଧ୍ୟାନ ଯୋଗଦ୍ୱାରା ନିଜ ଗୁଣରେ ଆଚ୍ଛାଦିତ ପରମାତ୍ମାଙ୍କ ଶକ୍ତିକୁ ସାକ୍ଷାତ୍‌କାର କରିଥାଆନ୍ତି । ଯେଉଁ ଏକମାତ୍ର ପରମାତ୍ମା କାଳଠାରୁ ଆରମ୍ଭକରି ଆତ୍ମାପର୍ଯ୍ୟନ୍ତ ସମସ୍ତ କାରଣର ଅଧିଷ୍ଠାତା ଅଟନ୍ତି ।

ଏ ପ୍ରତୀକ ସମ୍ବନ୍ଧରେ ଅନ୍ୟ ଏକ ମହତ୍ତ୍ୱପୂର୍ଣ୍ଣ ବିଷୟ ହେଉଅଛି ଯେ ଆମ ମାନବ ସଂସ୍କୃତି ଓ ସଭ୍ୟତାର ଯେଉଁ ମୂଳ ଓ ଆଦିମ ଗ୍ରନ୍ଥ ବେଦ ସେଥିରେ ଥିବା ମନ୍ତ୍ରମାନେ ମଧ୍ୟ ପ୍ରତୀକାତ୍ମକ । ଏହାର ଉଦାହରଣ ଯଥା – ଆମେ ଯେଉଁ ଆଦିପୂଜ୍ୟ ଶ୍ରୀଗଣପତିଙ୍କର ଆରାଧନାରେ ବେଦମନ୍ତ୍ର ଉଚ୍ଚାରଣକରୁ ତାହା – 'ଓଁ ଗଣାନାଂ ତ୍ୱା ଗଣପତିଗୁଁ ହବାମହେ ପ୍ରିୟାଣାଂ ତ୍ୱା ପ୍ରିୟପତିଗୁଁ ହବାମହେ ନିଧୀନାଂ ତ୍ୱା ନିଧିପତିଗୁଁ ହବାମହେ ବସୋମମ । ଆହମଜାନି ଗର୍ଭଧମାତ୍ୱମଜାସି ଗର୍ଭଧମ୍ ।' ଏହି ମନ୍ତ୍ରଟି ଅଶ୍ୱମେଧ ଯଜ୍ଞପ୍ରକରଣରେ ଆସିଅଛି । ଶୁକ୍ଳ ଯଜୁର୍ବେଦ ସଂହିତାର ୨୨ତମ ଅଧ୍ୟାୟରୁ ୨୫ତମ ଅଧ୍ୟାୟ ପର୍ଯ୍ୟନ୍ତ ଅଶ୍ୱମେଧ ଯଜ୍ଞ ଅନୁଷ୍ଠାନର ପ୍ରକ୍ରିୟା ପ୍ରବର୍ତ୍ତିତ ହୋଇଅଛି । ତା ମଧ୍ୟରୁ ୨୩ତମ ଅଧ୍ୟାୟର ୧୯ତମ ମନ୍ତ୍ର ଏହି ଗଣାନାଂ ତ୍ୱା....ଇତ୍ୟାଦି । ଯାହାର

ଆକ୍ଷରିକ ଓ ପ୍ରାକରଣିକ ଅର୍ଥ ମନ୍ତ୍ର ଭାଷ୍ୟକାର ଆଚାର୍ଯ୍ୟ ମହୀଧରଙ୍କ ଅନୁସାରେ- ରାଜା ଅଶ୍ୱମେଧ ଯଜ୍ଞାନୁଷ୍ଠାନ କରୁଅଛନ୍ତି, ତାଙ୍କର ରାଣୀମାନେ (ଆଗକାଳରେ ରାଜାମାନେ ପ୍ରାୟଶଃ ବହୁପତ୍ନୀକ ଥିଲେ) ଅଶ୍ୱମେଧ ଯଜ୍ଞ ନିମିତ୍ତ ଉଦ୍ଦିଷ୍ଟ ଅଶ୍ୱକୁ ପ୍ରଥମେ ନଅଥର ପ୍ରଦକ୍ଷିଣା କରିବାପରେ ଏହି ଗଣାନାଂ ତ୍ୱା.....ମନ୍ତ୍ରକୁ ପାଠକରି ଅଶ୍ୱକୁ ନିବେଦନ କରିବେ ଯେ 'ହେ ଗଣମାନଙ୍କ ମଧ୍ୟରେ ଶ୍ରେଷ୍ଠ ଏଣୁ ତୁମେ ଗଣପତି, ତୁମକୁ ଆମେ ଆହ୍ୱାନ ବା ପ୍ରାର୍ଥନା କରୁଅଛୁ, ପ୍ରିୟ (ବଲ୍ଲଭ) ମାନଙ୍କ ମଧ୍ୟରେ ତୁମେ ଶ୍ରେଷ୍ଠ ଏଣୁ ପ୍ରିୟପତି ରୂପରେ ତୁମକୁ ଆହ୍ୱାନ କରୁଅଛୁ, ନିଧିମାନଙ୍କ ମଧ୍ୟରେ ତୁମେ ଶ୍ରେଷ୍ଠ ଏଣୁ ନିଧିପତି ରୂପରେ ତୁମକୁ ଆହ୍ୱାନ କରୁଅଛୁ, ହେ ବସୁରୂପ (ପାଳକରୂପ) ଅଶ୍ୱ ତୁମେ ମୋର (ପ୍ରତ୍ୟେକ ରାଣୀଙ୍କର) ପତି ବା ସ୍ୱାମୀ ଅଟ ।' ଏହିପରି ପ୍ରାର୍ଥନା କରି ସେମାନେ ଅଶ୍ୱ ପାଖରେ ଶୋଇବେ ଏବଂ ଅଶ୍ୱ ଉଦ୍ଦେଶ୍ୟରେ କହିବେ – 'ହେ ଅଶ୍ୱଦେବତା ! ଗର୍ଭଧାରକ ତୁମର ତେଜକୁ ମୁଁ ଆକର୍ଷଣ କରି ମୋ ଗର୍ଭରେ ନିକ୍ଷେପ କରୁଅଛି ।'

ଏହିପରି ଶୁକ୍ଳ ଯଜୁର୍ବେଦ ବାଜସନେୟୀ ସଂହିତାର ମାଧ୍ୟନ୍ଦିନଶାଖା ଅନ୍ତର୍ଗତ ଅ.୨୩.୧୮ ତମ ମନ୍ତ୍ର ଯାହା କାଣ୍ୱଶାଖାନୁସାରେ ଅ.୨୫/୨୦ ତମ ମନ୍ତ୍ର ଯଥା– 'ଅମ୍ବେ ଅମ୍ବିକେ ଅମ୍ବାଲିକେ ନ ମା ନୟତି କଶ୍ଚନ । ସମସ୍ତ୍ୟଶ୍ୱକଃ ସୁଭଦ୍ରିକାଂ କାମ୍ପିଲବାସିନୀମ୍' । ଯେଉଁ ମନ୍ତ୍ରକୁ ଆମେ ମା ଦୁର୍ଗା ବା ଶକ୍ତିଙ୍କ ଉପାସନାରେ ବ୍ୟବହାର କରିଥାଉ ତାହା ମଧ୍ୟ ଅଶ୍ୱମେଧ ଯଜ୍ଞ ପ୍ରକ୍ରିୟାନ୍ତର୍ଗତ ଅଶ୍ୱ (ପଶୁ) ଶୋଧନ ପ୍ରକରଣପରକ ମନ୍ତ୍ର । ଉକ୍ତ ମନ୍ତ୍ରର ମଧ୍ୟ ଭାଷ୍ୟକାର ଆଚାର୍ଯ୍ୟ ମହୀଧରଙ୍କ ଭାଷ୍ୟାନୁସାରେ ଅଶ୍ୱମେଧ ଯଜ୍ଞର ଅନୁଷ୍ଠାତା ରାଜାଙ୍କର ରାଣୀମାନଙ୍କ ମଧ୍ୟରେ ପରସ୍ପର ବାର୍ତ୍ତାଳାପ ପ୍ରସଙ୍ଗରେ ଜଣେ ରାଣୀ ଅନ୍ୟ ଅମ୍ବା, ଅମ୍ବିକା ଓ ଅମ୍ବାଲିକା ନାମଧେୟ ରାଣୀମାନଙ୍କଠାରେ ନିଜର ଖେଦ ବ୍ୟକ୍ତ କରି କହୁଅଛି ଯେ – 'ଦେଖ ମୋତେ କେହି ଜଣେ ପୁରୁଷ ଅଶ୍ୱପାଖକୁ ନେଇ ଯାଉନାହିଁ । ମୁଁ ସେ ଅଶ୍ୱପାଖକୁ ନଗଲେ ଅନ୍ୟ ନାରୀଙ୍କ ପାଖରେ ସେ ଅଶ୍ୱ (ଅଶ୍ୱକଃ=କୁତ୍ସିତଅଶ୍ୱ ନିନ୍ଦା ଉଦ୍ଦେଶ୍ୟରେ) ଶୋଇବ, ବିଶେଷକରି କାମ୍ପିଲନଗରରେ ବାସ କରୁଥିବା ସୁଭଦ୍ରିକା (କୁତ୍ସିତା ସୁଭଦ୍ରା= ଅର୍ଥାତ୍ ସୁନ୍ଦରୀ

ଓ ବିଦଗ୍ଧା ନାରୀ ପ୍ରତି ଈର୍ଷ୍ୟାପରାୟଣ ହୋଇ ଏହି ରାଣୀ ସୁଭଦ୍ରିକା ପଦ ବ୍ୟବହାର କରିଅଛି) ନାରୀମାନେ ଏହାର ସୁଯୋଗ ନେବେ ।

'ସ୍ଥାଳି ପୁଲାକା'ନ୍ୟାୟରେ (ଭାତ ହାଣ୍ଡିରୁ କିଛି ଭାତ ଆଣି ପରଖିବା ପରି) ଏଠାରେ ଦୁଇଗୋଟି ପ୍ରସିଦ୍ଧ ମନ୍ତ୍ର ଉଦାହରଣ ସ୍ୱରୂପ ଉପସ୍ଥାପିତ ହେଲା । କିନ୍ତୁ ପ୍ରକୃତରେ ଏହିଭଳି ଅନେକ ମନ୍ତ୍ର ଅଛନ୍ତି ଯେଉଁମାନଙ୍କର ବାସ୍ତବିକ ଅର୍ଥ ଲୋକ ବ୍ୟବହାରରେ ଅନୁପଯୋଗୀ । ମାତ୍ର ମନ୍ତ୍ରଦ୍ରଷ୍ଟା (ଋଷୟଃ ମନ୍ତ୍ରଦ୍ରଷ୍ଟାରଃ) ଆମ ପୂର୍ବଜ ଋଷିମାନେ ନିଜର ଅଲୌକିକ ବା ଦିବ୍ୟ ଦୃଷ୍ଟି ଦ୍ୱାରା ଏହି ପ୍ରତୀକାତ୍ମକ ମନ୍ତ୍ରମାନଙ୍କ ମାଧ୍ୟମରେ ଅଲୌକିକ ଦେବାଦିପରକ ବିଷୟକୁ ସାକ୍ଷାତ୍କାର କରି ମନୁଷ୍ୟ ସମାଜ ନିମିତ୍ତ ପରିପ୍ରକାଶ କରିଅଛନ୍ତି ।

ପ୍ରକାଶଯୋଗ୍ୟ ଯେ ପରମାତ୍ମାଙ୍କ ସତ୍ତା ଆମଠାରେ ମଧ୍ୟ ବିଦ୍ୟମାନ । ଯାହାକୁ ଦିବ୍ୟ ଚେତନା ବୋଲି କୁହଯାଇଅଛି । ସେ ବିଷୟରେ କିଛି ଆଭାସ ଦେବାପାଇଁ ଆମ ପୂର୍ବଜମାନେ କହିଅଛନ୍ତି – 'କ୍ରମାକ୍ରମାତ୍ମା କାଳଶ୍ଚ ସୈବ ସଂବିଦିତି ବର୍ତ୍ତତେ ।' ଅର୍ଥାତ୍ କ୍ଷଣଦ୍ୱୟ ମଧ୍ୟରେ ଯେଉଁ ଅତ୍ୟନ୍ତ ସୂକ୍ଷ୍ମ ବ୍ୟବଧାନ (ଯାହା କ୍ଷଣ ବିନିର୍ମୁକ୍ତ) ତାହାହିଁ ସଂବିଦ୍ ବା ଚେତନା । ମାତ୍ର ଅଜ୍ଞାନର ଶକ୍ତ ଆବରଣ ହେତୁ ଆମଦ୍ୱାରା ତାହା ଜଣା ପଡ଼େ ନାହିଁ । କେବଳ କୁଣ୍ଡଳିନୀ ଶକ୍ତି ଜାଗ୍ରତ ହେବାପରେ ସହସ୍ରାରରୁ କ୍ଷରିତ ମଧୁରେ ଆପ୍ୟାୟିତ ପ୍ରାଣଶକ୍ତିକୁ ତାହାର ଅନୁଭବ ଆସିପାରେ । ସୃଷ୍ଟି ପ୍ରାରମ୍ଭରେ ଦିବ୍ୟ ଆତ୍ମାମାନଙ୍କ ଧ୍ୟାନ ଓ ତପସ୍ୟାଦ୍ୱାରା ନିଜ ନିଜ ଉପଲବ୍ଧିଲଭ୍ୟ ତତ୍ତ୍ୱକୁ ନିଗମ ଓ ଆଗମ ଶାସ୍ତ୍ର ମାଧ୍ୟମରେ ପରବର୍ତ୍ତୀ ବଂଶଧରମାନଙ୍କ ପାଇଁ ବିଭିନ୍ନ ପ୍ରକାରରେ ଉପନିବଦ୍ଧ କରାଯାଇଅଛି । ଯାହାକି ଶ୍ରୁତିବାକ୍ୟ ଅନୁସାରେ – ଏକଂ ସଦ୍ ବିପ୍ରା ବହୁଧା ବଦନ୍ତି' (ବାସ୍ତବିକ ଏକମାତ୍ର ତତ୍ତ୍ୱକୁ ଜ୍ଞାନୀମାନେ ବହୁପ୍ରକାରରେ କହନ୍ତି) । ସେହିପରି 'ନାସ୍ତି ମୁନିର୍ଯସ୍ୟ ମତଂ ନ ଭିନ୍ନମ୍' (ଏପରି ମୁନି ନାହାନ୍ତି ଯାହାଙ୍କ ମତ ଅନ୍ୟମୁନିଙ୍କ ମତଠାରୁ ଭିନ୍ନ ନଥିବ ।) ଏହି କାରଣରୁ ଆମ ସଂସ୍କୃତିରେ କାଳକ୍ରମରେ ପ୍ରତିମା ବିଷୟକ ବିଭିନ୍ନତା ଓ ବିଚିତ୍ରତାର (ସମ୍ପ୍ରଦାୟ ଅନୁସାରେ) ଅବତାରଣା ଦେଖାଗଲା । ଏ ବିଷୟକୁ ଆହୁରି ସ୍ପଷ୍ଟ କରିବା ପାଇଁ ଗୋଟିଏ ସାଧାରଣ

ଉଦାହରଣ ଦିଆଯାଇପାରେ । ତାହା ହେଉଛି ସାଧାରଣତଃ ଆମେ ଯେତେବେଳେ ସ୍ପଷ୍ଟ ଦେଖିନପାରୁ ଅର୍ଥାତ୍ କୌଣସି ଦୃଷ୍ଟିଦୋଷ ଘଟେ ସେତେବେଳେ ଚକ୍ଷୁବିଶେଷଜ୍ଞଙ୍କ ପରାମର୍ଶ ଅନୁସାରେ ପ୍ରଚକ୍ଷୁ ଅର୍ଥାତ୍ ଚଷମା ଗ୍ରହଣ କରିଥାଉ । ଏହାର ମୂଳ ଉଦ୍ଦେଶ୍ୟ ହେଲା ଦୃଶ୍ୟ ବସ୍ତୁକୁ ସ୍ପଷ୍ଟ ଭାବରେ ଦେଖିବା ଯାହା ଚଷମା ମାଧ୍ୟମରେ ସମ୍ଭବ ତେଣୁ ଚଷମାକୁ ପ୍ରଚକ୍ଷୁ ବୋଲି କୁହାଯାଇଥାଏ । ସେଥିପାଇଁ ଚଷମା ସ୍ୱଚ୍ଛ (Transparent) କାଚଦ୍ୱାରା ହିଁ ତିଆରି ହୁଏ । ଏଥିରେ ପ୍ରକ୍ରିୟା ହେଲା ଆମେ ପ୍ରଥମେ ଚଷମା କାଚକୁ ଦେଖୁ ତା ପରେ ଦୃଶ୍ୟବସ୍ତୁକୁ । ଏଠାରେ ବିଚାରଣୀୟ ବିଷୟ ଏହିକି ଆମେ ଚଷମାକୁ ନ ଦେଖି ବସ୍ତୁକୁ ଦେଖିପାରିବୁ ନାହିଁ । ମାତ୍ର ପ୍ରକୃତରେ ଚଷମା ଆମପାଇଁ ଦ୍ରଷ୍ଟବ୍ୟ ନୁହେଁ କାରଣ ସେଥିରେ ଆମର ଦୃଷ୍ଟି ନିବଦ୍ଧ ହେଉନାହିଁ । ଠିକ୍ ସେହିପରି ମାଧ୍ୟମ ରୂପରେ ଯେ କୌଣସି ପ୍ରତିମା ବା ମୂର୍ତ୍ତି ବା ଏପରିକି ତତ୍ତ୍ୱୋପଦେଷ୍ଟା ମାର୍ଗଦର୍ଶକ ଗୁରୁମାନେ ମଧ୍ୟ ପରମାତ୍ମା ସର୍ବଶକ୍ତିମାନ୍ ସର୍ବେଶ୍ୱରଙ୍କ ସତ୍ତା ବିଷୟରେ ସୂଚନା ପ୍ରଦାନ କରନ୍ତି । ମାତ୍ର ପରିତାପର ବିଷୟ ଏହିକି ଯେ କେତେକ ଶିଷ୍ୟ ଆଜିକାଲିର ଗୁରୁଙ୍କଠାରେ ହିଁ ସବୁଜ୍ଞାନର ପରିସୀମା ଅର୍ଥାତ୍ ଗୁରୁଙ୍କ ପ୍ରଦର୍ଶିତ ବା ଉପଦିଷ୍ଟ ବିଶ୍ୱନିୟନ୍ତାଙ୍କ ସ୍ୱରୂପ ଜିଜ୍ଞାସା ଆଡ଼କୁ ନଯାଇ ସେହିଠାରେ ହିଁ ଅଟକି ଯାଆନ୍ତି ଓ ସରଳତା ବା ନିର୍ବୋଧତା ହେତୁ ପରମେଶ୍ୱରଙ୍କ ପାଇଁ ଉଦ୍ଦିଷ୍ଟ ପଦାର୍ଥ ଯଥା ତୁଳସୀପତ୍ର ବା ବେଲପତ୍ରକୁ ମଧ୍ୟ ତଥାକଥିତ ଗୁରୁଙ୍କ ପାଖରେ ନିବେଦନ ବା ସମର୍ପଣ କରି ନିଜକୁ ଧନ୍ୟ ମଣନ୍ତି । ଅବଶ୍ୟ ଆଜିର ସମାଜରେ ଏପରି ଭାବଧାରା ଦେଖାଯିବାର ପ୍ରମୁଖ କାରଣ ହେଉଛି ତଥାକଥିତ ସ୍ୱାର୍ଥାନ୍ଧ ଶିଷ୍ୟଙ୍କ ପାଖରେ ସମୟର କୃତ୍ରିମ ଅଭାବ ଓ ଶାସ୍ତ୍ରବିମୁଖତା ସହିତ ସ୍ୱଳ୍ପ ସମୟ ମଧ୍ୟରେ ଧନ ଜନ ପ୍ରତିଷ୍ଠା ଆଦି ପାଇବା ଲାଳସା । ଯାହାଫଳରେ ସେମାନେ ଅନେକ କ୍ଷେତ୍ରରେ ଛଦ୍ମବେଶୀ ଗୁରୁଙ୍କଦ୍ୱାରା ବହୁଭାବରେ ପ୍ରତାରିତ ଓ ନିର୍ଯାତିତ ହେବାର ଦୃଷ୍ଟାନ୍ତ ଆଜି ଅଜ୍ଞେୟ ନୁହେଁ । କିନ୍ତୁ ଆମେ ସମସ୍ତେ ଭୁଲିଯାଉଅଛୁ ଯେ ପ୍ରକୃତରେ ସାର୍ବକାଳିକ ଓ ସମସ୍ତଙ୍କର ମଧ୍ୟ ଜଣେ ଗୁରୁ ଅଛନ୍ତି ଯେ କି ଜରାମରଣ ରହିତ ଯଥା – 'ସ ଏଷଃ ପୂର୍ବେଷାମପି ଗୁରୁଃ କାଳେନାନବଚ୍ଛେଦାତ୍'

(ଯୋ.ଦ.-୧/୨୬) ଅର୍ଥାତ୍ ସେ ପରମେଶ୍ୱର ଆମ ପୂର୍ବଜ ଭୃଗୁ, କଶ୍ୟପ, ବଶିଷ୍ଠ ଇତ୍ୟାଦିଙ୍କର ମଧ୍ୟ ଗୁରୁ ଯେହେତୁ ସେ କାଳର ବହୁ ଊର୍ଦ୍ଧ୍ୱରେ ଅର୍ଥାତ୍ କାଳାତୀତ । ପ୍ରଥମ ସ୍ତରରେ ଗୁରୁଙ୍କୁ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଏପରିକି ପରଂବ୍ରହ୍ମ ରୂପରେ ଗ୍ରହଣ କରିବାପାଇଁ ଶାସ୍ତ୍ରରେ ନିର୍ଦ୍ଦେଶ ଅଛି କାରଣ ସେ ଜ୍ଞାନଦାତା । ମାତ୍ର ଆମର ଜାଣିବା ଉଚିତ ଯେ ଜ୍ଞାନ ସର୍ବଦା ଜ୍ଞେୟବସ୍ତୁକୁ ଅପେକ୍ଷା କରେ । ବାସ୍ତବିକ ଦୃଷ୍ଟିରେ ପ୍ରତ୍ୟେକ ଜୀବପାଇଁ ପରମେଶ୍ୱର ହିଁ ଏକମାତ୍ର ଜ୍ଞେୟ ବା ଜ୍ଞାନର ବିଷୟ । ଯାହା ବେଦାଦି ଶାସ୍ତ୍ରରେ ବର୍ଣ୍ଣିତ ଅଛି । ଏ ବିଷୟରେ ଆଦିଶଙ୍କରାଚାର୍ଯ୍ୟ ମଧ୍ୟ କହିଅଛନ୍ତି – 'ତଜ୍ଜ୍ଞେୟଂ ଯଦୁପନିଷସ୍ତୁ ନିଶ୍ଚିତାର୍ଥମ୍' । ଅର୍ଥାତ୍ ତାହାକୁ ଜାଣିବା ଉଚିତ ଯାହା ଉପନିଷଦରେ କୁହାଯାଇଅଛି । ତେଣୁ ସାଂସାରିକଙ୍କ ପାଇଁ ଅଧ୍ୟାତ୍ମ ବିଷୟରେ ପ୍ରବେଶ ନିମିତ୍ତ ଗୁରୁମାନେ (ଯେଉଁମାନଙ୍କର ବ୍ରହ୍ମତତ୍ତ୍ୱ ବା ପରମାତ୍ମା ବିଷୟକ ସମ୍ୟକ୍ ଜ୍ଞାନ ବା ଉପଲବ୍ଧି ରହିଛି) ଈଶ୍ୱରପ୍ରାପ୍ତି (ଯାହା ପ୍ରତ୍ୟେକ ପ୍ରାଣୀଙ୍କର ଏକମାତ୍ର ଧ୍ୟେୟ ବା ଲକ୍ଷ୍ୟ) ବିଷୟରେ ମାର୍ଗଦର୍ଶକ । ଏହା ଯେପରି ଜଣେ ଛୋଟ ପିଲାକୁ ମା ଯେତେବେଳେ ଚନ୍ଦ୍ରମାଙ୍କୁ ଦେଖାନ୍ତି ସେତେବେଳେ ସେ ପ୍ରଥମରେ ପାଖରେ ଦେଖାଯାଉଥିବା ଗଛର ଶାଖାକୁ ଦେଖାଇ ତା ମାଧ୍ୟମରେ ଚନ୍ଦ୍ରଙ୍କୁ ସହଜରେ ଦେଖାଇ ପାରନ୍ତି । ଏକଥା ମଧ୍ୟ ସେହିପରି କାରଣ ଅତ୍ୟନ୍ତ ଦୁରବଗାହ୍ୟ, ଅଚିନ୍ତ୍ୟ, ଅବର୍ଣ୍ଣନୀୟ, ସାଧାରଣ ବୁଦ୍ଧି ପକ୍ଷରେ ଅଗ୍ରାହ୍ୟ ଯେଉଁ ଇନ୍ଦ୍ରିୟାତୀତ ପରମାତ୍ମାଙ୍କ ଅସ୍ତିତ୍ୱ ତାହା ଜାଣିବା ଏକାନ୍ତ କଷ୍ଟସାଧ୍ୟ ଏଣୁ ଆମେ ଗୁରୁଙ୍କ ଚରଣାଶ୍ରିତ ହେଉ । ଠିକ୍ ଏହିପରି ପ୍ରତିମା ବା ମୂର୍ତ୍ତି ମଧ୍ୟ ପରମ ସତ୍ତା ପରଂବ୍ରହ୍ମଙ୍କ ଆଡ଼କୁ ଦୃଷ୍ଟି ଆକର୍ଷଣ କରେଇବାର ପ୍ରତୀକ ରୂପକ ମାଧ୍ୟମ । ମାତ୍ର ଆମଭଳି ଯେଉଁମାନେ ସାଧାରଣ ଜ୍ଞାନସମ୍ପନ୍ନ ବ୍ୟକ୍ତି ତାଙ୍କ ପାଇଁ ପ୍ରତିମାଙ୍କୁ ହିଁ ଆଶ୍ରୟ ବା ଆରାଧ୍ୟ ରୂପରେ ଗ୍ରହଣ କରିବାକୁ ପଡ଼ିବ । କାରଣ ସେହି ମୂର୍ତ୍ତି ଉପାସନାଦ୍ୱାରା ସମୁତ୍ପନ୍ନ ପୁଣ୍ୟଫଳ ତଥା ତପସ୍ୟା, ଧ୍ୟାନ ଇତ୍ୟାଦି ଆଚରଣଗତ ସଂସ୍କାର ସମ୍ପନ୍ନ ଜ୍ଞାନ ପ୍ରାପ୍ତ ହେଲେ ସାକ୍ଷାତ୍ ପରମେଶ୍ୱର ପ୍ରାପ୍ତି ଜନ୍ମାନ୍ତରରେ ହୋଇପାରେ । ଏକଥା ଭଗବାନ୍ ନିଜେ ଶ୍ରୀମଦ୍ ଭଗବଦ୍ ଗୀତାରେ କହିଅଛନ୍ତି–

ବହୂନାଂ ଜନ୍ମନାମନ୍ତେ ଜ୍ଞାନବାନ୍ ମାଂ ପ୍ରପଦ୍ୟତେ,

ବାସୁଦେବଃ ସର୍ବମିତି ସ ମହାତ୍ମା ସୁଦୁର୍ଲଭଃ । ଭ.ଗୀ.୭/୧୯

ଅର୍ଥାତ୍ ବହୁବାର ଜନ୍ମଲାଭ ପରେ ଅନ୍ତିମ ଜନ୍ମରେ ତତ୍ତ୍ୱଜ୍ଞାନ ପ୍ରାପ୍ତ ମନୁଷ୍ୟ 'ସବୁକିଛି କେବଳ ବାସୁଦେବ' ଏହି ଭାବରେ ମୋତେ ଭଜନ୍ତି । ଏଭଳି ମହାତ୍ମା ଅତ୍ୟନ୍ତ ଦୁର୍ଲଭ ।

ବେଦରେ ମଧ୍ୟ କୁହାଯାଇଅଛି –

ନାୟମାତ୍ମା ପ୍ରବଚନେନ ଲଭ୍ୟଃ, ନ ମେଧୟା ନ ବହୁନା ଶ୍ରୁତେନ,

ଯମେବୈଷ ବୃଣୁତେ ତେନ ଲଭ୍ୟସ୍ତସ୍ୟୈଷ ଆତ୍ମା ବିବୃଣତେ ତନୂଂ ସ୍ୱାମ୍ ।

କ:ଉପ:-୧/୨/୨୩

ଅର୍ଥାତ୍ ଏହି ଆତ୍ମା ବେଦାଧ୍ୟୟନଦ୍ୱାରା ନା ପ୍ରାପ୍ତ ହୋଇ ପାରିବ, ନା ବୁଦ୍ଧିଦ୍ୱାରା, ନା ବହୁତ ଶୁଣିଲେ ପ୍ରାପ୍ତ ହୋଇପାରେ । କିନ୍ତୁ ଯେଉଁ ସାଧକ ଯେଉଁ ଆତ୍ମାକୁ ବରଣକରେ ସେହି ଆତ୍ମା ଏହାକୁ ପ୍ରାପ୍ତ ହୋଇପାରିବ । କାରଣ ତା ପ୍ରତି ସେହି ଆତ୍ମା ନିଜସ୍ୱରୂପକୁ ଅଭିବ୍ୟକ୍ତ କରିଥାଏ ।

**ଶିବତତ୍ତ୍ୱ-**

ପରମାତ୍ମା ଶିବ ପ୍ରଣବ ଅର୍ଥାତ୍ ଓଁକାର ସ୍ୱରୂପ । ଏଣୁ ପାତଞ୍ଜଳ ଯୋଗଦର୍ଶନରେ କୁହାଯାଇଅଛି 'ତସ୍ୟ ବାଚକଃ ପ୍ରଣବଃ' (୧/୨୪) ଅର୍ଥାତ୍ ପ୍ରଣବ ବା ଓଁକାର ମାଧ୍ୟମରେ ସେ ବାଚ୍ୟ ବା ଅଭିବ୍ୟକ୍ତ । ଓଁକାରରେ ପାଞ୍ଚଗୋଟି ତତ୍ତ୍ୱ ରହିଛି । ଯଥା – 'ଅ+ଉ+ମ୍+ᴗ+•' ଏହି ପାଞ୍ଚ ତତ୍ତ୍ୱ ତାଙ୍କର ପଞ୍ଚାନନକୁ ବୁଝାଏ । 'ଅ' କାର ଦ୍ୱାରା ଉତ୍ତର ଦିଗର ମୁଖ, 'ଉ' କାର ଦ୍ୱାରା ପଶ୍ଚିମ ଦିଗର ମୁଖ, 'ମ୍' କାର ଦକ୍ଷିଣ ଦିଗର ଓ ଅର୍ଦ୍ଧଚନ୍ଦ୍ର 'ᴗ' – ପୂର୍ବ ଦିଗର ଓ '•' ବିନ୍ଦୁ ଊର୍ଦ୍ଧ୍ୱମୁଖ । ଆମ ଦେଶର କାଶ୍ମୀର ପ୍ରାନ୍ତରେ ଶିବତତ୍ତ୍ୱ ଉପରେ ଅନେକ ଗଭୀର ବିଚାର ବିମର୍ଶ କରାଯାଇଅଛି । ଯାହା କାଶ୍ମୀରୀ ଶୈବଦର୍ଶନ ବା ପ୍ରତ୍ୟଭିଜ୍ଞାଦର୍ଶନ ନାମରେ ପରିଚିତ । ସେଥିରେ ତିନିଗୋଟି ପ୍ରମୁଖ ତତ୍ତ୍ୱ ବିଷୟରେ ବିଶେଷ ଚର୍ଚ୍ଚା କରାଯାଇଅଛି । ତାହା ହେଉଛି ପଶୁ, ପାଶ ଓ ପଶୁପତି । ପଶୁ ପଦରେ ଅଜ୍ଞାନମୋହାନ୍ଧକାରରେ ନିମଗ୍ନ ଜୀବତତ୍ତ୍ୱକୁ,

ପାଶପଦରେ ମାୟା ବା ମାୟାର ବନ୍ଧନକୁ, ସମଗ୍ର ଜୀଜଗତର ସୃଷ୍ଟି ସ୍ଥିତି ଓ ସଂହାରର ଏକମାତ୍ର କାରଣ ହେତୁ ଶିବଙ୍କୁ ପଶୁପତି ରୂପରେ ବର୍ଣ୍ଣନା କରିବା ସହିତ ତାତ୍ତ୍ୱିକ ବିଚାର ବିମର୍ଶ ଦାର୍ଶନିକ ଯୁକ୍ତି ସାହାଯ୍ୟରେ ଉପସ୍ଥାପନ କରାଯାଇଅଛି । ଜଗତର କଲ୍ୟାଣ ନିମିତ୍ତ ଭଗବାନ୍ ଶିବ ପଞ୍ଚକୃତ୍ୟ ଅର୍ଥାତ୍ ସୃଷ୍ଟି, ସ୍ଥିତି, ଲୟ, ନିଗ୍ରହ ଓ ଅନୁଗ୍ରହ ରୂପକ କାର୍ଯ୍ୟରେ ନିମଗ୍ନ ଥାଆନ୍ତି । ଦକ୍ଷିଣ ଭାରତରେ ଶୈବ ସମ୍ପ୍ରଦାୟ ଏବଂ ଲିଙ୍ଗାୟତ ନାମକ ଏକ ବିଶେଷ ସମ୍ପ୍ରଦାୟ ମଧ୍ୟ ଏବେବି ପରିଲକ୍ଷିତ ହୁଏ । ଯେଉଁଥିରେ ଶିବହିଁ ପରମାରାଧ୍ୟ ବୋଲି ଗ୍ରହଣ କରାଯାଏ । ଆଦିଶଙ୍କରାଚାର୍ଯ୍ୟ ଯାହାଙ୍କୁ ଭୂଶଙ୍କର, ଅର୍ଥାତ୍ ଧରାବତୀର୍ଣ୍ଣ ସାକ୍ଷାତ୍ ଶଙ୍କର ରୂପରେ ସମସ୍ତେ ଜାଣନ୍ତି ସେ ମଧ୍ୟ ତାଙ୍କ ପ୍ରଣୀତ ଗ୍ରନ୍ଥମାନଙ୍କରେ ଅନେକ ସ୍ଥଳରେ – 'ଶିବୋଽହମ୍, ଶିବୋଽହମ୍' ତଥା 'ଶିବଃ କେବଳୋଽହମ୍, ଶିବଃ କେବଳୋଽହମ୍' – ଏହିପରି ପ୍ରତିପାଦନ କରିଅଛନ୍ତି ।

**ହରି ଓ ହର ଏକ ଓ ଅଭିନ୍ନ-**

ଅନେକ ସମୟରେ ଶୈବ ଓ ବୈଷ୍ଣବ ସମ୍ପ୍ରଦାୟ ମଧ୍ୟରେ ପାରସ୍ପରିକ ଅବାସ୍ତବିକ ବିରୋଧ ପରିଲକ୍ଷିତ ହୁଏ । ମାତ୍ର ବାସ୍ତବିକତା ଦୃଷ୍ଟିରୁ ଶିବ ଓ ବିଷ୍ଣୁ ବା ହର ଓ ହରି ଗୋଟିଏ ମୁଦ୍ରାର ଉଭୟ ପାର୍ଶ୍ୱଭଳି ଏକ ଓ ଅଭିନ୍ନ । ଏ ବିଷୟରେ ଉଭୟାତ୍ମକ ବୋଧକ ଶାସ୍ତ୍ରୋକ୍ତ ଧ୍ୟାନ ଯଥା –

ଯୌ ତୌ ଶଙ୍ଖକପାଳଭୂଷିତକରୌ ମୁକ୍ତାସ୍ଥିମାଳାଧରୌ
ଦେବୌ ଦ୍ୱାରାବତୀଶ୍ମଶାନନିଳୟୌ ନାଗାରିଗୌବାହନୌ ।
ଦ୍ୱିତ୍ର୍ୟକ୍ଷବଳିଦକ୍ଷଯଜ୍ଞମଥନୌ ଶ୍ରୀବତ୍ସଗଙ୍ଗାଧରୌ
ପାପଂ ମେ ହରତାଂ ସଦା ହରିହରୌ ଶ୍ରୀଶୈଳଜାବଲ୍ଲଭୌ ॥

ବେଦରେ କୁହାଯାଇଅଛି – 'ଏକଂ ସଦ୍ ବିପ୍ରାଃ ବହୁଧା ବଦନ୍ତି' – ଅର୍ଥାତ୍ ତତ୍ତ୍ୱଦୃଷ୍ଟିରେ ଏକହିଁ ପରମାତ୍ମା ଯାହାଙ୍କୁ ଜ୍ଞାନୀମାନେ ବହୁପ୍ରକାରରେ ବର୍ଣ୍ଣନା କରନ୍ତି । ଏଣୁ ଜଣେ ହିଁ ସର୍ବମୟ କର୍ତ୍ତା ଅଛନ୍ତି ଯେ କି ସମଗ୍ର ବିଶ୍ୱବ୍ରହ୍ମାଣ୍ଡର ସୃଷ୍ଟି-ସ୍ଥିତି-ଲୟ ରୂପକ କର୍ତ୍ତବ୍ୟ ସମ୍ପାଦନ ପାଇଁ ତାଙ୍କ ନିଜ ଅଂଶରୁ ତିନି ରୂପରେ ଯଥା ବ୍ରହ୍ମା-ବିଷ୍ଣୁ-ଶିବ ରୂପରେ ଅବତୀର୍ଣ୍ଣ ହେଲେ ଏ ବିଷୟରେ

ପ୍ରମାଣ ଯଥା–

ବ୍ରହ୍ମା ଯେନ କୁଲାଳବନ୍ନିୟମିତୋ ବ୍ରହ୍ମାଣ୍ଡଭାଣ୍ଡୋଦରେ
ବିଷ୍ଣୁର୍ଯେନ ଦଶାବତାରଗହନେ କ୍ଷିପ୍ତୋ ମହାସଙ୍କଟେ,
ରୁଦ୍ରୋ ଯେନ କପାଳପାଣିପୁଟକେ ଭିକ୍ଷାଟନଂ କାରିତମ୍ ।
ସୂର୍ଯ୍ୟୋ ଭ୍ରାମ୍ୟତେ ନିତ୍ୟମେବ ଗଗନେ ତସ୍ମୈ ନମୋ ବ୍ରହ୍ମଣେ ।

ଆମେ କିନ୍ତୁ ଏଠାରେ ଯେଉଁ ଶିବଙ୍କ ମହିମା ବର୍ଣ୍ଣନା କରୁଅଛୁ ସେ ସାକ୍ଷାତ୍ ବ୍ରହ୍ମସ୍ୱରୂପ । ଯାହାଙ୍କୁ ଓଁ କାରର ପ୍ରତୀକ ବୋଲି ଆଗରୁ ପ୍ରତିପାଦନ କରାଯାଇଅଛି । ଏଣୁ ଯେଉଁମାନେ ଉନ୍ନତ ଚିନ୍ତାଧାରା ସମ୍ପନ୍ନ ବୈଷ୍ଣବ ସେମାନେ ଶିବଙ୍କୁ ତାଙ୍କ ଇଷ୍ଟଦେବ ବିଷ୍ଣୁଙ୍କ ସମାନ ଭକ୍ତି ଓ ଶ୍ରଦ୍ଧା ନିବେଦନ କରିଥାଆନ୍ତି କାରଣ ସେ ଜାଣନ୍ତି ଯେ ଶିବ ପ୍ରସନ୍ନ ନ ହେଲେ ବିଷ୍ଣୁଙ୍କୁ ପାଇବା ଅସମ୍ଭବ । ଏଣୁ ବୈଷ୍ଣବମାନଙ୍କୁ ମନ୍ତ୍ରଦୀକ୍ଷା ନେବା ପୂର୍ବରୁ ପରମାତ୍ମା ଶିବ ଯେ କି ପରମ ବୈରାଗୀ, ମହାଯୋଗୀ ତାଙ୍କ ଉପାସନା କରି ତାଙ୍କଠାରୁ ଅନୁଜ୍ଞା ନେବାକୁ ପଡ଼ିଥାଏ । ଏହି ଗୁରୁତ୍ୱପୂର୍ଣ୍ଣ ବିଷୟ ପୁରାଣମାନଙ୍କରେ ସ୍ପଷ୍ଟ ପ୍ରତିପାଦିତ ହୋଇଅଛି ଯଥା କୂର୍ମ ପୁରାଣରେ–

ପରାତ୍ ପରଂ ଯାନ୍ତି ନାରାୟଣପରା ଜନାଃ
ନ ତେ ତତ୍ର ଗମିଷ୍ୟନ୍ତି ଯେ ଦ୍ୱିଷନ୍ତି ମହେଶ୍ୱରମ୍ ।

ପୁଣି ବରାହପୁରାଣରେ –

ଅହଂ ଯତ୍ର ଶିବସ୍ତତ୍ର ଶିବୋ ଯତ୍ର ବସୁନ୍ଧରେ !
ଅହଂ ତତ୍ରାପି ତିଷ୍ଠାମି ଆବୟୋର୍ନାନ୍ତରଂ କ୍ୱଚିତ୍ ।
ଶିବଂ ଯୋ ବନ୍ଦତେ ଭୂମୌ ସ ହି ମାମେବ ବନ୍ଦତେ ।
ଲଭତେ ପୁଷ୍କଳାଂ ସିଦ୍ଧିମେବଂ ଯୋ ବେତ୍ତି ତତ୍ତ୍ୱତଃ ।

ଆହୁରି ମଧ୍ୟ କୂର୍ମପୁରାଣରେ –

ସଦୈବ ଦେବୋ ଭଗବାନ୍ ମହାଦେବୋ ନ ସଂଶୟଃ
ମନ୍ୟନ୍ତେ ଯେ ଜଗଦ୍ୟୋନିଂ ବିଭିନ୍ନଂ ବିଷ୍ଣୁମୀଶ୍ୱରାତ୍,

ମୋହାଦବେଦନିଷ୍ଠାଦ୍‌ବା ତେ ଯାନ୍ତି ନରକଂ ନରାଃ

ବେଦାନୁବର୍ତ୍ତିନଂ ରୁଦ୍ରଂ ଦେବଂ ନାରାୟଣଂ ତଥା

ଏକୀଭାବେନ ପଶ୍ୟନ୍ତି ମୁକ୍ତିଭାଜୋ ଭବନ୍ତି ତେ ।-କୂର୍ମ ପୁରାଣ-୧/୧୩

ଏପରିକି କୂର୍ମପୁରାଣରେ ଦେବୀ-ବିଷ୍ଣୁ-ଶିବ ଏ ତିନି ଦେବତା ଏକ ଏବଂ ତାହାହିଁ ଶିବ ସ୍ୱରୂପ । ପୁରାଣ ବାକ୍ୟ ଯଥା -

ଅୟଂ ନାରାୟଣୋ ଗୌରୀ ଜଗନ୍ମାତା ସନାତନଃ

ବିଭଜ୍ୟ ସଂସ୍ଥିତୋ ଦେବଃ ସ୍ୱାତ୍ମାନଂ ବହୁଧେଶ୍ୱରଃ

ନ ମେ ବିଦୁଃ ପରଂ ମତ୍ତଂ ଦେବାଦ୍ୟା ନ ମହର୍ଷୟଃ

ଏକୋଽୟଂ ଦେବଦେବାତ୍ମା ଭବାନୀ ବିଷ୍ଣୁରେବ ଚ

ଅହଂ ହି ନିଷ୍କ୍ରିୟଃ ଶାନ୍ତଃ କେବଲୋ ନିଷ୍ପରିଗ୍ରହଃ

ମାମେବ କେଶବଂ ଦେବମାହୁର୍ଦେବୀମଥାମ୍ବିକାମ୍ ।କୂର୍ମପୁରାଣ-୧/୧୪

ଶାବ୍ଦିକ ବ୍ୟୁତ୍ପତ୍ତି ଦୃଷ୍ଟିରୁ ମଧ୍ୟ ହରିହରଙ୍କର ଅଭିନ୍ନତ୍ୱ ଯଥା- ହରତି ପାପାନି - ଇତି ହରଃ (ହୃଧାତୁରୁ ଅଚ୍ ପ୍ରତ୍ୟୟ ଦ୍ୱାରା ନିଷ୍ପନ୍ନ), ସେମିତି ହରତି ପାପାନି ଇତି ହରିଃ (ହୃଧାତୁରୁ ଉଣାଦିସିଦ୍ଧ) । ଏଣୁ ଉଭୟେ ସମସ୍ତ ଜୀବମାନଙ୍କର ପାପାଦି ସର୍ବବିଧ ଦୁଃଖକଷ୍ଟ ନିବାରଣ କରିବାପାଇଁ ହିଁ ବିଭିନ୍ନ ଅବତାର ବା ମୂର୍ତ୍ତି ଅଥବା ପ୍ରତୀକାତ୍ମକ ଲିଙ୍ଗାଦି ପ୍ରତିମାରୂପରେ ଆମ ଆଗରେ ଆବିର୍ଭୂତ ।

**ରୁଦ୍ର ତତ୍ତ୍ୱ -**

ଶିବଙ୍କ ଅନେକ ନାମ ଭିତରୁ ଅନ୍ୟତମ ପ୍ରସିଦ୍ଧ ନାମ ରୁଦ୍ର । ଏହି ରୁଦ୍ର ନାମରେ ଗୋଟିଏ ପୌରାଣିକ ରହସ୍ୟ ସମନ୍ୱିତ । କଳ୍ପର ଅବସାନ ପରେ ସଂସାର ସୃଷ୍ଟିକ୍ରମରେ ଜୀବଜଗତର ସୃଷ୍ଟିନିମିତ୍ତ ପରମେଶ୍ୱର ତପସ୍ୟାରତ ଥିଲେ । ଦୀର୍ଘ ସମୟ ଧରି କଠୋର ତପସ୍ୟାରତ ଅବସ୍ଥାରେ ହଠାତ୍ ତାଙ୍କ ଆଖିରୁ ଅଶ୍ରୁବିନ୍ଦୁମାନ ନିର୍ଗତ ହେଲା ଏବଂ ମୁଖରୁ ଏକ ମୂର୍ତ୍ତି ମଧ୍ୟ ଆବିର୍ଭୁତ ହେଲେ । ନିର୍ଗତ ଅଶ୍ରୁବିନ୍ଦୁ ଗୁଡ଼ିକ ଭୂତ, ପ୍ରେତ, ପିଶାଚଗଣରୂପରେ ରୂପାନ୍ତରିତ ହେଲେ ଏବଂ ରୋଦନ ମୂର୍ତ୍ତିକୁ ବ୍ରହ୍ମା ରୁଦ୍ର ନାମରେ ନାମିତକଲେ । ଏ ବିଷୟରେ କୂର୍ମପୁରାଣ ବାକ୍ୟ ଯଥା–

ରୁରୋଦ ସମ୍ଭସ୍ଵରଂ ଘୋରଂ ଦେବଦେବଃ ସ୍ଵୟଂଶିବଃ
ରୋଦମାନଂ ତଦା ବ୍ରହ୍ମା ମାରୋଦୀରିତ୍ୟଭାଷତ
ରୋଦନାଦ୍ରୁଦ୍ର ଇତ୍ୟେବଂ ଲୋକେ ଖ୍ୟାତିଂ ଗମିଷ୍ୟସି ।

କୂର୍ମପୁରାଣ-ଅଧ୍ୟାୟ ୧୦ମ

ପଦ୍ମପୁରାଣରେ ମଧ୍ୟ–

ଭ୍ରୁବୋର୍ମଧ୍ୟାଦଥୋଦ୍‌ଭୂତଃ କୁମାରୋ ନୀଳଲୋହିତଃ
ଜାତମାତ୍ରକୁମାରୋଽସୌ ରୁରୋଦ ଭଗବାନ୍ ଭବଃ
ଜାତମାତ୍ର ! ରୋଦିଷି ତ୍ୱଂ ତତୋ ରୁଦ୍ର ଇତି ସ୍ମୃତଃ ।

-ପଦ୍ମପୁରାଣ, ସ୍ଵର୍ଗଖଣ୍ଡ, ରୁଦ୍ରସର୍ଗ ୮ମ ଅଧ୍ୟାୟ

## ଅଭିଷେକ (ସର୍ବାଙ୍ଗ ସ୍ନାନ)-

ଆମ ପୂଜା ପରମ୍ପରାରେ ପ୍ରସିଦ୍ଧି ଅଛି ଯେ ବିଷ୍ଣୁ ଉପଚାରପ୍ରିୟ, ମାତ୍ର ରୁଦ୍ର ଅଭିଷେକପ୍ରିୟ । ଅଭିଷେକ ଶବ୍ଦର ପ୍ରମୁଖ ଅର୍ଥ ସର୍ବାଙ୍ଗ ସ୍ନାନ । (ଅଭି+ସିଚ୍=ସେଚନେ+ଭାବେ ଘଞ୍) । ଏଠାରେ ଉଲ୍ଲେଖ ଯୋଗ୍ୟ ଯେ ଆମ ଶାସ୍ତ୍ରୀୟ ପରମ୍ପରାରେ ମୂର୍ତ୍ତି ବା ପ୍ରତିମା ଆଠପ୍ରକାରର ହୋଇଥାଆନ୍ତି ଯଥା–

'ଶୈଳୀ ଦାରୁମୟୀ ଲୌହୀ ଲେପ୍ୟା ଲେଖ୍ୟା ଚ ସୈକତୀ
ମନୋମୟୀ ମଣିମୟୀ ପ୍ରତିମା ଅଷ୍ଟବିଧାଃ ସ୍ମୃତାଃ ।'

ଏପରି ଆଠପ୍ରକାର ମୂର୍ତ୍ତି ମଧ୍ୟରୁ ଲେପ୍ୟା (ପଟ୍ଟଚିତ୍ର ଆଦି), ଲେଖ୍ୟା (ଲେଖାଚିତ୍ର), ସୈକତୀ (ବାଲୁକା ନିର୍ମିତ) ଏବଂ ମନୋମୟୀ (ମନରେ ଆଙ୍କିଥିବା) ମୂର୍ତ୍ତିଙ୍କର ସାକ୍ଷାତ୍ ସ୍ନାନ ଅନୁଚିତ ଏବଂ ଅସମ୍ଭବ ହେତୁ କେତେକ ସ୍ଥଳରେ ଦର୍ପଣାଦିଗତ ପ୍ରତିବିମ୍ବ ସ୍ନାନ ଶାସ୍ତ୍ର ବିହିତ । ତଥାପି ଦାରୁମୟୀ ପ୍ରତିମା ଯଥା ଶ୍ରୀକ୍ଷେତ୍ରାଧିପତି ଶ୍ରୀ ବିଗ୍ରହମାନଙ୍କର ବର୍ଷକୁ ଥରେ ମାତ୍ର ଜ୍ୟେଷ୍ଠପୂର୍ଣ୍ଣିମା ତିଥିରେ ସର୍ବାଙ୍ଗ ସ୍ନାନ ବା ଜଳାଭିଷେକ କରାଯାଏ । ଅନ୍ୟଦିନମାନଙ୍କରେ ତାଙ୍କର ମଧ୍ୟ ପ୍ରତିବିମ୍ବ ସ୍ନାନ ପ୍ରଚଳିତ । ଏତଦ୍‌ବ୍ୟତୀତ ଶାଳଗ୍ରାମଶିଳା ଓ ଧାତବମୂର୍ତ୍ତି ମାନଙ୍କର ପଞ୍ଚାମୃତରେ ଅଥବା ଜଳଦ୍ୱାରା ନିତ୍ୟସ୍ନାନ କରାଯାଉଥିଲେ

ମଧ୍ୟ ଅଭିଷେକ ପଦରେ ପ୍ରାୟଶଃ କେବଳ ରୁଦ୍ରାଭିଷେକକୁ ହିଁ ବୁଝାଯାଇଥାଏ । ତ୍ରିତାପଦଗ୍ଧ ସମସ୍ତ ସାଂସାରିକଙ୍କ ପାଇଁ ରୁଦ୍ରାଭିଷେକର ଫଳ ଅତ୍ୟନ୍ତ ମହତ୍ୱପୂର୍ଣ୍ଣ । ଏହାର ମହିମା ବିଷୟ ଶାସ୍ତ୍ରରେ ଯଥା–

'ଅଗ୍ନିଦାହାତ୍ ସୁରାପାନାଦକୃତ୍ୟାଚରଣାତ୍ତଥା,
ସୁବର୍ଣ୍ଣହରଣାଚ୍ଚୈବ ବୃଷଳୀଗମନାତ୍ତଥା
ବ୍ରହ୍ମହତ୍ୟାଦିକାତ୍ ପାପାଚ୍ଛତରୁଦ୍ରୀୟପାଠତଃ,
ସୁନିସ୍ତେର୍ଯ୍ୟେବ ଗଚ୍ଛନ୍ତି ବ୍ରାହ୍ମଣାଃ ଶିବସନ୍ନିଧୌ ।'

ଅର୍ଥାତ୍ ଅଗ୍ନିଦାହ, ମଦ୍ୟପାନ, ଅନୈତିକ ଆଚରଣ, ସୁବର୍ଣ୍ଣଚୋରୀ, ପରସ୍ତ୍ରୀଗମନ, ବ୍ରହ୍ମହତ୍ୟା ଇତ୍ୟାଦି କୁକର୍ମଜନିତ ପାପଗୁଡ଼ିକରୁ ଶତରୁଦ୍ରୀ ପାଠ କରିବା ସହିତ ରୁଦ୍ରାଭିଷେକ କରିବାଦ୍ୱାରା ବ୍ରାହ୍ମଣମାନେ ରକ୍ଷା ପାଇଥାଆନ୍ତି ।

ରୁଦ୍ରାଭିଷେକ ପଦ୍ଧତି ଦେଶାଚାର ଓ ଶାସ୍ତ୍ରାଚାର ଅନୁସାରେ ପ୍ରମୁଖତଃ ପାଞ୍ଚପ୍ରକାରର ପରିଲକ୍ଷିତ ହୁଏ ଯଥା- ରୂପ, ରୁଦ୍ରୀ, ଲଘୁରୁଦ୍ର, ମହାରୁଦ୍ର ଓ ଅତିରୁଦ୍ର । ଧନ, ମାନ, ଯଶ, ଆୟୁ, ଆରୋଗ୍ୟ, ପ୍ରତିଷ୍ଠାଦି ବିଭିନ୍ନ କାମନା ପୂର୍ତ୍ତିନିମିତ୍ତ ନିର୍ଦ୍ଦିଷ୍ଟ ରୁଦ୍ରାଭିଷେକ ଅନୁଷ୍ଠିତ ହୁଏ । ସେଥିପାଇଁ ନିର୍ଦ୍ଦିଷ୍ଟ ଦ୍ରବ୍ୟମାନ ମଧ୍ୟ ଯଥା ପଞ୍ଚାମୃତ ଆଦି ଦ୍ରବ୍ୟର ଉପଯୋଗ କରାଯାଏ ।

**ପାଞ୍ଚପ୍ରକାର ରୁଦ୍ରାଭିଷେକ** ଯଥା - (ସଂକ୍ଷେପରେ କେବଳ ମନ୍ତ୍ରମାନଙ୍କର ରୁଦ୍ରାଷ୍ଟାଧ୍ୟାୟୀରେ ଲିଖିତ ଅଧ୍ୟାୟ ଓ ସଂଖ୍ୟା ଅନୁସାରେ ଉଲ୍ଲେଖ କରାଯାଉଅଛି ।)

**ରୂପ-** (ରୂପ ଅର୍ଥାତ୍ ଶିବଙ୍କ ସ୍ୱରୂପ । ଏଥିରେ ମନ୍ତ୍ରମାନଙ୍କୁ ରୁଦ୍ରଙ୍କର ଛଅଗୋଟି ଅଙ୍ଗ ବା ସ୍ୱରୂପ ଭାବରେ ପରିଗଣନା କରାଯାଇଥିବାରୁ ଏହିପ୍ରକାର ରୁଦ୍ରାଭିଷେକକୁ ରୂପାଭିଷେକ ବୋଲି ପୁର୍ବଜମାନେ ଅଭିହିତ କରିଅଛନ୍ତି ।)

ପ୍ରଥମେ ହୃଦୟ ରୂପକ ଅଙ୍ଗ– ରୁଦ୍ରାଷ୍ଟାଧ୍ୟାୟୀର ୧ମ ଅଧ୍ୟାୟ (ସଂକଳ୍ପ ସୂକ୍ତ)ର ପ୍ରଥମ ୪ ଗୋଟି ମନ୍ତ୍ର (୧-ଗଣାନାଂତ୍ୱା.... ୨-ଗାୟତ୍ରୀ ତ୍ରିଷ୍ଟୁପ୍.... ୩-ଦ୍ୱିପଦା ଯା...., ୪-ସହସ୍ତୋମାଃ....) – ଏହା ଶିବଙ୍କର **ହୃଦୟରୂପ** । ଏହାପରେ ଶିବ ସଂକଳ୍ପ ମନ୍ତ୍ର - ଓଁ ଯଜ୍ଜାଗ୍ରତୋ ଦୂରମୁଦୈତି.... ଇତ୍ୟାଦି,

ପୁରୁଷସୂକ୍ତ ( ୨ୟ ଅଧ୍ୟାୟ) ର ୧ମ ମନ୍ତ୍ର ଓଁ ସହସ୍ରଶୀର୍ଷା ଠାରୁ ୧୬ଶ ତମ ମନ୍ତ୍ର - ଓଁ ଯଜ୍ଞେନ.... ଇତ୍ୟାଦି ପର୍ଯ୍ୟନ୍ତ ୧୬ଗୋଟି ମନ୍ତ୍ର ଯାହା ରୁଦ୍ରଙ୍କର **ଶିରସ୍ୱରୂପ** ।

– ପୁରୁଷ ସୂକ୍ତର ଅବଶିଷ୍ଟ ୧୭ତମ ଓଁ ଅଦ୍‌ଭ୍ୟଃ ସମ୍ଭୃତଃ.... ମନ୍ତ୍ରଠାରୁ ଅନ୍ତିମ ୨୨ଶ ତମ – ଓଁ ଶ୍ରୀଶ୍ଚତେ ଲକ୍ଷ୍ମୀଶ୍ଚ.... ମନ୍ତ୍ର ପର୍ଯ୍ୟନ୍ତ ରୁଦ୍ରଙ୍କର **ଶିଖାସ୍ୱରୂପ** ।

– ଅପ୍ରତିରଥ ସୂକ୍ତ (୩ୟ ଅଧ୍ୟାୟ) ର ୧ମ ଓଁ ଆଶୁଃ ଶିଶାନୋ.... ଠାରୁ ଅନ୍ତିମ ୧୭ଶତମ ମନ୍ତ୍ର ଓଁ ମର୍ମାଣି ତେ.... ପର୍ଯ୍ୟନ୍ତ ୧୭ ଗୋଟି ମନ୍ତ୍ର ରୁଦ୍ରଙ୍କର **କବଚସ୍ୱରୂପ** । ସୌରସୂକ୍ତ (୪ର୍ଥ ଅଧ୍ୟାୟ) ର ସମସ୍ତ ୧୭ଗୋଟି ମନ୍ତ୍ର ରୁଦ୍ରଙ୍କର **ନେତ୍ରସ୍ୱରୂପ** । ନୀଳସୂକ୍ତ (୫ମ ଅଧ୍ୟାୟ) ର ପ୍ରଥମ ମନ୍ତ୍ର ନମସ୍ତେ ରୁଦ୍ର.... ଠାରୁ ୧୬ଶ ତମ ମନ୍ତ୍ର ଓଁ ମାନସ୍ତୋକେ.... ପର୍ଯ୍ୟନ୍ତ ୧୬ ଗୋଟି ମନ୍ତ୍ର ରୁଦ୍ରଙ୍କର **ଅସ୍ତ୍ରସ୍ୱରୂପ** ।

ଏ ସମସ୍ତ ଷଡ଼ଙ୍ଗରୁଦ୍ରାତ୍ମକ ମନ୍ତ୍ର ବୋଲି ଅଭିହିତ । ଏହାପରେ ସମ୍ପୂର୍ଣ୍ଣ ନୀଳସୂକ୍ତ ୫ମାଧ୍ୟାୟ, ୬ଷ୍ଠାଧ୍ୟାୟର ୧ମ ମନ୍ତ୍ର ଓଁ ବୟଗୁଁ ସୋମବ୍ରତେ.... ଠାରୁ ୭ମ ମନ୍ତ୍ର ତ୍ର୍ୟାୟୁଷଂ.... ପର୍ଯ୍ୟନ୍ତ ଓ ପରେ ୭ମାଧ୍ୟାୟର ୧ମ ମନ୍ତ୍ର ଓଁ ଉଗ୍ରଶ୍ଚ ଭୀମଶ୍ଚ.... ଠାରୁ ୩ ଗୋଟି ମନ୍ତ୍ର ଅର୍ଥାତ୍ ଉଗ୍ରଁ ଲୋହିତେନ.... ଇତ୍ୟାଦି ପର୍ଯ୍ୟନ୍ତ ପାଠକରି ଶେଷରେ ଓଁ ଦ୍ୟୌଃ ଶାନ୍ତିଃ.... ଇତ୍ୟାଦି ଶାନ୍ତିମନ୍ତ୍ରପାଠଦ୍ୱାରା ରୁଦ୍ରାଭିଷେକ କରିବାକୁ **'ରୂପ'** ନାମକ ରୁଦ୍ରାଭିଷେକ କୁହାଯାଏ । ଏଥିରେ ମଧ୍ୟ କେତେକ ମତାନ୍ତର ପରିଲକ୍ଷିତ ହୁଏ ।

**ରୁଦ୍ରୀ–** ରୁଦ୍ରାଷ୍ଟାଧ୍ୟାୟୀ ଅନୁସାରେ ପୂର୍ବୋକ୍ତ 'ରୂପ' - ଅଭିଷେକ ର ଷଡ଼ଙ୍ଗ ସଂଜ୍ଞକ ମନ୍ତ୍ର, ନୀଳସୂକ୍ତ (୫ମାଧ୍ୟାୟ)ର ସମସ୍ତ ମନ୍ତ୍ରମାନଙ୍କର ୧୦ଥର ଆବୃତ୍ତି, ପୁଣି ଷଡ଼ଙ୍ଗ ସହିତ ନୀଳସୂକ୍ତର ଏକ ଆବୃତ୍ତି, ୬ଷ୍ଠାଧ୍ୟାୟର ଓଁ ବୟଗୁଁ ସୋମବ୍ରତେ.... ଠାରୁ ତ୍ର୍ୟାୟୁଷଂ ଜମଦଗ୍ନେଃ.... ଇତ୍ୟାଦି ୭ଗୋଟି ମନ୍ତ୍ର ପରେ କାଣ୍ୱ ଶାଖା ଅନୁସାରେ ଶୁକ୍ଳଯଜୁର୍ବେଦର ୧୯ତମ ଅଧ୍ୟାୟର ୧ମ ମନ୍ତ୍ର ଯଥା– ଓଁ ଇମଗୁଁ ସ୍ତନମୂର୍ଜସନ୍ତଂ.... ଠାରୁ ଆରମ୍ଭକରି ୪୩ତମ ମନ୍ତ୍ର– ସ୍ତୋମଶ୍ଚ ଯଜୁଶ୍ଚ.... ଇତ୍ୟାଦି ମନ୍ତ୍ର ପର୍ଯ୍ୟନ୍ତ ସମଗ୍ର ଅଧ୍ୟାୟର ୪୩ଟି ମନ୍ତ୍ରଦ୍ୱାରା ଅଭିଷେକ

କରି ଶେଷରେ (ରୁଦ୍ରାଷ୍ଟାଧ୍ୟାୟୀ ଅନୁସାରେ) ଶାନ୍ତ୍ୟଧ୍ୟାୟ ଅର୍ଥାତ୍ ୯ମ ଅଧ୍ୟାୟର (ଋଚଂ ବାଚମ୍....) ସମସ୍ତ ୨୪ଗୋଟି ମନ୍ତ୍ରମାନଙ୍କର ଆବୃତ୍ତିଦ୍ୱାରା ଅଭିଷେକ କରାଯାଏ । ଏହା **'ରୁଦ୍ରୀ'** ନାମକ ଦ୍ୱିତୀୟ ପ୍ରକାର ରୁଦ୍ରାଭିଷେକର ପ୍ରକାର ଭେଦ।

**ଲଘୁରୁଦ୍ର–** ପୂର୍ବୋକ୍ତ (ରୂପ ଅଭିଷେକ ପ୍ରକାର) ଷଡ଼ଙ୍ଗ ମନ୍ତ୍ରମାନଙ୍କ ସହିତ ନୀଳସୂକ୍ତ (ରୁଦ୍ରାଷ୍ଟାଧ୍ୟାୟୀ ଅନୁସାରେ ୫ମ ଅଧ୍ୟାୟ)ର ସମସ୍ତ ମନ୍ତ୍ର ସହିତ ୮ମାଧ୍ୟାୟ (ବାଜଶ୍ଚମେ ପ୍ରସବଶ୍ଚମେ....) ର ପ୍ରଥମ ୪ ଗୋଟି ମନ୍ତ୍ର, ଏହାପରେ ପୁଣି ନୀଳସୂକ୍ତର ସମସ୍ତ ମନ୍ତ୍ର, ୮ମାଧ୍ୟାୟର ୫ମ, ୬ଷ୍ଠ, ୭ମ ଓ ୮ମ (ସତ୍ୟଂ ଚ ମେ.... ଠାରୁ ଶଂଚ ମେ....) ଏହିଭଳି ୪ଟି ମନ୍ତ୍ର, ୩ୟଥର ପୁଣି ସମଗ୍ର ନୀଳସୂକ୍ତ, ୮ମ ଅଧ୍ୟାୟର ୯ମ, ୧୦ମ, ୧୧ଶ ଓ ୧୨ଶ (ଉର୍କ ଚ ମେ.... ଠାରୁ ବ୍ରୀହୟଶ୍ଚ ମେ.... ପର୍ଯ୍ୟନ୍ତ) ୪ଟି ମନ୍ତ୍ର, ୪ର୍ଥ ଥର ପୁଣି ନୀଳସୂକ୍ତର ସମସ୍ତ ମନ୍ତ୍ର ସହିତ ୮ମ ଅଧ୍ୟାୟର ୧୩ଶ, ୧୪ଶ, ୧୫ଶ (ଅଶ୍ମା ଚ ମେ.... ଠାରୁ ବସୁ ଚ ମେ.... ପର୍ଯ୍ୟନ୍ତ) ୩ଟି ମନ୍ତ୍ର, ୫ମଥର ନୀଳସୂକ୍ତ ସହ ୮ମ ଅଧ୍ୟାୟର ୧୬ଶ, ୧୭ଶ, ୧୮ଶ (ଅଗ୍ନିଶ୍ଚ ମେ.... ଠାରୁ ପୃଥିବୀ ଚ ମେ ପର୍ଯ୍ୟନ୍ତ ୩ଟି ମନ୍ତ୍ର), ୬ଷ୍ଠ ଥର ନୀଳସୂକ୍ତ ସହ ୮ମ ଅଧ୍ୟାୟର ୧୯ଶ, ୨୦ଶ, ୨୧ଶ, ୨୨ଶ ଓ ୨୩ଶ (ଅଗୁଁଶୁଶ୍ଚ ମେ.... ଠାରୁ ବ୍ରତଂ ଚ ମେ.... ପର୍ଯ୍ୟନ୍ତ) ୫ଟି ମନ୍ତ୍ର, ୭ମ ଥର ନୀଳସୂକ୍ତ ସହ ୮ମ ଅଧ୍ୟାୟର ୨୪ଶ, ୨୫ଶ, ୨୬ଶ, ୨୭ଶ (ଏକାଚମେ.... ଠାରୁ ପଷ୍ଠ୍ୱାଟ୍ ଚ ମେ.... ପର୍ଯ୍ୟନ୍ତ) ୪ଟି ମନ୍ତ୍ର, ୮ମଥର ନୀଳସୂକ୍ତ ସହ ୮ମ ଅଧ୍ୟାୟର ବାଜାୟ ସ୍ୱାହା.... ଓ ଆୟୁର୍ଯଜ୍ଞେନ.... ଇତ୍ୟାଦି ମନ୍ତ୍ରଦ୍ୱୟ, ୯ମ ଥର ମଧ୍ୟ ନୀଳସୂକ୍ତ ସହିତ ବାଜାୟ ସ୍ୱାହା ଓ ଆୟୁର୍ଯଜ୍ଞେନ.... ମନ୍ତ୍ରଦ୍ୱୟ, ୧୦ମ ଥର ମଧ୍ୟ ୯ମ ଥର ଭଳି ନୀଳସୂକ୍ତ ଓ ବାଜାୟ ସ୍ୱାହା.... ଓ ଆୟୁର୍ଯଜ୍ଞେନ.... ଇତ୍ୟାଦି ମନ୍ତ୍ରଦ୍ୱୟ ଏବଂ ୧୧ଶ ଥର କେବଳ ନୀଳସୂକ୍ତକୁ ଆବୃତ୍ତି କଲେ **ଲଘୁରୁଦ୍ର** ସଂଜ୍ଞକ ରୁଦ୍ରାଭିଷେକର ସମାପ୍ତି ଘଟିବ ।

**ମହାରୁଦ୍ର –** ଲଘୁରୁଦ୍ର ଅଭିଷେକରେ ଯେଉଁ ସମସ୍ତ ମନ୍ତ୍ରମାନଙ୍କ ଆବୃତ୍ତିଦ୍ୱାରା ଅଭିଷେକ କରିବାର ବିଧାନ ଅଛି ସେ ସମସ୍ତକୁ ଏକାଦଶଥର ଆବୃତ୍ତି ସହିତ ଅଭିଷେକ କଲେ **ମହାରୁଦ୍ର** ଅଭିଷେକ ହୁଏ ।

**ଅତିରୁଦ୍ର–** ଉପରୋକ୍ତ ମହାରୁଦ୍ରର ୧୧ଶ ଆବୃତ୍ତି ଅର୍ଥାତ୍ ଲଘୁରୁଦ୍ର ମନ୍ତ୍ରମାନଙ୍କର ୧୨୧ଥର ଆବୃତ୍ତି କରି ରୁଦ୍ରାଭିଷେକ କରିବାକୁ **ଅତିରୁଦ୍ର** ଅଭିଷେକ କୁହାଯାଏ ।

ଅର୍ଥାତ୍ ଜଣେ ମାତ୍ର ପୂଜକ ବ୍ରାହ୍ମଣଙ୍କ ଦ୍ୱାରା **ରୂପ** ନାମକ ରୁଦ୍ରାଭିଷେକ, **ରୁଦ୍ରୀ** ପାଇଁ ଏକାଦଶ ସଂଖ୍ୟକ ପୂଜକଙ୍କ ଦ୍ୱାରା ସକୃଦାବୃତ୍ତିରେ, **ଲଘୁରୁଦ୍ର** ଅଭିଷେକ ପାଇଁ ଏକାଦଶ ସଂଖ୍ୟକ ପୂଜକଙ୍କ ଦ୍ୱାରା ପ୍ରତ୍ୟେକେ ଏକାଦଶଥର କରି ଆବୃତ୍ତିରେ, **ମହାରୁଦ୍ର** ଅଭିଷେକ ପାଇଁ ଏକାଦଶ ପୂଜକଙ୍କ ଦ୍ୱାରା ପ୍ରତ୍ୟେକେ ୧୨୧ଥର ଆବୃତ୍ତି ଏବଂ **ଅତିରୁଦ୍ର** ଅଭିଷେକ ପାଇଁ ଏକାଦଶ ପୂଜକଙ୍କ ଦ୍ୱାରା ୧୩୩୧ ଥର ଅଥବା ୧୨୧ଜଣ ପୂଜକଙ୍କଦ୍ୱାରା ପ୍ରତ୍ୟେକେ ୧୧ଥର ଆବୃତ୍ତି କରି ରୁଦ୍ରାଭିଷେକ କଲେ ତାହା ସମ୍ପନ୍ନ ହୁଏ । ଏ ବିଷୟରେ ମଧ୍ୟ ଆଚାର୍ଯ୍ୟଙ୍କ ମଧ୍ୟରେ ମତାନ୍ତର ଅଛି ଯେପରି ଲଘୁରୁଦ୍ର, ମହାରୁଦ୍ର ଓ ଅତିରୁଦ୍ର ଅଭିଷେକ ପାଇଁ 'ରୂପ' ନାମକ ଅଭିଷେକରେ ଯେଉଁ ସମସ୍ତ ମନ୍ତ୍ର ମାନଙ୍କର ଆବୃତ୍ତି ହୁଏ, ତାହାର ରୁଦ୍ରୀ, ଲଘୁରୁଦ୍ର, ମହାରୁଦ୍ର ଓ ଅତିରୁଦ୍ର ନିମିତ୍ତ କ୍ରମଶଃ ୧୧ ଥର, ୧୨୧ ଥର, ୧୩୩୧ ଥର, ୧୪୬୪୧ ଥର ଆବୃତ୍ତି ଏପରି ନକରି କେବଳ ନୀଳସୂକ୍ତର ଆବୃତ୍ତି ଦ୍ୱାରା କରାଯାଇପାରିବ ।

ଭକ୍ତ ବା ଯଜମାନର ମାନସିକ ପୂରଣ ପାଇଁ ରୁଦ୍ରାଭିଷେକ ବିଭିନ୍ନ ଉପଚାର ଦ୍ୱାରା କରାଯାଇଥାଏ । ସେଥିରୁ ପଞ୍ଚାମୃତ (ଦୁଧ, ଦହି, ଘିଅ, ମହୁ ଓ ଶର୍କରା ବା ଗୁଡ଼) ଦ୍ୱାରା ଅଭିଷେକ ସବୁଠାରୁ ପ୍ରଶସ୍ତ । ଏପରିକି ପଞ୍ଚାମୃତ ମଧ୍ୟରୁ ଏକ ଏକ ଅମୃତ ସ୍ୱରୂପ ଦ୍ରବ୍ୟ ଯଥା ଦୁଧ ଇତ୍ୟାଦି ଦ୍ୱାରା ମଧ୍ୟ ଅଭିଷେକ କରାଯାଇପାରିବ । ଶର୍କରା ସ୍ଥାନରେ କେତେକ ଆଖୁରସ ଦ୍ୱାରା ମଧ୍ୟ ଅଭିଷେକ କରିଥାଆନ୍ତି । ନାରିକେଳୋଦକ ଅର୍ଥାତ୍ ପଇଡ଼ ପାଣିରେ, ଭସ୍ମରେ (ଚିତା ଭସ୍ମ ଯଥା ଉଜ୍ଜୟିନୀର ମହାକାଳେଶ୍ୱରଙ୍କ ବ୍ରାହ୍ମମୁହୂର୍ତ୍ତରେ ନିତ୍ୟ ଭସ୍ମାଭିଷେକ), ତୈଳ ଇତ୍ୟାଦି ବିଭିନ୍ନ ଦ୍ରବ୍ୟ ଦ୍ୱାରା, ଏପରିକି ଐହିକ ଓ ପାରଲୌକିକ ଫଳପ୍ରାପ୍ତି ପାଇଁ ରୁଦ୍ରଙ୍କ ଅଭିଷେକ ଯଥା ମହୁ ଅଥବା ଘିଅ ଦ୍ୱାରା କଲେ ଧନପ୍ରାପ୍ତି, କ୍ଷୀରଦ୍ୱାରା ପୁତ୍ର ପ୍ରାପ୍ତି, ଦଧିରେ ପଶୁଧନ ପ୍ରାପ୍ତି, ତୀର୍ଥୋଦକଦ୍ୱାରା

ମୋକ୍ଷ ପ୍ରାପ୍ତି - ଏହିଭଳି ଦ୍ରବ୍ୟମାନ ଶାସ୍ତ୍ର ବିହିତ । ମାତ୍ର ଏ ସବୁ ସତ୍ତ୍ୱେ ପ୍ରତ୍ୟହ କେବଳ ଜଳଧାରା ଦ୍ୱାରା ଅଥବା କ୍ଷୀରଦ୍ୱାରା ମଧ୍ୟ ରୁଦ୍ରାଭିଷେକ ପ୍ରଚଳିତ । ଉଲ୍ଲେଖ ଯୋଗ୍ୟ ଯେ ଶିବରାତ୍ରିର ବିଶେଷ ପୂଜା ଅବସରରେ ସମଗ୍ର ରାତ୍ରିର ଚାରିପ୍ରହର ମଧ୍ୟରୁ ପ୍ରଥମ ପ୍ରହରରେ 'ଓଁ ହୌଂ ଈଶାନାୟ ନମଃ'- ଏହି ମନ୍ତ୍ରଦ୍ୱାରା ଈଶାନ ସଂଜ୍ଞକ ରୁଦ୍ରଙ୍କ ଉପାସନା ପ୍ରସଙ୍ଗରେ କ୍ଷୀର ସ୍ନାନ ବା ଅଭିଷେକ ଓ ଅର୍ଘ୍ୟଦାନ ବିହିତ ଅଛି । ସେହିପରି ୨ୟ ପ୍ରହରରେ ଅଭିମନ୍ତ୍ରିତ ଦଧିଦ୍ୱାରା 'ଓଁ ହୌଂ ଅଘୋରାୟ ନମଃ' - ଏହି ମନ୍ତ୍ରଦ୍ୱାରା ଅଭିଷେକ ଓ ଅର୍ଘ୍ୟଦାନ କରାଯାଏ । ୩ୟ ପ୍ରହରରେ ଅଭିମନ୍ତ୍ରିତ ଘୃତଦ୍ୱାରା - 'ଓଁ ହୌଂ ବାମଦେବାୟ ନମଃ' - ମନ୍ତ୍ରରେ ଘୃତସ୍ନାନ ବା ଅଭିଷେକ ଓ ଅର୍ଘ୍ୟପ୍ରଦାନ, ୪ର୍ଥ ପ୍ରହରରେ ଅଭିମନ୍ତ୍ରିତ ମଧୁଦ୍ୱାରା 'ଓଁ ସଦ୍ୟୋଜାତାୟ ନମଃ.... ମନ୍ତ୍ରରେ ଅଭିଷେକ, ଅର୍ଘ୍ୟଦାନ ଇତ୍ୟାଦି ବିହିତ । ଏତଦ୍‌ବ୍ୟତୀତ ପ୍ରତିପ୍ରହରରେ ନିର୍ଦ୍ଦିଷ୍ଟ ଧ୍ୟାନ ଓ ମନ୍ତ୍ର ଜପ ଦ୍ୱାରା ରାତ୍ରିବ୍ୟାପୀ ଅଖଣ୍ଡଦୀପ ଜାଳି ଜାଗରବ୍ରତ ପାଳନ କରିବାର ବିଧିଅଛି । ଦିବାରାତ୍ରି ନିରାହାର (ଉପବାସ) ରହି ସମଗ୍ର ରାତ୍ରି ଉଜାଗର ରହି ଶିବଙ୍କ ସନ୍ନିଧିରେ ଏକାଗ୍ର ଚିତ୍ତରେ ଅଖଣ୍ଡ ଦୀପ ଜାଳିବା ଦ୍ୱାରା ସମଗ୍ରବର୍ଷାବଧିକ ପ୍ରତ୍ୟହ ଶିବପୂଜାର ଫଳପ୍ରାପ୍ତି ହୁଏ ବୋଲି ଶିବ ପୁରାଣରେ ଉଲ୍ଲେଖ ଅଛି ।

ଆମ ଓଡ଼ିଶାରେ ତଥା ଓଡ଼ିଶାର ପଡ଼ୋଶୀରାଜ୍ୟ ପଶ୍ଚିମବଙ୍ଗ ଓ ଆସାମ ପ୍ରଭୃତି ରାଜ୍ୟରେ ରୁଦ୍ରାଷ୍ଟାଧ୍ୟାୟୀ ବା ଶତରୁଦ୍ରୀୟ ମନ୍ତ୍ରଦ୍ୱାରା ରୁଦ୍ରାଭିଷେକ କରିବାର ପରମ୍ପରା ପ୍ରଚଳିତ ଅଛି । ରୁଦ୍ରାଷ୍ଟାଧ୍ୟାୟୀ ଅର୍ଥାତ୍ ଶୁକ୍ଳ ଯଜୁର୍ବେଦ ସଂହିତାରୁ ସଂଗୃହୀତ ରୁଦ୍ରାଷ୍ଟାଧ୍ୟାୟୀ ଗ୍ରନ୍ଥରେ ବସ୍ତୁତଃ ଦଶଗୋଟି ଅଧ୍ୟାୟ ରହିଅଛି । ଏହି ଦଶଗୋଟି ଅଧ୍ୟାୟରୁ ପ୍ରଥମାଧ୍ୟାୟ ସଂକଳ୍ପ ସୂକ୍ତାଧ୍ୟାୟ ଓ ଅନ୍ତିମ ୧୦ମାଧ୍ୟାୟକୁ ସ୍ୱସ୍ତିପ୍ରାର୍ଥନାଧ୍ୟାୟ ରୂପରେ ଅଭିହିତ କରାଯାଏ । ଏଣୁ ଏହି ବହିରଙ୍ଗ ସ୍ୱରୂପ ଆଦିମ ଓ ଅନ୍ତିମ ଅଧ୍ୟାୟ ଦ୍ୱୟ ସହିତ ଅନ୍ତରଙ୍ଗ ସ୍ୱରୂପ ୨ୟାଧ୍ୟାୟରୁ ୯ମାଧ୍ୟାୟର ଅନ୍ତର୍ଗତ ମନ୍ତ୍ରମାନଙ୍କ ଦ୍ୱାରା କରାଯାଉଥିବା ରୁଦ୍ରାଭିଷେକ ଅଥବା ଆବୃତ୍ତିକୁ ରୁଦ୍ରାଷ୍ଟାଧ୍ୟାୟୀ ବୋଲି କୁହାଯାଏ । ସେହିପରି ଶତରୁଦ୍ରୀ ଅର୍ଥାତ୍ ଶହେଗୋଟି

ବିଶେଷ ମନ୍ତ୍ରରେ ଅଭିଷେକ ବା ସେହି ମନ୍ତ୍ରମାନଙ୍କ ଆବୃତ୍ତିକୁ ଶତରୁଦ୍ରୀ ବୋଲି କୁହାଯାଏ । ଏ ବିଷୟରେ ମତଭେଦ ମଧ୍ୟ ରହି ଆସିଅଛି । କେତେକଙ୍କ ମତରେ ଶୁକ୍ଳ ଯଜୁର୍ବେଦର ବାଜସନେୟୀ ସଂହିତାନ୍ତର୍ଗତ ମାଧ୍ୟନ୍ଦିନ ଶାଖାନୁସାରେ ରୁଦ୍ରାଷ୍ଟାଧ୍ୟାୟୀର ୫ମାଧ୍ୟାୟ ଯାହାକୁ ନୀଳସୂକ୍ତ ବା ରୁଦ୍ରସୂକ୍ତ ବୋଲି କୁହାଯାଏ ସେଥିରେ ଶିବଙ୍କର ଚତୁର୍ଥୀ ବିଭକ୍ତ୍ୟନ୍ତ ଶହେଗୋଟି ନାମ ଥିବା ହେତୁ କେବଳ ସେହି ମନ୍ତ୍ରମାନଙ୍କ ଦ୍ୱାରା ଅଭିଷେକ କଲେ ତାହା **ଶତରୁଦ୍ରୀ** ଅଭିଷେକ ହୁଏ । ଅନ୍ୟ କେତେକଙ୍କ ମତାନୁସାରେ ଶୁକ୍ଳ ଯଜୁର୍ବେଦର କାଣ୍ୱଶାଖାନ୍ତର୍ଗତ ବିଭିନ୍ନ ଅଧ୍ୟାୟ ମାନଙ୍କରୁ ସଂଗୃହୀତ ଶହେ ମନ୍ତ୍ରଦ୍ୱାରା ଅନୁଷ୍ଠିତ ଅଭିଷେକକୁ **ଶତରୁଦ୍ରୀ** ବୋଲି କୁହାଯାଏ । ଏଣୁ ଏହି ଗ୍ରନ୍ଥରେ ମାଧ୍ୟନ୍ଦିନ ଶାଖା ଓ କାଣ୍ୱଶାଖା ମଧ୍ୟରେ ଥିବା ମନ୍ତ୍ରଗତ ପ୍ରଭେଦକୁ ଦୃଷ୍ଟିରେ ରଖି ଦୁଇପ୍ରକାର ରୁଦ୍ରାଭିଷେକ ପଦ୍ଧତି ତଥା କାଣ୍ୱଶାଖୀୟ 'ଶତରୁଦ୍ରୀ' ମନ୍ତ୍ରମାନଙ୍କର ଭାବାର୍ଥ ସହିତ ଉପନିବଦ୍ଧ କରାଯାଇଅଛି । ଯାହା ପୁରୋହିତ ବା ଶିବୋପାସକ ତଥା ମନ୍ତ୍ର ଆବୃତ୍ତିକାରଙ୍କ ପାଇଁ ସହଜ ସାଧ୍ୟ ହେବ ।

—×—

## ସନ୍ଧ୍ୟାପଦ୍ଧତି

**ସନ୍ଧ୍ୟାର ଆବଶ୍ୟକତା, ନିୟମ ଓ ଫଳ :-**

ଆଚାର୍ଯ୍ୟ ମନୁଙ୍କ ମତରେ –

ଯୋଽନ୍ୟତ୍ର କୁରୁତେ ଯତ୍ନଂ ଧର୍ମକାର୍ଯ୍ୟେ ଦ୍ୱିଜୋତ୍ତମ ।
ବିହାୟ ସନ୍ଧ୍ୟାଂ ପ୍ରଣତିଂ ସ ଯାତି ନରକାୟୁତମ୍ ॥

ଆଚାର୍ଯ୍ୟ ଦକ୍ଷଙ୍କ ମତରେ –

ନୋପତିଷ୍ଠତି ଚ ଯଃ ପୂର୍ବାଂ ନୋପାସ୍ତେ ଯଶ୍ଚ ପଶ୍ଚିମାମ୍ ।
ସ ଶୂଦ୍ରବଦ୍ ବହିଷ୍କାର୍ଯ୍ୟଃ ସର୍ବସ୍ମାଦ୍ ଦ୍ୱିଜକର୍ମଣଃ ॥

ଆଚାର୍ଯ୍ୟଯମଙ୍କ ମତରେ –

ଏତତ୍ ସନ୍ଧ୍ୟାତ୍ରୟଂ ପ୍ରୋକ୍ତଂ ବ୍ରାହ୍ମଣ୍ୟଂ ଯନ୍ନ ଚେଷ୍ଟିତମ୍ ।
ଯସ୍ୟ ନାସ୍ତ୍ୟାଦରସ୍ତତ୍ର ନ ସ ବ୍ରାହ୍ମଣ ଉଚ୍ୟତେ ॥

ସନ୍ଧ୍ୟାମୁପାସତେ ଯେ ଚ ସତତଂ ସଂଶିତବ୍ରତାଃ ।
ନିର୍ଦ୍ଧୁତପାତକାଃ ଯାନ୍ତି ବ୍ରହ୍ମଲୋକଂ ସନାତନମ୍ ॥
ପ୍ରାତଃ ସ୍ନାତ୍ୱା ତୁ ଯୋ ବିପ୍ରଃ ସନ୍ଧ୍ୟୋପାସନତତ୍ପରଃ ।
ସପ୍ତଜନ୍ମାର୍ଜିତଂ ପାପଂ ତ୍ରିଭିର୍ବର୍ଷୈଃ ବ୍ୟପୋହତି ॥

ବିଷ୍ଣୁପୁରାଣରେ – ତସ୍ମାଦନୁଦିତେ ସୂର୍ଯ୍ୟେ ସମୁତ୍ଥାୟ ମହୀପତେ ।
ଉପତିଷ୍ଠନ୍ନରଃ ସନ୍ଧ୍ୟାଂ ସସୂର୍ଯ୍ୟାଞ୍ଚ ଦିନାନ୍ତଜାମ୍ ।
ଉପତିଷ୍ଠନ୍ତି ବୈ ସନ୍ଧ୍ୟାଂ ଯେ ନ ପୂର୍ବାଂ ନ ପଶ୍ଚିମାମ୍ ।
ବ୍ରଜନ୍ତି ତେ ଦୁରାତ୍ମାନସ୍ତାମିସ୍ରଂ ନରକଂ ନୃପ ।

ବ୍ରହ୍ମ ବୈବର୍ତ୍ତ ପୁରାଣରେ –
ଯାବଜ୍ଜୀବନପର୍ଯ୍ୟନ୍ତଂ ଯସ୍ତ୍ରିସନ୍ଧ୍ୟାଂ କରୋତି ଚ ।
ସ ଚ ସୂର୍ଯ୍ୟସମୋ ବିପ୍ରସ୍ତେଜସା ତପସା ସଦା ॥
ତତ୍ପାଦପଦ୍ମରଜସା ସଦ୍ୟଃ ପୂତା ବସୁନ୍ଧରା ।
ଜୀବନ୍ମୁକ୍ତଃ ସ ତେଜସ୍ୱୀ ସନ୍ଧ୍ୟାପୂତୋ ହି ଯୋ ଦ୍ୱିଜଃ ॥
ତୀର୍ଥାନି ଚ ପବିତ୍ରାଣି ତସ୍ୟ ସଂସ୍ପର୍ଶମାତ୍ରତଃ ।
ତତଃ ପାପାନି ଯାନ୍ତ୍ୟେବ ବୈନତେୟାଦିବୋରଗାଃ ॥
ନିତ୍ୟଂ ନିତ୍ୟଂ ତ୍ରିସନ୍ଧ୍ୟାଞ୍ଚ କରିଷ୍ୟସି ଦିନେ ଦିନେ ।
ମଧ୍ୟାହ୍ନେ ଚାପି ସାୟାହ୍ନେ ପ୍ରାତରେବ ଶୁଚିଃ ସଦା ॥

ବହ୍ନିପୁରାଣରେ– ସାୟଂ ପ୍ରାତଶ୍ଚ ଯଃ ସନ୍ଧ୍ୟାମୁପାସ୍ତେ ଶ୍ରଦ୍ଧାବାନ୍ ନରଃ ।
ଜପନ୍ ହି ପାବନୀଂ ଦେବୀଂ ଗାୟତ୍ରୀଂ ବେଦମାତରମ୍ ॥
ତପସା ଭାବିତୋ ଦେବ୍ୟା ବ୍ରାହ୍ମଣଃ ପୂତକିଲ୍ବିଷଃ ।
ନ ସୀଦେତ୍ ପ୍ରତିଗୃହ୍ଣାନୋ ଅପି ପୃଥ୍ୱୀଂ ସସାଗରାମ୍ ॥
ଯେ ଚାନ୍ୟେ ଦାରୁଣାଃ କେଚିଦ୍ଗ୍ରହାଃ ସୂର୍ଯ୍ୟାଦୟୋ ଦିବି ।
ତେ ଚାସ୍ୟ ସୌମ୍ୟତାଂ ଯାନ୍ତି ଶିବାଃ ଶିବତରାସ୍ତଥା ॥
ସଂକ୍ରାନ୍ତ୍ୟାଂ ପକ୍ଷୟୋରନ୍ତେ ଦ୍ୱାଦଶ୍ୟାଂ ଶ୍ରାଦ୍ଧବାସରେ ।
ସାୟଂ ସନ୍ଧ୍ୟାଂ ନ କୁର୍ବୀତ କୃତେ ଚ ପିତୃହା ଭବେତ୍ ॥

ଏଥିରୁ ସ୍ପଷ୍ଟ ଭାବରେ ଜଣା ଯାଉଅଛି ଯେ ତ୍ରିସନ୍ଧ୍ୟା ଆଚରଣ ଏଭଳି ଏକ ନିତ୍ୟକର୍ମ ଯାହା କଲେ ସ୍ୱତନ୍ତ୍ର ଫଳ ଲାଭ ନ ହୋଇପାରେ ମାତ୍ର ନକଲେ କ୍ଷତି ଅବଶ୍ୟ ଘଟିବ । ଯେମିତି ଆମେ ପ୍ରତିଦିନ ସକାଳୁ ଉଠି ମଳମୂତ୍ର ତ୍ୟାଗ ତଥା ସ୍ନାନାଦି ଶରୀର ସମ୍ପର୍କୀୟ ଶୁଦ୍ଧିତାପାଇଁ ପ୍ରାତ୍ୟହିକ ନିତ୍ୟକର୍ମ କରିଥାଉ ଏହାଦ୍ୱାରା ହୁଏତ ଧନ-ଜନ-ଯଶ ଭଳି ଲୌକିକ ଫଳ ପ୍ରାପ୍ତି ସାକ୍ଷାତ୍ ନ ହୋଇପାରେ କିନ୍ତୁ ତାହା ନ କଲେ ନିଶ୍ଚିତ ଅସୁସ୍ଥତା ବା ରୋଗକୁ ଆବାହନ କରିବା ଭଳି - ଏହା ସମସ୍ତଙ୍କ ଅନୁଭବ ସିଦ୍ଧ । ଠିକ୍ ସେହିପରି ସନ୍ଧ୍ୟାବନ୍ଦନାଦି କର୍ମ । ଏଣୁ ଶାସ୍ତ୍ରରେ କୁହାଯାଇଅଛି - 'କରଣେ ଫଳଂ ନାସ୍ତି, ଅକରଣେ ପ୍ରତ୍ୟବାୟଃ' । ଆଜିକାଲି କିନ୍ତୁ ସମୟର ତଥାକଥିତ ଅଭାବ ଓ କାର୍ଯ୍ୟବ୍ୟସ୍ତତା ହେତୁ ଅଗତ୍ୟା 'ସର୍ବନାଶେ ସମୁତ୍ପନ୍ନେ ଅର୍ଦ୍ଧଂ ତ୍ୟଜତି ପଣ୍ଡିତଃ' - ଏହି ନ୍ୟାୟରେ ତ୍ରିସନ୍ଧ୍ୟା ଅନିବାର୍ଯ୍ୟ ହୋଇଥିଲେ ମଧ୍ୟ ଆପାତତଃ ପ୍ରାତଃ ସନ୍ଧ୍ୟା ଏବଂ ସାୟଂ ସନ୍ଧ୍ୟା କରିବା ଏକାନ୍ତ ବିଧେୟ । ଏହା ମଧ୍ୟ ଯଦି ଅସମ୍ଭବ ହୁଏ ତା ହେଲେ ଅତ୍ୟନ୍ତାସକ୍ତ କ୍ଷେତ୍ରରେ ପ୍ରାତଃ ସନ୍ଧ୍ୟା ଅବଶ୍ୟ କର୍ତ୍ତବ୍ୟ ନ ହେଲେ ସେ ବ୍ରାହ୍ମଣ ପତିତ ପଦବାଚ୍ୟ ହେବେ । ଅଶୌଚ ସ୍ଥଳରେ ନିଷେଧ ଯଥା - କୂର୍ମପୁରାଣରେ -

'ସନ୍ଧ୍ୟାଂ ପଞ୍ଚମହାଯଜ୍ଞଂ ନୈତ୍ୟିକଂ ସ୍ମୃତିକର୍ମ ଚ ।
ତନ୍ମଧ୍ୟେ ହାପୟେତ୍ତେଷାଂ ଦଶାହାନ୍ତେ ପୁନଃ କ୍ରିୟା ॥'

ଏ ସମସ୍ତ ଦୃଷ୍ଟିରୁ ପ୍ରତ୍ୟେକ ବ୍ରାହ୍ମଣଙ୍କ ପାଇଁ ସନ୍ଧ୍ୟା ଅନିବାର୍ଯ୍ୟ ।

## ସନ୍ଧ୍ୟାପ୍ରକ୍ରିୟା

ସ୍ନାନାଦି ନିତ୍ୟକ୍ରିୟା ସମ୍ପାଦନ ପୂର୍ବକ ସୋତ୍ତରୀୟ ଧୌତ ବସ୍ତ୍ର ଅଥବା କୌଶେୟ ବସ୍ତ୍ର ପରିଧାନକରି କମଳାସନ ବା କୁଶାସନରେ ପୂର୍ବାଭିମୁଖ ଅଥବା ଉତ୍ତରାଭିମୁଖ ଉପବେଶନକରି ସନ୍ଧ୍ୟା କରିବା ବିଧେୟ । ତ୍ରିସନ୍ଧ୍ୟା ମଧ୍ୟରୁ ପ୍ରାତଃ ସନ୍ଧ୍ୟା ସୂର୍ଯ୍ୟୋଦୟ ପୂର୍ବରୁ (ବ୍ରାହ୍ମ ମୁହୂର୍ତ୍ତରେ) ଉତ୍ତମ, ସୂର୍ଯ୍ୟୋଦୟ ସମୟରେ ମଧ୍ୟମ ଓ ସୂର୍ଯ୍ୟୋଦୟ ପରେ ଅଧମ ବୋଲି ଶାସ୍ତ୍ରରେ ଅଭିହିତ ।

ଉତ୍ତମା ତାରସହିତା ତାରଲୁପ୍ତା ତୁ ମଧ୍ୟମା,
ଅଧମା ସୂର୍ଯ୍ୟସହିତା ପ୍ରାତଃ ସନ୍ଧ୍ୟା ତ୍ରିଧା ମତା ॥

ପୂର୍ବା ସନ୍ଧ୍ୟା ସନକ୍ଷତ୍ରା ମଧ୍ୟା ଶୀର୍ଷସ୍ଥିତେ ରବୌ
ରବିନକ୍ଷତ୍ରୟୋର୍ମଧ୍ୟେ ସାୟଂ ସନ୍ଧ୍ୟା ପ୍ରକୀର୍ତ୍ତିତା ॥

ସେହିପରି ମଧ୍ୟାହ୍ନ ସନ୍ଧ୍ୟା ମୁଣ୍ଡ ଉପରେ ସୂର୍ଯ୍ୟଥିବା ସମୟରେ ଓ ସାୟଂ ସନ୍ଧ୍ୟା ସୂର୍ଯ୍ୟାସ୍ତ ଓ ନକ୍ଷତ୍ରୋଦୟ ମଧ୍ୟବର୍ତ୍ତୀ କାଳରେ ଆଚରଣ କରିବା ବିଧେୟ । ପ୍ରଥମେ ଇନ୍ଦ୍ରିୟମାନଙ୍କୁ ସ୍ପର୍ଶ କରିବା ପରେ ଦକ୍ଷିଣହସ୍ତକୁ ଗୋକର୍ଣ୍ଣାକୃତି କରି ମାଷମଗ୍ନ (ବିରିବୁଡ଼ିଯିବା ପରିମିତ) ଜଳ ନେଇ ଓଁ ବିଷ୍ଣୁଃ, ଓଁ ବିଷ୍ଣୁଃ, ଓଁ ବିଷ୍ଣୁଃ – ଏହିପରି ତିନିଥର ଉଚ୍ଚାରଣ କରିବା ସହିତ ତିନିଥର ଆଚମନ କରିବେ ଓ ମନରେ ବିଷ୍ଣୁଙ୍କୁ ସ୍ମରଣ କରୁଥିବେ । ଆଚମନ ପରେ ଦକ୍ଷିଣ ହସ୍ତର ଅଙ୍ଗୁଷ୍ଠର ପଛପଟରେ ଓଠ ଦୁଇଟିକୁ ପୋଛିବା ସମୟରେ ଓଁ ଗଙ୍ଗାୟୈ ନମଃ, ଓଁ ଯମୁନାୟୈ ନମଃ ଉଚ୍ଚାରଣ କରିବେ ଓ ପରେ ହସ୍ତପ୍ରକ୍ଷାଳନ କରିବେ । ତା ପରେ **ଓଁ ବିଦ୍‌ବିଷ୍ଣୋଃ ପରମଂ ପଦଂ ସଦା ପଶ୍ୟନ୍ତି ସୂରୟଃ ଦିବୀବ ଚକ୍ଷୁରାତତମ୍** (୧) – ଏହି ମନ୍ତ୍ରରେ ବିଷ୍ଣୁଙ୍କୁ ସ୍ମରଣ କରିବେ । ଏହାପରେ –

**ଓଁ ଅପବିତ୍ରଃ ପବିତ୍ରୋ ବା ସର୍ବାବସ୍ଥାଂ ଗତୋଽପି ବା ।**
**ଯଃ ସ୍ମରେତ୍ ପୁଣ୍ଡରୀକାକ୍ଷଂ ସବାହ୍ୟାଭ୍ୟନ୍ତରଃ ଶୁଚିଃ ॥**

ଏହା ପଢ଼ି ପୁଣ୍ଡରୀକାକ୍ଷ ସ୍ୱରୂପ ବିଷ୍ଣୁଙ୍କୁ ପୁନଃ ସ୍ମରଣ କରିବେ । ଓଁ ଅଘମର୍ଷଣ ସୂକ୍ତସ୍ୟ ଅଘମର୍ଷଣ ଋଷିଃ ଅନୁଷ୍ଟୁପ୍ ଛନ୍ଦଃ ଭାବଭୃତଂ ଦୈବତଂ ଅଶ୍ୱମେଧାବଭୃଥେ ବିନିଯୋଗଃ । (ଏହିଭଳି ସର୍ବତ୍ର ବିନିଯୋଗ ସ୍ଥଳରେ ପ୍ରଥମେ 'ସୂକ୍ତସ୍ୟ ଅଥବା ମନ୍ତ୍ରସ୍ୟ' ଉଚ୍ଚାରଣ ବେଳେ ହାତ ଯୋଡ଼ିବେ, 'ଋଷି' ଉଚ୍ଚାରଣବେଳେ ହୃଦୟ ମୁଦ୍ରା (ମଧ୍ୟମା ଓ ଅନାମିକାର ଅଗ୍ରଭାଗକୁ ଅଙ୍ଗୁଷ୍ଠର ଅଗ୍ରଭାଗ ସହିତ ସଂଯୋଗ କରି ତର୍ଜନୀ ଓ କନିଷ୍ଠା ଅଙ୍ଗୁଳିଦ୍ୱୟକୁ ସଳଖ କରି ରଖିବା) ଦ୍ୱାରା ଶିରଃ ସ୍ପର୍ଶ କରିବେ । 'ଛନ୍ଦ' ଉଚ୍ଚାରଣ ସମୟରେ ସେହି ହୃଦୟ ମୁଦ୍ରାରେ ମୁଖ ସମ୍ମୁଖକୁ ପ୍ରଦର୍ଶନ କରିବା ସହିତ 'ବିନିଯୋଗ' ପଦଦ୍ୱାରା ହାତଯୋଡ଼ିବେ ।)

**ଓଁ ଋତଂ ଚ ସତ୍ୟଂ ଚାଭୀଦ୍ଧାତ୍ତପସୋଽଧ୍ୟଜାୟତ । ତତୋରାତ୍ର୍ୟଜାୟତ ତତଃ ସମୁଦ୍ରୋଽର୍ଣ୍ଣବଃ । ସମୁଦ୍ରାଦର୍ଣ୍ଣବାଦଧି ସମ୍ବତ୍ସରୋଽଜାୟତ । ଅହୋରାତ୍ରାଣି ବିଦଧଦ୍ ବିଶ୍ୱସ୍ୟ ମିଷତୋ ବଶୀ ।**

**ସୂର୍ଯାଚନ୍ଦ୍ରମସୌ ଧାତା ଯଥାପୂର୍ବମକଳ୍ପୟତ୍ । ଦିବଂ ଚ ପୃଥିବୀଂ ଚାନ୍ତରିକ୍ଷମଥୋ ସ୍ୱଃ ।(୨)**

## ଶରୀର ମାର୍ଜନ ବିଧି

ଓଁ ବିଷ୍ଣବେ ପରମାତ୍ମନେ ନମଃ, ଓଁ ବିଷ୍ଣବେ ଜୀବାତ୍ମନେ ନମଃ । ଏହିଭଳି କହି ଦୁଇଥର ଆଚମନ କରି ପ୍ରଣବ (ଓଁ) ସମ୍ପୁଟିତ ଗାୟତ୍ରୀ ମନ୍ତ୍ରକୁ ଯଥା- **ଓଁ ଭୂର୍ଭୁବଃ ସ୍ୱଃ ତତ୍ ସବିତୁର୍ବରେଣ୍ୟଂ ଭର୍ଗୋ ଦେବସ୍ୟ ଧୀମହି । ଧିୟୋ ଯୋ ନଃ ପ୍ରଚୋଦୟାତ୍ ଓଁ ।'** (୩) - ତିନିଥର ଉଚ୍ଚାରଣ କରି ତିନିଗୋଟି କୁଶଦ୍ୱାରା (ତ୍ରିପତ୍ରୀ) ଅଭାବରେ ପୂର୍ବୋକ୍ତ ହୃଦୟ ମୁଦ୍ରାରେ ଶିରଃ ମାର୍ଜନ କରିବେ ।

**ଓଁ ଆପୋ ହି ଷ୍ଠେତି ମନ୍ତ୍ରସ୍ୟ ସିନ୍ଧୁଦ୍ୱୀପଋଷିଃ, ଗାୟତ୍ରୀ ଛନ୍ଦଃ ଆପୋ ଦେବତା ମାର୍ଜନେ ବିନିଯୋଗଃ । ଓଁ ଆପୋ ହିଷ୍ଠା ମୟୋଭୁବ ଇତି ଆକାଶେ, ଓଁ ତାନ ଊର୍ଜେ ଦଧାତନ ଇତି ଭୂମୌ । ଓଁ ମହେରଣାୟ ଚକ୍ଷସେ ଇତି ମୂର୍ଦ୍ଧ୍ନି । ଓଁ ଯୋ ବଃ ଶିବତମୋ ରସ ଇତି ମୂର୍ଦ୍ଧ୍ନି । ଓଁ ତସ୍ୟ ଭାଜୟତେ ହ ନ ଇତି ଭୂମୌ । ଓଁ ଉଷତୀରିବ ମାତର ଇତି ଆକାଶେ । ଓଁ ତସ୍ମା ଅରଂଗମାମ ବ ଇତି ମୂର୍ଦ୍ଧ୍ନି । ଓଁ ଯସ୍ୟ କ୍ଷୟାୟ ଜିନ୍ୱଥ ଇତି ଆକାଶେ । ଓଁ ଆପୋ ଜନୟଥା ଚ ନ ଇତି ଭୂମୌ ।(୪)**

ଓଁ ଶନ୍ନ ଆପ ଇତି ମନ୍ତ୍ରସ୍ୟ ପ୍ରଜାପତି ଋଷିଃ ଅନୁଷ୍ଟୁପ୍ ଛନ୍ଦଃ ଆପୋ ଦେବତା ଅପା ମାର୍ଜନେ ବିନିଯୋଗଃ ।

**ଓଁ ଶନ୍ନ ଆପୋ ଧନ୍ୱନ୍ୟାଃ ଶମୁନଃ ସନ୍ତ୍ୱନୂପ୍ୟାଃ,**
**ଶନ୍ନଃ ସମୁଦ୍ରୀୟା ଆପଃ ଶମୁନଃ ସନ୍ତୁ କୂପ୍ୟାଃ ।।(୫)**

ଓଁ ଦ୍ରୁପଦାଦିବ ଇତି ମନ୍ତ୍ରସ୍ୟ କୋକିଳରାଜପୁତ୍ର ଋଷିଃ ଅନୁଷ୍ଟୁପ୍
ଛନ୍ଦଃ ଆପୋ ଦେବତା ସୌତ୍ରାମଣ୍ୟବଭୃଥେ ବିନିଯୋଗଃ ।।

**ଓଁ ଦ୍ରୁପଦାଦିବ ମୁମୁଚାନଃ ସ୍ୱିନ୍ନଃ ସ୍ନାତୋ ମଳାଦିବ ।**
**ପୂତଂ ପବିତ୍ରେଣେବାଜ୍ୟମାପଃ ଶୁନ୍ଧନ୍ତୁ ମୈନସଃ ।।(୬)**

## ଆସନଶୁଦ୍ଧି

ଓଁ ଆସନମନ୍ତ୍ରସ୍ୟ ମେରୁପୃଷ୍ଠଋଷିଃ ସୁତଳଂ ଛନ୍ଦଃ ଶ୍ରୀକୂର୍ମୋ ଦେବତା ପୃଥ୍ୱୀ ବୀଜଂ

ଆକାଶଃ ଶକ୍ତିଃ ଅନ୍ତରୀକ୍ଷଃ କୀଳକଂ ଆସନଶୁଦ୍ଧୌ ବିନିଯୋଗଃ । ଓଁ ଆମ୍ରାସନେ କମଳାସନାୟ ନମଃ । ଆସନତଳେ 'ଏ' ଏହିଭଳି ଚିତ୍ର ପାଣିରେ ଟାଣି ସେଥିରେ ଫୁଲ ରଖିବେ ଓ ପ୍ରାର୍ଥନା କରିବେ ।

**ଓଁ ପୃଥ୍ୱି ତ୍ୱୟା ଧୃତା ଲୋକା ଦେବି ତ୍ୱଂ ବିଷ୍ଣୁନା ଧୃତା ।**
**ତ୍ୱଞ୍ଚ ଧାରୟ ମାଂ ନିତ୍ୟଂ ପବିତ୍ରମାସନଂ କୁରୁ ॥**

## ପ୍ରାଣାୟାମ

ଓଁ କାରସ୍ୟ ବ୍ରହ୍ମାଋଷିଃ ଦୈବୀଗାୟତ୍ରୀଛନ୍ଦଃ ଅଗ୍ନିର୍ଦେବତା ସର୍ବକର୍ମାରମ୍ଭେ ବିନିଯୋଗଃ ।୧। ଓଁ ସପ୍ତବ୍ୟାହୃତୀନାଂ ଜମଦଗ୍ନିଭରଦ୍ୱାଜଭୃଗୁଗୌତମକଶ୍ୟପ-ବିଶ୍ୱାମିତ୍ରବଶିଷ୍ଠାଃ ଋଷୟଃ । ଗାୟତ୍ର୍ୟୁଷ୍ଣିଗନୁଷ୍ଟୁବ୍‌ବୃହତୀପଂକ୍ତିତ୍ରିଷ୍ଟୁବ୍ ଜଗତ୍ୟଶ୍ଛନ୍ଦାଂସି ଅଗ୍ନିବାୟୁସୂର୍ଯ୍ୟବୃହସ୍ପତିବରୁଣେନ୍ଦ୍ରବିଶ୍ୱେଦେବାଦେବତାଃ ପ୍ରାଣାୟାମେ ବିନିଯୋଗଃ ।୨। ଓଁ ଗାୟତ୍ର୍ୟା ବିଶ୍ୱାମିତ୍ରଋଷିଃ ଗାୟତ୍ରୀଛନ୍ଦଃ ସବିତା ଦେବତା ଣୀ ବୀଜଂ ୟଂ ଶକ୍ତିଃ ପ୍ରାଣାୟାମେ ବିନିଯୋଗଃ ।୩। ଓଁ ଶିରସଃ ପ୍ରଜାପତିଋଷିଃ ଅନୁଷ୍ଟୁପ୍ ଛନ୍ଦଃ ବ୍ରହ୍ମାଗ୍ନିବାୟୁସୂର୍ଯ୍ୟା ଦେବତାଃ ପ୍ରାଣାୟାମେ ବିନିଯୋଗଃ ।୪।

## କରନ୍ୟାସ

ଓଁ ଭୂଃ ଓଁ ଭୁବଃ ଓଁ ସ୍ୱଃ ଅଙ୍ଗୁଷ୍ଠାଭ୍ୟାଂ ନମଃ । ଓଁ ମହଃ ଓଁ ଜନଃ ଓଁ ତପଃ ଓଁ ସତ୍ୟଂ ତର୍ଜନୀଭ୍ୟାଂ ସ୍ୱାହା, ଓଁ ତସ୍ତବିତୁର୍ବରେଣ୍ୟଂ ମଧ୍ୟମାଭ୍ୟାଂ ବଷଟ୍ । ଓଁ ଭର୍ଗୋଦେବସ୍ୟ ଧୀମହି ଅନାମିକାଭ୍ୟାଂ ହୂଂ । ଓଁ ଧିୟୋଯୋନଃ ପ୍ରଚୋଦୟାତ୍ କନିଷ୍ଠାଭ୍ୟାଂ ବୌଷଟ୍ । ଓଁ ଆପୋ ଜ୍ୟୋତୀ ରସୋଽମୃତଂ ବ୍ରହ୍ମ ଭୂର୍ଭୁବଃ ସ୍ୱରୋଂ କରତଳକରପୃଷ୍ଠାଭ୍ୟାଂ ଫଟ୍ ।

## ଅଙ୍ଗନ୍ୟାସ

ଓଁ ଭୂଃ ଓଁ ଭୁବଃ ଓଁ ସ୍ୱଃ ହୃଦୟାୟ ନମଃ । ଓଁ ମହଃ ଓଁ ଜନଃ ଓଁ ତପଃ ଓଁ ସତ୍ୟଂ ଶିରସେ ସ୍ୱାହା, ଓଁ ତସ୍ତବିତୁର୍ବରେଣ୍ୟଂ ଶିଖାୟୈ ବଷଟ୍, ଓଁ ଭର୍ଗୋଦେବସ୍ୟ ଧୀମହି କବଚାୟ ହୁଁ, ଓଁ ଧିୟୋଯୋନଃ ପ୍ରଚୋଦୟାତ୍ ନେତ୍ରତ୍ରୟାୟ ବୌଷଟ୍, ଓଁ ଆପୋଜ୍ୟୋତୀରସୋଽମୃତଂ ବ୍ରହ୍ମ ଭୂର୍ଭୁବଃ ସ୍ୱଃ କରତଳକରପୃଷ୍ଠାଭ୍ୟାଂ ଅସ୍ତ୍ରାୟ ଫଟ୍ ।

## ଦୀଗ୍‌ବନ୍ଧନ

ଅଧଃ, ମଧ ଓ ଊର୍ଦ୍ଧ୍ୱରେ ତିନିଗୋଟି ତାଳି ବଜାଇ ଦକ୍ଷିଣହସ୍ତର କନିଷ୍ଠା, ଅନାମିକା ଓ ମଧମାକୁ ସଙ୍କୁଚିତକରି ତର୍ଜନୀ ଓ ଅଙ୍ଗୁଷ୍ଠ ଦ୍ୱୟ ସଂଯୋଗରୁ ଶବ୍ଦକରି (ଛୋଟିକା ମୁଦ୍ରାରେ) ପୂର୍ବାଦି କ୍ରମରେ ଦଶଗୋଟି ଦିଗ୍‌ବନ୍ଧନ କରିବେ ।

ଓଁ ଇନ୍ଦ୍ରାୟ ନମଃ, ଓଁ ଅଗ୍ନୟେ ନମଃ, ଓଁ ଯମାୟ ନମଃ, ଓଁ ନୈର୍ଋତାୟ ନମଃ, ଓଁ ବରୁଣାୟ ନମଃ, ଓଁ ବାୟବେ ନମଃ, ଓଁ କୁବେରାୟ ନମଃ, ଓଁ ଈଶାନାୟ ନମଃ, ଊର୍ଦ୍ଧ୍ୱେ ଓଁ ବ୍ରହ୍ମଣେ ନମଃ, ଅଧଃ ଓଁ ଅନନ୍ତାୟ ନମଃ ।

## ପ୍ରାଣାୟାମ ପ୍ରକ୍ରିୟା

ଓଁ ଭୂଃ ପାଦୟୋଃ, ଓଁ ଭୁବଃ ଜାନ୍ୱୋଃ, ଓଁ ସ୍ୱଃ କଟ୍ୟାଂ, ଓଁ ମହଃ ନାଭୌ, ଓଁ ଜନଃ ହୃଦୟେ, ଓଁ ତପଃ କଣ୍ଠେ, ଓଁ ସତ୍ୟଂ ଭ୍ରୁବୋର୍ଲଲାଟେ ।

ଓଁ ଆପଃ ନମଃ ଗୁହ୍ୟେ, ଓଁ ଜ୍ୟୋତିର୍ନମଶ୍ଚକ୍ଷୁଷୋଃ, ଓଁ ରସଃ ନମଃ ବକ୍ତ୍ରେ (ମୁଖରେ), ଓଁ ଅମୃତଂ ନମଃ ମସ୍ତକେ, ଓଁ ବ୍ରହ୍ମ ନମଃ ହୃଦୟେ, ଓଁ ଭୂର୍ନମଃ ପାଦୟୋଃ, ଓଁ ଭୁବଃ ନମଃ ନାଭୌ, ଓଁ ସ୍ୱଃ ନମଃ ଲଲାଟେ, ଓଁ ଓଁ ନମଃ ମୂର୍ଦ୍ଧ୍ନି ।

କରକଚ୍ଛପିକା ମୁଦ୍ରାରେ (ବାମହସ୍ତର ପାପୁଲିକୁ ଊର୍ଦ୍ଧ୍ୱମୁଖ କରି ଦକ୍ଷିଣହସ୍ତର ପାପୁଲିକୁ ଅଧୋମୁଖ କରି ବାମ ହସ୍ତରେ ସଂଯୋଗ କଲେ କରକଚ୍ଛପିକା ମୁଦ୍ରା ହୁଏ ।) ପୂରକ ଓ କୁମ୍ଭକ ତଥା ରେଚକରେ କ୍ରମଶଃ ବିଷ୍ଣୁ, ବ୍ରହ୍ମା ଓ ମହେଶ୍ୱରଙ୍କୁ ଧାନକରିବେ । (ପୂରକ ଅର୍ଥାତ୍ ଅଙ୍ଗୁଷ୍ଠରେ ଡାହାଣ ନାକପୁଟକୁ ଚିପିରଖି ବାମନାକପୁଟରେ ପବନ ନେବା, କୁମ୍ଭକ ଅର୍ଥାତ୍ ନେଇଥିବା ବାୟୁକୁ ପେଟରେ ଧାରଣ କରିବା, ରେଚକ ଅର୍ଥାତ୍ ପେଟରେ ଥିବା ବାୟୁକୁ ବାମ ନାକପୁଟକୁ ଚିପିରଖି ଧୀରେଧୀରେ ଡାହାଣ ନାକପୁଟରେ ଛାଡ଼ିବା)

ପୂରକରେ – ନୀଳୋତ୍ପଳଦଳଶ୍ୟାମଂ ନାଭିମଧେ ପ୍ରତିଷ୍ଠିତମ୍,
ଚତୁର୍ଭୁଜଂ ମହାତ୍ମାନଂ ପୂରକେ ତୁ ବିଚିନ୍ତୟେତ୍ ॥

କୁମ୍ଭକରେ – କୁମ୍ଭକେ ତୁ ହୃଦି ସ୍ଥାନେ ଧାୟେଚ୍ଚ କମଳାସନମ୍ ।
ବ୍ରହ୍ମାଣଂ ରକ୍ତଗୌରାଙ୍ଗଂ ଚତୁର୍ବକ୍ତ୍ରଂ ପିତାମହମ୍ ॥

ରେଚକରେ – ରେଚକେ ଚେଶ୍ୱରଂ ବିଦ୍ୟାଲ୍ଲଟସ୍ଥଂ ତ୍ରିଲୋଚନମ୍ ।
ଶୁଦ୍ଧସ୍ଫଟିକସଙ୍କାଶଂ ନିର୍ମଳଂ ପାପନାଶନମ୍ ॥

## ପ୍ରାଣାୟାମ ମନ୍ତ୍ର

ଓଁ ଭୂଃ ଓଁ ଭୁବଃ ଓଁ ସ୍ୱଃ ଓଁ ମହଃ ଓଁ ଜନଃ ଓଁ ତପଃ ଓଁ ସତ୍ୟଂ ଓଁ ତତ୍ ସବିତୁର୍ବରେଣ୍ୟଂ ଭର୍ଗୋଦେବସ୍ୟ ଧୀମହି ଧିୟୋ ଯୋ ନଃ ପ୍ରଚୋଦୟାତ୍ ଓଁ, ଆପୋଜ୍ୟୋତୀ ରସୋଽମୃତଂ ବ୍ରହ୍ମ ଭୂର୍ଭୁବଃ ସ୍ୱରୋଁ ହଂ ସଃ ସୋଽହମ୍ ।'(୭)

ଏହି ମନ୍ତ୍ରକୁ ପୂରକରେ ଥରେ, କୁମ୍ଭକରେ ତିନିଥର ଓ ରେଚକରେ ଦୁଇଥର କେବଳ ମନରେ ଉଚ୍ଚାରଣ କରିବେ । କେତେକଙ୍କ ମତରେ ପ୍ରତ୍ୟେକରେ ତିନିଥର ଉଚ୍ଚାରିତ ହେବ । ଏହି ପ୍ରାଣାୟାମ ୩ଥର ଅର୍ଥାତ୍ ପୂରକ-କୁମ୍ଭକ-ରେଚକ ଏହି କ୍ରମରେ ୩ଥର କରିବା ବିଧେୟ ।

ଓଁ ଅନ୍ତଃ ଚରସି ଭୂତେଷୁ ଗୁହାୟାଂ ବିଶ୍ୱତୋ ମୁଖ ତ୍ୱଂ ଯଜ୍ଞଃ ତ୍ୱଂ ବଷଟ୍କାରଃ ଆପୋ ଜ୍ୟୋତୀ ରସୋଽମୃତଂ ବ୍ରହ୍ମ ଭୂର୍ଭୁବଃ ସ୍ୱରୋଁ - ଏହି ମନ୍ତ୍ରରେ ପରମାତ୍ମାଙ୍କୁ ଧ୍ୟାନ କରିବେ ।

## ପ୍ରାତଃ ଆଚମନ ମନ୍ତ୍ର

ଓଁ ସୂର୍ଯ୍ୟଶ୍ଚମେତି ମନ୍ତ୍ରସ୍ୟ ବ୍ରହ୍ମାଋଷିଃ ପଂକ୍ତିଶ୍ଛନ୍ଦଃ ଶ୍ରୀ ସୂର୍ଯ୍ୟୋ ଦେବତା ଆଚମନେ ବିନିଯୋଗଃ ।

**ଓଁ ସୂର୍ଯଶ୍ଚ ମା ମନ୍ୟୁଶ୍ଚ ମନ୍ୟୁପତୟଶ୍ଚ ମନ୍ୟୁକୃତେଭ୍ୟଃ ପାପେଭ୍ୟୋ ରକ୍ଷନ୍ତାମ୍ । ଯଦ୍ରାତ୍ର୍ୟା ପାପମକାର୍ଷଂ ମନସା ବାଚା ହସ୍ତାଭ୍ୟାଂ ପଦ୍ଭ୍ୟାମୁଦରେଣ ଶିଶ୍ନା ଅହସ୍ତଦବଲୁମ୍ପତୁ ଯତ୍ କିଞ୍ଚିତ୍ ଦୁରିତଂ ମୟି ଇଦମହମାପୋଽମୃତଯୋନୌ ସୂର୍ଯ୍ୟେ ଜ୍ୟୋତିଷି ପରମାତ୍ମନି ଜୁହୋମି ସ୍ୱାହା ।(୮)** - ଏହା ପଢ଼ି ଆଚମନ କରିବେ ।

## ମଧ୍ୟାହ୍ନ ଆଚମନ ମନ୍ତ୍ର

ଓଁ ଆପଃ ପୁନନ୍ତୁ ଇତି ମନ୍ତ୍ରସ୍ୟ ବିଷ୍ଣୁଋଷିଃ ଅନୁଷ୍ଟୁପ୍ଛନ୍ଦଃ ଆପୋଦେବତା ଆଚମନେ ବିନିଯୋଗଃ ।

**ଓଁ ଆପଃ ପୁନନ୍ତୁ ପୃଥିବୀଂ ପୃଥ୍ୱୀ ପୂତା ପୁନାତୁ ମାମ୍ ।**
**ପୁନନ୍ତୁ ବ୍ରହ୍ମଣସ୍ପତିଂ ବ୍ରହ୍ମ ପୂତା ପୁନାତୁ ମାମ୍ ।**
**ଯଦୁଚ୍ଛିଷ୍ଟମଭୋଜ୍ୟଂ ଚ ଯଦ୍ୱା ଦୁଶ୍ଚରିତଂ ମମ ।**
**ସର୍ବଂ ପୁନନ୍ତୁ ମାମାପୋ ଅସତାଂ ଚ ପ୍ରତିଗ୍ରହଂ ସ୍ୱାହା ।।(୯)**

## ସାୟାହ୍ନ ଆଚମନ ମନ୍ତ୍ର

**ଓଁ ଅଗ୍ନିଷ୍ଟମେତି ମନ୍ତ୍ରସ୍ୟ ରୁଦ୍ରଋଷିଃ ତ୍ରିଷ୍ଟୁପ୍‌ଛନ୍ଦଃ ଅଗ୍ନିର୍ଦ୍ଦେବତା ଆଚମନେ ବିନିଯୋଗଃ ।**

**ଓଁ ଅଗ୍ନିଷ୍ଟ ମା ମନ୍ୟୁଷ୍ଟ ମନ୍ୟୁପତୟଷ୍ଟ ମନ୍ୟୁକୃତେଭ୍ୟଃ ପାପେଭ୍ୟୋ ରକ୍ଷନ୍ତାମ୍ । ଯଦହ୍ନା ପାପମକାର୍ଷଂ ମନସା ବାଚା ହସ୍ତାଭ୍ୟାଂ ପଦ୍‌ଭ୍ୟାମୁଦରେଣ ଶିଶ୍ନା ରାତ୍ରିସ୍ତଦବଲୁମ୍ପତୁ ଯତ୍ କିଞ୍ଚିଦ୍ଦୁରିତଂ ମୟି ଇଦମହମାପୋଽମୃତଯୋନୌ ସତ୍ୟେ ଜ୍ୟୋତିଷି ପରମାତ୍ମନି ଜୁହୋମି ସ୍ୱାହା ।(୧୦)**

ଏହାପରେ ପୂର୍ବଭଳି 'ଆପୋହିଷ୍ଠେତି...' ମନ୍ତ୍ରରେ ଶରୀର ମାର୍ଜନା କରି ଡାହାଣ ହାତ ପାପୁଲିରେ ଅବଶିଷ୍ଟ ଜଳକୁ ନେଇ ନାସିକାରେ ୩ଥର ସ୍ପର୍ଶକରି ପକାଇବେ ।

ଏହାପରେ ପ୍ରଣବବ୍ୟାହୃତି ସହିତ ଗାୟତ୍ରୀ ମନ୍ତ୍ରକୁ ପଢ଼ି 'ଓଁ ଶ୍ରୀ ସୂର୍ଯ୍ୟାୟ ନମଃ' ଉଚ୍ଚାରଣ କରି ତିନି ଅଞ୍ଜଳି ପାଣି ପ୍ରକ୍ଷେପ କରିବେ ।

## ସୂର୍ଯ୍ୟୋପସ୍ଥାନ ମନ୍ତ୍ର

ଓଁ ଉଦ୍ଦୁତ୍ୟମିତି ମନ୍ତ୍ରସ୍ୟ ପ୍ରସ୍କନ୍ଦଋଷିଃ ଗାୟତ୍ରୀଛନ୍ଦଃ ଶ୍ରୀସୂର୍ଯ୍ୟୋ ଦେବତା ଶ୍ରୀ ସୂର୍ଯ୍ୟୋପସ୍ଥାନେ ବିନିଯୋଗଃ ।

**ଓଁ ଉଦ୍ଦୁତ୍ୟଂ ଜାତବେଦସଂ ଦେବଂ ବହନ୍ତି କେତବଃ । ଦୃଶେ ବିଶ୍ୱାୟ ସୂର୍ଯ୍ୟମ୍ ।(୧୧)**

ଓଁ ଚିତ୍ରଂ ଦେବାନାମିତି ମନ୍ତ୍ରସ୍ୟ କୌତ୍ସଋଷିଃ ତ୍ରିଷ୍ଟୁପ୍‌ଛନ୍ଦଃ ଶ୍ରୀସୂର୍ଯ୍ୟୋ-ଦେବତା ଶ୍ରୀ ସୂର୍ଯ୍ୟୋପସ୍ଥାନେ ବିନିଯୋଗଃ ।

**ଓଁ ଚିତ୍ରଂ ଦେବାନାମୁଦଗାଦନୀକଂ ଚକ୍ଷୁର୍ମିତ୍ରସ୍ୟ ବରୁଣସ୍ୟାଗ୍ନେଃ । ଆପ୍ରା ଦ୍ୟାବା ପୃଥିବୀ ଅନ୍ତରୀକ୍ଷଂ ସୂର୍ଯ୍ୟ ଆତ୍ମା ଜଗତସ୍ତସ୍ଥୁଷଶ୍ଚ ।(୧୨)**

ଓଁ ତଚ୍ଚକ୍ଷୁରିତି ମନ୍ତ୍ରସ୍ୟ ବଶିଷ୍ଠଋଷିଃ ଉଷ୍ଣିକ୍ ଛନ୍ଦଃ ଶ୍ରୀ ସୂର୍ଯ୍ୟୋଦେବତା ଶ୍ରୀସୂର୍ଯ୍ୟୋପସ୍ଥାନେ ବିନିଯୋଗଃ ।

**ଓଁ ତଚ୍ଚକ୍ଷୁର୍ଦ୍ଦେବହିତଂ ପୁରସ୍ତାଚ୍ଛୁକ୍ରମୁଚ୍ଚରତ୍ ପଶ୍ୟେମ ଶରଦଃ ଶତଂ ଜୀବେମ ଶରଦଃ ଶତଂ ଶୃଣୁୟାମ ଶରଦଃ ଶତମ୍ ।(୧୩)**

# ଗାୟତ୍ରୀଜପ ବିଧି

ଓଁ ତେଜୋଽସୀତି ମନ୍ତ୍ରସ୍ୟ ଭୃଗୁରଷିଃ ଛନ୍ଦୋନାସ୍ତି ଶୁକ୍ରୋଦେବତା ଗାୟତ୍ର୍ୟାବାହନେ ବିନିଯୋଗଃ ।

**ଓଁ ତେଜୋଽସି ସହୋଽସି ବଲମସି ଭ୍ରାଜୋଽସି ପ୍ରିୟଂ ଦେବାନାଂ ଧାମନାମସି । ବିଶ୍ୱମସି ବିଶ୍ୱାୟୁଃ ସର୍ବମସି ସର୍ବାୟୁରସି ଭୂରୋଁ ।(୧୪)**

ଓଁ ଆୟାହି ବରଦେ ଦେବି ତ୍ର୍ୟକ୍ଷରେ ବହ୍ମବାଦିନି ।
ଗାୟତ୍ରି ଛନ୍ଦସାଂ ମାତର୍ବ୍ରହ୍ମଯୋନେ ନମୋଽସ୍ତୁତେ ॥
ଓଁ ଗାୟତ୍ରୀମାବାହୟାମି ।

ଓଁ କାରସ୍ୟ ଗାୟତ୍ର୍ୟା ବିଶ୍ୱାମିତ୍ରଋଷିଃ ଗାୟତ୍ରୀ ଛନ୍ଦଃ ସବିତା ଦେବତା ଣୀ ବୀଜଂ ୟଂ ଶକ୍ତିଃ ଜପୋପନୟନେ ବିନିଯୋଗଃ ।

## କରନ୍ୟାସ

ଓଁ ଭୂଃ ଅଙ୍ଗୁଷ୍ଠାଭ୍ୟାଂ ନମଃ । ଓଁ ଭୁବସ୍ତର୍ଜନୀଭ୍ୟାଂ ସ୍ୱାହା, ଓଁ ସ୍ୱଃ ମଧ୍ୟମାଭ୍ୟାଂ ବଷଟ୍, ଓଁ ତତ୍ସବିତୁର୍ବରେଣ୍ୟଂ ଅନାମିକାଭ୍ୟାଂ ହୂଁ । ଓଁ ଭର୍ଗୋ ଦେବସ୍ୟ ଧୀମହି କନିଷ୍ଠାଭ୍ୟାଂ ବୌଷଟ୍ । ଓଁ ଧିୟୋଯୋନଃ ପ୍ରଚୋଦୟାତ୍ କରତଳକରପୃଷ୍ଠାଭ୍ୟାଂ ଫଟ୍ ।

## ଅଙ୍ଗନ୍ୟାସ

ଓଁ ନାଭୌ ଅଂ ନମଃ, ହୃଦୟେ ଉଂ ନମଃ, ମୁର୍ଦ୍ଧ୍ନି ମଂ ନମଃ, ଓଁ ଓଁ ହୃଦି, ଓଁ ଭୂଃ ଶିରସି, ଓଁ ଭୁବଃ ଶିଖାୟାଂ, ଓଁ ସ୍ୱଃ ସର୍ବଗାତ୍ରେଷୁ ପାଦାଙ୍ଗୁଷ୍ଠୟୋଃ, ଓଁ ତଂ ନମଃ ଗୁଲ୍ଫୟୋଃ, ଓଁ ସଂ ନମଃ ଜଂଘୟୋଃ, ଓଁ ବିଂ ନମଃ ଜାନ୍ୱୋଃ, ଓଁ ତୁଃ ନମଃ ଉର୍ବୋଃ, ଓଁ ବଂ ନମଃ ଗୁହ୍ୟେ, ଓଁ ରେଂ ନମଃ ବୃଷଣେ, ଓଁ ଣୀଂ ନମଃ କଟ୍ୟୋଃ, ଓଁ ୟଂ ନମଃ ନାଭୌ, ଓଁ ଭଂ ନମଃ କୁକ୍ଷୌ, ଓଁ ର୍ଗୋଂ ନମଃ ସ୍ତନୟୋଃ, ଓଁ ଦେଂ ନମଃ ହୃଦି, ଓଁ ବଂ ନମଃ କଣ୍ଠେ, ଓଁ ସ୍ୟଂ ନମଃ ମୁଖେ, ଓଁ ଧୀଂ ନମଃ ନାସିକାୟାଂ, ଓଁ ମଂ ନମଃ କର୍ଣ୍ଣୟୋଃ, ଓଁ ହିଂ ନମଃ ନେତ୍ରୟୋଃ, ଓଁ ଧିଂ ନମଃ ଭ୍ରୂ ମଧ୍ୟେ, ଓଁ ୟୋଂ ନମଃ ଲଲାଟେ, ଓଁ ୟୋଂ ନମଃ ଶିରସଃ ପୂର୍ବ ମୁଖେ, ଓଁ ନଃ ନମଃ ଶିରସଃ ଦକ୍ଷିଣ ମୁଖେ, ଓଁ ପ୍ରଂ ନମଃ ଶିରସଃ ପଶ୍ଚିମ ମୁଖେ, ଓଁ ଚୋଂ ନମଃ ଶିରସଃ ଉତ୍ତର-ମୁଖେ, ଓଁ ଦଂନମଃ ମୂର୍ଦ୍ଧ୍ନି । ଓଁ ୟାତ୍ ନମଃ ହୃଦୟେ ।

**ଗାୟତ୍ରୀ ଧ୍ୟାନ (ପ୍ରାତଃ ସନ୍ଧ୍ୟାରେ)**

ଓଁ ବାଲାଂ ବିଦ୍ୟାଂ ତୁ ଗାୟତ୍ରୀଂ ଲୋହିତାଂ ଚତୁରାନନାମ୍
ରକ୍ତାମ୍ବରଦ୍ୱୟୋପେତାମକ୍ଷସୂତ୍ରକରାଂ ତଥା
କମଣ୍ଡଳୁଧରାଂ ଦେବୀଂ ହଂସବାହନସଂସ୍ଥିତାମ୍
ବ୍ରହ୍ମାଣୀଂ ବ୍ରହ୍ମଦୈବତ୍ୟାଂ ବ୍ରହ୍ମଲୋକନିବାସିନୀମ୍
ମନ୍ତ୍ରେଣାବାହୟେଦ୍ଦେବୀମାୟାନ୍ତୀଂ ସୂର୍ଯ୍ୟ ମଣ୍ଡଳାତ୍ ।

**ସାବିତ୍ରୀଧ୍ୟାନ (ମଧ୍ୟାହ୍ନ ସନ୍ଧ୍ୟାରେ)**

ଧ୍ୟାୟେନ୍ମଧ୍ୟାହ୍ନ ସନ୍ଧ୍ୟାୟାଂ ସାବିତ୍ରୀଂ ବେଦମାତରମ୍
ଯୁବତୀଂ ଶୁକ୍ଳବର୍ଣ୍ଣାଂ ଚ ଚାରୁରୂପାଂ ଚତୁର୍ଭୁଜାମ୍
ଶୁକ୍ଳାମ୍ବରଦ୍ୱୟୋପେତାଂ ଗରୁଡ଼ସ୍କନ୍ଧସଂସ୍ଥିତାମ୍ ।
ଶଙ୍ଖଚକ୍ରଗଦାପଦ୍ମଧାରିଣୀଂ ବିଷ୍ଣୁଦୈବତାମ୍,
ବିଷ୍ଣୁଲୋକନିବାସାନ୍ତାମାୟାନ୍ତୀଂ ସୂର୍ଯ୍ୟମଣ୍ଡଳାତ୍ ॥

**ସାୟାହ୍ନ ସନ୍ଧ୍ୟା (ସାୟଂ ସନ୍ଧ୍ୟା)**

ଧ୍ୟାୟେତ୍ ସାୟାହ୍ନସନ୍ଧ୍ୟାୟାଂ ବୃଦ୍ଧାବସ୍ଥାଂ ସରସ୍ୱତୀମ୍
କୃଷ୍ଣାଂ କୃଷ୍ଣାମ୍ବରଧରାଂ ବୃଷାରୂଢାଂ ତ୍ରିଲୋଚନାମ୍ ॥
ତ୍ରିଶୂଳଡମ୍ବରୁହସ୍ତାଂ ରୁଦ୍ରାଣୀଂ ରୁଦ୍ରଦୈବତାମ୍
କୈଳାସନିଳୟାଂ ଦେବୀମାୟାନ୍ତୀଂ ସୂର୍ଯ୍ୟମଣ୍ଡଳାତ୍ ॥

**ଗାୟତ୍ରୀ ମନ୍ତ୍ର**

**'ଓଁ ଭୂର୍ଭୁବଃ ସ୍ୱଃ ତତ୍ସବିତୁର୍ବରେଣ୍ୟଂ ଭର୍ଗୋ ଦେବସ୍ୟ ଧୀମହି ଧିୟୋ ଯୋ ନଃ ପ୍ରଚୋଦୟାତ୍ ଓଁ ।' (୧୫)**

## ଜପବିଧି

ପ୍ରାତଃ ନାଭୌ କରଂ କୁର୍ଯ୍ୟାତ୍ ମଧ୍ୟାହ୍ନେ ହୃଦି ପାଣିନା,
ସାୟଂ ନାସାଗ୍ରତଃ କୁର୍ଯ୍ୟାତ୍ ତ୍ରିସନ୍ଧ୍ୟାଂ ଜପକର୍ମଣି ॥

## ଜପସମର୍ପଣ

ଓଁ ଗୁହ୍ୟାତି ଗୁହ୍ୟଗୋପତ୍ରୀ ତ୍ୱଂ ଗୃହାଣାସ୍ମତ୍ କୃତଂ ଜପମ୍ ।
ସିଦ୍ଧିର୍ଭବତୁ ମେ ଦେବି ତ୍ୱତ୍ ପ୍ରସାଦାତ୍ ସୁରେଶ୍ୱରି ।

ଓଁ ଗାୟତ୍ର୍ୟୈ ନମଃ କହି ଜପ ସମର୍ପଣ ନିମିତ୍ତ ପାଣି କିଛି ଗାୟତ୍ରୀ ଦେବୀଙ୍କ ଡାହାଣ ହାତରେ ପାଣି ଦେଲେ ବୋଲି ଚିନ୍ତା କରି ପକାଇବେ ।

ଓଁ ତୁରୀୟପଦସ୍ୟ ମେରୁପୃଷ୍ଠଋଷିଃ ଯଜୁଃ ପରମାତ୍ମା ଦେବତା ମୋକ୍ଷାର୍ଥେ ବିନିଯୋଗଃ ।

**ଓଁ ଗାୟତ୍ର୍ୟସ୍ୟେକପଦୀ ଦ୍ୱିପଦୀ ତ୍ରିପଦୀ ଚତୁଷ୍ପଦ୍ୟପଦ୍ୟସି ନହି ପଦ୍ୟସେ ନମସ୍ତେ ତୁରୀୟାୟ ଦର୍ଶିତାୟ ପଦାୟ ରଜସେ ସାବଦୋଁ ।**

ଓଁ ମହେଶବଦନୋତ୍ପନ୍ନା ବିଷ୍ଣୋର୍ହୃଦୟସଂସ୍ଥିତା,
ବ୍ରହ୍ମଣା ସମନୁଜ୍ଞାତା ଗଚ୍ଛ ଦେବି ଯଥେଚ୍ଛୟା ।

## ସୂର୍ଯ୍ୟାର୍ଘବିଧି

ଓଁ ସୂର୍ଯ୍ୟାୟ ନମ ଇଦଂ ସୂର୍ଯ୍ୟାୟ । ଓଁ ପ୍ରଜାପତୟେ ନମଃ ଇଦଂ ପ୍ରଜାପତୟେ । ସାୟଂକାଳେ ଓଁ ଅଗ୍ନୟେ ନମଃ ଇଦମଗ୍ନୟେ । ଏହି ମନ୍ତ୍ରରେ ତିନି ଅଞ୍ଜଳି ପାଣି ଦେବେ । ତା ପରେ ଅଷ୍ଟଦଳ ମଣ୍ଡଳ (ଜଳରେ ବା ଚନ୍ଦନରେ) ଲେଖି ସେଥିରେ ସୂର୍ଯ୍ୟାର୍ଘ ଦେବେ ।

ସୂର୍ଯ୍ୟାର୍ଘମନ୍ତ୍ର – ଓଁ ଏହି ସୂର୍ଯ୍ୟ ସହସ୍ରାଂଶୋ ତେଜୋରାଶେ ଜଗତ୍ପତେ !
ଅନୁକମ୍ପୟ ମାଂ ଭକ୍ତ୍ୟା ଗୃହାଣାର୍ଘଂ ଦିବାକର ।

**ଓଁ ହଂସଃ ଶୁଚିଷଦ୍ବସୁରନ୍ତରୀକ୍ଷସଦ୍ଧୋତା ବେଦିଷଦତିଥିର୍ଦୁରୋଣସତ୍ । ନୃଷଦ୍ବରସଦୃତସଦ୍ବ୍ୟୋମସଦବ୍ଜା ଗୋଜା ଋତଜା ଅଦ୍ରିଜା ଋତଂ ବୃହତ୍ । (୧୬)**

ଓଁ ଘୃଣିଃ ସୂର୍ଯ୍ୟ ଆଦିତ୍ୟ ଓଁ ଶ୍ରୀସୂର୍ଯ୍ୟାୟ ନମଃ ।

**ଓଁ ତଚ୍ଚକ୍ଷୁର୍ଦେବହିତଂ ପୁରସ୍ତାଚ୍ଛୁକ୍ରମୁଚ୍ଚରତ୍ ପଶ୍ୟେମ ଶରଦଃ ଶତଂ ଜୀବେମ ଶରଦଃ ଶତଂ ଶୃଣୁୟାମ ଶରଦଃ ଶତମ୍ ।**

## ସୂର୍ଯ୍ୟ ନମସ୍କାର

ଓଁ ନମଃ ସବିତ୍ରେ ଜଗଦେକଚକ୍ଷୁଷେ ଜଗତ୍ ପ୍ରସୂତିସ୍ଥିତିନାଶହେତବେ ।
ତ୍ରୟୀମୟାୟ ତ୍ରିଗୁଣାତ୍ମଧାରିଣେ ବିରଞ୍ଚିନାରାୟଣଶଙ୍କରାତ୍ମନେ ।
ଓଁ ଧ୍ୟେୟଃ ସଦା ସବିତୃମଣ୍ଡଳମଧ୍ୟବର୍ତ୍ତୀ ।
ନାରାୟଣଃ ସରସିଜାସନସନ୍ନିବିଷ୍ଟଃ ।
କେୟୁରବାନ୍ ମକରକୁଣ୍ଡଳବାନ୍ କିରିଟୀ ।
ହାରୀ ହିରଣ୍ମୟବପୁର୍ଧୃତଶଙ୍ଖଚକ୍ରଃ ।
ଓଁ ନମସ୍ତେ ବ୍ରହ୍ମରୂପାୟ ନମସ୍ତେ ବିଷ୍ଣୁରୂପିଣେ ।
ନମସ୍ତେ ରୁଦ୍ରରୂପାୟ ନମସ୍ତୁଭ୍ୟଂ ତ୍ରିମୂର୍ତ୍ତୟେ ॥

—×—

## ସନ୍ଧ୍ୟୋପାସନା ବିଧିରେ ଉଲ୍ଲିଖିତ କେତେକ ବୈଦିକ ମନ୍ତ୍ରମାନଙ୍କର ଭାବାନୁବାଦ

୧ ) ଓଁ ତଦ୍‌ବିଷ୍ଣୋଃ – ଶୁ.ଯ.ବେ଼.କାଣ୍ୱସଂହିତା – ଅ.୬/ମ.୬ ବିଷ୍ଣୁଙ୍କ ପରମପଦକୁ ବିଦ୍ୱାନ୍‌ମାନେ ସର୍ବଦା ଦେଖନ୍ତି ଯେପରି ଆକାଶରେ ବିସ୍ତୃତ ନକ୍ଷତ୍ରମଣ୍ଡଳାଦିକୁ ଆମ ଚକ୍ଷୁ ଦେଖୁଥାଏ ।

୨ ) ଓଁ ଋତଂ ଚ ସତ୍ୟଂ ଋଗ୍‌ବେଦ–ମ୧୦/୧୯୦/୧ – (ଏହି ମନ୍ତ୍ରପାଠ କରିବାଦ୍ୱାରା ଓ ଅର୍ଥଜ୍ଞାନ ହେବା ଦ୍ୱାରା ଜୀବନରେ ଯେତେ ପ୍ରକାର ଅର୍ଜିତ ପାପକର୍ମ ତାହା ବିନଷ୍ଟ ହୁଏ ।) ଋତଂ ଚ ସତ୍ୟଂ – ଏହି ପଦଦ୍ୱୟରେ ପରଂବ୍ରହ୍ମ ଅଭିପ୍ରେତ । ନିରୁଦ୍ଧବୃତ୍ତି ରୂପକ ମହାପ୍ରଳୟାବସ୍ଥାରୁ ସୃଷ୍ଟିକୁ ଆରମ୍ଭ କରିଥିଲେ ପ୍ରଭୁ, ଯାହାଙ୍କର ସମଗ୍ର ବିଶ୍ୱ ବଶୀଭୂତ, ଯେ ତପସ୍ୟାବଳରେ ପ୍ରଥମେ ଅନ୍ଧକାରମୟ ରାତ୍ରିକୁ ଉତ୍ପନ୍ନ କଲେ, ତା ପରେ କ୍ରମଶଃ ଜଳମୟ ସମୁଦ୍ର ଏବଂ ବିଶ୍ୱର ସୃଷ୍ଟିକର୍ତ୍ତା ବିଧାତାଙ୍କ ସୃଷ୍ଟି । ମହାପ୍ରଳୟାବସ୍ଥାରେ ବିଲୁପ୍ତପ୍ରାୟ ଜଗତକୁ ପୂର୍ବକଳ୍ପ (ସନ୍ଧିଯୁକ୍ତ ଚତୁର୍ଦ୍ଦଶ ମନୁଙ୍କ କାଳକୁ ଏକ କଳ୍ପ କୁହାଯାଏ, ଅଥବା ଏ ସୃଷ୍ଟିର ପୂର୍ବରୁ କଳ୍ପିତ ଅର୍ଥାତ୍ ପୂର୍ବ ବିହିତ ସୃଷ୍ଟିପ୍ରକ୍ରିୟା) ଅନୁସାରେ ଦିବସ ଓ ରାତ୍ରିର ସୃଷ୍ଟିକର୍ତ୍ତା ସୂର୍ଯ୍ୟ ଓ ଚନ୍ଦ୍ରଙ୍କୁ, କ୍ରମଶଃ ଦିବାରାତ୍ରିର ପ୍ରବିଭାଗ ପରିକଳ୍ପନାରୁ ସମ୍ବତ୍ସର ସମ୍ଭୂତ । ଏହିପରି

କ୍ରମେ ସ୍ୱର୍ଗ, ପୃଥିବୀ ଓ ନକ୍ଷତ୍ରମଣ୍ଡଳ ଖଚିତ ଆକାଶାଦି ଚରାଚର ଜଗତର ସୃଷ୍ଟିହେଲା ।

୩) ଓଁ ଭୂର୍ଭୁବଃ ସ୍ୱଃ - ଶୁ.ଯ.ର୍ବେ.କା.ସଂ-ଅ.୩୬/ମ.୩- ପୃଥିବୀ, ଅନ୍ତରିକ୍ଷ ଓ ଦେବଲୋକରେ ପରିବ୍ୟାପ୍ତ ବରଣୀୟ ସବିତା ଦେବଙ୍କ ବରଣୀୟ ତେଜକୁ ଆମେ ଧାରଣ କରୁଅଛୁ । ଯାହା ଆମ ବୁଦ୍ଧିକୁ ସନ୍ମାର୍ଗରେ ପ୍ରେରିତ କରିବ ।

୪) ଓଁ ଆପୋହିଷ୍ଠା - ଶୁ.ଯ.ର୍ବେ.କା.ସଂ.-ଅ.୧୨/ମ.୫୧, ୫୨ ଓ ୫୩- ହେ ଜଳ ସମୂହ । ତୁମେ ସବୁପ୍ରାଣୀମାନଙ୍କର ସୁଖ ପ୍ରଦାୟକ । ଆମ୍ଭମାନଙ୍କୁ ଅନ୍ନପ୍ରଦାନ କରି ଭୋକ୍ତୃତ୍ୱରେ ସହାୟକ ହେବା ସହିତ ରମଣୀୟ ଦ୍ରଷ୍ଟୃତ୍ୱଶକ୍ତି ସମ୍ପନ୍ନ କର । ଅର୍ଥାତ୍ ଐହିକ ଭୋକ୍ତୃତ୍ୱ ଓ ପାରଲୌକିକ ବ୍ରହ୍ମଦର୍ଶନ ନିମିତ୍ତ ଯୋଗ୍ୟତା ପ୍ରଦାନ କର । ପିଲାମାନଙ୍କର ହିତାକାଙ୍‌କ୍ଷିଣୀ ମାମାନେ ଯେପରି ନିଜର ସ୍ତନ୍ୟପାନ କରାଇ ସମୃଦ୍ଧ କରନ୍ତି ଠିକ୍ ସେହିପରି ହେ ଜଳସମୂହ ! ତୁମର ଯେଉଁ ଅତ୍ୟନ୍ତ କଲ୍ୟାଣକାରୀ ରସ ତାହାଦ୍ୱାରା ଆମକୁ ତୃପ୍ତି ପ୍ରଦାନ କର । ହେ ଜଳ ସମୂହ ! ତୁମେ ଯେଉଁ ଯଜମାନଙ୍କ ଯଜ୍ଞଶାଳାରେ ଆମପାଇଁ ଶାନ୍ତିପ୍ରଦ ହେଲ, ସେହି ଯଜମାନର ସ୍ୱର୍ଗପ୍ରାପ୍ତି ପାଇଁ ତୁମେ ସହାୟକ ହୁଅ ଓ ଆମ୍ଭମାନଙ୍କୁ ମଧ ସେହି ସ୍ୱର୍ଗପ୍ରାପ୍ତି ପାଇଁ ଯୋଗ୍ୟତା ପ୍ରଦାନ କର ଅଥବା ପୁତ୍ରପୌତ୍ରାଦି ପ୍ରାପ୍ତି କରାଇ ଆମର ଅଭିବୃଦ୍ଧିକାରକ ହୁଅ ।

୫) ଓଁ ଶନ୍ନ ଆପୋ-ତୈ.ଆ.-ମରୁଭୂମିସ୍ଥ ଜଳ ଆମର କଲ୍ୟାଣ କରନ୍ତୁ । ଅନୂପ ଅର୍ଥାତ୍ ନଦନଦୀ ଜଳାଶୟାଦି ସ୍ଥିତ ଜଳ ଆମପାଇଁ ହିତକାରକ ହୁଅନ୍ତୁ । ସମୁଦ୍ରପାଣି ମଧ ଆମର ହିତ ସାଧନ କରନ୍ତୁ ।

୬) ଓଁ ଦ୍ରୁପଦାଦିବ - ଶୁ.ଯ.ର୍ବେ.କା.ସଂ.-ଅ୨୨/ମ.୫ - ଦ୍ରୁପଦ (କଠଉ ବା ଯୋତା) ର ଦୋଷଦ୍ୱାରା ଯେପରି ପାଦ ଦୂଷିତ ହୁଏନାହିଁ, ଘର୍ମ ବା ସ୍ୱେଦଯୁକ୍ତ ଶରୀର ଯେପରି ସ୍ନାନଦ୍ୱାରା ସ୍ୱେଦମୁକ୍ତ ଅର୍ଥାତ୍ ମଳନିର୍ମୁକ୍ତ ହୋଇଥାଏ ଏବଂ ଯେପରି ଘୃତ ଛାଣିବା ଦ୍ୱାରା କୀଟାଦିରୁ ମୁକ୍ତ ବା ଶୁଦ୍ଧ ହୋଇଥାଏ, ଠିକ୍ ସେହିପରି ଜଳ ମୋତେ ସମସ୍ତ ପାପରୁ ମୁକ୍ତ କର ।

୭) ନୀଳୋତ୍ପଳଦଳ - (ପୂରକ ପ୍ରାଣାୟାମରେ) ନୀଳକୁମୁଦଭଳି ଯାହାଙ୍କର ଶରୀର ଶ୍ୟାମଳବର୍ଣ୍ଣ ବିଶିଷ୍ଟ, ଚତୁର୍ବାହୁ, ଆମ ନାଭିଦେଶରେ ଅବସ୍ଥିତ ଯେଉଁ ପରମାତ୍ମା ଭଗବାନ୍ ବିଷ୍ଣୁ ତାଙ୍କୁ ପୂରକ ପ୍ରାଣାୟାମରେ ଚିନ୍ତାକରିବେ ।

୮) କୁମ୍ଭକେ – ଆମ ହୃଦୟ ପଦ୍ମାସନରେ ବିରାଜମାନ, ରକ୍ତବର୍ଣ୍ଣ ଶରୀରଧାରୀ, ଚତୁର୍ମୁଖ ପିତାମହ ବ୍ରହ୍ମାଙ୍କୁ କୁମ୍ଭକପ୍ରାଣାୟାମରେ ଧ୍ୟାନ କରିବେ ।

୯) ରେଚକେ – ଶୁଦ୍ଧ ସ୍ଫଟିକ ଭଳି ସ୍ୱଚ୍ଛଶରୀରଧାରୀ, ନିର୍ମଳ, ପାପନାଶକାରୀ, ତ୍ରିଲୋଚନ, ଆମ କପାଳ ଦେଶରେ ଅବସ୍ଥିତ ମହେଶ୍ୱରଙ୍କୁ ରେଚକ ପ୍ରାଣାୟାମରେ ଚିନ୍ତା କରିବେ ।

୧୦) ଓଁ ଭୂଃ ଓଁ ଭୁବଃ – ତୈ.ଆ.–ଅ.୧୦/ମ.୨୭ ଭୂଲୋକ (ପୃଥିବୀ), ଭୁବଲୋକ (ଆକାଶ), ସ୍ୱର୍ଲୋକ (ସ୍ୱର୍ଗ), ମହଲୋକ, ଜନଲୋକ, ତପଃଲୋକ ଓ ସତ୍ୟଲୋକ ଏହିପରି କ୍ରମଶଃ ଉପର ଉପର ସାତଗୋଟି ଲୋକରେ ପରିବ୍ୟାପ୍ତ ବରଣୀୟ ସବିତାଦେବଙ୍କ ତେଜକୁ ଆମେ ଧାରଣ କରିଅଛୁ । ଜଳ, ତେଜ ଓ ରସରୂପକ ହିଁ ବ୍ରହ୍ମ ଏବଂ ସେହି ବ୍ରହ୍ମ ଭୂଲୋକ ଭୁବଲୋକ ଓ ସ୍ୱର୍ଲୋକର ପ୍ରଣବ 'ଓଁ'କାର ରୂପରେ ପ୍ରକଟିତ ।

୧୧) ଓଁ ସୂର୍ଯ୍ୟଶ୍ଚ ମା – ତୈ.ଆ.ପ୍ର.–୧୦/ଅ.୨୫ – ସୂର୍ଯ୍ୟ, କ୍ରୋଧ ତଥା କ୍ରୋଧର ସ୍ୱାମୀ – ଏ ସମସ୍ତେ କ୍ରୋଧ ଜନିତ ପାପ ଗୁଡ଼ିକରୁ ମୋତେ ରକ୍ଷା କରନ୍ତୁ । ରାତ୍ରିରେ ମୋର ମନ, ବାକ୍ୟ, ହାତ, ପାଦ, ଉଦର ତଥା ଶିଶ୍ନ (ଉପସ୍ଥ–ଜନନେନ୍ଦ୍ରିୟ) ଆଦି ଇନ୍ଦ୍ରିୟମାନଙ୍କ ଦ୍ୱାରା ଯେଉଁ ପାପକର୍ମ ଗୁଡ଼ିକ ହୋଇଅଛି ସେ ସମସ୍ତକୁ ରାତ୍ରିକାଳାଭିମାନୀ ଦେବ ନଷ୍ଟ କରନ୍ତୁ । ଏତଦତିରିକ୍ତ ଯେ କିଛି ବି ପାପ ବର୍ତ୍ତମାନ କରୁଅଛି ତାହାକୁ ଏବଂ ସେ ସବୁର କର୍ତ୍ତୃତ୍ୱାଭିମାନୀ ନିଜକୁ ମୋକ୍ଷର କାରଣସ୍ୱରୂପ ପ୍ରକାଶମୟ ସୂର୍ଯ୍ୟରୂପକ ପରମେଶ୍ୱରଙ୍କ ଠାରେ ମୁଁ ଆହୁତି (ସ୍ୱାହା) ଦ୍ୱାରା ସମର୍ପଣ କରୁଅଛି ।

୧୨) ଆପଃ ପୁନନ୍ତୁ – ପ୍ରାଣାଗ୍ନିହୋତ୍ରୋପନିଷଦ – ମ.୯ – ହେ ଜଳ ! ଆପଣ ପୃଥିବୀକୁ ପବିତ୍ର କରନ୍ତୁ ଏବଂ ଶୁଦ୍ଧ ହୋଇଥିବା ପୃଥିବୀ ମୋତେ ପବିତ୍ରତା ପ୍ରଦାନ କରନ୍ତୁ । ବ୍ରହ୍ମପୂତ ପୃଥିବୀ ମୋତେ ପବିତ୍ରତା ପ୍ରଦାନ କରନ୍ତୁ । ଯେଉଁ ଉଚ୍ଛିଷ୍ଟ, ଅଭକ୍ଷ୍ୟ ତଥା ଦୁଶ୍ଚରିତ୍ରତା ଜନିତ ଦୋଷ ମୋଠାରେ ସନ୍ନିହିତ ସେ ସବୁକୁ ନଷ୍ଟକରି ଜଳଦେବତା ପବିତ୍ରତା ପ୍ରଦାନ କରନ୍ତୁ । ସେଥିପାଇଁ ଏହି ଆହୁତି (ସ୍ୱାହା) ତାଙ୍କୁ ସମର୍ପଣ କରୁଅଛି ।

୧୩) ଓଁ ଅଗ୍ନିଶ୍ଚ ମା ମନ୍ୟୁଶ୍ଚ - ତୈ.ଆ.ପ୍ର.୧୦।ଅ.୨୪ - ଅଗ୍ନି, କ୍ରୋଧର ଅଭିମାନୀ ଦେବତା ଏବଂ କୋଧର ସ୍ୱାମୀ ଏମାନେ ସମସ୍ତେ ମୋର କ୍ରୋଧଜନିତ ପାପ ସମୂହରୁ ମୋତେ ରକ୍ଷାକରନ୍ତୁ । ମୁଁ ଦିନବେଳେ ମନ, ବାକ୍ୟ, ହାତ, ପାଦ, ପେଟ ଏବଂ ଉପସ୍ଥ ଇନ୍ଦ୍ରିୟାଦି ଦ୍ୱାରା ଯେଉଁ ସବୁ ପାପ କରିଅଛି ସେ ସବୁକୁ ଦିନର ଅଭିମାନୀ ଦେବ ନଷ୍ଟ କରନ୍ତୁ । ଏତଦ୍ ବ୍ୟତୀତ ଯାହା କିଛି ପାପ ମୋ ପାଖରେ ଅବଶିଷ୍ଟ ରହିଅଛି ତାହାକୁ, ତଥା ତଜ୍ଜନିତ ମୋର ଅଭିମାନକୁ ମଧ୍ୟ ମୋକ୍ଷର କାରଣୀଭୂତ ସତ୍ୟସ୍ୱରୂପ ପ୍ରକାଶମୟ ପରମେଶ୍ୱରଙ୍କଠାରେ ଆହୁତି ଦ୍ୱାରା ସମର୍ପଣ କରୁଅଛି । ଯାହାଦ୍ୱାରା ସେ ସମସ୍ତ ଭସ୍ମୀଭୂତ ହୋଇଯିବ ।

୧୪) ଉଦୁତ୍ୟଂ ଜାତଦେବସଂ - ଶୁ.ଯ.ର୍ବେ.କା.ସଂ-ଅ.୩୨।ମ.୩୧ - ପ୍ରଜାମାନଙ୍କ ଏ ବିଷୟରେ ସମସ୍ତ କଥାକୁ ଜାଣିପାରୁଥିବା ହେତୁ ଜାତପ୍ରଜ୍ଞ ସୂର୍ଯ୍ୟଦେବତା ଦୀପ୍ତିମାନ୍ କିରଣସ୍ୱରୂପ ସମସ୍ତ ଜ୍ଞାନର ଉଦ୍‌ଗମସ୍ଥଳ ଓ ବିଶ୍ୱଦ୍ରଷ୍ଟା ଅଟନ୍ତି ।

୧୫) ଚିତ୍ରଂ ଦେବାନାଂ - ଶୁ.ଯ.ର୍ବେ.କା.ସଂ- ଅ.୯।ମ.୭ - ସୂର୍ଯ୍ୟ ଆଶ୍ଚର୍ଯ୍ୟ ଭାବରେ ନିଜ କିରଣସମୂହଦ୍ୱାରା ସ୍ୱର୍ଲୋକକୁ ଉଦ୍‌ଭାସିତ କରି ଉଦୟ ହେଉଅଛନ୍ତି । ମିତ୍ର, ବରୁଣ, ଅଗ୍ନିଙ୍କ ଚକ୍ଷୁ ସଦୃଶ ସେ ସମଗ୍ର ସ୍ୱର୍ଗଲୋକ, ଭୂଲୋକ ଓ ଆକାଶକୁ ନିଜ ତେଜଦ୍ୱାରା ପ୍ରକାଶ କରିବା ସହିତ ଜଗତର ଜଙ୍ଗମ ସ୍ଥାବରାଦି ସମସ୍ତଙ୍କ ପ୍ରାଣଦାତା ଓ ଆତ୍ମସ୍ୱରୂପ ଅଟନ୍ତି ।

୧୬) ଓଁ ହଂସଃ ଶୁଚିଷଦ୍ - ଶୁ.ଯ.ର୍ବେ.କା.ସଂ- ଅ.୧୧।୩୪ ଓ ୧୩।୧୫- ହଂସଃ ଅର୍ଥାତ୍ ଆଦିତ୍ୟ (ଏଠାରେ ସୂର୍ଯ୍ୟଦେବଙ୍କୁ ପରମାତ୍ମା ରୂପରେ ପ୍ରତିପାଦନ କରାଯାଇଅଛି ।) ଯେ କି ପବିତ୍ରତାରେ ଅବସ୍ଥିତ, ମନୁଷ୍ୟମାନଙ୍କ ପ୍ରବର୍ତ୍ତକ, ବାୟୁରୂପରେ ଅନ୍ତରିକ୍ଷରେ ସ୍ଥିତ, ଦେବତାଙ୍କ ଆହ୍ୱାନକର୍ତ୍ତା, ଆହବନୀୟ ଅଗ୍ନିରୂପରେ ଯଜ୍ଞବେଦୀରେ ବିରାଜମାନ, ସର୍ବମାନ୍ୟ, ପ୍ରାଣ ରୂପରେ ମାନବଶରୀରରେ ଅବସ୍ଥିତ, ଉତ୍‌କୃଷ୍ଟ ସ୍ଥାନ ନିବାସୀ, ଯଜ୍ଞପୁରୁଷ, ମଣ୍ଡଳରୂପରେ ଆକାଶରେ ବିଦ୍ୟମାନ, ମତ୍ସ୍ୟାଦି ରୂପରେ ପାଣିରୁ ଉତ୍ପନ୍ନ, ସ୍ୱେଦଜ-ଅଣ୍ଡଜ-ଜରାୟୁଜ ଓ ଉଦ୍‌ଭିଜ୍ଜ ରୂପରେ ପୃଥିବୀରେ ବିଦ୍ୟମାନ, ପାଷାଣରୁ ଅଗ୍ନି ଭାବରେ ଏବଂ ଜଳରୁ

ମେଘ ରୂପରେ ଉତ୍ପନ୍ନ, ସର୍ବବ୍ୟାପକ, ମହତ୍ ପରିମାଣ ବିଶିଷ୍ଟ ସେ ହିଁ ପରମାତ୍ମା ଅଟନ୍ତି ।

୧୭) ତଚ୍ଚକ୍ଷୁର୍ଦେବହିତଂ – ଶୁ.ଯ.ର୍ବେ.କା.ସଂ.ଅ.୩୬ମ.୨୪ – ଆଦିତ୍ୟ ଦେବ ଜଗତର ନେତ୍ରସ୍ୱରୂପ, ସମସ୍ତ ଦେବତାଙ୍କ ପ୍ରିୟ ଓ ଶୁଦ୍ଧସ୍ୱରୂପ । ସେ ପୂର୍ବଦିଗରୁ ଉଦୟ ହେଉଅଛନ୍ତି । ଯାହାଙ୍କ ପ୍ରସାଦରୁ ଆମେ ଶହେବର୍ଷ ପର୍ଯ୍ୟନ୍ତ ଚକ୍ଷୁ ଇନ୍ଦ୍ରିୟଦ୍ୱାରା ନିର୍ବିଘ୍ନରେ ସବୁ ଦେଖିପାରିବୁ । ସ୍ୱାଧୀନଭାବରେ ଶହେବର୍ଷ ପର୍ଯ୍ୟନ୍ତ ବଞ୍ଚି ରହିପାରିବୁ । ଶହେବର୍ଷ ପର୍ଯ୍ୟନ୍ତ ସବୁ ସ୍ପଷ୍ଟ ଭାବରେ ଶୁଣିପାରିବୁ ।

—×—

**ରୁଦ୍ରାଭିଷେକ ସଂକଳ୍ପ**[୧] – ('ଅନୁଷ୍ଠାନ ପ୍ରକାଶ' ନାମକ ମହାନିବନ୍ଧ ଗ୍ରନ୍ଥରେ ହେମାଦ୍ରି ଓ ମହାର୍ଣ୍ଣବ ତନ୍ତ୍ରୋଦ୍ଧୃତ ରୁଦ୍ରାଭିଷେକ ବିଧାନ ଅନୁସାରେ) ସୁମୁହୂର୍ତ୍ତେ କୃତନିତ୍ୟକ୍ରିୟଃ ଗୁରୁଗଣେଶାଦୀନ୍ ମନସା ସମ୍ପୂଜ୍ୟ ପ୍ରଣମ୍ୟ ଚ ଧୃତଭସ୍ମତ୍ରିପୁଣ୍ଡ୍ର ରୁଦ୍ରାକ୍ଷଃ ପବିତ୍ରପାଣିଃ ଶିବସମୀପେ ତଦ୍ଦକ୍ଷିଣତଃ ପଶ୍ଚିମତୋ ବା ସନ୍ମୁଖଃ ସ୍ୱାସନେ

---

୧. ଏଠାରେ ଉଲ୍ଲେଖଯୋଗ୍ୟ ଯେ ପ୍ରତ୍ୟେକ ପୂଜା ପଦ୍ଧତିରେ ଯଜମାନର ବା ପୂଜକଙ୍କ ମନୋବାଞ୍ଛିତ ଫଳପ୍ରାପ୍ତି ବା ରୋଗ, ଦୁଃଖ, କଷ୍ଟ ଆଦି ନିବାରଣ ଅଥବା ପାପାଦି ଖଣ୍ଡନ ନିମିତ୍ତ ଏହିଭଳି ଯେଉଁ ଉଦ୍ଦେଶ୍ୟ ବା ଲକ୍ଷ୍ୟ ନେଇ କର୍ମ କରାଯାଏ ସେଥିରେ ସଂକଳ୍ପ ବିଧେୟ । ମାତ୍ର ଏହାଠାରୁ ବହୁ ଊର୍ଦ୍ଧ୍ୱରେ ନିଷ୍କାମୋପାସନା ଯାହା ନିତ୍ୟୋପାସନା ଏବଂ କେତେକ ସ୍ଥଳରେ ମଧ୍ୟ ଶ୍ରୀଶିବପ୍ରୀତିକାମନୟା – ଏପରି ଉତ୍ସର୍ଗୀକୃତ ମନୋଭାବ ମଧ୍ୟ ସ୍ଥାନ ପାଇଥାଏ । ଯେ କିଛି ଫଳପ୍ରାପ୍ତି ରୂପକ ସ୍ୱାର୍ଥ ସମ୍ବଳିତ ପୂଜା ବା ସକାମୋପସନା ସାମାନ୍ୟ ସ୍ତରର ଅଟେ । କିନ୍ତୁ ଯାହାଙ୍କ କୃପାଲବ୍ଧ ଆମର ଏହି ଦୁର୍ଲଭ ମନୁଷ୍ୟ ଜନ୍ମ, ଯାହା ମୋକ୍ଷ ପ୍ରାପ୍ତିର ଏକମାତ୍ର ଦ୍ୱାର ବୋଲି ଶାସ୍ତ୍ର ବର୍ଣ୍ଣିତ ଓ ସେଥି ନିମିତ୍ତ ପରମପିତାଙ୍କୁ କୃତଜ୍ଞତା ଜଣାଇବା ରୂପକ କର୍ତ୍ତବ୍ୟ ସମ୍ପାଦନ ଦୃଷ୍ଟିରଖି ନିତ୍ୟୋପାସନା ତାହା ନିଷ୍କାମୋପାସନା, ଏଣୁ ଏହା ବିଶେଷ ପଦବାଚ୍ୟ । ଯେଉଁଥିରେ କେବଳ ପରମେଶ୍ୱରଙ୍କ ନିତ୍ୟସେବା ଓ ଶରଣାଗତି ହିଁ ଏକାନ୍ତ ଅଭୀଷ୍ଟ । ଏପରିକି ଦୁର୍ଲଭ ମୁକ୍ତିକୁ ମଧ୍ୟ ସେଭଳି ଭକ୍ତ ତୁଚ୍ଛ ମଣି ଥାଆନ୍ତି । ଏହାର ଶାସ୍ତ୍ରୀୟ ପ୍ରମାଣ ଯଥା –

'ଅୟେ ! ତ୍ୱାଂ କି ଯାଚେ ଧୃତଶରଣ ! ମାଂ ଶିକ୍ଷୟ ବିଭୋ !
ନ ମୁକ୍ତିଂ ତ୍ୱତ୍ପାଦାର୍ଚ୍ଚନବିମୁଖତାପାଦନକରୀମ୍ ।
ନ ଭକ୍ତିଂ ତ୍ୱଦ୍ଭକ୍ତାନୁସରଣପରିକ୍ଲେଶବିଧିତୋ,
ନ ଭୁକ୍ତିଂ ବ୍ରହ୍ମାଣ୍ଡଂ ମଶକହନନେ କୋ ବିସୃଜତି ।'

ଉଦଙ୍‌ମୁଖ ଉପବିଶ୍ୟ ପ୍ରଦୀପଂ ପ୍ରଜ୍ୱାଲ୍ୟ ମୂଳେନାଚମ୍ୟ ଦେଶକାଳୌ ସଂକୀର୍ତ୍ୟ ମମାମ୍ନଃ (ଅମୁକ ଗୋତ୍ରସ୍ୟ ଅମୁକ ନାମଧେୟସ୍ୟ ଯଜମାନସ୍ୟ ବା) ଶ୍ରୁତିସ୍ମୃତିପୁରାଣୋକ୍ତଫଳାବାପ୍ତୟେ ଧର୍ମାର୍ଥକାମମୋକ୍ଷସିଦ୍ଧିଦ୍ୱାରା ଜନ୍ମଜନ୍ମାନ୍ତର-କୃତସର୍ବପାପନିରାସାର୍ଥଂ ସର୍ବବ୍ୟାଧିନିବୃତ୍ତିପୂର୍ବକସର୍ବାଭୀଷ୍ଟସିଦ୍ଧ୍ୟର୍ଥଂ ବା ଅମୁକକାମନାସିଦ୍ଧ୍ୟର୍ଥଂ ଶ୍ରୀଭବାନୀଶଙ୍କରମୃତ୍ୟୁଞ୍ଜୟମହାରୁଦ୍ରଦେବତାପ୍ରୀତ୍ୟର୍ଥଂ ଚ ସ୍ୱୟଂ (ବ୍ରାହ୍ମଣଦ୍ୱାରା ବା) ଅମୁକଦ୍ରବ୍ୟେଣ ନମସ୍ତେ ରୁଦ୍ରମନ୍ୟବ ଇତ୍ୟାଦି ଶତରୁଦ୍ରୀୟେଣ (ଷଡ଼ଙ୍ଗରୁଦ୍ରେଣ ବା ଅମୁକ ରୂପାଦି ରୁଦ୍ରଜପେନ ବା ରୁଦ୍ରାଷ୍ଟାଧ୍ୟାୟୀ ପ୍ରୋକ୍ତମନ୍ତ୍ରସକଳୈଃ ବା) ସନ୍ତତଧାରୟା ଅଭିଷେକଂ କରିଷ୍ୟେ । ଇତି ସଂକଳ୍ପ୍ୟ-

(ଅର୍ଥାତ୍ ଶୁଭବେଳା ଦେଖି ସମସ୍ତ ସନ୍ଧ୍ୟାବନ୍ଦନାଦି ନିତ୍ୟକର୍ମମାନ ସମାପନ କରି ଗୁରୁଗଣେଶାଦିଙ୍କୁ ମନରେ ପୂଜା ଓ ପ୍ରଣାମ ନିବେଦନ କରି କପାଳରେ ଭସ୍ମତ୍ରିପୁଣ୍ଡ୍ର[୨] ଗଳାରେ ରୁଦ୍ରାକ୍ଷମାଳା, ହାତରେ ବଟୁଧାରଣ କରି ଶିବଙ୍କ ସମୀପରେ ତାଙ୍କ ଦକ୍ଷିଣ ଦିଗରେ ବା ପଶ୍ଚିମ ଦିଗରେ ଉତ୍ତର ଦିଗକୁ ମୁହଁକରି ଆସନରେ ବସି ଆଚମନ ସହିତ ପ୍ରାଣାୟାମ ଇତ୍ୟାଦି ସାରି ଦେଶକାଳବିଷୟରେ ଉଲ୍ଲେଖକରି ମୋର (ଯଜମାନର ବା) ଶ୍ରୁତି ସ୍ମୃତି ପୁରାଣାଦି କଥିତ ଫଳପ୍ରାପ୍ତିହେତୁ ଧର୍ମ-ଅର୍ଥ-କାମ-ମୋକ୍ଷ-ସିଦ୍ଧି ମାଧ୍ୟମରେ ସମସ୍ତ ପାପବିନାଶ ପୂର୍ବକ ସମସ୍ତପ୍ରକାର ରୋଗ ନିବୃତ୍ତି ଓ ସର୍ବବିଧ ଅଭୀଷ୍ଟ ସିଦ୍ଧି ନିମିତ୍ତ ଅଥବା ଅମୁକ କାମନା ସିଦ୍ଧି ନିମିତ୍ତ ଶ୍ରୀଭବାନୀଶଙ୍କର ମୃତ୍ୟୁଞ୍ଜୟ ମହାରୁଦ୍ର ଦେବତାଙ୍କ ପ୍ରୀତି ପାଇଁ ନିଜେ (ବ୍ରାହ୍ମଣଦ୍ୱାରା ବା) ଅମୁକ ଦ୍ରବ୍ୟରେ ନମସ୍ତେ ରୁଦ୍ରମନ୍ୟବ ବା ଶତରୁଦ୍ରୀ ବା ରୁଦ୍ରାଷ୍ଟାଧ୍ୟାୟୀ ଅଥବା ଷଡ଼ଙ୍ଗ ରୁଦ୍ର ମନ୍ତ୍ରଦ୍ୱାରା ନିରବଚ୍ଛିନ୍ନ (ଜଳ ବା ଦୁଗ୍ଧ) ଧାରାରେ ରୁଦ୍ରାଭିଷେକ କରିବି ।

---

୨. ଏଠାରେ ମତଭେଦ ଯଥା - ଲିଙ୍ଗପୁରାଣାନୁସାରେ ଭସ୍ମତ୍ରିପୁଣ୍ଡ୍ର, ରୁଦ୍ରାକ୍ଷମାଳା ପରିଧାନ ବିନା ଶିବପୂଜା ନିଷ୍ଫଳ । ବ୍ରହ୍ମାଣ୍ଡପୁରାଣରେ ଊର୍ଦ୍ଧ୍ୱପୁଣ୍ଡ୍ର ମାଟିରେ ତ୍ରିପୁଣ୍ଡ୍ର ଭସ୍ମରେ ଅଥବା ଚନ୍ଦନରେ ତିଳକ ଦ୍ୱିଜ ଯଦୃଚ୍ଛା କରିପାରିବେ । ପୁଣି ଊର୍ଦ୍ଧ୍ୱପୁଣ୍ଡ୍ର ବ୍ରାହ୍ମଣଙ୍କର, କ୍ଷତ୍ରିୟଙ୍କର ତ୍ରିପୁଣ୍ଡ୍ର, ଅର୍ଦ୍ଧଚନ୍ଦ୍ର ବୈଶ୍ୟଙ୍କର ଓ ବର୍ତ୍ତୁଳ ବା ଗୋଲାକାର ଶୂଦ୍ରମାନଙ୍କର ଏପରି ବିଧାନ ଥିବା ହେତୁ ବ୍ରାହ୍ମଣମାନେ ଚନ୍ଦନରେ ତିଳକ ନିଜ ଇଚ୍ଛା ଅନୁସାରେ କରିପାରିବେ ।

## ଷଡ଼ଙ୍ଗନ୍ୟାସ (ମୂଳମନ୍ତ୍ର)-

ଏହିପରି ସଂକଳ୍ପ କରି କାର୍ଯ୍ୟାରମ୍ଭ କରିବେ । ସେଥିପାଇଁ ଷଡ଼ଙ୍ଗନ୍ୟାସ ଯଥା– ଓଁ ମନୋଜ୍ୟୋତିରିତି ମନ୍ତ୍ରସ୍ୟ ବୃହସ୍ପତିରଷିଃ ବୃହତୀଛନ୍ଦଃ ବୃହସ୍ପତିର୍ଦ୍ଦେବତା ହୃଦୟନ୍ୟାସେ ବିନିଯୋଗଃ । ଓଁ ମନୋଜ୍ୟୋତିର୍ଜୁଷତାମାଜ୍ୟସ୍ୟ ବୃହସ୍ପତିର୍ଯଜ୍ଞମିମଂ ତନୋତ୍ୱରିଷ୍ଟଂ ଯଜ୍ଞଗୁଁ ସମିମନ୍ଦଧାତୁ । ବିଶ୍ୱେ ଦେବାସ ଇହମାଦୟନ୍ତା ମୋଂ୩ ପ୍ରତିଷ୍ଠ । (୧) ଓଁ ହୃଦୟାୟ ନମଃ । ଓଁ ଅବୋଧଗ୍ନିରିତି ମନ୍ତ୍ରସ୍ୟ ବୁଧଗବିଷ୍ଠିରାରଷିଃ ତ୍ରିଷ୍ଟୁପ୍‌ଛନ୍ଦଃ ଅଗ୍ନିର୍ଦ୍ଦେବତା ଶିରୋନ୍ୟାସେ ଜପେ ବିନିଯୋଗଃ । ଓଁ ଅବୋଧଗ୍ନିଃ ସମିଧା ଜନାନାଂ ପ୍ରତିଧେନୁମିବାୟତୀମୁଷାସମ୍ । ଯହ୍ୱା ଇବ ପ୍ରବୟାମୁଜ୍ଜିହାନାଃ ପ୍ରଭାନବଃ ସିସ୍ରତେ ନାକମଚ୍ଛ । (୨) ଓଁ ଶିରସେ ସ୍ୱାହା । ଓଁ ମୂର୍ଦ୍ଧାନମିତି ମନ୍ତ୍ରସ୍ୟ ଭରଦ୍ୱାଜରଷିଃ ତ୍ରିଷ୍ଟୁପ୍‌ଛନ୍ଦଃ ଅଗ୍ନିର୍ଦ୍ଦେବତା ଶିଖାନ୍ୟାସେ ଜପେ ବିନିଯୋଗଃ । ଓଁ ମୂର୍ଦ୍ଧାନଂ ଦିବୋ ଅରତି ପୃଥିବ୍ୟା ବୈଶ୍ୱାନରମୃତ ଆଜାତମଗ୍ନିମ୍ । କବିଗୁଁ ସମ୍ରାଜମତିଥିଂ ଜନାନାମାସନ୍ନାପାତ୍ରଂ ଜନୟନ୍ତ ଦେବାଃ । (୩) ଓଁ ଶିଖାୟୈ ବୌଷଟ୍ । ଓଁ ମର୍ମ୍ମାଣି ତେ ଇତି ମନ୍ତ୍ରସ୍ୟ ଅପ୍ରତିରଥରଷିଃ ବିରାଟ୍‌ଛନ୍ଦଃ ମର୍ମ୍ମାଣିଦେବତା କବଚନ୍ୟାସେ ଜପେ ବିନିଯୋଗଃ । ଓଁ ମର୍ମ୍ମାଣି ତେ ବର୍ମ୍ମଣା ଛାଦୟାମି ସୋମସ୍ତ୍ୱା ରାଜା ମୃତେ ନାନୁବସ୍ତାମ୍ । ଉରୋର୍ବରୀୟୋ ବରୁଣସ୍ତେ କୃଣୋତୁ ଜୟନ୍ତଂ ତ୍ୱାନୁ ଦେବା ମଦନ୍ତୁ । (୪) ଓଁ କବଚାୟ ହୁମ୍ । ଓଁ ବିଶ୍ୱତଶ୍ଚକ୍ଷୁରିତି ମନ୍ତ୍ରସ୍ୟ ବିଶ୍ୱକର୍ମା ଭୌବନରଷିଃ ତ୍ରିଷ୍ଟୁପ୍ ଛନ୍ଦଃ ବିଶ୍ୱକର୍ମାଦେବତା ନେତ୍ରନ୍ୟାସେ ଜପେ ବିନିଯୋଗଃ । ଓଁ ବିଶ୍ୱତଶ୍ଚକ୍ଷୁରୁତ ବିଶ୍ୱତୋମୁଖୋ ବିଶ୍ୱତୋବାହୁରୁତ ବିଶ୍ୱତସ୍ପାତ୍ । ସଂ ବାହୁଭ୍ୟାଂ ଧମତି ସଂତତ୍ରୈର୍ଦ୍ୟାବା ଭୂମୀ ଜନୟନ୍ ଦେବ ଏକଃ । (୫) ଓଁ ନେତ୍ରତ୍ରୟାୟ ବୌଷଟ୍ । ଓଁ ମାନସ୍ତୋକେ ଇତି ମନ୍ତ୍ରସ୍ୟ ପରମେଷ୍ଠୀରଷିଃ ଜଗତୀଛନ୍ଦଃ ଏକରୁଦ୍ରୋ ଦେବତା ଅସ୍ତ୍ରନ୍ୟାସେ ଜପେ ବିନିଯୋଗଃ । ଓଁ ମା ନସ୍ତୋକେ ତନୟେ ମାନ ଆୟୁଷି ମା ନୋ ଗୋଷୁ ମା ନୋ ଅଶ୍ୱେଷୁ ରୀରିଷଃ । ମାନୋ ବୀରାନ୍ ରୁଦ୍ର ଭାମିନୋ ବଧୀର୍ହବିଷ୍ମନ୍ତଃ ସଦମିତ୍ତ୍ୱା ହବାମହେ । (୬) ଓଁ ଅସ୍ତ୍ରାୟଫଟ୍ ।

ଧ୍ୟାନ – ଓଁ ଧ୍ୟାୟେନ୍ନିତ୍ୟଂ ମହେଶଂ ରଜତଗିରିନିଭଂ ଚାରୁଚନ୍ଦ୍ରାବତଂସଂ
ରତ୍ନାକଳ୍ପୋଜ୍ଜ୍ୱଳାଙ୍ଗଂ ପରଶୁମୃଗବରାଭୀତିହସ୍ତଂ ପ୍ରସନ୍ନମ୍ ।

ପଦ୍ମାସୀନଂ ସମନ୍ତାତ୍ ସ୍ତୁତମମରଗଣୈର୍ବ୍ୟାଘ୍ରକୃତ୍ତିବସାନମ୍
ବିଶ୍ୱାଦ୍ୟଂ ବିଶ୍ୱବନ୍ଦ୍ୟଂ ନିଖିଳଭୟହରଂ ପଞ୍ଚବକ୍ତ୍ରଂ ତ୍ରିନେତ୍ରମ୍ ॥

ଅଥବା (ବିଶେଷ ଧ୍ୟାନ) : ଓଁ ତ୍ରିନେତ୍ରଂ ଚତୁର୍ଭୁଜଂ ସୌମ୍ୟଂ ଶାନ୍ତଂ ସର୍ବାଭରଣ-ଭୂଷିତଂ ନୀଳଗ୍ରୀବଂ ଶଶାଙ୍କଚିହ୍ନଶୁଦ୍ଧସ୍ଫଟିକସଂକାଶଂ ନାଗଯଜ୍ଞୋପବୀତିନଂ ବ୍ୟାଘ୍ରଚର୍ମୋତ୍ତରୀୟକଂ କମଣ୍ଡଳୁଅକ୍ଷସୂତ୍ରହସ୍ତଂ ଅଭୟବରଦହସ୍ତଂ ତ୍ରିଶୂଳହସ୍ତଂ ଜ୍ୱଳତ୍କପିଜଟାଶିଖଂ ଅମୃତେନ ପରିପ୍ଳୁତଂ ଦିବ୍ୟଭୋଗସମାକୁଳଂ ଦିଗ୍‌ଦେବତା-ସମାବୃତ୍ତଂ ସୁରାସୁରୈଃ ନମସ୍କୃତ୍ୟଂ ବୃଷଭସ୍କନ୍ଧସମାରୂଢ଼ଂ ଉମାଦେହାର୍ଦ୍ଧଧାରିଣଂ ନିତ୍ୟଂ ଶାଶ୍ୱତଂ ଶୁଦ୍ଧଂ ଧ୍ରୁବମକ୍ଷୟମବ୍ୟୟମବ୍ୟକ୍ତଂ ବିଶ୍ୱରୂପିଣଂ ଶ୍ରୀରୁଦ୍ରଂ ଧ୍ୟାୟେତ୍ ।

## ଶ୍ରୌତ ମନ୍ତ୍ରମାନଙ୍କର ଭାବାନୁବାଦ

**ଷଡ଼ଙ୍ଗନ୍ୟାସ -**

୧) ମନ୍ତ୍ରସଂଖ୍ୟା (୧)-ଯଜୁର୍ବେଦ ଅ.୨/୧୩: ମନୋଜ୍ୟୋତିର୍ଜୁଷତାମ୍ - (ଦର୍ଶପୂର୍ଣ୍ଣମାସ ଯଜ୍ଞ ପ୍ରକରଣରେ ଯଜମାନ ସମିଧ ପ୍ରଦାନ ନିମିତ୍ତ ବ୍ରହ୍ମାଙ୍କଠାରୁ ଅନୁଜ୍ଞା ପ୍ରାର୍ଥନା ଓ ତତ୍‌ପ୍ରାପ୍ତି ବିଷୟପରକ ମନ୍ତ୍ର) ମନପରି ଅତ୍ୟନ୍ତ ବେଗବାନ୍ ହେ ସବିତା ଦେବ ! ଆପଣ ଏହି ଘୃତାହୁତିକୁ ସେବନ କରନ୍ତୁ । ବୃହସ୍ପତି ଦେବତା ଆମର ଏହି ଯଜ୍ଞକୁ ହିଂସାରହିତ କରିବା ସହିତ ପୂର୍ଣ୍ଣତାକୁ ପ୍ରାପ୍ତ କରାନ୍ତୁ । ଏହି ଯଜ୍ଞଦ୍ୱାରା ବିଶ୍ୱେଦେବମାନେ ତୃପ୍ତ ହୁଅନ୍ତୁ । ସମସ୍ତ ଦେବତାମାନେ ସମିଦାଧାନ ସମୟରେ ଯଜମାନକୁ ଅନୁଜ୍ଞା ପ୍ରଦାନ କରିବା ସହିତ ପ୍ରେରଣାଦାୟକ ମଧ୍ୟ ହୁଅନ୍ତୁ ।

୨) ମନ୍ତ୍ରସଂଖ୍ୟା (୨)- ଯଜୁର୍ବେଦ ଅ.୧୫/୨୪- ଅବୋଧ୍ୟଗ୍ନିଃ- (ଚୟନବେଦୀ ପ୍ରକରଣରେ ଅଗ୍ନିପ୍ରଶଂସା ପରକ ମନ୍ତ୍ର) - ଉଷା ସମୟରେ ଯେପରି ମନୁଷ୍ୟମାନେ ଉତ୍‌ଫୁଲ୍ଲିତ ହୁଅନ୍ତି, ଦୁଗ୍ଧବତୀ ଧେନୁକୁ ଦେଖି ତାର ବତ୍ସା ଯେପରି ଅତ୍ୟନ୍ତ ବିମୋହିତ ହୁଏ, ଦେଦୀପ୍ୟମାନ ଅଗ୍ନିର ଜ୍ୟୋତି ଯେମିତି ସ୍ୱର୍ଗପ୍ରତି ଅତ୍ୟନ୍ତ ବେଗରେ ଧାବିତ ଓ ଉଦ୍‌ଭାସିତ ହୋଇଥାଏ, ସୁଦକ୍ଷ ପକ୍ଷୀମାନେ ଯେପରି ଆହାର ଅନ୍ୱେଷଣରେ ଅତ୍ୟନ୍ତ ଆବେଗରେ ଆକାଶକୁ ବ୍ୟାପୀ ଯାଆନ୍ତି ଠିକ୍ ସେହିପରି ଉଷାକାଳରେ ଅଗ୍ନିହୋତ୍ରୀଙ୍କର ଯଜ୍ଞକୁଣ୍ଡରେ ସମିଧ ପ୍ରଦାନ ଦ୍ୱାରା ଅଗ୍ନି ପ୍ରଜ୍ୱଳିତ ହେଉଅଛି ।

୩) ମନ୍ତ୍ରସଂଖ୍ୟା (୩)-ଯଜୁର୍ବେଦ-ଅ.୩୩/୮ - ମୂର୍ଦ୍ଧାନଂ ଦିବୋ - (ସୋମଯାଗ ପ୍ରକରଣରେ ସୋମରସ ଗ୍ରହଣ କରିବାର ଧ୍ରୁବନାମକ ପାତ୍ର (ଶ୍ରୁବ) ଓ ବୈଶ୍ୱାନରୋଗ୍ନି ବିଷୟକ ଏହି ମନ୍ତ୍ର) ଦ୍ୟୁଲୋକରେ ସୂର୍ଯ୍ୟ ସ୍ୱରୂପରେ ମୂର୍ଧାସ୍ଥାନୀୟ, ପୃଥିବୀ ଲୋକରେ ସଂଚରଣଶୀଳ, ଅରଣିମନ୍ଥନ ଦ୍ୱାରା ଯଜ୍ଞରୁ ଜାତ, କ୍ରାନ୍ତଦର୍ଶୀ ଅର୍ଥାତ୍ ଭକ୍ତାନୁଗ୍ରହ ତତ୍‌ପର, ସର୍ବବିଧ ଐଶ୍ୱର୍ଯ୍ୟ ସମ୍ପନ୍ନ ସମ୍ରାଟ, ଯଜମାନଙ୍କ ହବିଃ ଗ୍ରହଣକାରୀ ଅତିଥି, ଧ୍ରୁବନାମକ ସୋମପାନ ପାତ୍ରକୁ ମୁହଁ ସମ୍ମୁଖରେ ଧାରଣ କରିଥିବା ଯେଉଁ ବୈଶ୍ୱାନରୋଽଗ୍ନି ତୁମ୍ଭଙ୍କୁ ଇନ୍ଦ୍ରାଦି ଦେବଗଣ ଜାତ କରିଅଛନ୍ତି ।

୪) ମନ୍ତ୍ରସଂଖ୍ୟା (୪)- ଯଜୁର୍ବେଦ ଅ. ୧୭/୪୯ : ମର୍ମାଣି ତେ ବର୍ମଣା- (ଯୁଦ୍ଧ ପାଇଁ ପ୍ରସ୍ତୁତ ହେଉଥିବା ରାଜାଙ୍କୁ ଅଧ୍ୱର୍ଯୁଙ୍କ କବଚ ପ୍ରଦାନ ପ୍ରକରଣାନ୍ତର୍ଗତ ମନ୍ତ୍ର) - ହେ ବୀର ! ତୁମର ମର୍ମ (ଶରୀରର ସନ୍ଧି ସ୍ଥାନଭଳି ଗୁରୁତ୍ୱପୂର୍ଣ୍ଣ) ସ୍ଥାନ ଗୁଡ଼ିକୁ ମୁଁ (ବର୍ମ) କବଚଦ୍ୱାରା ଆଚ୍ଛାଦିତ କରୁଅଛି । ରାଜା ସୋମ ତୁମକୁ ମୃତ୍ୟୁ ନିବାରକ କବଚ ପ୍ରଦାନ କରନ୍ତୁ । ବରୁଣ ମଧ୍ୟ ତୁମର କବଚକୁ ପୃଥୁରୁ ପୃଥୁତର କରନ୍ତୁ । ଯାହାଦ୍ୱାରା ତୁମର ବିଜୟପ୍ରାପ୍ତି ହେବ ଏବଂ ଦେବତାମାନେ ଅଧିକ ପ୍ରୋତ୍ସାହିତ ହେବେ ।

୫) ମନ୍ତ୍ରସଂଖ୍ୟା (୫) - ଯଜୁର୍ବେଦ ଅ.୧୭/୧୯ - (ପରମେଶ୍ୱରଙ୍କ ସର୍ବବ୍ୟାପକତ୍ୱ ଓ ସର୍ବକର୍ତ୍ତୃତ୍ୱ ପ୍ରତିପାଦକ ମନ୍ତ୍ର) ଏକ ଏବଂ ଅଦ୍ୱିତୀୟ ପରମାତ୍ମା ଯାହାଙ୍କର ସବୁଠାରେ ଚକ୍ଷୁ, ମୁଖ, ବାହୁ ଓ ପାଦ ବିଦ୍ୟମାନ । ସେ ସର୍ବମୟ କର୍ତ୍ତା ଏପରିକି କୌଣସି ସାଧନ ବା ଉପାଦାନକୁ ଅପେକ୍ଷା ନକରି ସ୍ୱଇଚ୍ଛାରେ ଏ ବିଶ୍ୱବ୍ରହ୍ମାଣ୍ଡକୁ ସୃଷ୍ଟି କରିଅଛନ୍ତି ।

୬) ମନ୍ତ୍ରସଂଖ୍ୟା (୬) - ଯଜୁର୍ବେଦ ଅ. ୧୬/୧୬ - ମାନସ୍ତୋକେ - ହେ ରୁଦ୍ର ! ଆମର ପୁତ୍ରପୌତ୍ରାଦି ସନ୍ତାନ ସନ୍ତତି, ଗୋରୁ, ଅଶ୍ୱ ତଥା ସେମାନଙ୍କ ପରମାୟୁ, ଏପରିକି କ୍ରୋଧାନ୍ୱିତ ଆମର ବୀରମାନଙ୍କ ପାଇଁ ମଧ୍ୟ ଆପଣ ଅନିଷ୍ଟ କାରକ ହୁଅନ୍ତୁ ନାହିଁ । ଆମେ ସର୍ବଦା ଆପଣଙ୍କ ଶରଣାପନ୍ନ ହୋଇ ଆପଣଙ୍କୁ ଆହୁତି ପ୍ରଦାନ କରୁଅଛୁ ।

—x—

# ପ୍ରଥମପରିଚ୍ଛେଦଃ

# ଶୁକ୍ଳଯଜୁର୍ବେଦୀୟକାଣ୍ୱସଂହିତାନ୍ତର୍ଗତଃ

## ଶତରୁଦ୍ରୀ

ହରିଃ ଓଁ ନମସ୍ତେ ରୁଦ୍ର ମନ୍ୟବ ଉତୋ ତ ଇଷବେ ନମଃ । ବାହୁଭ୍ୟାମୁତ ତେ ନମଃ ॥୧॥ ଯା ତେ ରୁଦ୍ର ଶିବା ତନୂରଘୋରାପାପକାଶିନୀ । ତୟା ନସ୍ତନ୍ୱା ଶନ୍ତମୟା ଗିରିଶନ୍ତାଭିଚାକଶୀହି ॥୨॥ ଯାମିଷୁଂ ଗିରିଶନ୍ତ ହସ୍ତେ ବିଭର୍ଷ୍ୟସ୍ତବେ । ଶିବାଂ ଗିରିତ୍ର ତାଂ କୁରୁ ମା ହିଗୁଁସୀଃ ପୁରୁଷଂ ଜଗତ୍ ॥୩॥

---

## ଭାବାନୁବାଦ

**ମନ୍ତ୍ରସଂଖ୍ୟା (୧) :-** ଯଜୁର୍ବେଦ ଅ.୧୬/୧ : ନମସ୍ତେ ରୁଦ୍ର - ହେ ରୁଦ୍ର **!** (ରୁତ୍ = ଦୁଃଖଂ ଦ୍ରାବୟତି = ଯେ ଦୁଃଖକୁ ଦ୍ରବୀଭୂତ ବା ବିନାଶ କରନ୍ତି ସେ ରୁଦ୍ର ଅଥବା ରତ୍ = ଜ୍ଞାନଂ, ରାତି = ଦଦାତି ଅର୍ଥାତ୍ ଯେ ଜ୍ଞାନପ୍ରଦ ଅଥବା ପାପିନଃ ନରାନ୍ ଦୁଃଖଭୋଗେନ ରୋଦୟତି ଅର୍ଥାତ୍ ପାପୀମାନଙ୍କୁ ଦୁଃଖଭୋଗଦ୍ୱାରା ଯେ ରୋଦନ କରାନ୍ତି ସେ ରୁଦ୍ର) ତୁମର କ୍ରୋଧକୁ ମୋର ପ୍ରଣାମ, ତୁମର ଊରୁକୁ ମୋର ପ୍ରଣାମ, ତୁମର କ୍ରୋଧ ସମ୍ବଳିତ ବାହୁଯୁଗଳକୁ ମଧ୍ୟ ମୋର ପ୍ରଣାମ ।

**ମନ୍ତ୍ରସଂଖ୍ୟା (୨) :-** ଯଜୁର୍ବେଦ ଅ.୧୬/୨ : ଯା ତେ ରୁଦ୍ର - ହେ ରୁଦ୍ର **!** ତୁମର ଶରୀର ସୌମ୍ୟ, ଏଣୁ ପୁଣ୍ୟଫଳପ୍ରଦ । ସେହି ପୁଣ୍ୟତମ ଶରୀରରେ କୈଳାସ ପର୍ବତରେ ରହି ତୁମେ ଆମକୁ କୃପାଦୃଷ୍ଟିରେ ଦେଖ ।

**ମନ୍ତ୍ରସଂଖ୍ୟା (୩) :-** ଯଜୁର୍ବେଦ ଅ.୧୬/୩ : ଯାମିଷୁଂ ଗିରିଶନ୍ତ- ହେ ଗିରିଶନ୍ତ (ଗିରୌ = କୈଳାସେ, ସୁଖଂ ତନୋତୀତି) **!** ଅର୍ଥାତ୍ ହେ କୈଳାସ ପର୍ବତବାସୀ **!** ତୁମେ ଶତ୍ରୁକୁ ପ୍ରହାର ନିମିତ୍ତ ଯେଉଁ ବାଣ ଧାରଣ କରିଅଛ, ହେ ଗିରିତ୍ର **!** (ଗିରୌ କୈଳାସପର୍ବତେ ସ୍ଥିତ୍ୱା ତ୍ରାୟତେ ଭକ୍ତାନ୍ = କୈଳାସ ପର୍ବତରେ ଥାଇ ଯେ ଭକ୍ତମାନଙ୍କୁ ରକ୍ଷା କରନ୍ତି) ହେ ଶିବ **!** ତୁମର ସେହି ବାଣ କଲ୍ୟାଣକାରୀ ହେଉ । ପୁରୁଷ ଅର୍ଥାତ୍ ପୁତ୍ରପୌତ୍ରାଦି କ୍ରମରେ ଜଗତବାସୀଙ୍କୁ ତଥା ଗୋରୁ, ଅଶ୍ୱ ଇତ୍ୟାଦି ପ୍ରାଣୀମାନଙ୍କୁ ମଧ୍ୟ ବଧ କର ନାହିଁ ।

ଶିବେନ ବଚସା ତ୍ୱା ଗିରିଶାଚ୍ଛା ବଦାମସି । ଯଥା ନଃ ସର୍ବମିଜ୍ଜଗଦୟକ୍ଷ୍ମଗୁଁ ସୁମନା ଅସତ୍ ।।୪।। ଅଧ୍ୟବୋଚଦଧିବକ୍ତା ପ୍ରଥମୋ ଦୈବ୍ୟୋ ଭିଷକ୍ ।। ଅହୀଗୁଁଶ୍ଚ ସର୍ବାଞ୍ଜମ୍ଭୟନ୍‌ସର୍ବାଶ୍ଚ ଯାତୁଧାନ୍ୟୋଽଧରାଚୀଃ ପରାସୁବ ।।୫।। ଅସୌ ଯସ୍ତାମ୍ରୋ ଅରୁଣ ଉତ ବଭ୍ରୁଃ ସୁମଙ୍ଗଳଃ । ଯେ ଚୈନଗୁଁ ରୁଦ୍ରା ଅଭିତୋ ଦିକ୍ଷୁ ଶ୍ରିତାଃ ସହସ୍ରଶୋଽବୈଷାଗୁଁ ହେଳ ଈମହେ ।।୬।। ଅସୌ ଯୋଽବସର୍ପତି ନୀଳଗ୍ରୀବୋ ବିଲୋହିତଃ । ଉତୈନଂ ଗୋପା ଅଦୃଶ୍ରନ୍ନଦୃଶ୍ରନ୍ନୁଦହାର୍ଯ୍ୟଃ ସ ଦୃଷ୍ଟୋ ମୃଳୟାତି ନଃ ।।୭।।

---

**ମନ୍ତ୍ରସଂଖ୍ୟା (୪) :-** ଯଜୁର୍ବେଦ ଅ. ୧୬/୪ : ଶିବେନ ବଚସା - ହେ ଗିରୀଶ ! (ଗିରୌ = କୈଳାସ ପର୍ବତରେ, ଶେତେ = ଶୟନ ବା ଅବସ୍ଥାନ) ତୁମକୁ ପ୍ରାପ୍ତ ହେବା ପାଇଁ ମଙ୍ଗଳପ୍ରଦାୟକ ସ୍ତୁତିଦ୍ୱାରା ଆମେ ପ୍ରାର୍ଥନା କରୁଅଛୁ ଯେ ଆମର ମନୁଷ୍ୟ ପଶୁ ଆଦି ସମସ୍ତ ପ୍ରାଣୀ ଯେପରି ନିରୋଗ ଓ ସୁସ୍ଥ ମାନସିକତାରେ ରହିବେ ତାହା ବିଧାନ କରନ୍ତୁ ।

**ମନ୍ତ୍ରସଂଖ୍ୟା (୫) :-** ଯଜୁର୍ବେଦ ଅ. ୧୬/୫ : ଅଧ୍ୟବୋଚଦଧିବକ୍ତା - ସର୍ବଶ୍ରେଷ୍ଠ ଓ ଦେବଲୋକଙ୍କ ଏକମାତ୍ର ବୈଦ୍ୟ ତଥା ପ୍ରଧାନ ବକ୍ତା ମହେଶ୍ୱର ମୋତେ ସବୁଠାରୁ ଅଧିକ କୁହନ୍ତୁ, ଯାହାଦ୍ୱାରା ମୁଁ ଅଧିକ ବଚନଶୀଳ ବା ବାକ୍‌ପଟୁତା ଅର୍ଜନ କରିପାରିବି । ଆପଣ ରୋଗନାଶକ ଏପରିକି ସ୍ମରଣମାତ୍ରକେ ଆପଣ ସବୁପ୍ରକାର ରୋଗକୁ ଦୂର କରନ୍ତି । ହେ ରୁଦ୍ର ! ସମସ୍ତ ନୀଚଗାମୀ ରାକ୍ଷସୀଙ୍କୁ ଏବଂ ରାକ୍ଷସୀ ଗୁଣକୁ ମଧ୍ୟ ନାଶ କରନ୍ତୁ । ଏହା ସହିତ ସର୍ପବ୍ୟାଘ୍ରାଦି ହିଂସ୍ର ଜନ୍ତୁଙ୍କଠାରୁ ମଧ୍ୟ ଆମକୁ ରକ୍ଷା କରନ୍ତୁ ।

**ମନ୍ତ୍ରସଂଖ୍ୟା (୬) :-** ଯଜୁର୍ବେଦ ଅ. ୧୬/୬ : ଅସୌ ଯସ୍ତାମ୍ରୋ - (ଆଦିତ୍ୟ ରୂପରେ ରୁଦ୍ରଙ୍କୁ ସ୍ତୁତି କରାଯାଇଅଛି) ଏହି ଯେଉଁ ଆକାଶରେ ତାମ୍ର, ରକ୍ତ ଓ ପିଙ୍ଗଳବର୍ଣ୍ଣ ବିଶିଷ୍ଟ ତଥା ମଙ୍ଗଳସ୍ୱରୂପ ରୁଦ୍ର ଏବଂ ଯାହାଙ୍କର ଅଂଶ (କିରଣ) ସହସ୍ର ରୁଦ୍ର ସଦୃଶ ଚାରିଦିଗକୁ ବିସ୍ତୃତ ସେ ତାଙ୍କ ସମସ୍ତ କ୍ରୋଧକୁ ପ୍ରଶମିତ କରନ୍ତୁ ।

**ମନ୍ତ୍ରସଂଖ୍ୟା (୭) :-** ଯଜୁର୍ବେଦ ଅ. ୧୬/୭ : ଅସୌ ଯୋଽବସର୍ପତି- ନୀଳଗ୍ରୀବ

ନମୋଽସ୍ତୁ ନୀଲଗ୍ରୀବାୟ ସହସ୍ରାକ୍ଷାୟ ମୀଲ୍‌ହୁଷେ । ଅଥୋ ଯେ ଅସ୍ୟ ସତ୍ୱାନୋଽହଂ ତେଭ୍ୟୋଽକରଂ ନମଃ ॥୮॥ ପ୍ରମୁଞ୍ଚ ଧନ୍ୱନସ୍ତ୍ୱମୁଭୟୋ-ରାର୍ତ୍ନ୍ୟୋର୍ଜ୍ୟାମ୍ । ଯାଶ୍ଚ ତେ ହସ୍ତ ଇଷବଃ ପରା ତା ଭଗବୋ ବପ ॥୯॥ ବିଜ୍ୟଂ ଧନୁଃ କପର୍ଦିନୋ ବିଶଲ୍ୟୋ ବାଣବାଁ ଉତ । ଅନେଶନ୍ନସ୍ୟ ଯା ଇଷବ ଆଭୁରସ୍ୟ ନିଷଙ୍ଗଧିଃ ॥୧୦॥

---

ଅର୍ଥାତ୍ ନୀଳକଣ୍ଠ ଏବଂ ବିଶେଷ ରୂପରେ ଉଦୟାସ୍ତ ସମୟରେ ଯେ ରକ୍ତବର୍ଣ୍ଣଯୁକ୍ତ ସେହି ଆଦିତ୍ୟ ରୂପରେ ରୁଦ୍ର ଧୀରେ ଧୀରେ ଆକାଶରେ ଉଦୟାସ୍ତ ମଧ୍ୟରେ ଗତି କରୁଅଛନ୍ତି । ଯାହାଙ୍କୁ ଗୋପାଳ ବାଳକ ଓ ଜଳ ଆହରଣରତ ସ୍ତ୍ରୀଲୋକମାନେ ମଧ୍ୟ ଦେଖୁଅଛନ୍ତି । (ଗ୍ରାମମାନଙ୍କରେ ସୂର୍ଯ୍ୟୋଦୟ ପରେ ଗୋରୁପଲଙ୍କୁ ଗୋପାଳକମାନେ ଚରିବାକୁ ଛାଡନ୍ତି ଓ ସୂର୍ଯ୍ୟାସ୍ତ ସମୟରେ ପୁଣି ଘରକୁ ବାହୁଡ଼ି ଆଣନ୍ତି । ଗ୍ରାମ୍ୟବଧୂମାନେ ମଧ୍ୟ ସେହିଭଳି ଉଦୟାସ୍ତ ସମୟକୁ ନେଇ ଜଳାଶୟ ବା ନଦୀମାନଙ୍କରୁ ଜଳ ସଂଗ୍ରହ କରିବାକୁ ଯିବା-ଆସିବା କରିଥାଆନ୍ତି) ସେହି ଆଦିତ୍ୟରୂପ ରୁଦ୍ର ଆମ୍ଭମାନଙ୍କୁ ସୁଖ ପ୍ରଦାନ କରନ୍ତୁ ।

**ମନ୍ତ୍ରସଂଖ୍ୟା (୮) :-** ଯଜୁର୍ବେଦ ଅ. ୧୬/୮ : ନମୋଽସ୍ତୁ ନୀଳଗ୍ରୀବାୟ- ନୀଳକଣ୍ଠ ସହସ୍ରଚକ୍ଷୁ ସମ୍ପନ୍ନ (ଇନ୍ଦ୍ରସ୍ୱରୂପ), ପର୍ଜନ୍ୟ (ବର୍ଷା) ରୂପ, ଅଥବା ତରୁଣ ରୂପବାନ୍ ଶିବଙ୍କୁ ପ୍ରଣାମ । ତା ସହିତ ତାଙ୍କର ରୁଦ୍ରଗଣଙ୍କୁ ମଧ୍ୟ ମୋର ପ୍ରଣାମ ।

**ମନ୍ତ୍ରସଂଖ୍ୟା (୯) :-** ଯଜୁର୍ବେଦ ଅ. ୧୬/୯ : ପ୍ରମୁଞ୍ଚ ଧନ୍ୱନଃ - ହେ ରୁଦ୍ର **!** ତୁମେ ଧନୁର କୋଟି ଦ୍ୱୟରୁ (ଉପର ତଳ) ପ୍ରତ୍ୟଞ୍ଚା ବା ଚାପକୁ ପୃଥକ୍ କର ଏବଂ ହେ ଭଗବାନ୍ ଶିବ **!** ତୁମ ହାତରେ ଥିବା ଶରକୁ ଅନ୍ୟ ଆଡକୁ ନିକ୍ଷେପ କର ।

**ମନ୍ତ୍ରସଂଖ୍ୟା (୧୦) :-** ଯଜୁର୍ବେଦ ଅ. ୧୬/୧୦ : ବିଜ୍ୟଂ ଧନୁଃ- ଏବେ କପର୍ଦୀ (ଜଟାଜୁଟଧାରୀ)ଙ୍କ ଧନୁ ଚାପ ରହିତ ଏଣୁ ଶର ନିକ୍ଷେପରେ ଅସମର୍ଥ ଏବଂ ତୂଣୀର (ଶରାସନ) ମଧ୍ୟ ଶରଶୂନ୍ୟ ହୋଇଅଛି ।

ଯା ତେ ହେତିର୍ମୀଲ୍‌ହୁଷ୍ଟମ ହସ୍ତେ ବଭୂବ ତେ ଧନୁଃ । ତୟାସ୍ମାନ୍‌ ବିଶ୍ୱତସ୍ତ୍ୱମୟକ୍ଷ୍ମୟା ପରିଭୁଜ ॥୧୧॥ ପରି ତେ ଧନ୍ୱନୋ ହେତିରସ୍ମାନ୍‌ ବୃଣକ୍ତୁ ବିଶ୍ୱତଃ । ଅଥୋ ଯ ଇଷୁଧିସ୍ତବାରେ ଅସ୍ମନ୍ନିଧେହି ତମ୍‌ ॥୧୨॥ ଅବତତ୍ୟ ଧନୁଷ୍ଟ୍ୱଗୁଁ ସହସ୍ରାକ୍ଷ ଶତେଷୁଧେ । ନିଶୀର୍ଯ୍ୟ ଶଲ୍ୟାନାଂ ମୁଖା ଶିବୋ ନଃ ସୁମନା ଭବ ॥୧୩॥ ନମସ୍ତ ଆୟୁଧାୟାନାତତାୟ ଧୃଷ୍ଣବେ । ଉଭାଭ୍ୟାମୁତ ତେ ନମୋ ବାହୁଭ୍ୟାଂ ତବ ଧନ୍ୱନେ ॥୧୪॥ ମା ନୋ ମହାନ୍ତମୁତ ମା ନୋ ଅର୍ଭକଂ ମା ନ ଉକ୍ଷନ୍ତମୁତ ମା ନ ଉକ୍ଷିତମ୍‌ । ମା ନୋ ବଧୀଃ ପିତରଂ ମୋତ ମାତରଂ ମା ନଃ ପ୍ରିୟାସ୍ତନ୍ୱୋ ରୁଦ୍ର ରୀରିଷଃ ॥୧୫॥

---

**ମନ୍ତ୍ରସଂଖ୍ୟା (୧୧) :-** ଯଜୁର୍ବେଦ ଅ.୧୬/୧୧ : ଯାତେ ହେତିଃ - ହେ ଯୁବଶ୍ରେଷ୍ଠ ରୁଦ୍ର ! ତୁମ ହାତରେ ଯେଉଁ ବାଣବର୍ଷଣକାରୀ ଆୟୁଧ ଅଛି, ତାହାଦ୍ୱାରା ସବୁ ପ୍ରକାର ବ୍ୟାଧିକୁ ନିବାରଣ କରି ଆମକୁ ପରିପାଳନ କର ।

**ମନ୍ତ୍ରସଂଖ୍ୟା (୧୨) :-** ଯଜୁର୍ବେଦ ଅ.୧୬/୧୨ : ପରିତେ ଧନ୍ୱନୋ - ହେ ରୁଦ୍ର ! ତୁମର ଧନୁର୍ବାଣ ଆମକୁ ସବୁ ଦିଗରୁ ରକ୍ଷା କରୁ ଏବଂ ତୁମେ ଶରପୂର୍ଣ୍ଣ ତୂଣୀର (ଶରାସନ) ଆମଠାରୁ ଦୂରେଇ ରଖ ।

**ମନ୍ତ୍ରସଂଖ୍ୟା (୧୩) :-** ଯଜୁର୍ବେଦ ଅ.୧୬/୧୩ : ଅବତତ୍ୟଧନୁଷ୍ଟ୍ୱଗୁଁ - ହେ ସହସ୍ରାକ୍ଷ (ଅନେକ ଚକ୍ଷୁ ବା ଅନେକ ଇନ୍ଦ୍ରିୟଯୁକ୍ତ)! ହେ ଶତ ତୂଣୀରଯୁକ୍ତ ରୁଦ୍ର ! ତୁମେ ଆମ ପ୍ରତି ଶିବ (ଶାନ୍ତ) ସୁମନା (ସୁମନସ୍କ) ହୁଅ । ଆୟୁଧ ଧନୁକୁ ଜ୍ୟାନିର୍ମୁକ୍ତ (ଚାପବିହୀନ) କରି ଏବଂ ବାଣକୁ ଆମ ପ୍ରତି ପରାଙ୍‌ମୁଖ ରଖି ଆମକୁ ଅନୁଗୃହୀତ କର ।

**ମନ୍ତ୍ରସଂଖ୍ୟା (୧୪) :-** ଯଜୁର୍ବେଦ ଅ.୧୬/୧୪ : ନମସ୍ତ ଆୟୁଧାୟ - ହେ ରୁଦ୍ର ! ତୁମର ଧନୁରେ ଆରୋପିତ ହୋଇଥିବା ସୁତୀକ୍ଷ୍ଣ ବାଣକୁ ପ୍ରଣାମ । ଆୟୁଧ ଶୋଭିତ ତୁମର ବାହୁଦ୍ୱୟକୁ ପ୍ରଣାମ ଏବଂ ତୁମର ଧନୁକୁ ମଧ୍ୟ ପ୍ରଣାମ ।

**ମନ୍ତ୍ରସଂଖ୍ୟା (୧୫) :-** ଯଜୁର୍ବେଦ ଅ.୧୬/୧୫ : ମାନୋମହାନ୍ତଂ - ହେ ରୁଦ୍ର ! ତୁମେ ଆମର କୌଣସି ମହାନ୍‌ ବ୍ୟକ୍ତିକୁ, ଶିଶୁକୁ, ତରୁଣକୁ, ଗର୍ଭସ୍ଥ ଶିଶୁକୁ ନ ମାରି ରକ୍ଷା କର । ଆମ ପିତାମାତାଙ୍କୁ ତଥା ଆମ ପ୍ରିୟ ପୁତ୍ରପୌତ୍ରାଦିଙ୍କୁ ମଧ୍ୟ ବିନାଶ କର ନାହିଁ ।

ମା ନସ୍ତୋକେ ତନୟେ ମା ନ ଆୟୁଷି ମା ନୋ ଗୋଷୁ ମା ନୋ ଅଶ୍ୱେଷୁ ରୀରିଷଃ । ମା ନୋ ବୀରାନ୍ ରୁଦ୍ର ଭାମିନୋ ବଧୀର୍ହବିଷ୍ମନ୍ତଃ ସଦମିତ୍ ତ୍ୱା ହବାମହେ ॥୧୬॥ ନମୋ ହିରଣ୍ୟବାହବେ ସେନାନ୍ୟେ ଦିଶାଂ ଚ ପତୟେ ନମୋ ନମୋ ବୃକ୍ଷେଭ୍ୟୋ ହରିକେଶେଭ୍ୟଃ ପଶୂନାଂ ପତୟେ ନମଃ । ନମଃ ଶଷ୍ପିଞ୍ଜରାୟ ତ୍ୱିଷୀମତେ ପଥୀନାଂ ପତୟେ ନମୋ ନମୋ ହରିକେଶାୟୋପବୀତିନେ ପୁଷ୍ଟାନାଂ ପତୟେ ନମଃ ॥୧୭॥ ନମୋ ବଭ୍ଲୁଶାୟାବ୍ୟାଧିନେଽନ୍ନାନାଂ ପତୟେ ନମୋ ନମୋ ଭବସ୍ୟ ହେତ୍ୟୈ ଜଗତାଂ ପତୟେ ନମଃ । ନମୋ ରୁଦ୍ରାୟାତତାୟିନେ କ୍ଷେତ୍ରାଣାଂ ପତୟେ ନମୋ ନମଃ ସୂତାୟାହନ୍ତ୍ୟେ ବନାନାଂ ପତୟେ ନମଃ ॥୧୮॥

---

**ମନ୍ତ୍ରସଂଖ୍ୟା (୧୬) :-** ଯଜୁର୍ବେଦ ଅ.୧୬/୧୬ : ମାନସ୍ତୋକେ - ହେ ରୁଦ୍ର **!** ଆମର ପୁତ୍ର ଓ ପୌତ୍ରଙ୍କୁ ହତ୍ୟା କର ନାହିଁ କି ଆମର ଆୟୁଷ ପ୍ରତି ମଧ୍ୟ ଅନିଷ୍ଟ କର ନାହିଁ । ଆମର ଗୋ ସମ୍ପଦ ତଥା ଅଶ୍ୱାଦିଙ୍କୁ ମଧ୍ୟ ହତ୍ୟା କର ନାହିଁ । କ୍ରୋଧାନ୍ୱିତ ହୋଇ ଆମର ବୀରମାନଙ୍କୁ ଏବଂ ଭୃତ୍ୟମାନଙ୍କୁ ମଧ୍ୟ ହତ୍ୟା କର ନାହିଁ । ଆମେ ତୁମର ଶରଣାପନ୍ନ ହୋଇ ସର୍ବଦା ଯଜ୍ଞ ମାଧ୍ୟମରେ ହବିଃ (ଯଜ୍ଞୀୟ ଘୃତାଦି ଦ୍ରବ୍ୟ) ପ୍ରଦାନ କରୁଅଛୁ ।

**ମନ୍ତ୍ରସଂଖ୍ୟା (୧୭) :-** ଯଜୁର୍ବେଦ ଅ.୧୬/୧୭ : ନମୋ ହିରଣ୍ୟବାହବେ- ସୁବର୍ଣ୍ଣ ଆଭରଣ ସ୍ୱରୂପ ଯାହାଙ୍କର ବାହୁଦ୍ୱୟ, ଯେ ସୈନ୍ୟମାନଙ୍କ ନାୟକ, ଯେ ଦିଗମାନଙ୍କର ପାଳକ, ଯାହାଙ୍କର ହରିତ୍‌ବର୍ଣ୍ଣଯୁକ୍ତ ପର୍ଣ୍ଣ (ପତ୍ର) ସଦୃଶ କେଶ ଏବଂ ଯେ ବୃକ୍ଷରୂପଧାରୀ, ଯେ ପଶୁ (ଜୀବ)ମାନଙ୍କ ପାଳକ ହେତୁ ପଶୁପତି, ଯେ ବାଳ (କୋମଳ) ତୃଣ ଭଳି ପୀତବର୍ଣ୍ଣଯୁକ୍ତ ତେଜସ୍ୱୀ, ଯେ ସମସ୍ତ ମାର୍ଗର ରକ୍ଷକ, ଯାହାଙ୍କର ନୀଳବର୍ଣ୍ଣ କେଶ, ଯେ ଜରା (ବାର୍ଦ୍ଧକ୍ୟ) ରହିତ, ମଙ୍ଗଳସ୍ୱରୂପ ଯଜ୍ଞୋପବୀତଧାରୀ, ଗୁଣବାନ୍ ଲୋକଙ୍କର ସ୍ୱାମୀ ସେହି ରୁଦ୍ରଙ୍କୁ ପ୍ରଣାମ ।

**ମନ୍ତ୍ରସଂଖ୍ୟା (୧୮) :-** ଯଜୁର୍ବେଦ ଅ.୧୬/୧୮ : ନମୋ ବଭ୍ଲୁଶାୟ - ବଭ୍ଲୁଶ ଅର୍ଥାତ୍ କପିଳବର୍ଣ୍ଣ ବିଶିଷ୍ଟ ଅଥବା ବିଭର୍ତ୍ତି ରୁଦ୍ରମିତି ବଭ୍ଲୁ = ବୃଷଭଃ, ତସ୍ମିନ୍ ଶେତେ ଏଣୁ ବଭ୍ଲୁଶ = ବୃଷଭାସୀନ (ବ୍ୟାଧିନେ = ବିଧ୍ୟତି ଶତ୍ରୁନିତି) ଶତ୍ରୁବଧକାରୀ,

ନମୋ ରୋହିତାୟ ସ୍ଥପତୟେ ବୃକ୍ଷାଣାଂ ପତୟେ ନମୋ ନମୋ ଭୁବନ୍ତୟେ ବାରିବସ୍କୃତାୟୌଷଧୀନାଂ ପତୟେ ନମଃ । ନମୋ ମନ୍ତ୍ରିଣେ ବାଣିଜାୟ କକ୍ଷାଣାଂ ପତୟେ ନମୋ ନମ ଉଚ୍ଚୈର୍ଘୋଷାୟାକ୍ରନ୍ଦୟତେ ପତ୍ତୀନାଂ ପତୟେ ନମଃ ॥୧୯॥ ନମଃ କୃତ୍ସ୍ନାୟତୟା ଧାବତେ ସତ୍ୱନାଂ ପତୟେ ନମୋ ନମଃ । ସହମାନାୟ ନିବ୍ୟାଧିନ ଆବ୍ୟାଧିନୀନାଂ ପତୟେ ନମଃ । ନମଃ କକୁଭାୟ ନିଷଙ୍ଗିଣେ ସ୍ତେନାନାଂ ପତୟେ ନମୋ ନମୋ ନିଚେରବେ ପରିଚରାୟାରଣ୍ୟାନାଂ ପତୟେ ନମଃ ॥୨୦॥

---

ଅନ୍ନର ସ୍ୱାମୀ, ଆମ୍ଭମାନଙ୍କର ପାଳକ, ସଂସାର ନିବର୍ତ୍ତକ, ଜଗତର ରକ୍ଷକ, ଆତତଧନୁ ଅର୍ଥାତ୍ ବିସ୍ତୃତ ଧନୁ ଧାରଣ କରି ବିଚରଣଶୀଳ, ଆମ ଦେହରୂପକ କ୍ଷେତ୍ରର ପରିପାଳକ, ସୂତାୟ ଅହନ୍ତ୍ୟେ = ସାରଥି ସ୍ୱରୂପ, ଅହନ୍ତା = ନ ହନ୍ତୀତି ଅହନ୍ତା ଅର୍ଥାତ୍ ରୁଦ୍ର ସଂସାରରୂପକ ରଥର ସାରଥି ସ୍ୱରୂପ ଏବଂ ସାରଥି କେବେହେଲେ କାହାରି ହତ୍ୟାକାରୀ ହୁଅନ୍ତି ନାହିଁ ଏଣୁ ସେ ସ୍ୱରୂପତଃ ଅହନ୍ତା, ସେ ବନର ରକ୍ଷକସ୍ୱରୂପ ଏଣୁ ଏ ସମସ୍ତ ରୂପରେ ତାଙ୍କୁ ପ୍ରଣାମ ।

**ମନ୍ତ୍ରସଂଖ୍ୟା (୧୯) :-** ଯଜୁର୍ବେଦ ଅ.୧୬/୧୯ : ନମୋ ରୋହିତାୟ - ରୁଦ୍ର ଲୋହିତବର୍ଣ୍ଣ ବିଶିଷ୍ଟ ବିଶ୍ୱକର୍ମା ସ୍ୱରୂପ, ବୃକ୍ଷମାନଙ୍କର ପାଳକ, ପୃଥିବୀର ବିସ୍ତାରକର୍ତ୍ତା, (ବରିବଃ = ଧନଂ, ତତ୍କୃତଃ ବାରିବସ୍କୃତଃ) ଧନକର୍ତ୍ତା, ସମସ୍ତ ଔଷଧି (ଗ୍ରାମ୍ୟ ଅରଣ୍ୟ = ବଗିଚା ବା ଉଦ୍ୟାନ)ର ପାଳକ, ମନ୍ତ୍ରଣା (ପରାମର୍ଶ) ଦାୟକ, ବ୍ୟାପାରକର୍ତ୍ତା, କକ୍ଷ (ବଣରେ ଥିବା ଲତାଗୁଳ୍ମାଦି)ର ପାଳକ, ଉଚ୍ଚଧ୍ୱନିକାରୀ, ଯୁଦ୍ଧରେ ଶତ୍ରୁଙ୍କ କ୍ରନ୍ଦନକାରକ, ପଦାତି ସୈନ୍ୟଙ୍କ ସ୍ୱାମୀ ସ୍ୱରୂପ ରୁଦ୍ରଙ୍କୁ ପ୍ରଣାମ ।

**ମନ୍ତ୍ରସଂଖ୍ୟା (୨୦) :-** ଯଜୁର୍ବେଦ ଅ.୧୬/୨୦ : ନମଃ କୃତ୍ସ୍ନାୟତୟା - କୃତ୍ସ୍ନାୟତା ଅର୍ଥାତ୍ ଆକର୍ଣ୍ଣ ବିସ୍ତୃତ ଧନୁ ଧାରଣ କରି ଯୁଦ୍ଧରେ ଶୀଘ୍ରଗାମୀ (ଅଥବା କୃତ୍ସ୍ନ = ସମସ୍ତ ଆୟ ବା ଲାଭର ଯେ ପ୍ରାପକ), ସମସ୍ତ ସାତ୍ତ୍ୱିକ ଅଥବା ଶରଣାଗତ ପ୍ରାଣୀମାନଙ୍କର ପାଳକ, ଶତ୍ରୁଙ୍କ ପରାଭବ ପ୍ରତି ସହନଶୀଳ ଅଥଚ ଶୀଘ୍ର ଶତ୍ରୁଙ୍କ ହତ୍ୟାକାରୀ, ଦେବସେନାଙ୍କ ରକ୍ଷକ, ଖଡ୍ଗଧାରୀ, ମହାନ୍, ଗୁପ୍ତଚରଙ୍କର ପାଳକ, ନିଚେରବ ଅର୍ଥାତ୍ ନୀଚବୁଦ୍ଧି ସମ୍ପନ୍ନ (ଅପହରଣ ପାଇଁ ସର୍ବଦା ଚେଷ୍ଟିତ ବ୍ୟକ୍ତି)ଙ୍କ

ନମୋ ବଞ୍ଚତେ ପରିବଞ୍ଚତେ ସ୍ତାୟୂନାଂ ପତୟେ ନମୋ ନମୋ ନିଷଙ୍ଗିଣ ଇଷୁଧିମତେ ତସ୍କରାଣାଂ ପତୟେ ନମଃ । ନମଃ ସୃକାୟିଭ୍ୟୋ ଜିଘାଗୁଁସଦ୍ଭ୍ୟୋ ମୁଷ୍ଣତାଂ ପତୟେ ନମୋ ନମୋଽସିମଦ୍ଭ୍ୟୋ ନକ୍ତଞ୍ଚରଦ୍ଭ୍ୟୋ ବିକୃନ୍ତାନାଂ ପତୟେ ନମଃ ॥୨୧॥

---

ରକ୍ଷକ, ପରିଚର (ଦୋକାନ-ବଜାରରୁ ଅପହରଣ କରିବା ଇଚ୍ଛାରେ ଘୂରି ବୁଲୁଥିବା ଲୋକ)ମାନଙ୍କ ପାଳକ, ଅରଣ୍ୟର ସ୍ୱାମୀ ସ୍ୱରୂପ ରୁଦ୍ରଙ୍କୁ ପ୍ରଣାମ[୧] ।

**ମନ୍ତ୍ରସଂଖ୍ୟା (୨୧) :-** ଯଜୁର୍ବେଦ ଅ.୧୬/୨୧ : ନମୋ ବଞ୍ଚତେ - ବଞ୍ଚତେ ଅର୍ଥାତ୍ ପ୍ରବଞ୍ଚକ (ପ୍ରଭୁଙ୍କ ବିଶ୍ୱସ୍ତ ହୋଇ ଯିଏ ଚୋରି କରେ), ପରିବଞ୍ଚତେ ଅର୍ଥାତ୍ ନିଜ-ପର ବିଚାର ନ କରି ଯେ ସବୁ ସ୍ଥଳରେ ଚୋରି କରୁଥିବା ଚୋର,

---

୧. ଉଲ୍ଲେଖଯୋଗ୍ୟ ଯେ, ମନ୍ତ୍ରମାନଙ୍କର ଭାଷ୍ୟକାର ମହୀଧରାଚାର୍ଯ୍ୟ ବେଦବାକ୍ୟରେ ପରମେଶ୍ୱରଙ୍କ ପ୍ରତି ଅପମାନସୂଚକ ଯଥା ଚୌର୍ଯ୍ୟାଦି ସ୍ୱରୂପ ବର୍ଣ୍ଣନାର ସମାଧାନ ପାଇଁ କହିଅଛନ୍ତି ଯେ- 'ରୁଦ୍ରୋ ଲୀଳୟା ଚୌରାଦିରୂପଂ ଧତ୍ତେ...' ଇତ୍ୟାଦି । ଯାହାର ରହସ୍ୟ ଯଥା- ଭଗବାନ୍ ରୁଦ୍ର ଲୀଳା ପ୍ରଦର୍ଶନ କରିବା ପ୍ରସଙ୍ଗରେ ଚୌରାଦି ରୂପକୁ ଧାରଣ କରିଥାଆନ୍ତି । ଅଥବା ରୁଦ୍ର ଜଗତ୍ ସ୍ୱରୂପ, ଚୌର ମଧ୍ୟ ଜଗତର ଅନ୍ତର୍ଗତ, ଏଣୁ ସେ ମଧ୍ୟ ରୁଦ୍ର ସ୍ୱରୂପ । ଅଥବା ପ୍ରତ୍ୟେକଙ୍କ ଶରୀରରେ ଜୀବ ଓ ଈଶ୍ୱର ରୂପରେ ଦୁଇ ଭାବରେ ରୁଦ୍ର ଅବସ୍ଥିତ । ଯେଉଁଠି ଚୌରାଦି ରୂପରେ ଜୀବ ଏବଂ ଈଶ୍ୱର ଭାବରେ ରୁଦ୍ର ଲକ୍ଷିତ । ଉଦାହରଣ ଯଥା ନିର୍ବୋଧ ବାଳକଙ୍କୁ ଚନ୍ଦ୍ର ଦେଖାଇଲାବେଳେ ଆମେ ସମ୍ମୁଖରେ ଥିବା ବୃକ୍ଷର ଶାଖାକୁ ପ୍ରଥମେ ଦେଖାଇ ତା ମାଧ୍ୟମରେ ଯେପରି ଚନ୍ଦ୍ରଙ୍କୁ ଦେଖାଇଥାଉ, ଯାହା ଫଳରେ ସୁବିଧାରେ ବାଳକ ଚନ୍ଦ୍ର ଦର୍ଶନ କରିପାରେ, ଠିକ୍ ସେହିପରି ଗୂଢ଼ ବିଷୟ ଯାହା ଏକାନ୍ତ ଭାବରେ ଅଲୌକିକ ଓ ଅନିର୍ବଚନୀୟ ତାହାର ବିବକ୍ଷା ନିମିତ୍ତ ଲୌକିକ ଦୃଷ୍ଟାନ୍ତକୁ ମଧ୍ୟ ଆଶ୍ରୟ କରାଯାଇଥାଏ । ଏ ବିଷୟକୁ ପରମକାରୁଣିକ ଭଗବାନ୍ ବ୍ୟାସଦେବ ବେଦାନ୍ତଦର୍ଶନାନ୍ତର୍ଗତ ବ୍ରହ୍ମସୂତ୍ର ଗ୍ରନ୍ଥର - 'ଲୋକବତ୍ତୁ ଲୀଳାକୈବଲ୍ୟମ୍' (୨/୧/୩୩) - ଏହି ସୂତ୍ରରେ ନିର୍ଗୁଣ ନିରାକାର ନିର୍ବିକାର ନିରୀହ ନିଃସଙ୍ଗ ବ୍ରହ୍ମ ଜଗତର କଲ୍ୟାଣ ପାଇଁ ଲୀଳାବତାରସ୍ୱରୂପ ରାମ-କୃଷ୍ଣ ଇତ୍ୟାଦି ରୂପରେ ଧରାରେ ଅବତୀର୍ଣ୍ଣ ହୋଇ ମନୁଷ୍ୟ ଭଳି ଆଚରଣ କରିଥାଆନ୍ତି, ଏହା ସ୍ପଷ୍ଟ ପ୍ରତିପାଦନ କରିଅଛନ୍ତି । ପୁନଶ୍ଚ ଶ୍ରୀମଦ୍ଭାଗବତ ମହାପୁରାଣରେ ଲୀଳାବତାର ଭଗବାନ୍ କୃଷ୍ଣଙ୍କୁ ଚୌର ଓ ଚୌରାଗ୍ରଗଣ୍ୟ ରୂପରେ ମଧ୍ୟ ବର୍ଣ୍ଣନା କରାଯାଇଅଛି ।

ନମ ଉଷ୍ଣୀଷିଣେ ଗିରିଚରାୟ କୁଲୁଞ୍ଚାନାଂ ପତୟେ ନମୋ ନମ ଇଷୁମଦ୍‌ଭ୍ୟୋ ଧନ୍ୱାୟିଭ୍ୟଶ୍ଚ ବୋ ନମଃ । ନମ ଆତନ୍ୱାନେଭ୍ୟଃ ପ୍ରତିଦଧାନେଭ୍ୟଶ୍ଚ ବୋ ନମୋ ନମ ଆୟଚ୍ଛଦ୍‌ଭ୍ୟୋଽସ୍ୟଦ୍‌ଭ୍ୟଶ୍ଚ ବୋ ନମଃ ॥୨୨॥ ନମୋ ବିସୃଜଦ୍‌ଭ୍ୟୋ ବିଧ୍ୟଦ୍‌ଭ୍ୟଶ୍ଚ ବୋ ନମୋ ନମଃ ସ୍ୱପଦ୍‌ଭ୍ୟୋ ଜାଗ୍ରଦ୍‌ଭ୍ୟଶ୍ଚ ବୋ ନମଃ । ନମଃ ଶୟାନେଭ୍ୟ ଆସୀନେଭ୍ୟଶ୍ଚ ବୋ ନମୋ ନମସ୍ତିଷ୍ଠଦ୍‌ଭ୍ୟୋ ଧାବଦ୍‌ଭ୍ୟଶ୍ଚ ବୋ ନମଃ ॥୨୩॥ ନମଃ ସଭାଭ୍ୟଃ ସଭାପତିଭ୍ୟଶ୍ଚ ବୋ ନମୋ ନମୋଽଶ୍ୱେଭ୍ୟୋଽଶ୍ୱପତିଭ୍ୟଶ୍ଚ ବୋ ନମଃ । ନମ ଆବ୍ୟାଧିନୀଭ୍ୟୋ ବିବିଧ୍ୟନ୍ତୀଭ୍ୟଶ୍ଚ ବୋ ନମୋ ନମ ଉଗଣାଭ୍ୟ-ସ୍ତୃଗୁଁହତିଭ୍ୟଶ୍ଚ ବୋ ନମଃ ॥୨୪॥

---

ପୁଣି ଯେ ଦିବାରାତ୍ରି ସବୁ ସମୟରେ ଚୌର୍ଯ୍ୟବୃତ୍ତିକୁ ଆଶ୍ରୟ କରେ ଏ ସମସ୍ତଙ୍କର ରକ୍ଷକ ରୂପରେ, ପ୍ରକଟ ଚୋର ଅର୍ଥାତ୍ ଡକାୟତମାନଙ୍କ ସ୍ୱାମୀ, ଖଡ୍‌ଗ ଓ ଧନୁର୍ଧାରୀ ହିଂସେଚ୍ଛୁଙ୍କ ପାଳକ, ଧାନ୍ୟାଦି ଶସ୍ୟ କ୍ଷେତ୍ରରୁ ଶସ୍ୟାପହରଣକାରୀଙ୍କ ପ୍ରଭୁ, ରାତ୍ରିରେ ପଥଚାରୀ ପ୍ରାଣୀମାନଙ୍କୁ ହତ୍ୟାକାରୀ ଓ ଧନ ଲୁଣ୍ଠନକାରୀଙ୍କ ସ୍ୱାମୀ ରୂପରେ ରୁଦ୍ରଙ୍କୁ ପ୍ରଣାମ ।

**ମନ୍ତ୍ରସଂଖ୍ୟା (୨୨) :-** ଯଜୁର୍ବେଦ ଅ.୧୬/୨୨ : ନମ ଉଷ୍ଣୀଷିଣେ – ଉଷ୍ଣୀଷ-(ପଗଡ଼ି)ଧାରୀ, ପର୍ବତରେ ବିଚରଣଶୀଳ, କ୍ଷେତ୍ରଗୃହାଦିର ଅପହରଣକାରୀଙ୍କ ପାଳକ ରୁଦ୍ରଙ୍କୁ ନମସ୍କାର । ଧନୁର୍ବାଣଧାରୀ, ଧନୁରେ ଚାପ ସଂଯୋଗକାରୀ ତଥା ପ୍ରତ୍ୟଞ୍ଚାରେ ବାଣ ଆରୋପଣକାରୀ ରୁଦ୍ରଙ୍କୁ ନମସ୍କାର । ଧନୁକୁ ଆକର୍ଷଣ କରୁଥିବା ତଥା ବାଣକୁ ଚତୁଃପାର୍ଶ୍ୱରେ ନିକ୍ଷେପ କରୁଥିବା ରୁଦ୍ରଙ୍କୁ ପ୍ରଣାମ ।

**ମନ୍ତ୍ରସଂଖ୍ୟା (୨୩) :-** ଯଜୁର୍ବେଦ ଅ.୧୬/୨୩ : ନମୋ ବିସୃଜଦ୍‌ଭ୍ୟଃ– ବାଣକୁ ଆକର୍ଷଣ କରି ଶତ୍ରୁଙ୍କ ଉପରେ ନିକ୍ଷେପ କରୁଥିବା ରୁଦ୍ରଙ୍କୁ ନମସ୍କାର । ସୁପ୍ତ ଏବଂ ଜାଗରଣଶୀଳ ରୁଦ୍ରଙ୍କୁ ପ୍ରଣାମ । ଶୋଇଥିବା ଏବଂ ଉପବେଶନ କରିଥିବା ରୁଦ୍ରଙ୍କୁ ପ୍ରଣାମ । ଗତିନିବୃତ୍ତ ଓ ତୀବ୍ର ଗତିଶୀଳ ରୁଦ୍ରଙ୍କୁ ନମସ୍କାର ।

**ମନ୍ତ୍ରସଂଖ୍ୟା (୨୪) :-** ଯଜୁର୍ବେଦ ଅ.୧୬/୨୪ : ନମଃ ସଭାଭ୍ୟଃ – ସଭା ରୂପରେ ଓ ସଭାପତି ରୂପରେ ରୁଦ୍ରଙ୍କୁ ପ୍ରଣାମ । ଅଶ୍ୱ ରୂପରେ ଓ ଅଶ୍ୱପତି

ନମୋ ଗଣେଭ୍ୟୋ ଗଣପତିଭ୍ୟଶ୍ଚ ବୋ ନମୋ ନମୋ ବ୍ରାତେଭ୍ୟୋ ବ୍ରାତପତିଭ୍ୟଶ୍ଚ ବୋ ନମଃ । ନମୋ ଗୃତ୍ସେଭ୍ୟୋ ଗୃତ୍ସପତିଭ୍ୟଶ୍ଚ ବୋ ନମୋ ନମୋ ବିରୂପେଭ୍ୟୋ ବିଶ୍ୱରୂପେଭ୍ୟଶ୍ଚ ବୋ ନମଃ ॥୨୫॥ ନମଃ ସେନାଭ୍ୟଃ ସେନାନିଭ୍ୟଶ୍ଚ ବୋ ନମୋ ନମୋ ରଥିଭ୍ୟୋ ଅରଥେଭ୍ୟଶ୍ଚ ବୋ ନମଃ ॥ ନମଃ କ୍ଷତୃଭ୍ୟଃ ସଂଗ୍ରହୀତୃଭ୍ୟଶ୍ଚ ବୋ ନମୋ ନମୋ ମହଦ୍‌ଭ୍ୟୋ ଅର୍ଭକେଭ୍ୟଶ୍ଚ ବୋ ନମଃ ॥୨୬॥ ନମସ୍ତକ୍ଷଭ୍ୟୋ ରଥକାରେଭ୍ୟଶ୍ଚ ବୋ ନମୋ ନମଃ କୁଲାଲେଭ୍ୟଃ କର୍ମାରେଭ୍ୟଶ୍ଚ ବୋ ନମଃ । ନମୋ ନିଷାଦେଭ୍ୟଃ ପୁଞ୍ଜିଷ୍ଟେଭ୍ୟଶ୍ଚ ବୋ ନମୋ ନମଃ ଶ୍ୱନିଭ୍ୟୋ ମୃଗୟୁଭ୍ୟଶ୍ଚ ବୋ ନମଃ ॥୨୭॥

---

ରୂପରେ ତୁମ୍ଭଙ୍କୁ ପ୍ରଣାମ । ସବୁ ପ୍ରକାର ବାଣଦ୍ୱାରା ବଧ କରିପାରୁଥିବା ଯୋଦ୍ଧାରୂପକ ତଥା ବିବିଧ ପ୍ରକାରରେ ବିଦ୍ଧ କରୁଥିବା ସୈନ୍ୟରୂପକ ରୁଦ୍ରଙ୍କୁ ଏବଂ ଶତ୍ରୁଙ୍କୁ ହତ୍ୟା କର୍ମରେ ସାହାଯ୍ୟ କରୁଥିବା ଦୁର୍ଗାଦି ମାତୃକାଙ୍କୁ ମଧ୍ୟ ପ୍ରଣାମ ।

**ମନ୍ତ୍ରସଂଖ୍ୟା (୨୫) :-** ଯଜୁର୍ବେଦ ଅ.୧୬/୨୫ : ନମୋ ଗଣେଭ୍ୟଃ - ହେ ରୁଦ୍ର**!** ତୁମ ଗଣଙ୍କୁ ତଥା ଗଣପତି ରୂପରେ ତୁମକୁ ପ୍ରଣାମ । ନାନା ଜାତିର ସଙ୍ଘଙ୍କୁ ତଥା ସେହି ଜାତିମାନଙ୍କର ମୁଖ୍ୟ ରୂପରେ ତୁମକୁ ପ୍ରଣାମ । ଲମ୍ପଟଙ୍କୁ ତଥା ଲମ୍ପଟଙ୍କ ସ୍ୱାମୀ ରୂପରେ ତୁମକୁ ନମସ୍କାର । ଜଟାଧାରୀ, ମୁଣ୍ଡିତ ମସ୍ତକ ରୂପକ କୁତ୍ସିତ ରୂପଧାରୀ, ଅଶ୍ୱବଦନ ତଥା ହୟଗ୍ରୀବାଦି ବିଶ୍ୱରୂପ ଗଣ ସ୍ୱରୂପରେ ମଧ୍ୟ ତୁମ୍ଭଙ୍କୁ ନମସ୍କାର ।

**ମନ୍ତ୍ରସଂଖ୍ୟା (୨୬) :-** ଯଜୁର୍ବେଦ ଅ.୧୬/୨୬ : ନମଃ ସେନାଭ୍ୟଃ - ସେନା ଏବଂ ସେନାପତି ରୂପରେ ରୁଦ୍ରଙ୍କୁ ପ୍ରଣାମ । ରଥାରୂଢଙ୍କୁ ତଥା ରଥରହିତଙ୍କୁ, ରଥାଧିଷ୍ଠାତା ଓ ରଥଚାଳକ ସାରଥୀଙ୍କୁ, ମହାବୀରମାନଙ୍କୁ ଏବଂ ପରାକ୍ରମୀ ଶିଶୁମାନଙ୍କୁ ମଧ୍ୟ ରୁଦ୍ର ରୂପରେ ନମସ୍କାର ।

**ମନ୍ତ୍ରସଂଖ୍ୟା (୨୭) :-** ଯଜୁର୍ବେଦ ଅ.୧୬/୨୭ : ନମସ୍ତକ୍ଷଭ୍ୟଃ - ରଥକାର (ବଢ଼େଇ), କୁମ୍ଭକାର, ଲୌହକାର (କମାର), ବ୍ୟାଧ, ମତ୍ସ୍ୟମାଂସ ଭକ୍ଷଣକାରୀ, ଶିକାରି କୁକୁର, ଲୁବ୍‌ଧକ ଅର୍ଥାତ୍ ଶିକାରି କୁକୁରମାନଙ୍କ ସ୍ୱାମୀ ଏ ସମସ୍ତ ରୂପରେ ତୁମକୁ ପ୍ରଣାମ ।

ନମଃ ଶ୍ୱଭ୍ୟଃ ଶ୍ୱପତିଭ୍ୟଶ୍ଚ ବୋ ନମୋ ନମୋ ଭବାୟ ଚ ରୁଦ୍ରାୟ ଚ । ନମଃ ଶର୍ବାୟ ଚ ପଶୁପତୟେ ଚ ନମୋ ନୀଲଗ୍ରୀବାୟ ଚ ଶିତିକଣ୍ଠାୟ ଚ ॥୨୮॥ ନମଃ କପର୍ଦ୍ଦିନେ ଚ ବ୍ୟୁପ୍ତକେଶାୟ ଚ ନମଃ ସହସ୍ରାକ୍ଷାୟ ଚ ଶତଧନ୍ୱନେ ଚ । ନମୋ ଗିରିଶୟାୟ ଚ ଶିପିବିଷ୍ଟାୟ ଚ ନମୋ ମୀଢୁଷ୍ଟମାୟ ଚେଷୁମତେ ଚ ॥୨୯॥ ନମୋ ହ୍ରସ୍ୱାୟ ଚ ବାମନାୟ ଚ ନମୋ ବୃହତେ ଚ ବର୍ଷୀୟସେ ଚ । ନମୋ ବୃଦ୍ଧାୟ ଚ ସବୃଧେ ଚ ନମୋଽଗ୍ର୍ୟାୟ ଚ ପ୍ରଥମାୟ ଚ ॥୩୦॥

**ମନ୍ତ୍ରସଂଖ୍ୟା (୨୮) :-** ଯଜୁର୍ବେଦ ଅ.୧୬/୨୮ : ନମଃ ଶ୍ୱଭ୍ୟଃ - କୁକୁର ଏବଂ କୁକୁରଙ୍କ ସ୍ୱାମୀ କିରାତ ଇତ୍ୟାଦି ରୂପରେ ରୁଦ୍ରଙ୍କୁ ପ୍ରଣାମ । ଭବ (ଭବନ୍ତି ଉତ୍ପଦ୍ୟନ୍ତେ ଜନ୍ତବୋଽସ୍ମାଦିତି) ଅର୍ଥାତ୍ ଯାହାଙ୍କଠାରୁ ସମସ୍ତ ଜନ୍ତୁମାନେ ଉତ୍ପନ୍ନ ହୁଅନ୍ତି, ସେହି ଶିବଙ୍କୁ ନମସ୍କାର । ରୁଦ୍ର (ରୁତ୍ ଦୁଃଖଂ ଦ୍ରାବୟତି ନାଶୟତି ରୁଦ୍ରଃ)ଙ୍କୁ ନମସ୍କାର । ଶର୍ବ (ଶୃଣାତି ହିନସ୍ତି ପାପମିତି ଶର୍ବଃ)ଙ୍କୁ ନମସ୍କାର । ପଶୁପତି (ପଶୂନ୍ ଅଜ୍ଞାନ୍ ପାତି ରକ୍ଷୟତି ପଶୁପତିଃ)ଙ୍କୁ ନମସ୍କାର । ନୀଳଗ୍ରୀବ (ବିଷ ଭକ୍ଷଣଦ୍ୱାରା ଯାହାଙ୍କର କଣ୍ଠଦେଶ ନୀଳବର୍ଣ୍ଣ ହୋଇଅଛି ସେହି ନୀଳକଣ୍ଠ)ଙ୍କୁ ନମସ୍କାର । ଶିତିକଣ୍ଠ(ଶିତିଃ ଶ୍ୱେତଃ କଣ୍ଠଃ ନୀଳାତିରିକ୍ତଭାଗଃ ଯସ୍ୟ) ଅର୍ଥାତ୍ ନୀଳବର୍ଣ୍ଣ ବ୍ୟତିରିକ୍ତ ଯେଉଁ ଅବଶିଷ୍ଟ ଶ୍ୱେତବର୍ଣ୍ଣ ବିଶିଷ୍ଟ କଣ୍ଠଭାଗ ଯାହାଙ୍କର, ସେହି ଶିତିକଣ୍ଠଙ୍କୁ ନମସ୍କାର ।

**ମନ୍ତ୍ରସଂଖ୍ୟା (୨୯) :-** ଯଜୁର୍ବେଦ ଅ.୧୬/୨୯ : ନମଃ କପର୍ଦ୍ଦିନେ- ଜଟାଜୁଟଧାରୀ, ମୁଣ୍ଡିତ ମସ୍ତକ, ସହସ୍ରାକ୍ଷ (ଅନେକ ଚକ୍ଷୁଧାରୀ), ବହୁଧନୁର୍ଦ୍ଧାରୀ, କୈଳାସ ପର୍ବତରେ ଶୟନ କରୁଥିବା, ବିଷ୍ଣୁ ଅଥବା ଆଦିତ୍ୟ (ଶିପିବିଷ୍ଟ ଶବ୍ଦରେ ବିଷ୍ଣୁ ଏବଂ ଆଦିତ୍ୟଙ୍କୁ ମଧ୍ୟ ବୁଝାଯାଏ) ରୂପରେ, ମୀଢୁଷ୍ଟମ (ସେକ୍ତା = ତେଜସ୍ୱୀ ଯୁବକ) ଉତ୍ତମ ସ୍ୱାମୀ ରୂପରେ (ମତାନ୍ତରରେ ବର୍ଷଣକାରୀ ମେଘ ରୂପରେ) ଏବଂ ବାଣଯୁକ୍ତ ରୁଦ୍ରଙ୍କୁ ନମସ୍କାର ।

**ମନ୍ତ୍ରସଂଖ୍ୟା (୩୦) :-** ଯଜୁର୍ବେଦ ଅ.୧୬/୩୦ : ନମୋ ହ୍ରସ୍ୱାୟ - ହ୍ରସ୍ୱ ଅର୍ଥାତ୍ ଦୁର୍ବଳ ଶରୀର ବିଶିଷ୍ଟ, ବାମନ ବା ଖର୍ବକାୟ, ବୃହତ୍କାୟ, ବର୍ଷୀୟାନ୍, ବୃଦ୍ଧ, ସବୃଧେ = ଅନୁଭବୀ (ମତାନ୍ତରରେ ସବୃତ୍ = ବିଦ୍ୟାବିନୟାଦିଗୁଣୈର୍ବର୍ଧନ୍ତେ

ନମ ଆଶବେ ଚାଜିରାୟ ଚ ନମଃ ଶୀଘ୍ର୍ୟାୟ ଚ ଶୀଭ୍ୟାୟ ଚ । ନମ ଊର୍ମ୍ୟାୟ ଚାବସ୍ୱନ୍ୟାୟ ଚ ନମୋ ନାଦେୟାୟ ଚ ଦ୍ୱୀପ୍ୟାୟ ଚ ॥୩୧। ନମୋ ଜ୍ୟେଷ୍ଠାୟ ଚ କନିଷ୍ଠାୟ ଚ ନମଃ ପୂର୍ବଜାୟ ଚାପରଜାୟ ଚ । ନମୋ ମଧ୍ୟମାୟ ଚାପଗଲ୍‌ଭାୟ ଚ ନମୋ ଜଘନ୍ୟାୟ ଚ ବୁଧ୍ନ୍ୟାୟ ଚ ॥୩୨॥ ନମଃ ସୋଭ୍ୟାୟ ଚ ପ୍ରତିସର୍ଯାୟ ଚ ନମୋ ଯାମ୍ୟାୟ ଚ କ୍ଷେମ୍ୟାୟ ଚ । ନମଃ ଶ୍ଳୋକ୍ୟାୟ ଚାବସାନ୍ୟାୟ ଚ ନମ ଉର୍ବର୍ଯାୟ ଚ ଖଲ୍ୟାୟ ଚ ॥୩୩॥

---

ବୃଦ୍ଧାଃ ପଣ୍ଡିତାଃ ତୈଃ ସହ ବର୍ତ୍ତତେ ଇତି ସବୃତ୍ ତସ୍ମୈ ସବୃଧେ), ଜଗତର ସୃଷ୍ଟି ପୂର୍ବରୁ ଯାହାଙ୍କର (ରୁଦ୍ରଙ୍କର) ସ୍ଥିତି, ସବୁ କ୍ଷେତ୍ରରେ ପ୍ରଥମ - ଏ ସମସ୍ତ ରୂପରେ ରୁଦ୍ରଙ୍କୁ ନମସ୍କାର ।

**ମନ୍ତ୍ରସଂଖ୍ୟା (୩୧) :-** ଯଜୁର୍ବେଦ ଅ.୧୬/୩୧ : ନମ ଆଶବେ - ସମଗ୍ର ଜଗତରେ ବ୍ୟାପ୍ତ, ସର୍ବଦା ଗତିଶୀଳ, କ୍ଷିପ୍ରକାରୀ, ଜଳପ୍ରବାହୀ (ମତାନ୍ତରରେ ଶୀଭଃ = ଆତ୍ମଶ୍ଳାଘୀ), ଲହରୀଯୁକ୍ତ ଜଳ, ସ୍ଥିର ଜଳ, ନଦୀଜ (ନଦୀରେ ଉତ୍ପନ୍ନ), ଦ୍ୱୀପୋତ୍ପନ୍ନ - ଏ ସମସ୍ତ ସ୍ୱରୂପରେ ରୁଦ୍ରଙ୍କୁ ନମସ୍କାର ।

**ମନ୍ତ୍ରସଂଖ୍ୟା (୩୨) :-** ଯଜୁର୍ବେଦ ଅ.୧୬/୩୨ : ନମୋ ଜ୍ୟେଷ୍ଠାୟ- ଜ୍ୟେଷ୍ଠ, କନିଷ୍ଠ, ପୂର୍ବଜାତ, ପରବର୍ତ୍ତିଜାତ, ମଧ୍ୟମକାଳରେ ଜାତ ଅର୍ଥାତ୍ ସୃଷ୍ଟିର ପ୍ରାରମ୍ଭରେ ହିରଣ୍ୟଗର୍ଭ ରୂପରେ, ପରେ ପ୍ରଳୟ କାଳରେ କାଳାଗ୍ନି ରୂପରେ ଏବଂ ସୃଷ୍ଟି ପ୍ରଳୟର ମଧ୍ୟଭାଗରେ ଦେବମନୁଷ୍ୟପଶୁପକ୍ଷୀ ରୂପରେ ଜାତ ହେଲେ ଯେଉଁ ରୁଦ୍ର ତାଙ୍କୁ ନମସ୍କାର । ଅପଗଲ୍ଭ ବା ଅପ୍ରଗଲ୍ଭ ଅର୍ଥାତ୍ ଅବ୍ୟୁତ୍ପନ୍ନ ଇନ୍ଦ୍ରିୟ ସ୍ୱରୂପ, ଗୋମହିଷାଦିପଶୁମାନଙ୍କର ଜଙ୍ଘ ରୂପରେ, ବୃକ୍ଷାଦିର ମୂଳ ସ୍ୱରୂପରେ ସେହି ରୁଦ୍ରଙ୍କୁ ନମସ୍କାର ।

**ମନ୍ତ୍ରସଂଖ୍ୟା (୩୩) :-** ଯଜୁର୍ବେଦ ଅ.୧୬/୩୩ : ନମଃ ସୋଭ୍ୟାୟ - ସୋଭ୍ୟ ଅର୍ଥାତ୍ ଗନ୍ଧର୍ବ ନଗରରେ ଉତ୍ପନ୍ନ ଅଥବା ପାପପୁଣ୍ୟଯୁକ୍ତ ମନୁଷ୍ୟ ଲୋକରେ ଜନ୍ମିତ, ବିବାହୋଚିତ ହସ୍ତଗ୍ରନ୍ଥିସୂତ୍ର ଅଥବା ଅଭିଚାରୋତ୍ପନ୍ନ, ପାପୀମାନଙ୍କୁ ନରକଯନ୍ତ୍ରଣା ପ୍ରଦାୟକ, ପୁଣି କୁଶଳପ୍ରଦାତା (ମଙ୍ଗଳବିଧାୟକ), ଶ୍ଳୋକ ଅର୍ଥାତ୍

ନମୋ ବନ୍ୟାୟ ଚ କକ୍ଷ୍ୟାୟ ଚ ନମଃ ଶ୍ରବାୟ ଚ ପ୍ରତିଶ୍ରବାୟ ଚ । ନମ ଆଶୁଷେଣାୟ ଚାଶୁରଥାୟ ଚ ନମଃ ଶୂରାୟ ଚାବଭେଦିନେ ଚ ।।୩୪।। ନମୋ ବିଲ୍ମିନେ ଚ କବଚିନେ ଚ ନମୋ ବର୍ମିଣେ ଚ ବରୂଥିନେ ଚ । ନମଃ ଶ୍ରୁତାୟ ଚ ଶ୍ରୁତସେନାୟ ଚ ନମୋ ଦୁନ୍ଦୁଭ୍ୟାୟ ଚାହନନ୍ୟାୟ ଚ ।।୩୫।। ନମୋ ଧୃଷ୍ଣବେ ଚ ପ୍ରମୃଶାୟ ଚ ନମୋ ନିଷଙ୍ଗିଣେ ଚେଷୁଧିମତେ ଚ । ନମସ୍ତୀକ୍ଷ୍ଣେଷବେ ଚାୟୁଧିନେ ଚ ନମଃ ସ୍ୱାୟୁଧାୟ ଚ ସୁଧନ୍ୱନେ ଚ ।।୩୬।।

---

ବୈଦିକ ମନ୍ତ୍ର ରୂପରେ ଅଥବା ଯଶପ୍ରଦାତା ଭାବରେ, ଅବସାନ୍ୟ ଅର୍ଥାତ୍ ସମାପ୍ତି ଅଥବା ବେଦାନ୍ତବେଦ୍ୟ ରୂପରେ, ଉର୍ବର ଭୂମିରେ ଜାତ ଧାନ୍ୟାଦି ଶସ୍ୟ ସ୍ୱରୂପରେ, ଧାନ୍ୟାଦିଶସ୍ୟକୁ ସଂଗ୍ରହ କରିବା ସ୍ଥାନ ଖଳା ଏହିପରି ସମସ୍ତ ରୂପରେ ରୁଦ୍ରଙ୍କୁ ନମସ୍କାର ।

**ମନ୍ତ୍ରସଂଖ୍ୟା (୩୪) :-** ଯଜୁର୍ବେଦ ଅ. ୧୬/୩୪ : ନମୋ ବନ୍ୟାୟ- ଅରଣ୍ୟୋଦ୍ଭବ, ତୃଣ ଓ ଲତା ରୂପରେ, ଶବ୍ଦ ଏବଂ ପ୍ରତିଶବ୍ଦ ଭାବରେ, ଶୀଘ୍ର ଗତିରେ ଗମନ କରିପାରୁଥିବା ସୈନ୍ୟ, ଶୀଘ୍ର ରଥ ଚାଳକ, ବୀର ଏବଂ ଶତ୍ରୁଙ୍କୁ ବିଦାରଣ କରୁଥିବା ଏ ସମସ୍ତ ରୂପରେ ରୁଦ୍ରଙ୍କୁ ପ୍ରଣାମ ।

**ମନ୍ତ୍ରସଂଖ୍ୟା (୩୫) :-** ଯଜୁର୍ବେଦ ଅ. ୧୬/୩୫ : ନମୋ ବିଲ୍ମିନେ - ଶିରସ୍ତ୍ରାଣ (ମସ୍ତକ ରକ୍ଷାକାରୀ କବଚ), ଶରୀରରକ୍ଷକ କାର୍ପାସ ନିର୍ମିତ କବଚ, ଲୌହ ନିର୍ମିତ ବର୍ମ ବା କବଚ, ହାତୀ ଉପରେ ବସିବା ନିମିତ୍ତ ପ୍ରକୋଷ୍ଠ, ସର୍ବଲୋକ ପ୍ରସିଦ୍ଧ ସୈନ୍ୟ ସମେତ ବିଶିଷ୍ଟ ସେନାପତି, ଦୁନ୍ଦୁଭି (ଭେରୀ) ଶବ୍ଦ, ବାଦ୍ୟଯନ୍ତ୍ରକୁ ବଜେଇବା ପାଇଁ ଯେଉଁ ଦଣ୍ଡାଦି - ଏ ସମସ୍ତ ସ୍ୱରୂପରେ ଭଗବାନ୍ ରୁଦ୍ରଙ୍କୁ ପ୍ରଣାମ ।

**ମନ୍ତ୍ରସଂଖ୍ୟା (୩୬) :-** ଯଜୁର୍ବେଦ ଅ. ୧୬/୩୬ : ନମୋ ଧୃଷ୍ଣବେ - ପ୍ରଗଲ୍ଭ (ପ୍ରତ୍ୟୁତ୍ପନ୍ନମତି), ବିମର୍ଶକାରୀ ପଣ୍ଡିତ, ଖଡ୍ଗ ଏବଂ ବାଣଧାରୀ, ତୀକ୍ଷ୍ଣବାଣ ଓ ଆୟୁଧଧାରୀ, ଶୋଭନ ଆୟୁଧ (ତ୍ରିଶୂଳ) ଓ ଶୋଭନ ଧନୁ (ପିନାକ)କୁ ଧାରଣ କରୁଥିବା ରୁଦ୍ରଙ୍କୁ ନମସ୍କାର ।

ନମଃ ସୁତ୍ୟାୟ ଚ ପଥ୍ୟାୟ ଚ ନମଃ କାଟ୍ୟାୟ ଚ ନୀପ୍ୟାୟ ଚ । ନମଃ କୁଲ୍ୟାୟ ଚ ସରସ୍ୟାୟ ଚ ନମୋ ନାଦେୟାୟ ଚ ବୈଶନ୍ତାୟ ଚ ।।୩୭।। ନମଃ କୂପ୍ୟାୟ ଚାଽବଟ୍ୟାୟ ଚ ନମ ଈଧ୍ରିୟାୟ ଚାତପ୍ୟାୟ ଚ । ନମୋ ମେଘ୍ୟାୟ ଚ ବିଦ୍ୟୁତ୍ୟାୟ ଚ ନମୋ ବର୍ଷ୍ୟାୟ ଚାବର୍ଷ୍ୟାୟ ଚ ।।୩୮।। ନମୋ ବାତ୍ୟାୟ ଚ ରେଷ୍ମ୍ୟାୟ ଚ ନମୋ ବାସ୍ତବ୍ୟାୟ ଚ ବାସ୍ତୁପାୟ ଚ । ନମଃ ସୋମାୟ ଚ ରୁଦ୍ରାୟ ଚ ନମସ୍ତାମ୍ରାୟ ଚାରୁଣାୟ ଚ ।।୩୯।। ନମଃ ଶଙ୍ଗବେ ଚ ପଶୁପତୟେ ଚ ନମ ଉଗ୍ରାୟ ଚ ଭୀମାୟ ଚ । ନମୋଽଗ୍ରେବଧାୟ ଚ ଦୂରେବଧାୟ ଚ ନମୋ ହନ୍ତ୍ରେ ଚ ହନୀୟସେ ଚ ।।୪୦।।

---

**ମନ୍ତ୍ରସଂଖ୍ୟା (୩୭) :-** ଯଜୁର୍ବେଦ ଅ.୧୭/୩୭ : ନମଃ ସୁତ୍ୟାୟ - କ୍ଷୁଦ୍ରମାର୍ଗ, ବିସ୍ତୃତମାର୍ଗ, ବିଷମମାର୍ଗ, କୁଲ୍ୟ ଅର୍ଥାତ୍ ପ୍ରଣାଳୀ ବା କେନାଲ, ଜଳପ୍ରପାତ, ଜଳାଶୟରୁ ଜାତ, ନଦୀରୁ ଉତ୍ପନ୍ନ ତଥା ପୋଖରୀରୁ ଉଦ୍‌ଭବ - ଏ ସମସ୍ତ ରୂପରେ ରୁଦ୍ରଙ୍କୁ ପ୍ରଣାମ ।

**ମନ୍ତ୍ରସଂଖ୍ୟା (୩୮) :-** ଯଜୁର୍ବେଦ ଅ.୧୭/୩୮ : ନମଃ କୂପ୍ୟାୟ - କୂପରୁ ଜାତ, ଗର୍ତ୍ତରୁ ଉତ୍ପନ୍ନ, ଛାୟାରୁ ଜାତ, ଆତପ ଅର୍ଥାତ୍ ସୂର୍ଯ୍ୟକିରଣରୁ ଜାତ, ମେଘ ଓ ବିଦ୍ୟୁତ୍‌ରୁ ଉତ୍ପନ୍ନ, ବୃଷ୍ଟିରୁ ଉଦ୍‌ଭବ ତଥା ବୃଷ୍ଟିରହିତରୁ ଉଦ୍‌ଗମ- ଏ ସମସ୍ତ ସ୍ୱରୂପରେ ରୁଦ୍ରଙ୍କୁ ପ୍ରଣାମ ।

**ମନ୍ତ୍ରସଂଖ୍ୟା (୩୯) :-** ଯଜୁର୍ବେଦ ଅ.୧୭/୩୯ : ନମୋ ବାତ୍ୟାୟ- ବାତ୍ୟାସ୍ୱରୂପ, ପ୍ରଳୟକାଳରେ ମଧ୍ୟ ବିଦ୍ୟମାନ, ବାସ୍ତୁସ୍ୱରୂପ, ବାସ୍ତୁର ପାଳକ ଏପରି ସ୍ୱରୂପରେ ଏବଂ ଉମାସମନ୍ୱିତ ରୁଦ୍ରଙ୍କୁ ପ୍ରଣାମ । ତାମ୍ରବର୍ଣ୍ଣ ଓ ଅରୁଣବର୍ଣ୍ଣ ବିଶିଷ୍ଟ ଶଙ୍କରଙ୍କୁ ପ୍ରଣାମ ।

**ମନ୍ତ୍ରସଂଖ୍ୟା (୪୦) :-** ଯଜୁର୍ବେଦ ଅ.୧୭/୪୦ : ନମଃ ଶଙ୍ଗବେ- ସୁଖପ୍ରଦାୟକ, ପଶୁପତି, ଉଗ୍ରସ୍ୱଭାବ, ଭୟଙ୍କର ସ୍ୱରୂପ, ସମ୍ମୁଖରେ ଶତ୍ରୁଙ୍କୁ ବଧକାରୀ, ଦୂରରୁ ମଧ୍ୟ ଶତ୍ରୁର ସଂହାରକର୍ତ୍ତା, ଶତ୍ରୁ ହତ୍ୟାକାରୀ ଏବଂ ଅତ୍ୟନ୍ତ ହତ୍ୟାକାରୀ ।

ନମୋ ବୃକ୍ଷେଭ୍ୟୋ ହରିକେଶେଭ୍ୟୋ ନମସ୍ତାରାୟ । ନମଃ ଶମ୍ଭବେ ଚ ମୟୋଭବେ ଚ ନମଃ ଶଙ୍କରାୟ ଚ ମୟସ୍କରାୟ ଚ ନମଃ ଶିବାୟ ଚ ଶିବତରାୟ ଚ ॥୪୧॥ ନମଃ ପାର୍ଯ୍ୟାୟ ଚାବାର୍ଯ୍ୟାୟ ଚ ନମଃ ପ୍ରତରଣାୟ ଚୋତ୍ତରଣାୟ ଚ । ନମସ୍ତୀର୍ଥ୍ୟାୟ ଚ କୂଲ୍ୟାୟ ଚ ନମଃ ଶଷ୍ପ୍ୟାୟ ଚ ଫେନ୍ୟାୟ ଚ ॥୪୨॥ ନମଃ ସିକତ୍ୟାୟ ଚ ପ୍ରବାହ୍ୟାୟ ଚ ନମଃ କିଂଶିଲାୟ ଚ କ୍ଷୟଣାୟ ଚ । ନମଃ କପର୍ଦିନେ ଚ ପୁଲସ୍ତିନେ ଚ ନମ ଇରିଣ୍ୟାୟ ଚ ପ୍ରପଥ୍ୟାୟ ଚ ॥୪୩॥ ନମୋ ବ୍ରଜ୍ୟାୟ ଚ ଗୋଷ୍ଠ୍ୟାୟ ଚ ନମସ୍ତଳ୍ପ୍ୟାୟ ଚ ଗେହ୍ୟାୟ ଚ । ନମୋ ହୃଦୟ୍ୟାୟ ଚ ନିବେଷ୍ପ୍ୟାୟ ଚ ନମଃ କାଟ୍ୟାୟ ଚ ଗହ୍ୱରେଷ୍ଠାୟ ଚ ॥୪୪॥

---

**ମନ୍ତ୍ରସଂଖ୍ୟା (୪୧) :-** ହରିତ୍‌ବର୍ଣ୍ଣ ପତ୍ର ସଦୃଶ କେଶଯୁକ୍ତ ବୃକ୍ଷସ୍ୱରୂପଧାରୀ, ସଂସାରର ଏକମାତ୍ର ତ୍ରାଣକର୍ତ୍ତା ରୁଦ୍ରଙ୍କୁ ପ୍ରଣାମ । ଯଜୁର୍ବେଦ ଅ.୧୬/୪୧ : ନମଃ ଶମ୍ଭବାୟ ଚ - ସୁଖସ୍ୱରୂପ ଓ ସୁଖକାରୀ, କଲ୍ୟାଣମୟ ଓ କଲ୍ୟାଣକାରୀ, ଶିବସ୍ୱରୂପ ଏବଂ ଅତ୍ୟନ୍ତ ଶୁଭସ୍ୱରୂପ ରୁଦ୍ରଙ୍କୁ ନମସ୍କାର ।

**ମନ୍ତ୍ରସଂଖ୍ୟା (୪୨) :-** ଯଜୁର୍ବେଦ ଅ.୧୬/୪୨ : ନମଃ ପାର୍ଯ୍ୟାୟ - ସଂସାର ସାଗରରୁ ପାର କରି ଜୀବନ୍ମୁକ୍ତି ପ୍ରଦାତା, ସଂସାରାବସ୍ଥାରେ ଯୋଗ୍ୟ ସଂସାରୀତ୍ୱକୁ ପ୍ରାପ୍ତ କରାଉଥିବା, ମନ୍ତ୍ର-ଜପ-ପୂଜା-ଧ୍ୟାନଦ୍ୱାରା ପାପରୁ ତ୍ରାଣକର୍ତ୍ତା, ଶ୍ରେଷ୍ଠ ତତ୍ତ୍ୱଜ୍ଞାନଦ୍ୱାରା ସଂସାରରୁ ଉଦ୍ଧାରକର୍ତ୍ତା, ତୀର୍ଥସ୍ୱରୂପ, ପାପପ୍ରକ୍ଷାଳନ ପାଇଁ ଗଙ୍ଗାଦି ପବିତ୍ର ନଦୀର କୂଳସ୍ୱରୂପ, କୁଶାଦି ପବିତ୍ର ତୃଣରୂପ ଏବଂ ପବିତ୍ର ଜଳର ଫେଣସ୍ୱରୂପ ରୁଦ୍ରଙ୍କୁ ନମସ୍କାର ।

**ମନ୍ତ୍ରସଂଖ୍ୟା (୪୩) :-** ଯଜୁର୍ବେଦ ଅ.୧୬/୪୩ : ନମଃ ସିକତ୍ୟାୟ - ବାଲିରୁ ଜାତ, ଜଳସ୍ରୋତରୁ ଜାତ, କ୍ଷୁଦ୍ର ଶିଳାଖଣ୍ଡରୁ ଉତ୍ପନ୍ନ, ସ୍ଥିର ଜଳାଶୟ ସ୍ୱରୂପ, ଜଟାଜୁଟଧାରୀ, ସର୍ବାନ୍ତର୍ଯ୍ୟାମୀ, ତୃଣରହିତ ସ୍ଥାନରୁ ଜାତ, ଉତ୍କୃଷ୍ଟ ମାର୍ଗ ସମ୍ଭୂତ ଯେଉଁ ଭଗବାନ୍ ରୁଦ୍ର ତାଙ୍କୁ ପ୍ରଣାମ ।

**ମନ୍ତ୍ରସଂଖ୍ୟା (୪୪) :-** ଯଜୁର୍ବେଦ ଅ.୧୬/୪୪ : ନମୋ ବ୍ରଜ୍ୟାୟ - ଗୋଷ୍ଠରୁ ଉତ୍ପନ୍ନ, ଗୋରୁ ବସତିସ୍ଥାନ (ଗୁହାଳ)ରୁ ଉତ୍ପନ୍ନ, ଗୃହରୁ ଜାତ, ହୃଦୟରୁ ସମ୍ଭୂତ, ଜଳର ଆବର୍ତ୍ତ (ଭଉଁରୀ)ରୁ ଅଥବା କୂପରୁ ଜାତ, ଗିରି ଗୁମ୍ଫାନିବାସୀ - ଏହି ସମସ୍ତ ସ୍ୱରୂପରେ ରୁଦ୍ରଙ୍କୁ ପ୍ରଣାମ ।

ନମଃ ଶୁଷ୍କ୍ୟାୟ ଚ ହରିତ୍ୟାୟ ଚ ନମଃ ପାଗୁଁସବ୍ୟାୟ ଚ ରଜସ୍ୟାୟ ଚ ।
ନମୋ ଲୋପ୍ୟାୟ ଚୋଲପ୍ୟାୟ ଚ ନମ ଊର୍ବ୍ୟାୟ ଚ ସୂର୍ବ୍ୟାୟ ଚ ॥୪୫॥
ନମଃ ପର୍ଣ୍ଣାୟ ଚ ପର୍ଣ୍ଣଶଦାୟ ଚ ନମ ଉଦ୍‌ଗୁରମାଣାୟ ଚାଭିଘ୍ନତେ ଚ ।
ନମ ଆଖିଦତେ ଚ ପ୍ରଖିଦତେ ଚ ନମ ଇଷୁକୃଦ୍‌ଭ୍ୟୋ ଧନୁଷ୍କୃଦ୍‌ଭ୍ୟଶ୍ଚ
ବୋ ନମଃ । ନମୋ ବଃ କିରିକେଭ୍ୟୋ ଦେବାନାଗୁଁ ହୃଦୟେଭ୍ୟୋ ନମୋ
ବିଚିନ୍ୱତ୍କେଭ୍ୟୋ ନମୋ ବିକ୍ଷିଣତ୍କେଭ୍ୟୋ ନମ ଆନିର୍ହତେଭ୍ୟଃ ॥୪୬॥
ଦ୍ରାପେ ଅନ୍ଧସସ୍ପତେ ଦରିଦ୍ର ନୀଲଲୋହିତ । ଆସାଂ ପ୍ରଜାନାମେଷାଂ
ପଶୂନାଂ ମା ଭେର୍ମା ରୋଙ୍‌ର୍ମୋ ଚ ନଃ କିଞ୍ଚନାମମତ୍ ॥୪୭॥

---

**ମନ୍ତ୍ରସଂଖ୍ୟା (୪୫) :-** ଯଜୁର୍ବେଦ ଅ.୧୬/୪୫ : ନମଃ ଶୁଷ୍କ୍ୟାୟ - ଶୁଷ୍କ କାଷ୍ଠାଦିରୁ ଉଦ୍‌ଭବ, ହରିତ୍‌ବର୍ଣ୍ଣ ବିଶିଷ୍ଟ ପତର ଇତ୍ୟାଦିରୁ ଉଦ୍‌ଗମ, ଧୂଳିରୁ ଉତ୍ପନ୍ନ, ରଜଃକଣା (କ୍ଷୁଦ୍ର ଧୂଳିକଣା)ରୁ ସମ୍ଭୂତ, ଅଗମ୍ୟ ପ୍ରଦେଶୋଦ୍ଭବ, ଉଲପ୍ୟନାମକ ତୃଣ ବିଶେଷରୁ ଜାତ, ଭୂମିରୁ ଜାତ, କଳ୍ପାନଳରୁ ଉଦ୍‌ଗତ - ଏହିପରି ସ୍ୱଭାବ ବିଶିଷ୍ଟ ରୁଦ୍ରଙ୍କୁ ପ୍ରଣାମ ।

**ମନ୍ତ୍ରସଂଖ୍ୟା (୪୬) :-** ଯଜୁର୍ବେଦ ଅ.୧୬/୪୬ : ନମଃ ପର୍ଣ୍ଣାୟ - ପତ୍ରରୂପୀ, ପତିତ ପକ୍ୱପତ୍ର ସ୍ୱରୂପ, ଉଦ୍ୟମୀ, ଶତ୍ରୁଙ୍କୁ ସମ୍ମୁଖ ଯୁଦ୍ଧରେ ହତ୍ୟାକାରୀ, ନାସ୍ତିକ ବା ଅଭକ୍ତମାନଙ୍କର ଦୈନ୍ୟ ବା ଦାରିଦ୍ର୍ୟପ୍ରଦ, ପାପୀମାନଙ୍କ ଦୁଃଖଜନକ, ବାଣନିର୍ମାଣକାରୀ ଏବଂ ଧନୁକୁ ମଧ୍ୟ ପ୍ରସ୍ତୁତକାରୀ, ବର୍ଷା ଆଦିଦ୍ୱାରା ଜଗତର ଉତ୍ପତ୍ତିକର୍ତ୍ତା ତଥା ଦେବତାମାନଙ୍କ ହୃଦୟ ସଦୃଶ (ଅଗ୍ନି-ବାୟୁ-ଆଦିତ୍ୟ ସ୍ୱରୂପୀ) ରୁଦ୍ର, ପାପୀ ଏବଂ ପୁଣ୍ୟବାନ୍‌ଙ୍କୁ ପୃଥକ୍ କରୁଥିବା ଓ ପାପକୁ ବିଭିନ୍ନ ରୂପରେ ବିନାଶ କରିପାରୁଥିବା ଅଗ୍ନ୍ୟାଦି ଦେବତାତ୍ମାଙ୍କୁ ନମସ୍କାର । ସୃଷ୍ଟ୍ୟାଦିରେ ଲୋକରୁ ବହିର୍ଭୂତ ସେହି ଅଗ୍ନି-ବାୟୁ-ସୂର୍ଯ୍ୟରୂପକ ରୁଦ୍ରଙ୍କୁ ନମସ୍କାର ।

**ମନ୍ତ୍ରସଂଖ୍ୟା (୪୭) :-** ଯଜୁର୍ବେଦ ଅ.୧୬/୪୭ : ଦ୍ରାପେ ଅନ୍ଧସସ୍ପତେ- ପାପୀମାନଙ୍କୁ ଦୁର୍ଗତି ପ୍ରାପ୍ତିକାରକ ! ହେ ସୋମର ପାଳକ ! ହେ ଦରିଦ୍ର (ନିଷ୍ପରିଗ୍ରହ) ! ହେ ନୀଳଲୋହିତ (କଣ୍ଠ ନୀଳ ମାତ୍ର ଶରୀରର ଅନ୍ୟତ୍ର ଲୋହିତବର୍ଣ୍ଣ ବିଶିଷ୍ଟ)! ହେ ରୁଦ୍ର ! ତୁମେ ଏହି ପ୍ରଜାମାନଙ୍କୁ (ପୁତ୍ର-ପୌତ୍ରାଦିଙ୍କୁ) ତଥା ଏହି ଗୋରୁ ପ୍ରଭୃତି ପଶୁମାନଙ୍କୁ (ଯେଉଁମାନେ ତୁମଠାରେ ଆଶ୍ରିତ) ଭୟଭୀତ କରାଅ ନାହିଁ ଏବଂ କାହାକୁ ବି ରୁଗ୍‌ଣ କର ନାହିଁ ।

ଇମା ରୁଦ୍ରାୟ ତବସେ କପର୍ଦିନେ କ୍ଷୟଦ୍‌ବୀରାୟ ପ୍ରଭରାମହେ ମତୀଃ । ଯଥା ଶମସଦ୍ ଦ୍ୱିପଦେ ଚତୁଷ୍ପଦେ ବିଶ୍ୱଂ ପୁଷ୍ଟଂ ଗ୍ରାମେଽଅସ୍ମିନ୍ନ-ନାତୁରମ୍ ॥୪୮॥ ଯା ତେ ରୁଦ୍ର ଶିବା ତନୂଃ ଶିବା ବିଶ୍ୱାହା ଭେଷଜୀ । ଶିବା ରୁତସ୍ୟ ଭେଷଜୀ ତୟା ନୋ ମୃଡ଼ ଜୀବସେ ॥୪୯॥ ପରି ଣୋ ହେତୀ ରୁଦ୍ରସ୍ୟ ବୃଜ୍ୟାତ୍ ପରିତ୍ୱେଷସ୍ୟ ଦୁର୍ମତିର୍ମହୀଗାତ୍ । ଅବ ସ୍ଥିରା ମଘବଦ୍‌ଭ୍ୟସ୍ତନୁଷ୍ୱମୀଢ୍ୱସ୍ତୋକାୟ ତନୟାୟ ମୃଡ଼ ॥୫୦॥ ମୀଢୁଷ୍ଟମ ଶିବତମ ଶିବୋ ନଃ ସୁମନା ଭବ । ପରମେ ବୃକ୍ଷ ଆୟୁଧଂ ନିଧାୟ କୃତ୍ତିଂ ବସାନ ଆଚର ପିନାକଂ ବିଭ୍ରଦାଗହି ॥୫୧॥

---

**ମନ୍ତ୍ରସଂଖ୍ୟା (୪୮) :-** ଯଜୁର୍ବେଦ ଅ.୧୬/୪୮ : ଇମା ରୁଦ୍ରାୟ - ଆମ୍ଭମାନଙ୍କ ଏହି ସ୍ତୁତି ବଳବାନ୍ ତେଜସ୍ୱୀ ଜଟାଜୁଟଧାରୀ ଶତ୍ରୁ ବିନାଶକାରୀ ଶଙ୍କରଙ୍କ ପାଇଁ ସମର୍ପିତ ହେଉ । ଯାହା ଫଳରେ (ତୁମର ସନ୍ତୋଷଲାଭ ଦ୍ୱାରା) ଆମ ଗ୍ରାମର ସମସ୍ତ ଦ୍ୱିପଦ (ପୁତ୍ରପୌତ୍ରାଦି) ଓ ଚତୁଷ୍ପଦ (ପଶୁ ଇତ୍ୟାଦି) ପ୍ରାଣୀମାନେ ସର୍ବବିଧ ସୁଖସମୃଦ୍ଧି ସହିତ ନିରୁପଦ୍ରବ ଜୀବନଯାପନ କରିପାରିବେ ।

**ମନ୍ତ୍ରସଂଖ୍ୟା (୪୯) :-** ଯଜୁର୍ବେଦ ଅ.୧୬/୪୯ : ଯା ତେ ରୁଦ୍ର ଶିବା - ହେ ରୁଦ୍ର ! ତୁମର ଯେଉଁ ମଙ୍ଗଳମୟ ଶାନ୍ତ ସ୍ୱରୂପ ଶରୀର, ତାହା ଆମପାଇଁ ସର୍ବଦା ମଙ୍ଗଳପ୍ରଦ ତଥା ସାଂସାରିକ ଆଧିବ୍ୟାଧି ନିବର୍ତ୍ତନ ପାଇଁ ଔଷଧସ୍ୱରୂପ ଅଟେ ।

**ମନ୍ତ୍ରସଂଖ୍ୟା (୫୦) :-** ଯଜୁର୍ବେଦ ଅ.୧୬/୫୦ : ପରିନୋ ରୁଦ୍ରସ୍ୟ - ରୁଦ୍ରଙ୍କର କ୍ରୋଧିତ ଦୁର୍ମତି ସମ୍ପନ୍ନ ଆୟୁଧସମୂହ ଆମକୁ ବର୍ଜନ କରନ୍ତୁ ଅର୍ଥାତ୍ ଆମ ପାଇଁ ସେମାନେ ବିନାଶକାରୀ ହୁଅନ୍ତୁ ନାହିଁ । ହେ କାମଦ ! ଯଜମାନଙ୍କ ଭୟ ନିବୃତ୍ତି ନିମିତ୍ତ ଧନୁକୁ ଚାପ ରହିତ କରନ୍ତୁ ଏବଂ ପୁତ୍ର ପୌତ୍ରାଦିଙ୍କ ପ୍ରତି ଦୟା ପ୍ରଦର୍ଶନ ପୂର୍ବକ ସୁଖ ପ୍ରଦାନ କରନ୍ତୁ ।

**ମନ୍ତ୍ରସଂଖ୍ୟା (୫୧) :-** ଯଜୁର୍ବେଦ ଅ.୧୬/୫୧ : ମୀଢୁଷ୍ଟମ ଶିବତମ - ହେ ଅତିଶୟ କାମସେକ୍ତ (କାମଦକ୍ଷ) ରୁଦ୍ର ! ହେ ଅତ୍ୟନ୍ତ କଲ୍ୟାଣକାରୀ ଶଙ୍କର ! ତୁମେ କଲ୍ୟାଣସ୍ୱରୂପ ଆମ ପ୍ରତି ସର୍ବଦା ଶାନ୍ତ ଓ ହୃଷ୍ଟଚିତ୍ତ ସମ୍ପନ୍ନ ହୁଅ । ତୁମେ ଦୂରସ୍ଥ ଉନ୍ନତ ବୃକ୍ଷ (ବଟବୃକ୍ଷ ଇତ୍ୟାଦି)ରେ ତ୍ରିଶୂଳାଦି ଅସ୍ତ୍ରମାନଙ୍କୁ ରଖି ଚର୍ମବସନ

ବିକିରିଦ୍ର ବିଲୋହିତ ନମସ୍ତେ ଅସ୍ତୁ ଭଗବଃ । ଯାସ୍ତେ ସହସ୍ରଗୁଁ ହେତୟୋଽନ୍ୟମସ୍ମନ୍ନିବପନ୍ତୁ ତାଃ ॥୫୨॥ ସହସ୍ରାଣି ସହସ୍ରଶୋ ବାହ୍ୱୋସ୍ତବ ହେତୟଃ । ତାସାମୀଶାନୋ ଭଗବଃ ପରାଚୀନା ମୁଖା କୃଧି ॥୫୩॥ ଅସଂଖ୍ୟାତା ସହସ୍ରାଣି ଯେ ରୁଦ୍ରା ଅଧି ଭୂମ୍ୟାମ୍ । ତେଷାଗୁଁ ସହସ୍ରଯୋଜନେଽବ ଧନ୍ୱାନି ତନ୍ମସି ॥୫୪॥ ଅସ୍ମିନ୍ମହତ୍ୟର୍ଣ୍ଣବେଽନ୍ତରିକ୍ଷେ ଭବା ଅଧି । ତେଷାଗୁଁ ସହସ୍ରଯୋଜନେଽବଧନ୍ୱାନି ତନ୍ମସି ॥୫୫॥

---

ପରିଧାନ କରି ଆସ ବା ତପଶ୍ଚର୍ଯ୍ୟା କର । ଆସୁଥିବା ସମୟରେ ପ୍ରତ୍ୟଞ୍ଚାରହିତ କେବଳ ପିନାକ ଧନୁକୁ ଧାରଣ କରି ଆସ ।

**ମନ୍ତ୍ରସଂଖ୍ୟା (୫୨) :-** ଯଜୁର୍ବେଦ ଅ.୧୭/୫୨ : ବିକିରିଦ୍ର ବିଲୋହିତ- ବିକିରିଦ୍ର (ବିବିଧଂ କିରିଂ = ଘାତାଦି ଉପଦ୍ରବଂ ଦ୍ରାବୟତି) ଅର୍ଥାତ୍ ବାଣବିଘାତାଦି ଉପଦ୍ରବର ବିନାଶକ, ବିଗତ ଲୋହିତ (କଲ୍ମଷ) ଶୁଦ୍ଧସ୍ୱରୂପ ହେ ଭଗବାନ୍ ରୁଦ୍ର ! ତୁମ୍ଭଙ୍କୁ ପ୍ରଣାମ । ତୁମର ଯେଉଁ ଅସଂଖ୍ୟ ଆୟୁଧ ସେ ସମସ୍ତ ଆମ ବ୍ୟତିରେକେ ଶତ୍ରୁମାନଙ୍କୁ ହତ୍ୟା କରୁ ।

**ମନ୍ତ୍ରସଂଖ୍ୟା (୫୩) :-** ଯଜୁର୍ବେଦ ଅ.୧୭/୫୩ : ସହସ୍ରାଣି ସହସ୍ରଶୋ- ସମସ୍ତ ଐଶ୍ୱର୍ଯ୍ୟ ଯୁକ୍ତ ହେ ଭଗବାନ୍ ରୁଦ୍ର ! ତୁମର ବାହୁଦ୍ୱୟରେ ସହସ୍ର (ଅସଂଖ୍ୟେୟ) ଆୟୁଧ ରହିଛନ୍ତି । ସେଗୁଡ଼ିକର ସ୍ୱାମୀ ତୁମେ, ତେଣୁ ସେଗୁଡ଼ିକୁ ଆମ ପାଇଁ ପରାଙ୍ମୁଖ କର ।

**ମନ୍ତ୍ରସଂଖ୍ୟା (୫୪) :-** ଯଜୁର୍ବେଦ ଅ.୧୭/୫୪ : ଅସଂଖ୍ୟାତା – ଭୂଲୋକରେ ଯେଉଁ ଅସଂଖ୍ୟ ରୁଦ୍ର ଅବସ୍ଥିତ ସେମାନଙ୍କର ଧନୁଗୁଡ଼ିକ ଆମଠାରୁ ହଜାରେ ଯୋଜନ (ଚାରି କୋଶରେ ଏକ ଯୋଜନ) ବ୍ୟବଧାନରେ ଅବତାରିତ କରିବାକୁ ଆମେ ନିବେଦନ କରୁଅଛୁ ।

**ମନ୍ତ୍ରସଂଖ୍ୟା (୫୫) :-** ଯଜୁର୍ବେଦ ଅ.୧୭/୫୫ : ଅସ୍ମିନ୍ ମହତ୍ୟର୍ଣ୍ଣବେ – ଏହି ମେଘର ଆଶ୍ରୟସ୍ଥଳସ୍ୱରୂପ ବିଶାଳ ଆକାଶରେ ଯେଉଁ ରୁଦ୍ରମାନେ ଅବସ୍ଥିତ ସେମାନଙ୍କ ଧନୁଗୁଡ଼ିକ ହଜାରେ ଯୋଜନ ବ୍ୟବଧାନରେ ଅବତାରିତ କରିବାକୁ ଆମେ ନିବେଦନ କରୁଅଛୁ ।

ନୀଲଗ୍ରୀବାଃ ଶିତିକଣ୍ଠା ଦିବଗୁଁ ରୁଦ୍ରା ଉପଶ୍ରିତାଃ । ତେଷାଗୁଁ ସହସ୍ରଯୋଜନେଽବଧନ୍ୱାନି ତନ୍ମସି ॥୫୬॥ ନୀଲଗ୍ରୀବାଃ ଶିତିକଣ୍ଠାଃ ଶର୍ବା ଅଧଃ କ୍ଷମାଚରାଃ । ତେଷାଗୁଁ ସହସ୍ରଯୋଜନେଽବ ଧନ୍ୱାନି ତନ୍ମସି ॥୫୭॥ ଯେ ବୃକ୍ଷେଷୁ ଶଷ୍ପିଞ୍ଜରା ନୀଲଗ୍ରୀବା ବିଲୋହିତାଃ । ତେଷାଗୁଁ ସହସ୍ରଯୋଜନେଽବ ଧନ୍ୱାନି ତନ୍ମସି ॥୫୮॥ ଯେ ଭୂତାନାମଧିପତୟୋ ବିଶିଖାସଃ କପର୍ଦିନଃ । ତେଷାଗୁଁ ସହସ୍ରଯୋଜନେଽବ ଧନ୍ୱାନି ତନ୍ମସି ॥୫୯॥

---

**ମନ୍ତ୍ରସଂଖ୍ୟା (୫୬) :-** ଯଜୁର୍ବେଦ ଅ.୧୬/୫୬ : ନୀଳଗ୍ରୀବାଃ ଶିତିକଣ୍ଠାଃ - ସ୍ୱର୍ଗସ୍ଥ ରୁଦ୍ରମାନେ କେତେକାଂଶରେ ନୀଳକଣ୍ଠ (ନୀଳଗ୍ରୀବ) ଓ ତଦତିରିକ୍ତ ଅଂଶରେ ଶ୍ୱେତକଣ୍ଠ । ସେମାନଙ୍କର ଧନୁଗୁଡ଼ିକ ହଜାରେ ଯୋଜନ ଦୂରରେ ଅବତାରଣ କରିବାକୁ ଆମ୍ଭେମାନେ ନିବେଦନ କରୁଅଛୁ ।

**ମନ୍ତ୍ରସଂଖ୍ୟା (୫୭) :-** ଯଜୁର୍ବେଦ ଅ.୧୬/୫୭ : ନୀଳଗ୍ରୀବାଃ ଶିତିକଣ୍ଠାଃ - ଭୂମିର ଅଧୋଭାଗରେ (ପାତାଳରେ) ଯେଉଁ ଶିବମାନେ ବିଚରଣ କରୁଅଛନ୍ତି, ସେହି ନୀଳଗ୍ରୀବ ଓ ଶ୍ୱେତକଣ୍ଠ ରୁଦ୍ରମାନଙ୍କ ଧନୁଗୁଡ଼ିକ ହଜାରେ ଯୋଜନ ଦୂରରେ ଅବତାରିତ କରିବାକୁ ଆମ୍ଭେ ନିବେଦନ କରୁଅଛୁ ।

**ମନ୍ତ୍ରସଂଖ୍ୟା (୫୮) :-** ଯଜୁର୍ବେଦ ଅ.୧୬/୫୮ : ଯେ ବୃକ୍ଷେଷୁ - ନବୀନ ତୃଣ ସଦୃଶ ହରିତ୍‌ବର୍ଣ୍ଣ ବିଶିଷ୍ଟ ବୃକ୍ଷମାନଙ୍କରେ ଯେଉଁ ରୁଦ୍ରମାନେ ତଥା ନୀଳକଣ୍ଠ ଏବଂ ଲୋହିତାଦି ଧାତୁଗତ ବର୍ଣ୍ଣବିଶିଷ୍ଟ (ତେଜୋମୟ ଶରୀର)ଅଥବା ଲୋହିତବର୍ଣ୍ଣ ବିଶିଷ୍ଟ ରୁଧିର ରହିତ (କେବଳ ମାଂସାଦିଯୁକ୍ତ ଶରୀରଧାରୀ) ରୁଦ୍ରମାନଙ୍କର ଧନୁଗୁଡ଼ିକ ହଜାରେ ଯୋଜନ ଦୂରରେ ଅବତାରଣ କରିବାକୁ ଆମ୍ଭେ ନିବେଦନ କରୁଅଛୁ ।

**ମନ୍ତ୍ରସଂଖ୍ୟା (୫୯) :-** ଯଜୁର୍ବେଦ ଅ.୧୬/୫୯ : ଯେ ଭୂତାନାଂ - ଯେଉଁ ରୁଦ୍ରମାନେ ପ୍ରାଣୀମାନଙ୍କର ଅଧିପତି ତଥା ଯେଉଁମାନେ ମୁଣ୍ଡିତମସ୍ତକ (ବିଶିଖ = ବିଗତ ଶିଖା ମାତ୍ର ଏଠାରେ ଶିଖା ଶବ୍ଦରେ କେଶକୁ ଲକ୍ଷ୍ୟ କରାଯାଇଅଛି), ଯେଉଁମାନେ ଜଟାଜୁଟଧାରୀ ସେମାନଙ୍କର ଧନୁଗୁଡ଼ିକ ହଜାରେ ଯୋଜନ ବ୍ୟବଧାନରେ ଅବତାରିତ କରିବାକୁ ଆମେ ନିବେଦନ କରୁଅଛୁ ।

ଯେ ପଥାଂ ପଥିରକ୍ଷିଣ ଐଲବୃଦା ଆୟୁର୍ୟୁଧଃ । ତେଷାଗୁଁ ସହସ୍ରଯୋଜନେଽବ ଧନ୍ୱାନି ତନ୍ମସି ॥୬୦॥ ଯେ ତୀର୍ଥାନି ପ୍ରଚରନ୍ତି ସୃକାହସ୍ତା ନିଷଙ୍ଗିଣଃ । ତେଷାଗୁଁ ସହସ୍ରଯୋଜନେଽବ ଧନ୍ୱାନି ତନ୍ମସି ॥୬୧॥ ଯେଽନ୍ନେଷୁ ବିବିଧନ୍ତି ପାତ୍ରେଷୁ ପିବତୋ ଜନାନ୍ । ତେଷାଗୁଁ ସହସ୍ରଯୋଜନେଽବ ଧନ୍ୱାନି ତନ୍ମସି ॥୬୨॥ ଯ ଏତାବନ୍ତଶ୍ଚ ଭୂୟାଗୁଁ ସଶ୍ଚ ଦିଶୋ ରୁଦ୍ରା ବିତସ୍ଥିରେ । ତେଷାଗୁଁ ସହସ୍ରଯୋଜନେଽବ ଧନ୍ୱାନି ତନ୍ମସି ॥୬୩॥

---

**ମନ୍ତ୍ରସଂଖ୍ୟା (୬୦) :-** ଯଜୁର୍ବେଦ ଅ.୧୬/୬୦ : ଯେ ପଥାଂ ପଥି ରକ୍ଷିଣ - ଯେଉଁ ରୁଦ୍ରମାନେ ଲୌକିକ ଏବଂ ବୈଦିକ ମାର୍ଗର ଅଧିପତି ତଥା ଅନ୍ନର ଧାରକ (ଅଥବା ଇଳା = ପୃଥିବୀ ତତ୍ସମ୍ପର୍କୀୟ ପାର୍ଥିବ, ପାର୍ଥିବ ବସ୍ତୁର ଧାରଣକର୍ତ୍ତା), ଜୀବଜଗତର ସ୍ଥିତିକାଳ ପର୍ଯ୍ୟନ୍ତ ଯେତେ ସଂଖ୍ୟକ ରୁଦ୍ରମାନେ ଯୁଦ୍ଧକର୍ତ୍ତା, ସେ ସମସ୍ତଙ୍କର ଧନୁକୁ ସହସ୍ର ଯୋଜନ ଦୂରରେ ଅବନତ କରିବା ପାଇଁ ଆମେ ପ୍ରାର୍ଥନା କରୁଅଛୁ ।

**ମନ୍ତ୍ରସଂଖ୍ୟା (୬୧) :-** ଯଜୁର୍ବେଦ ଅ.୧୬/୬୧ : ଯେ ତୀର୍ଥାନି - ପ୍ରୟାଗ, କାଶୀ ଆଦି ତୀର୍ଥମାନଙ୍କରେ ସୃକା ନାମକ ଆୟୁଧ (ମତାନ୍ତରେ ଫାସୀର ଦଉଡ଼ି) ଏବଂ ଖଡ୍‌ଗ ଧାରଣ କରି ଯେଉଁ ରୁଦ୍ରଗଣ ବିଚରଣ କରନ୍ତି, ସେମାନଙ୍କ ଧନୁ ସମୂହକୁ ହଜାରେ (ଅସଂଖ୍ୟ) ଯୋଜନ ଦୂରରେ ଅବତାରିତ କରିବାକୁ ଆମେ ନିବେଦନ କରୁଅଛୁ ।

**ମନ୍ତ୍ରସଂଖ୍ୟା (୬୨) :-** ଯଜୁର୍ବେଦ ଅ.୧୬/୬୨ : ଯେଽନ୍ନେଷୁ - ଯେଉଁ ରୁଦ୍ରଗଣ ପ୍ରାଣୀମାନଙ୍କର ଭୋଜ୍ୟ ପଦାର୍ଥରେ ରହି ଧାତୁ ବୈଷମ୍ୟଦ୍ୱାରା ବ୍ୟାଧିକାରକ ତଥା ପାନପାତ୍ରସ୍ଥ କ୍ଷୀର ଓ ଉଦକାଦିରେ ରହି ବିବିଧ ରୋଗର କାରଣ ହୁଅନ୍ତି ସେମାନଙ୍କର ଧନୁ ଗୁଡ଼ିକୁ ହଜାରେ (ଅସଂଖ୍ୟେୟ) ଯୋଜନ ଦୂରରେ ଅବତାରିତ କରିବାକୁ ଆମେ ନିବେଦନ କରୁଅଛୁ ।

**ମନ୍ତ୍ରସଂଖ୍ୟା (୬୩) :-** ଯଜୁର୍ବେଦ ଅ.୧୬/୬୩ : ଯ ଏତାବନ୍ତଶ୍ଚ - ଯେଉଁ ରୁଦ୍ରମାନଙ୍କ ମହିମା ଏ ପର୍ଯ୍ୟନ୍ତ ବର୍ଣ୍ଣନା କରାଗଲା ସେମାନେ ଦଶଦିଗକୁ ବ୍ୟାପୀ ରହିଛନ୍ତି । ସେମାନଙ୍କ ଧନୁ ସବୁକୁ ହଜାରେ (ଅସଂଖ୍ୟ) ଯୋଜନ ବ୍ୟବଧାନରେ ଅବନତ କରିବାକୁ ପ୍ରାର୍ଥନା କରୁଅଛୁ ।

ନମୋଽସ୍ତୁ ରୁଦ୍ରେଭ୍ୟୋ ଯେ ଦିବି ଯେଷାଂ ବର୍ଷମିଷବଃ । ତେଭ୍ୟୋ ଦଶ ପ୍ରାଚୀର୍ଦଶ ଦକ୍ଷିଣା ଦଶ ପ୍ରତୀଚୀର୍ଦଶୋଦୀଚୀର୍ଦଶୋର୍ଧ୍ୱାଃ । ତେଭ୍ୟୋ ନମୋଽସ୍ତୁ ତେ ନୋଽବନ୍ତୁ ତେ ନୋ ମୃଡ଼ୟନ୍ତୁ ତେ ଯଂ ଦ୍ୱିଷ୍ମୋ ଯଶ୍ଚ ନୋ ଦ୍ୱେଷ୍ଟି ତମେଷାଂ ଜମ୍ଭେ ଦଧ୍ମଃ ॥ ନମୋଽସ୍ତୁ ରୁଦ୍ରେଭ୍ୟୋ ଯେଽନ୍ତରିକ୍ଷେ ଯେଷାଂ ବାତ ଇଷବଃ । ତେଭ୍ୟୋ ଦଶ ପ୍ରାଚୀର୍ଦଶ ଦକ୍ଷିଣା ଦଶ ପ୍ରତୀଚୀର୍ଦଶୋଦୀଚୀର୍ଦଶୋର୍ଧ୍ୱାଃ । ତେଭ୍ୟୋ ନମୋଽସ୍ତୁ ତେ ନୋଽବନ୍ତୁ ତେ ନୋ ମୃଡ଼ୟନ୍ତୁ ତେ ଯଂ ଦ୍ୱିଷ୍ମୋ ଯଶ୍ଚ ନୋ ଦ୍ୱେଷ୍ଟି ତମେଷାଂ ଜମ୍ଭେ ଦଧ୍ମଃ ॥ ନମୋଽସ୍ତୁ ରୁଦ୍ରେଭ୍ୟୋ ଯେ ପୃଥିବ୍ୟାଂ ଯେଷାମନ୍ନମିଷବଃ । ତେଭ୍ୟୋ ଦଶ ପ୍ରାଚୀର୍ଦଶଦକ୍ଷିଣା ଦଶ ପ୍ରତୀଚୀର୍ଦଶୋଦୀଚୀର୍ଦଶୋର୍ଧ୍ୱାଃ । ତେଭ୍ୟୋ ନମୋଽସ୍ତୁ ତେ ନୋଽବନ୍ତୁ ତେ ନୋ ମୃଡ଼ୟନ୍ତୁ ତେ ଯଂ ଦ୍ୱିଷ୍ମୋ ଯଶ୍ଚ ନୋ ଦ୍ୱେଷ୍ଟି ତମେଷାଂ ଜମ୍ଭେ ଦଧ୍ମଃ ॥୬୪॥

---

**ମନ୍ତ୍ରସଂଖ୍ୟା (୬୪) :-** ଯଜୁର୍ବେଦ ଅ.୧୬/୬୪ : ନମୋଽସ୍ତୁ ରୁଦ୍ରେଭ୍ୟଃ - ଯେଉଁ ରୁଦ୍ରମାନେ ସ୍ୱର୍ଗଲୋକରେ ଥାଇ ବର୍ଷା ରୂପରେ ବାଣ ଗୁଡ଼ିକୁ ନିକ୍ଷେପ କରନ୍ତି ଅର୍ଥାତ୍ ଅତିବୃଷ୍ଟି ଇତ୍ୟାଦି ଯେଉଁ ଛଅଗୋଟି 'ଇତି' (ମହାବିପତ୍ତି) ଯଥା-

ଅତିବୃଷ୍ଟିରନାବୃଷ୍ଟିଃ ଶଲଭା ମୂଷିକାଃ ଖଗାଃ ।
ପ୍ରତ୍ୟାସନ୍ନାଶ୍ଚ ରାଜାନଃ ଷଡେତା ଇତୟଃ ସ୍ମୃତାଃ ॥

ଯାହାଦ୍ୱାରା ରୁଦ୍ର ପ୍ରାଣୀମାନଙ୍କୁ ବିନାଶ କରନ୍ତି । ପୂର୍ବ-ପଶ୍ଚିମ-ଦକ୍ଷିଣ-ଉତ୍ତର-ଦିଗସ୍ଥିତ ତଥା ଊର୍ଦ୍ଧ୍ୱସ୍ଥ ସେହି (ଦଶ ଦିଗସ୍ଥିତ) ରୁଦ୍ରଗଣଙ୍କୁ ଆମ୍ଭେ ଦଶ ଅଙ୍ଗୁଳିଦ୍ୱାରା ଅର୍ଥାତ୍ ଯୋଡ଼ହସ୍ତ ହୋଇ ପ୍ରଣାମ କରୁଅଛୁ । ସେମାନେ ଆମକୁ ରକ୍ଷା କରନ୍ତୁ, ସୁଖ ପ୍ରଦାନ କରନ୍ତୁ । ଅଧିକନ୍ତୁ ସେହି ରୁଦ୍ରମାନେ ଯାହାଙ୍କୁ ଦ୍ୱେଷ କରୁଅଛନ୍ତି ଆମେ ମଧ୍ୟ ତାଙ୍କୁ ଦ୍ୱେଷ କରୁଅଛୁ । ପୁନଶ୍ଚ ଯେଉଁ ନର ଆମମାନଙ୍କ ଦ୍ୱେଷକାରକ ତାକୁ ପୂର୍ବୋକ୍ତ ରୁଦ୍ରମାନଙ୍କ କରାଳ ମୁଖରେ ନିକ୍ଷେପ କରୁଅଛୁ । ହେ ମହେଶ୍ୱର ! ଆମ ପ୍ରତି ଦ୍ୱେଷ ଭାବାପନ୍ନକୁ ଆପଣ ଭକ୍ଷଣ କରନ୍ତୁ ଓ ଆମ୍ଭମାନଙ୍କୁ ରକ୍ଷା କରନ୍ତୁ ।

ନମସ୍ତେ ରୁଦ୍ର ମନ୍ୟବ ଉତୋ ତ ଇଷବେ ନମଃ । ବାହୁଭ୍ୟାମୁତ ତେ ନମଃ ॥୬୫॥ ଯା ତେ ରୁଦ୍ର ଶିବା ତନୂରଘୋରାପାପକାଶିନୀ । ତୟା ନସ୍ତନ୍ୱା ଶନ୍ତମୟା ଗିରିଶନ୍ତାଭିଚାକଶୀହି ॥୬୬॥ ଯାମିଷୁଂ ଗିରିଶନ୍ତ ହସ୍ତେ ବିଭର୍ଷ୍ୟସ୍ତବେ । ଶିବାଂ ଗିରିତ୍ର ତାଂ କୁରୁ ମା ହିଗୁଁସୀଃ ପୁରୁଷଂ ଜଗତ୍ ॥୬୭॥ ଶିବେନ ବଚସା ତ୍ୱା ଗିରିଶାଚ୍ଛା ବଦାମସି । ଯଥା ନଃ ସର୍ବମିଜ୍ଜଗଦୟକ୍ଷ୍ମଗୁଁ ସୁମନା ଅସତ୍ ॥୬୮॥ ଅଧ୍ୟବୋଚଦଧିବକ୍ତା ପ୍ରଥମୋ ଦୈବ୍ୟୋ ଭିଷକ୍ ॥ ଅହୀଗୁଁଶ୍ଚ ସର୍ବାଞ୍ଜମ୍ଭୟନ୍‌ସର୍ବାଶ୍ଚ ଯାତୁଧାନ୍ୟୋଽଧରାଚୀଃ ପରାସୁବ ॥୬୯॥ ଅସୌ ଯସ୍ତାମ୍ରୋ ଅରୁଣ ଉତ ବଭ୍ରୁଃ ସୁମଙ୍ଗଳଃ । ଯେ ଚୈନଗୁଁ ରୁଦ୍ରା ଅଭିତୋ ଦିକ୍ଷୁ ଶ୍ରିତାଃ ସହସ୍ରଶୋଽବୈଷାଗୁଁ ହେଡ଼ ଇମହେ ॥୭୦॥ ଅସୌ ଯୋଽବସର୍ପତି ନୀଲଗ୍ରୀବୋ ବିଲୋହିତଃ । ଉତୈନଂ ଗୋପା ଅଦୃଶ୍ରନ୍ନଦୃଶ୍ରନ୍ନୁଦହାର୍ଯ୍ୟଃ ସ ଦୃଷ୍ଟୋ ମୃଡ଼ୟାତି ନଃ ॥୭୧॥ ନମୋଽସ୍ତୁ ନୀଲଗ୍ରୀବାୟ ସହସ୍ରାକ୍ଷାୟ ମୀଢୁଷେ । ଅଥୋ ଯେ ଅସ୍ୟ ସତ୍ୱାନୋଽହଂ ତେଭ୍ୟୋଽକରଂ ନମଃ ॥୭୨॥ ପ୍ରମୁଞ୍ଚ ଧନ୍ୱନସ୍ତ୍ୱମୁଭୟୋ- ରାର୍ତ୍ନ୍ୟୋର୍ଜ୍ୟାମ୍ । ଯାଶ୍ଚ ତେ ହସ୍ତ ଇଷବଃ ପରା ତା ଭଗବୋ ବପ ॥୭୩॥

---

ଅନ୍ତରିକ୍ଷ ଅର୍ଥାତ୍ ଆକାଶରେ ଯେଉଁ ରୁଦ୍ରମାନେ ଅଛନ୍ତି ସେମାନଙ୍କୁ ପ୍ରଣାମ । ସେମାନେ କୁବାୟୁରୂପ ଆୟୁଧଦ୍ୱାରା ଅନ୍ନକୁ ଅଥବା ପୂର୍ବମନ୍ତ୍ରୋକ୍ତ ଇତି ଜନିତ ବିପତ୍ତି ଉତ୍ପନ୍ନ କରି ଲୋକଙ୍କୁ ବିନାଶ କରନ୍ତି । ସେହି ପୂର୍ବ-ପଶ୍ଚିମ-ଉତ୍ତର-ଦକ୍ଷିଣ ଦିଗସ୍ଥିତ ତଥା ଉର୍ଦ୍ଧ୍ୱସ୍ଥ (ଦଶଦିଗ ସ୍ଥିତ) ରୁଦ୍ରଗଣଙ୍କୁ ଆମ୍ଭେ ଦଶାଙ୍ଗୁଳିଦ୍ୱାରା ଅର୍ଥାତ୍ ହାତଯୋଡ଼ି ପ୍ରଣାମ କରୁଅଛୁ ।

ପୃଥିବୀସ୍ଥ ରୁଦ୍ରମାନଙ୍କୁ ପ୍ରଣାମ । ଯେଉଁ ରୁଦ୍ରଗଣ ଅନ୍ନକୁ ଆୟୁଧ କରି କଦନ୍ନ ଇତ୍ୟାଦି ମାଧ୍ୟମରେ ଚୌର୍ଯ୍ୟାଦି ପ୍ରବୃତ୍ତିକୁ ସୃଷ୍ଟି କରନ୍ତି ଏବଂ ନାନାବିଧ ରୋଗର ମଧ୍ୟ କାରଣ ହୋଇ ମୃତ୍ୟୁମୁଖରେ ପକାଇଥାଆନ୍ତି ସେହି ଅନ୍ନାୟୁଧଧାରୀ ପୂର୍ବ-ପଶ୍ଚିମ-ଦକ୍ଷିଣ-ଉତ୍ତର ଦିଗସ୍ଥିତ ତଥା ଉର୍ଦ୍ଧ୍ୱସ୍ଥ (ଏହିପରି ଦଶ ଦିଗ ସ୍ଥିତ) ରୁଦ୍ରଗଣଙ୍କୁ ଆମ୍ଭେ ଦଶାଙ୍ଗୁଳିଦ୍ୱାରା ଅର୍ଥାତ୍ ହାତଯୋଡ଼ି ପ୍ରଣାମ କରୁଅଛୁ ।

ବିଜ୍ୟଂ ଧନୁଃ କପର୍ଦିନୋ ବିଶଲ୍ୟୋ ବାଣବାଁ୩ ଉତ । ଅନେଶନ୍ନସ୍ୟ ଯା ଇଷବ ଆଭୁରସ୍ୟ ନିଷଙ୍ଗଧିଃ ॥୭୪॥ ପରି ତେ ଧନ୍ୱନୋ ହେତିରସ୍ମାନ୍ ବୃଣକ୍ତୁ ବିଶ୍ୱତଃ । ଅଥୋ ଯ ଇଷୁଧିସ୍ତବାରେ ଅସ୍ମନ୍ନିଧେହି ତମ୍ ॥୭୫॥ ଯା ତେ ହେତିର୍ମୀଢୁଷ୍ଟମ ହସ୍ତେ ବଭୂବ ତେ ଧନୁଃ । ତୟାସ୍ମାନ୍ ବିଶ୍ୱତସ୍ତ୍ୱମୟକ୍ଷ୍ମୟା ପରିଭୁଜ ॥୭୬॥ ଅବତତ୍ୟ ଧନୁଷ୍ଟ୍ୱଁ ସହସ୍ରାକ୍ଷ ଶତେଷୁଧେ । ନିଶୀର୍ଯ୍ୟ ଶଲ୍ୟାନାଂ ମୁଖା ଶିବୋ ନଃ ସୁମନା ଭବ ॥୭୭॥ ନମସ୍ତ ଆୟୁଧାୟାନାତତାୟ ଧୃଷ୍ଣବେ । ଉଭାଭ୍ୟାମୁତ ତେ ନମୋ ବାହୁଭ୍ୟାଂ ତବ ଧନ୍ୱନେ ॥୭୮॥ ମା ନୋ ମହାନ୍ତମୁତ ମା ନୋ ଅର୍ଭକଂ ମା ନ ଉକ୍ଷନ୍ତମୁତ ମା ନ ଉକ୍ଷିତମ୍ । ମା ନୋ ବଧୀଃ ପିତରଂ ମୋତ ମାତରଂ ମା ନଃ ପ୍ରିୟାସ୍ତନ୍ୱୋ ରୁଦ୍ର ରୀରିଷଃ ॥୭୯॥ ମା ନସ୍ତୋକେ ତନୟେ ମା ନ ଆୟୁଷି ମା ନୋ ଗୋଷୁ ମା ନୋ ଅଶ୍ୱେଷୁ ରୀରିଷଃ । ମା ନୋ ବୀରାନ୍ ରୁଦ୍ର ଭାମିନୋ ବଧୀର୍ହବିଷ୍ମନ୍ତଃ ସଦମିତ୍ ତ୍ୱା ହବାମହେ ॥୮୦॥ ଏଷ ତେ ନିର୍ଋତେ ଭାଗସ୍ତଂ ଜୁଷସ୍ୱ ସ୍ୱାହାଽଗ୍ନିନେତ୍ରେଭ୍ୟୋ ଦେବେଭ୍ୟଃ ପୁରଃ ସଦ୍ଭ୍ୟଃ ସ୍ୱାହା ଯମନେତ୍ରେଭ୍ୟୋ ଦେବେଭ୍ୟୋ ଦକ୍ଷିଣସଦ୍ଭ୍ୟଃ ସ୍ୱାହା । ବିଶ୍ୱଦେବନେତ୍ରେଭ୍ୟୋ ଦେବେଭ୍ୟଃ ପଶ୍ଚାତ୍ସଦ୍ଭ୍ୟଃ ସ୍ୱାହା ମିତ୍ରାବରୁଣନେତ୍ରେଭ୍ୟୋ ବା ମରୁନ୍ନେତ୍ରେଭ୍ୟୋ ବା ଦେବେଭ୍ୟଃ ଉତ୍ତରସଦ୍ଭ୍ୟଃ ସ୍ୱାହା । ସୋମନେତ୍ରେଭ୍ୟୋ ଦେବେଭ୍ୟ ଉପରିସଦ୍ଭ୍ୟୋ ଦୁବସ୍ୱଦ୍ଭ୍ୟଃ ସ୍ୱାହା ॥୮୧॥

---

**ବି:ଦ୍ର:-** ଉପରୋକ୍ତ ମ.ସଂ- ୬୫ ରୁ ୮୦ ପର୍ଯ୍ୟନ୍ତ ମନ୍ତ୍ରମାନଙ୍କର ଅର୍ଥ ୫୦ ପୃଷ୍ଠାରୁ ୫୪ ପୃଷ୍ଠା ମାନଙ୍କରେ ଦିଆଯାଇଅଛି ।

---

**ମନ୍ତ୍ରସଂଖ୍ୟା (୮୧) :-** ଶୁ.ଯ.ର୍ବେ.କା.ଶା.୧୧/୧ - ଏଷତେ ନିର୍ଋତେ : (ରାଜସୂୟଯଜ୍ଞର ପ୍ରାରମ୍ଭରେ ଅଗ୍ନିଦେବତା ଓ ଯଜ୍ଞର ପ୍ରାସଙ୍ଗିକ ପୃଥିବୀ ଇତ୍ୟାଦି ଦେବତାମାନଙ୍କ ନିମିତ୍ତ ଆହୁତିପ୍ରଦାନ ସମୟରେ ଏହି ମନ୍ତ୍ର ଆସିଅଛି ।) ହେ ପୃଥିବୀ ! ଏହି ପିଷ୍ଟ ଚରୁ ତୁମର ଭାଗଧେୟ ଅଟେ । ପୂର୍ବ ଦିଗରେ ଉପବିଷ୍ଟ ଅଗ୍ନିନେତୃକ

ଯେ ଦେବା ଅଗ୍ନିନେତ୍ରାଃ ପୁରଃସଦସ୍ତେଭ୍ୟଃ ସ୍ୱାହା ଯେ ଦେବା ଯମନେତ୍ରା ଦକ୍ଷିଣସଦସ୍ତେଭ୍ୟଃ ସ୍ୱାହା । ଯେ ଦେବା ବିଶ୍ୱଦେବନେତ୍ରାଃ ପଶ୍ଚାତ୍ ସଦସ୍ତେଭ୍ୟଃ ସ୍ୱାହା ଯେ ଦେବା ମିତ୍ରାବରୁଣନେତ୍ରା ବା ମରୁନ୍ନେତ୍ରା ବୋତ୍ତରସଦସ୍ତେଭ୍ୟଃ ସ୍ୱାହା । ଯେ ଦେବାଃ ସୋମନେତ୍ରା ଉପରିସଦୋ ଦୁବସ୍ୱନ୍ତସ୍ତେଭ୍ୟଃ ସ୍ୱାହା ।।୮୨।। ନମସ୍ତେ ହରସେ ଶୋଚିସେ ନମସ୍ତେ ଅସ୍ତ୍ୱର୍ଚିଷେ । ଅନ୍ୟାଁସ୍ତେ ଅସ୍ମତ୍ତପନ୍ତୁ ହେତୟଃ ପାବକୋ ଅସ୍ମଭ୍ୟଗୁଁ ଶିବୋ ଭବ ।।୮୩।। ନମସ୍ତେ ଅସ୍ତୁ ବିଦ୍ୟୁତେ ନମସ୍ତେ ସ୍ତନୟିତ୍ନବେ । ନମସ୍ତେ ଭଗବନ୍ନସ୍ତୁ ଯତଃ ସ୍ୱଃ ସମୀହସେ ।।୮୪।।

---

ଦେବତାଙ୍କ ପାଇଁ ଏହି ଆହୁତି ଉଦ୍ଦିଷ୍ଟ । ଦକ୍ଷିଣ ଦିଗରେ ଉପବିଷ୍ଟ ଯମନେତୃକ ଦେବତାଙ୍କ ପାଇଁ ଏହି ଆହୁତି ପ୍ରଦାନ କରୁଅଛି । ପଶ୍ଚିମ ଦିଗରେ ଉପବିଷ୍ଟ ବିଶ୍ୱଦେବ-ନେତୃକ ଦେବତାଙ୍କ ପାଇଁ ଏହି ଆହୁତି ପ୍ରଦତ୍ତ ହେଲା । ଉତ୍ତର ଦିଗରେ ଉପବିଷ୍ଟ ମିତ୍ରବରୁଣନେତୃକ ଅଥବା ମରୁଦ୍‌ଗଣନେତୃକ ଦେବତାମାନଙ୍କୁ ଏହି ଆହୁତି ପ୍ରଦାନ କଲି । ଉପରିସ୍ଥିତ ପରିଚର୍ଯ୍ୟାତ୍ମକ ସୋମନେତୃକ ଦେବତାଙ୍କ ନିମିତ୍ତ ଏହି ଆହୁତି ପ୍ରଦତ୍ତ ହେଲା ।

**ମନ୍ତ୍ରସଂଖ୍ୟା (୮୨) :-** ଶୁ.ଯ.ର୍ବେ.କା.ଶା. ୧୧/୨ – ଯେ ଦେବା ଅଗ୍ନିନେତ୍ରାଃ : (ଆହବନୀୟାଗ୍ନିଙ୍କୁ ପାଞ୍ଚ ଆହୁତି ପ୍ରଦାନ ମନ୍ତ୍ର) ଯେଉଁ ଦେବତା ପୂର୍ବଦିଗରେ ଅଗ୍ନିନେତୃକ ତାଙ୍କ ନିମିତ୍ତ ଏହି ଆହୁତି ପ୍ରଦତ୍ତ ହେଲା । ଯେଉଁ ଦେବତା ଦକ୍ଷିଣ ଦିଗରେ ଯମନେତୃକ ତାଙ୍କ ନିମିତ୍ତ ଏହି ଆହୁତି ଉଦ୍ଦିଷ୍ଟ । ଯେଉଁ ଦେବତା ପଶ୍ଚିମ ଦିଗରେ ବିଶ୍ୱଦେବ ନେତୃକ ଏହି ଆହୁତି ତାଙ୍କ ନିମିତ୍ତ ପ୍ରଦତ୍ତ । ଯେଉଁ ଦେବତା ଉତ୍ତରଦିଗରେ ମିତ୍ର-ବରୁଣ ବା ମରୁତ୍ ନେତୃକ ଏହି ପ୍ରଦତ୍ତ ଆହୁତି ତାଙ୍କ ପାଇଁ ଉଦ୍ଦିଷ୍ଟ । ଯେଉଁ ଦେବତା ଉର୍ଦ୍ଧ୍ୱରେ ସ୍ଥିତ ପୂଜ୍ୟ ଓ ସୋମନେତୃକ ତାଙ୍କ ନିମିତ୍ତ ଏହି ଆହୁତି ପ୍ରଦାନ କରୁଅଛି ।

**ମନ୍ତ୍ରସଂଖ୍ୟା (୮୩) :-** ଯଜୁର୍ବେଦ ଅ.୩୬/୨୦ – ନମସ୍ତେ ହରସେ – ହେ ଅଗ୍ନିଦେବ ! ସମସ୍ତ ପ୍ରକାର ରସକୁ ହରଣ କରୁଥିବା ତଥା ସମସ୍ତ ପଦାର୍ଥକୁ ପ୍ରକାଶ କରୁଥିବା ତୁମର ତେଜସ୍ୱରୂପକୁ ପ୍ରଣାମ । ସେହିପରି ହେ ପାବକ (ଅଗ୍ନିଦେବ) ! ତାପପ୍ରଦାନକାରୀ ତୁମର ସମସ୍ତ ଆୟୁଧ ମଧ୍ୟ ଆମ୍ଭମାନଙ୍କ ପାଇଁ ମଙ୍ଗଳପ୍ରଦ ହେଉ ।

**ମନ୍ତ୍ରସଂଖ୍ୟା (୮୪) :-** ଯଜୁର୍ବେଦ ଅ.୩୬/୨୧ : ନମସ୍ତେ ଅସ୍ତୁ – ହେ ସୁରଶ୍ରେଷ୍ଠ ଅଗ୍ନିଦେବ ! ବିଦ୍ୟୁତ୍ ରୂପରେ ତୁମକୁ ପ୍ରଣାମ । ଭୀଷଣ ଗର୍ଜନକାରୀ ମେଘ ରୂପରେ ତୁମକୁ ପ୍ରଣାମ । ଯେଉଁସବୁ କାରଣ ପାଇଁ ତୁମେ ସ୍ୱର୍ଗକୁ ଯିବା ଲାଗି ଚେଷ୍ଟାରତ, ଏଣୁ ତୁମକୁ ପ୍ରଣାମ ।

ନ ତଂ ବିଦାଥ ଯ ଇମା ଜଜାନାନ୍ୟଦ୍ୟୁସ୍ମାକମନ୍ତରଂ ବଭୂବ । ନୀହାରେଣ ପ୍ରାବୃତା ଜଲ୍ପ୍ୟା ଚାସୁତୃପ ଉକ୍‌ଥଶାସଶ୍ଚରନ୍ତି ॥୮୫॥ ବିଶ୍ୱକର୍ମା ହ୍ୟଜନିଷ୍ଟ ଦେବ ଆଦିଦ୍‌ଗନ୍ଧର୍ବୋ ଅଭବଦ୍ ଦ୍ୱିତୀୟଃ । ତୃତୀୟଃ ପିତା ଜନିତୌଷଧୀନାମପାଂ ଗର୍ଭଂ ବ୍ୟଦଧାତ୍ ପୁରୁତ୍ରା ॥୮୬॥ ବୟଗୁଁ ସୋମ ବ୍ରତେ ତବ ମନସ୍ତନୂଷୁ ବିଭ୍ରତଃ। ପ୍ରଜାବନ୍ତଃ ସଚେମହି ॥୮୭॥

---

**ମନ୍ତ୍ରସଂଖ୍ୟା (୮୫) :-** ଶୁ.ଯ.ବେ.କା.ଶା.୧୮/୩୧ - ନ ତଂ ବିଦାଥ : ତୁମ୍ଭେମାନେ ସେ ପରମପୁରୁଷଙ୍କୁ ଜାଣିନାହଁ । ସେ ସମସ୍ତ ପ୍ରାଣୀମାନଙ୍କୁ ଉତ୍ପନ୍ନ କରିଅଛନ୍ତି ଓ ତୁମ ଭିତରେ ମଧ ସେ ନିବାସ କରିଅଛନ୍ତି । ଯେପରି ଶୀତରାତ୍ରିରେ ସ୍ୱତନ୍ତ୍ର ସତ୍ତା ବିହୀନ ନିହାର ଅର୍ଥାତ୍ କାକରବିନ୍ଦୁ ବାସ୍ତବିକ ବସ୍ତୁକୁ କିଛିକ୍ଷଣ ପାଇଁ ଆଚ୍ଛାଦିତ କରିଥାଏ, ଠିକ୍ ସେହିପରି ତୁଚ୍ଛ ଅଜ୍ଞାନଦ୍ୱାରା ଆବୃତ ତୁମେ ଜୀବାତ୍ମାମାନେ ନିଜପର ଭଳି ଭେଦ ଦେଖିବା ସହିତ କ୍ଷଣିକ ଐହିକ ସୁଖ ତଥା ନଶ୍ୱର ସ୍ୱର୍ଗାଦିପରଲୋକଲଭ୍ୟ ସୁଖପ୍ରାପ୍ତି ପାଇଁ ଅତ୍ୟନ୍ତ ଲାଳାୟିତ ହେଉଅଛ । ଅର୍ଥାତ୍ ଜୀବ ନିଜର ପ୍ରକୃତ ଆନନ୍ଦମୟ ସ୍ୱରୂପକୁ ବିସ୍ମୃତ ହୋଇ ଅନିତ୍ୟ ଓ ପରିଣାମରେ ଦୁଃଖର କାରଣ ରୂପକ ଐହିକ ଓ ପାରଲୌକିକ ସୁଖ ସମ୍ଭୋଗ ପାଇଁ ସର୍ବଦା ତତ୍ପର, ଯାହାର ଏକମାତ୍ର କାରଣ ଅବାସ୍ତବ ଓ ଅସ୍ତିତ୍ୱବିହୀନ ଅଜ୍ଞାନଜନ୍ୟ ମୋହ ।

**ମନ୍ତ୍ରସଂଖ୍ୟା (୮୬) :-** ଶୁ.ଯ.ବେ.କା.ଶା.୧୮/୩୨ - ବିଶ୍ୱକର୍ମା ହ୍ୟଜନିଷ୍ଟ : ବିଶ୍ୱରେ ପ୍ରଥମ ବିଶ୍ୱକର୍ମା ହିଁ ଜାତ ହେଲେ । ଏହାପରେ ସମସ୍ତ ଔଷଧୀ ଅର୍ଥାତ୍ ବୃକ୍ଷଲତା ଇତ୍ୟାଦିକୁ ଧାରଣ ଓ ପୋଷଣ କରିବା ନିମିତ୍ତ ପର୍ଜନ୍ୟ (ବର୍ଷା) ଉତ୍ପନ୍ନ ହେଲେ ଯେ ବିବିଧ ଜଳ(ରସ)ଙ୍କୁ ଗର୍ଭରେ ଧାରଣ କଲେ ।

**ମନ୍ତ୍ରସଂଖ୍ୟା (୮୭) :-** ଯଜୁର୍ବେଦ ଅ.୩/୫୬ : ବୟଗୁଁ ସୋମବ୍ରତେ - ପିତୃଯଜ୍ଞ (ଶ୍ରାଦ୍ଧ)ରେ ସୋମ ନାମକ ଦେବତାଙ୍କ ଆରାଧନା ପ୍ରସଙ୍ଗରେ (ସୋମାୟ ପିତୃମତେ ସ୍ୱାହା) ଏହି ମନ୍ତ୍ରକୁ ଉଲ୍ଲେଖ କରାଯାଇଛି । ହେ ସୋମ ! ଆମେ (ଯଜମାନମାନେ) ତୁମ ବ୍ରତ କର୍ମରେ ନିରତ ଥାଇ ତୁମ ଶରୀରଠାରେ ଆମ ମନ ନିବେଶ କରୁଅଛୁ । ତୁମର କରୁଣାରୁ ଆମେ ପୁତ୍ର-ପୌତ୍ରାଦିଙ୍କୁ ପ୍ରାପ୍ତ ହୋଇ ତୁମ ସେବାରେ ତତ୍ପର ରହିବୁ ।

ଏଷ ତେ ରୁଦ୍ର ଭାଗଃ ସହ ସ୍ୱସ୍ରାମ୍ବିକୟା ତଂ ଜୁଷସ୍ୱ ସ୍ୱାହା । ଏଷ ତେ ରୁଦ୍ର ଭାଗ ଆଖୁସ୍ତେ ପଶୁଃ ॥୮୮॥ ଅବ ରୁଦ୍ରମଦୀମହ୍ୟବ ଦେବଂ ତ୍ର୍ୟମ୍ବକମ୍ । ଯଥା ନୋ ବସ୍ୟସସ୍କରଦ୍ ଯଥା ନଃ ଶ୍ରେୟସସ୍କରଦ୍ ଯଥା ନୋ ବ୍ୟବସାୟୟାତ୍ ॥୮୯॥ ଭେଷଜମସି ଭେଷଜଂ ଗବେଽଶ୍ୱାୟ ପୁରୁଷାୟ ଭେଷଜମ୍ । ସୁଗଂ ମେଷାୟ ମେଷ୍ୟୈ ॥୯୦॥

---

**ମନ୍ତ୍ରସଂଖ୍ୟା (୮୮) :-** ଯଜୁର୍ବେଦ ଅ.୩/୫୭ : ଏଷ ତେ ରୁଦ୍ର – ହେ ରୁଦ୍ର ! (ରୋଦୟତି ବିରୋଧିନାଂ ଶତମିତି ରୁଦ୍ରଃ) ତୁମେ ତୁମ ଭଗିନୀ ଅମ୍ବିକାଙ୍କ ସହିତ ଆମ୍ଭଦ୍ୱାରା ପ୍ରଦତ୍ତ ପୁରୋଡାଶକୁ (ଯଜ୍ଞରେ ପ୍ରଦେୟ ପିଠା ବିଶେଷ, ଯାହା ଯଜ୍ଞରେ ହବି ଅର୍ଥାତ୍ ଆହୁତିଦ୍ୱାରା ଦେବତାଙ୍କୁ ପ୍ରଦାନ କରାଯାଏ) ଗ୍ରହଣ କରି ଏହି ହବନକୁ ସଫଳ କର । ସେହିପରି ଅଧିକ ଏକ ପୁରୋଡାଶର ଅଂଶକୁ ତୁମର ପଶୁ ରୂପରେ ମୂଷିକକୁ ସମର୍ପିତ ହେଉ, ଯାହାଦ୍ୱାରା ଅତ୍ୟନ୍ତ କ୍ରୋଧୀ ରୁଦ୍ର ସନ୍ତୁଷ୍ଟ ହୋଇ ଭଗିନୀ ଅମ୍ବିକାଙ୍କ ସହିତ ଯଜମାନଙ୍କ ପଶୁକୁ ହତ୍ୟା କରିବେ ନାହିଁ ।

**ମନ୍ତ୍ରସଂଖ୍ୟା (୮୯) :-** ଯଜୁର୍ବେଦ ଅ.୩/୫୮ : ଅବ ରୁଦ୍ରମଦୀମହ୍ୟବ – ତିନିଗୋଟି ଅମ୍ବକ ଅର୍ଥାତ୍ ତିନି ନେତ୍ରବିଶିଷ୍ଟ ଦେବ ତ୍ର୍ୟମ୍ବକଙ୍କୁ ମନରେ ଚିନ୍ତା କରୁଅଛୁ । ଅନ୍ୟ ଦେବତାଙ୍କଠାରୁ ପୃଥକ୍ ଭାବରେ ତାଙ୍କୁ ଭୋଜନ ପ୍ରଦାନ କରୁଅଛୁ । ଯାହାଦ୍ୱାରା ସେ ଆମ ଉପରେ ପ୍ରସନ୍ନ ହୋଇ ଆମକୁ ନିବାସପ୍ରାପ୍ତ କରାଇବା ସହିତ ଆମର ମଙ୍ଗଳ ସାଧକ ଓ ସମସ୍ତ କାର୍ଯ୍ୟରେ ସଫଳତା ପ୍ରାପ୍ତିକାରକ ହେବେ ।

**ମନ୍ତ୍ରସଂଖ୍ୟା (୯୦) :-** ଯଜୁର୍ବେଦ ଅ.୩/୫୯ : ଭେଷଜମସି – ହେ ରୁଦ୍ର ! ତୁମେ ସାକ୍ଷାତ୍ ରୋଗର ଔଷଧ ଭଳି ସର୍ବବିଧ ଉପଦ୍ରବ ନିବାରକ ଅଟ । ଏଣୁ

---

୧. ଏଠାରେ ଉଲ୍ଲେଖଯୋଗ୍ୟ ଯେ ଶ୍ରୁତିରେ ରୁଦ୍ରଙ୍କ ଭଗିନୀ ରୂପରେ 'ଅମ୍ବିକା'ଙ୍କୁ ବର୍ଣ୍ଣନା କରାଯାଇଅଛି ଯଥା– 'ଅମ୍ବିକା ହ ବୈ ନାମାସ୍ୟ ସ୍ୱସା ତୟାସ୍ୟୈଷ ସହ ଭାଗଃ' । ପ୍ରକରଣ ଅନୁସାରେ ରୁଦ୍ର ନାମକ ଯେଉଁ କ୍ରୂର ଦେବତା ଯେତେବେଳେ ବିରୋଧୀକୁ ମାରିବା ପାଇଁ ଇଚ୍ଛା କରନ୍ତି, ସେତେବେଳେ ସେ ଭଗିନୀ ଅମ୍ବିକାଙ୍କ ସାହାଯ୍ୟ ନେଇଥାଆନ୍ତି । ସେ ଅମ୍ବିକା ଶରତ୍କାଳୀନ ରୂପ ଗ୍ରହଣ କରି ଜରା (ବାର୍ଦ୍ଧକ୍ୟ)ଆଦିକୁ ଉତ୍ପନ୍ନ କରି ବିରୋଧୀକୁ ହତ୍ୟା କରନ୍ତି । (ଶୁ.ଯ.ବେ.ସଂହିତା, ମହୀଧରଭାଷ୍ୟ) ।

ତ୍ର୍ୟମ୍ବକଂ ଯଜାମହେ ସୁଗନ୍ଧିଂ ପୁଷ୍ଟିବର୍ଧନମ୍ । ଉର୍ବାରୁକମିବ ବନ୍ଧନାନ୍ମୃତ୍ୟୋର୍ମୁକ୍ଷୀୟ ମାମୃତାତ୍ ॥୯୧॥ ତ୍ର୍ୟମ୍ବକଂ ଯଜାମହେ ସୁଗନ୍ଧିଂ ପତିବେଦନମ୍ । ଉର୍ବାରୁକମିବ ବନ୍ଧନାଦିତୋ ମୁକ୍ଷୀୟ ମାମୁତଃ ॥୯୨॥ ଏତେନ ରୁଦ୍ରାବସେନ ପରୋ ମୂଜବତୋଽତୀହି । ଅବତତଧନ୍ୱା ପିନାକାବସଃ କୃତ୍ତିବାସା ଅହିଗୁଁସନ୍ନଃ ଶିବୋଽତୀହି ॥୯୩॥

---

ଆମର ସମସ୍ତ ଗୋରୁ, ଘୋଡା ଓ ପୁରୁଷଙ୍କ ସର୍ବବ୍ୟାଧି ନିବାରକ ଔଷଧ ସ୍ୱରୂପ ତୁମେ ଆମ ମେଷମାନଙ୍କୁ ମଧ୍ୟ ସୁଖ ପ୍ରଦାନ କର ।

**ମନ୍ତ୍ରସଂଖ୍ୟା (୯୧ ଓ ୯୨) :-** ଯଜୁର୍ବେଦ ଅ.୩/୬୦ : ତ୍ର୍ୟମ୍ବକଂ - ଦିବ୍ୟ ଗନ୍ଧଯୁକ୍ତ, ଧନ-ଧାନ୍ୟାଦି ସମସ୍ତ ସମୃଦ୍ଧିର ଅଭିବର୍ଦ୍ଧକ, ନେତ୍ରତ୍ରୟ ବିଶିଷ୍ଟ ରୁଦ୍ରଙ୍କୁ ପୂଜା କରୁଅଛୁ । ହେ ତ୍ର୍ୟମ୍ବକ ! ଫୁଟି (ଫଳବିଶେଷ) ଯେପରି ପାଚିଗଲେ ଆପେ ଆପେ ବୃନ୍ତଚ୍ୟୁତ ହୁଏ, ଠିକ୍ ସେହିପରି ତୁମେ ଆମକୁ ମୃତ୍ୟୁରୁ (ମୃତ୍ୟୁ ଶବ୍ଦରେ ଜନ୍ମ ଓ ମୃତ୍ୟୁରୂପକ ସଂସାରଚକ୍ରକୁ ନିଆଯାଇଅଛି) ମୁକ୍ତ କର । ସ୍ୱର୍ଗ ଓ ମୋକ୍ଷ ପ୍ରାପ୍ତି ରୂପକ ଅମୃତତ୍ୱରୁ ଆମକୁ ବଞ୍ଚିତ କର ନାହିଁ । ଅର୍ଥାତ୍ ତୁମେ ଆମକୁ ସଂସାରାବସ୍ଥାରେ ଅଭ୍ୟୁଦୟ ତଥା ଅନ୍ତିମାବସ୍ଥାରେ ନିଃଶ୍ରେୟସ ବା ମୁକ୍ତି ପ୍ରଦାନ କର । ଏହିପରି ଆମ୍ଭେ (କୁମାରୀମାନେ) ତିନି ନେତ୍ରଧାରୀଙ୍କ ପୂଜା କରୁଅଛୁ । ଯେ କି ପୂର୍ବୋକ୍ତି ଅନୁସାରେ ସ୍ୱର୍ଗୀୟ ଗନ୍ଧଯୁକ୍ତ ଓ ଧନଧାନ୍ୟାଦି ସମୃଦ୍ଧି ପ୍ରଦାନ ଓ ଆମ୍ଭ (କୁମାରୀ କନ୍ୟା)ମାନଙ୍କ ପାଇଁ ଉତ୍ତମ ପତିପ୍ରାପକ । ବିବାହ ପରେ ପିତୃବଂଶୀୟ (ବାପା, ମା, ଭାଇ, ଭଗିନୀ ଇତ୍ୟାଦି) ସମସ୍ତ ସମ୍ପର୍କରୁ ପାଚିଲା ଫୁଟି ବୃନ୍ତଚ୍ୟୁତ ହେଲା ପରି ଆମେ ମଧ୍ୟ ମୁକ୍ତ ହେବୁ । ମାତ୍ର ବିବାହ ପରବର୍ତ୍ତି ସମୟରେ ଆମେ କେବେ ବି ପତିଙ୍କଠାରୁ ମୁକ୍ତ ଅର୍ଥାତ୍ ଅଲଗା ହେବୁ ନାହିଁ । ଅର୍ଥାତ୍ ପିତୃଗୋତ୍ର (ବଂଶ) ଏବଂ ପିତ୍ରାଳୟ ଇତ୍ୟାଦିକୁ ସବୁଦିନ ପାଇଁ ଛାଡ଼ି ସ୍ୱାମୀଙ୍କ ଗୋତ୍ର (ବଂଶ) ଓ ଗୃହକୁ ତ୍ର୍ୟମ୍ବକଙ୍କ ପ୍ରସାଦରୁ ପ୍ରାପ୍ତ ହେବୁ ।

**ମନ୍ତ୍ରସଂଖ୍ୟା (୯୩) :-** ଶୁ.ଯ.ବେ.କା.ଶା. ୩/୭୦ - ଏତେନ ରୁଦ୍ରାବସେନ- ହେ ରୁଦ୍ର ! ତୁମେ ଏହି ଅବଶିଷ୍ଟ ପୁରୋଡାଶକୁ (ଯଜ୍ଞୀୟ ପିଠା) ସାଥୀରେ ନେଇ ପିନାକ ଧନୁକୁ ଜ୍ୟା (ଚାପ) ମୁକ୍ତ ତଥା ବସ୍ତ୍ରାବୃତ କରି, ଚର୍ମାମ୍ବର (ମହିଷାସୁର ପୁତ୍ର ଗଜାସୁରର ଚର୍ମ) ପରିଧାନ ପୂର୍ବକ ଆମ ପ୍ରତି ହିଂସୁକ ନ ହୋଇ କଲ୍ୟାଣକାରକ ହୋଇ ମୁଜବାନ୍ ପର୍ବତକୁ ଅତିକ୍ରମଣ କରି ଆଗକୁ ଚାଲିଯାଅ ।

ବାଜିନାଂ ବାଜୋଽବତୁ ଭକ୍ଷୋ ଅସ୍ମାନ୍ ରେତଃ ସିକ୍ତମମୃତଂ ବଳାୟ । ବିଶ୍ୱେ ଦେବା ଅଭିଯତ୍ ସଂବଭୂବୁସ୍ତନ୍ନୋ ଧିନୋତୁ ପ୍ରଜୟା ଧନେନ ॥୯୪॥ ବାଜ୍ୟହଂ ବାଜିନସ୍ୟୋପହୂତ ଉପହୂତସ୍ୟ ଭକ୍ଷୟାମି । ବାଜେ ବାଜୀ ଭୂୟାସମ୍ ॥୯୫॥ ସବିତ୍ରା ପ୍ରସୂତା ଦୈବ୍ୟ ଆପ ଉଦନ୍ତୁ ତେ ତନୂମ୍ । ଦୀର୍ଘାୟୁତ୍ୱାୟ ବର୍ଚସେ ॥୯୬॥ ମୀଢ଼୍ହୁଷ୍ଟମ ଶିବତମ ଶିବୋ ନଃ ସୁମନା ଭବ । ପରମେ ବୃକ୍ଷ ଆୟୁଧଂ ନିଧାୟ କୃତ୍ତିଂ ବସାନ ଆଚର ପିନାକଂ ବିଭ୍ରଦାଗହି ॥୯୭॥ ବିକିରିଦ୍ର ବିଲୋହିତ ନମସ୍ତେ ଅସ୍ତୁ ଭଗବଃ । ଯାସ୍ତେ ସହସ୍ରଗୁଁ ହେତୟୋଽନ୍ୟମସ୍ମନ୍ନିବପନ୍ତୁ ତାଃ ॥୯୮॥

---

**ମନ୍ତ୍ରସଂଖ୍ୟା (୯୪) :-** ଶୁ.ଯ.ର୍ବେ.କା.ଶା.୩/୭୧ - ବାଜିନାଂ ବାଜଃ - ହେ ବାଜୀ ଅର୍ଥାତ୍ ହେ ଅନ୍ନର ଦେବତା ! ଆମେ ଭକ୍ଷଣଯୋଗ୍ୟ ଅନ୍ନଦ୍ୱାରା ପରିପୂର୍ଣ୍ଣ ହେଉ, ଯେଉଁ ଅନ୍ନଭକ୍ଷଣଦ୍ୱାରା ଆମକୁ ବଳବାନ୍ ଓ ପରାକ୍ରମୀ ସନ୍ତାନ ଜାତ କରିବାର ସାମର୍ଥ୍ୟ ପ୍ରାପ୍ତ ହେବ ଓ ଏହିପରି ପ୍ରଜାରୂପକ ସମ୍ପତ୍ତିର ଅଭିବୃଦ୍ଧି ଘଟିବ ।

**ମନ୍ତ୍ରସଂଖ୍ୟା (୯୫) :-** ଶୁ.ଯ.ର୍ବେ.କା.ଶା.୩/୭୨ - ବାଜ୍ୟହଂ ବାଜିନସ୍ୟ - ହେ ବାଜୀ ! ହେ ଅନ୍ନଦେବ ! ଆପଣଙ୍କୁ ଆହୁତି ପ୍ରଦାନପରେ ଅବଶିଷ୍ଟ ହବିରୂପକ ଅନ୍ନକୁ ମୁଁ ଭକ୍ଷଣ କରୁଅଛି । ଯାହାଦ୍ୱାରା ମୁଁ ପ୍ରଚୁର ଅନ୍ନବାନ୍ ହୋଇପାରିବି ।

**ମନ୍ତ୍ରସଂଖ୍ୟା (୯୬) :-** ଶୁ.ଯ.ର୍ବେ.କା.ଶା.୩/୭୩- ସବିତ୍ରା ପ୍ରସୂତା : ହେ ସବିତା ଦେବ (ସମସ୍ତଙ୍କ ସୃଷ୍ଟିକର୍ତ୍ତା) ! ହେ ସ୍ୱର୍ଗଲୋକ ଓ ଅନ୍ତରିକ୍ଷସ୍ଥିତ ଜଳଦେବତାମାନେ ! ଆପଣମାନେ ଯଜମାନର ଶରୀର ବପନପାଇଁ ଆସନ୍ତୁ, ଯାହାଦ୍ୱାରା ଯଜମାନର ପରମାୟୁ ବୃଦ୍ଧି ହେବା ସହିତ ସେ ବ୍ରହ୍ମବର୍ଚ୍ଚସ୍ୱୀ ମଧ୍ୟ ହୋଇପାରିବ ।

**ମନ୍ତ୍ରସଂଖ୍ୟା (୯୭) :-** ଯଜୁର୍ବେଦ ଅ.୧୬/୫୧- ମୀଢ଼୍ହୁଷ୍ଟମ ଶିବତମ - ହେ ଅତିଶୟ କାମସେକ୍ତ (କାମଦକ୍ଷ) ରୁଦ୍ର ! ହେ ଅତ୍ୟନ୍ତ କଲ୍ୟାଣକାରୀ ଶଙ୍କର ! ତୁମେ କଲ୍ୟାଣସ୍ୱରୂପ ଆମ ପ୍ରତି ସର୍ବଦା ଶାନ୍ତ ଓ ହୃଷ୍ଟଚିତ୍ତ ସମ୍ପନ୍ନ ହୁଅ । ତୁମେ ଦୂରସ୍ଥ ଉନ୍ନତ ବୃକ୍ଷ (ବଟବୃକ୍ଷ ଇତ୍ୟାଦି)ରେ ତ୍ରିଶୂଳାଦି ଅସ୍ତ୍ରମାନଙ୍କୁ ରଖି ଚର୍ମବସନ ପରିଧାନ କରି ଆସ ବା ତପଶ୍ଚର୍ଯ୍ୟା କର । ଆସୁଥିବା ସମୟରେ ପ୍ରତ୍ୟଞ୍ଚାରହିତ କେବଳ ପିନାକ ଧନୁକୁ ଧାରଣ କରି ଆସ ।

**ମନ୍ତ୍ରସଂଖ୍ୟା (୯୮) :-** ଯଜୁର୍ବେଦ ଅ.୧୬/୫୨ : ବିକିରିଦ୍ର ବିଲୋହିତ-

ସହସ୍ରାଣି ସହସ୍ରଶୋ ବାହ୍ୱୋସ୍ତବ ହେତୟଃ । ତାସାମୀଶାନୋ ଭଗବଃ ପରାଚୀନା ମୁଖା କୃଧି ॥୯୯॥ ଅସଂଖ୍ୟାତା ସହସ୍ରାଣି ଯେ ରୁଦ୍ରା ଅଧିଭୂମ୍ୟାମ୍ । ତେଷାଗୁଁ ସହସ୍ରଯୋଜନେଽବ ଧନ୍ୱାନି ତନ୍ମସି ॥୧୦୦॥

---

ବିକିରିଦ୍ର (ବିବିଧଂ କିରିଂ= ଘାତାଦି ଉପଦ୍ରବଂ ଦ୍ରାବୟତି) ଅର୍ଥାତ୍ ବାଣବିଘାତାଦି ଉପଦ୍ରବର ବିନାଶକ, ବିଗତ ଲୋହିତ (କଲ୍ମଷ) ଶୁଦ୍ଧସ୍ୱରୂପ ହେ ଭଗବାନ୍ ରୁଦ୍ର ! ତୁମ୍ଭଙ୍କୁ ପ୍ରଣାମ । ତୁମର ଯେଉଁ ଅସଂଖ୍ୟ ଆୟୁଧ ସେ ସମସ୍ତ ଆମ ବ୍ୟତିରେକେ ଶତ୍ରୁମାନଙ୍କୁ ହତ୍ୟା କରୁ ।

**ମନ୍ତ୍ରସଂଖ୍ୟା (୯୯) :-** ଯଜୁର୍ବେଦ ଅ.୧୬/୫୩ : ସହସ୍ରାଣି ସହସ୍ରଶୋ- ସମସ୍ତ ଐଶ୍ୱର୍ଯ୍ୟ ଯୁକ୍ତ ହେ ଭଗବାନ୍ ରୁଦ୍ର ! ତୁମର ବାହୁଦ୍ୱୟରେ ସହସ୍ର (ଅସଂଖ୍ୟେୟ) ଆୟୁଧ ରହିଛନ୍ତି । ସେଗୁଡ଼ିକର ସ୍ୱାମୀ ତୁମେ, ତେଣୁ ସେଗୁଡ଼ିକୁ ଆମ ପାଇଁ ପରାଙ୍ମୁଖ କର ।

**ମନ୍ତ୍ରସଂଖ୍ୟା (୧୦୦) :-** ଯଜୁର୍ବେଦ ଅ.୧୬/୫୪ : ଅସଂଖ୍ୟାତା - ଭୂଲୋକରେ ଯେଉଁ ଅସଂଖ୍ୟ ରୁଦ୍ର ଅବସ୍ଥିତ ସେମାନଙ୍କର ଧନୁଗୁଡ଼ିକ ଆମଠାରୁ ହଜାରେ ଯୋଜନ (ଚାରି କୋଶରେ ଏକ ଯୋଜନ) ବ୍ୟବଧାନରେ ଅବତାରିତ କରିବାକୁ ଆମେ ନିବେଦନ କରୁଅଛୁ ।

ଇତି କାଣ୍ୱଶାଖାସମ୍ମତ ଶତରୁଦ୍ରୀ ସମାପ୍ତ

—×—

# ଦ୍ୱିତୀୟପରିଚ୍ଛେଦଃ

## ଶୁକ୍ଳଯଜୁର୍ବେଦାନ୍ତର୍ଗତକାଣ୍ୱଶାଖୀୟରୁଦ୍ରାଷ୍ଟାଧ୍ୟାୟୀ

## ପ୍ରଥମାଧ୍ୟାୟଃ

## (ସଂକଳ୍ପସୂକ୍ତମ୍ / ଗଣପତିସୂକ୍ତମ୍)

ହରିଃ ଓଁ ଗଣାନାନ୍ତ୍ୱା ଗଣପତିଗୁଁ ହବାମହେ ପ୍ରିୟାଣାନ୍ତ୍ୱା ପ୍ରିୟପତିଗୁଁ ହବାମହେ । ନିଧୀନାନ୍ତ୍ୱା ନିଧିପତିଗୁଁ ହବାମହେ ବସୋ ମମ ॥୧॥ ଗାୟତ୍ରୀ-ତ୍ରିଷ୍ଟୁବ୍‌ଜଗତ୍ୟନୁଷ୍ଟୁପ୍‌ପଙ୍‌କ୍ତ୍ୟା ସହ । ବୃହତ୍ୟୁଷ୍ଣିହା କକୁପ୍‌ସୂଚୀଭିଃ ଶମ୍ୟନ୍ତୁ ତ୍ୱା ॥୨॥ ଦ୍ୱିପଦା ଯାଶ୍ଚତୁଷ୍ପଦାସ୍ତ୍ରିପଦା ଯାଶ୍ଚ ଷଟ୍‌ପଦାଃ । ବିଚ୍ଛନ୍ଦା ଯାଶ୍ଚ ସଚ୍ଛନ୍ଦାଃ ସୂଚୀଭିଃ ଶମ୍ୟନ୍ତୁ ତ୍ୱା ॥୩॥

---

## ପ୍ରଥମ ଅଧ୍ୟାୟ

### (ଗଣପତି ସୂକ୍ତ / ଶିବସଂକଳ୍ପ ସୂକ୍ତ)

### (ଓଡ଼ିଆ ଭାବାନୁବାଦ)

**ମନ୍ତ୍ରସଂଖ୍ୟା (୧) :-** ଯଜୁର୍ବେଦ - ଅ.୨୫/୨୧ - ଗଣାନାଂ ତ୍ୱାः ଆମ୍ଭେ ଗଣମାନଙ୍କ ମଧ୍ୟରେ ତୁମକୁ ଗଣପତି (ଅଧ୍ୟକ୍ଷ) ରୂପରେ ଆହ୍ୱାନ କରୁଅଛୁ । ପ୍ରିୟମାନଙ୍କ ମଧ୍ୟରେ ତୁମକୁ ପ୍ରିୟପତି (ପ୍ରିୟ ସ୍ୱାମୀ) ଭାବରେ ଏବଂ ନିଧି ଅର୍ଥାତ୍ ସମ୍ପତ୍ତି ମଧ୍ୟରେ ଶ୍ରେଷ୍ଠ ସମ୍ପତ୍ତି (ନିଧିପତି) ସ୍ୱରୂପ ତୁମକୁ ଆବାହନ କରୁଅଛୁ ।

**ମନ୍ତ୍ରସଂଖ୍ୟା (୨) :-** ଯଜୁର୍ବେଦ - ଅ.୨୫/୩୫ - ଗାୟତ୍ରୀ ତ୍ରିଷ୍ଟୁପ୍:- ଗାୟତ୍ରୀ, ତ୍ରିଷ୍ଟୁପ୍, ଜଗତୀ, ଅନୁଷ୍ଟୁପ୍, ପଙ୍‌କ୍ତି ସହ ବୃହତୀ, ଉଷ୍ଣିହା ସହ କକୁପ୍- ଏହି ଛନ୍ଦମାନେ (ସୁନା, ରୂପା ଓ ତମ୍ବା ନିର୍ମିତ) ଛୁଞ୍ଚିମାନଙ୍କଦ୍ୱାରା ତୁମର ସଂସ୍କାର କରନ୍ତୁ ।

**ମନ୍ତ୍ରସଂଖ୍ୟା (୩) :-** ଯଜୁର୍ବେଦ - ଅ.୨୫/୩୬ - ଦ୍ୱିପଦା ଯା : ଦୁଇ ପାଦବିଶିଷ୍ଟ ଛନ୍ଦମାନ ଦ୍ୱିପଦା, ସେହିପରି ତିନିପାଦବିଶିଷ୍ଟ ଛନ୍ଦ ତ୍ରିପଦା, ଚାରିପାଦ ବିଶିଷ୍ଟ ଚତୁଷ୍ପଦା, ଛଅପାଦ ବିଶିଷ୍ଟ ଷଟ୍‌ପଦା, ଛନ୍ଦ ଲକ୍ଷଣ ବିହୀନ ବିଚ୍ଛନ୍ଦା, ଛନ୍ଦଲକ୍ଷଣ ସମ୍ପନ୍ନ ସଚ୍ଛନ୍ଦା । ହେ ଅଶ୍ୱ ! ଏମାନେ ତୁମକୁ ଛୁଞ୍ଚିଦ୍ୱାରା ସଂସ୍କାରସମ୍ପନ୍ନ କରନ୍ତୁ ।

ସହସ୍ତୋମାଃ ସହଛନ୍ଦସ ଆବୃତଃ ସହପ୍ରମା ଋଷୟଃ ସପ୍ତ ଦୈବ୍ୟାଃ ।
ପୂର୍ବେଷାଂ ପନ୍ଥାମନୁଦୃଶ୍ୟ ଧୀରା ଅନ୍ୱାଲେଭିରେ ରଥ୍ୟୋ ନ ରଶ୍ମୀନ୍ ॥୪॥
ଯଜ୍ଜାଗ୍ରତୋ ଦୂରମୁଦୈତି ଦୈବଂ ତଦୁ ସୁପ୍ତସ୍ୟ ତଥୈବୈତି । ଦୂରଂ ଗମଂ
ଜ୍ୟୋତିଷାଂ ଜ୍ୟୋତିରେକଂ ତନ୍ମେ ମନଃ ଶିବସଂକଳ୍ପମସ୍ତୁ ॥୫॥

---

**ମନ୍ତ୍ରସଂଖ୍ୟା (୪) :-** ଯଜୁର୍ବେଦ - ଅ.୩୩/୩୭ - ସହସ୍ତୋମାଃ : ସ୍ତବ, ଛନ୍ଦ, କର୍ମ ତଥା ପ୍ରମାଣ ସହିତ (ଭରଦ୍ୱାଜ, କଶ୍ୟପ, ଗୌତମ, ଅତ୍ରି, ବିଶ୍ୱାମିତ୍ର, ଜମଦଗ୍ନି, ବଶିଷ୍ଠ ପ୍ରଭୃତି) ସାତଜଣ ଋଷି । ରଥର ସାରଥି ଯେପରି ଘୋଡ଼ାର ଲଗାମ୍‌କୁ ଗ୍ରହଣ କରି ରଥ ଚାଳନା କରେ ଓ ଅଭୀଷ୍ଟ ଦେଶ ପ୍ରାପ୍ତି କରାଏ, ଠିକ୍ ସେହିପରି ଏହି ବୁଦ୍ଧିମାନ୍ ଋଷିମାନେ ପୂର୍ବକଳ୍ପର ଦୈବୀଶକ୍ତି ସମ୍ପନ୍ନ ଋଷିଙ୍କଦ୍ୱାରା ପ୍ରଦର୍ଶିତ ମାର୍ଗକୁ ଅବଲମ୍ବନ କରି ସୃଷ୍ଟି କର୍ମକୁ ପ୍ରାରମ୍ଭ କରିଥିଲେ ।
**ମନ୍ତ୍ରସଂଖ୍ୟା (୫) :-** ଯଜୁର୍ବେଦ - ଅ.୩୩/ ୧ - ଯଜ୍ଜାଗ୍ରତୋ : ଦୈବୀଶକ୍ତି ସମ୍ପନ୍ନ ଯେଉଁ ମନ ଜାଗ୍ରତ ଅବସ୍ଥାରେ ଚକ୍ଷୁରାଦି ଇନ୍ଦ୍ରିୟ ଅପେକ୍ଷା ବହୁ ଦୂରଗାମୀ, ଅଥଚ ଯେ ପୁଣି ଆତ୍ମସାକ୍ଷାତ୍କାର ପାଇଁ ସହାୟକ (ମନସୈବାନୁଦ୍ରଷ୍ଟବ୍ୟ-ମେତଦପ୍ରମେୟଂ ଧ୍ରୁବମ୍), ଯେ ସୁଷୁପ୍ତି ଅବସ୍ଥାରେ ବହୁଦୂରକୁ ଚାଲିଯାଏ ଓ ଜାଗ୍ରତରେ ଫେରିଆସେ, ଯେ ଅତୀତ, ଅନାଗତ ଓ ବର୍ତ୍ତମାନ, ଦୂର, ନିକଟ, ବ୍ୟବହିତ ପଦାର୍ଥମାନଙ୍କର ମଧ୍ୟ ଗ୍ରାହକ, ଯେ ଚକ୍ଷୁ ଆଦି ଇନ୍ଦ୍ରିୟମାନଙ୍କର ପ୍ରକାଶକ ଓ ପ୍ରବର୍ତ୍ତକ (ବିଷୟ ଜ୍ଞାନପାଇଁ ଆତ୍ମା ମନ ସହିତ, ମନ ଇନ୍ଦ୍ରିୟ ସହିତ, ଇନ୍ଦ୍ରିୟ ବିଷୟ ସହିତ ସଂଯୁକ୍ତ ହେବା ଆବଶ୍ୟକ) । ଏହିଭଳି ଜ୍ୟୋତିମାନଙ୍କ ମଧ୍ୟରେ ଏକମାତ୍ର ଜ୍ୟୋତି (ପ୍ରକାଶକ) ଯେଉଁ ମୋ ମନ ସେ ଶାନ୍ତ ଅବସ୍ଥାକୁ ପ୍ରାପ୍ତ ହେଉ ।

—×—

# ଦ୍ୱିତୀୟାଧ୍ୟାୟଃ

## (ପୁରୁଷସୂକ୍ତମ୍)

ହରିଃ ଓଁ ସହସ୍ରଶୀର୍ଷା ପୁରୁଷଃ ସହସ୍ରାକ୍ଷଃ ସହସ୍ରପାତ୍ । ସଭୂମିଗୁଁ ସର୍ବତ ସ୍ପୃତ୍ୱାତ୍ୟତିଷ୍ଠଦ୍ଦଶାଙ୍ଗୁଳମ୍ ॥୧॥ ପୁରୁଷ ଏବେଦଗୁଁ ସର୍ବଂ ଯଦ୍ଭୂତଂ ଯଚ୍ଚ ଭାବ୍ୟମ୍ । ଉତାମୃତତ୍ୱସ୍ୟେଶାନୋ ଯଦନ୍ନେନାତିରୋହତି ॥୨॥ ଏତାବାନସ୍ୟ ମହିମାତୋ ଜ୍ୟାୟାଗୁଁଶ୍ଚ ପୂରୁଷଃ । ପାଦୋଽସ୍ୟ ବିଶ୍ୱା ଭୂତାନି ତ୍ରିପାଦସ୍ୟାମୃତଂ ଦିବି ॥୩॥

---

# ଦ୍ୱିତୀୟ ଅଧ୍ୟାୟ

## (ପୁରୁଷସୂକ୍ତ)

**ମନ୍ତ୍ରସଂଖ୍ୟା (୧) :-** ଯଜୁର୍ବେଦ ଅ.୩୫/୧ : ଓଁ ସହସ୍ରଶୀର୍ଷା : - ପରମାତ୍ମା ଅନେକ ଶିର (ସହସ୍ର ଶବ୍ଦ ଏଠାରେ ଅନେକତ୍ୱବାଚକ), ଅନେକ ଚକ୍ଷୁ, (ସହସ୍ରାକ୍ଷ- ଏଠାରେ ଚକ୍ଷୁରୂପକ ଅର୍ଥ ଉପଲକ୍ଷିତ, ବସ୍ତୁତଃ ଅକ୍ଷ ଶବ୍ଦ ପାଞ୍ଚ ଜ୍ଞାନେନ୍ଦ୍ରିୟ ଅର୍ଥାତ୍ କର୍ଣ୍ଣ, ଚର୍ମ, ଚକ୍ଷୁ, ଜିହ୍ୱା ଓ ନାସିକା ଏହାର ବାଚକ), ଅନେକ ପାଦ (ଏଠାରେ ପାଦ ମଧ୍ୟ ପଞ୍ଚ କର୍ମେନ୍ଦ୍ରିୟ ଯଥା- ବାକ୍, ପାଣି, ପାଦ, ପାୟୁ ଓ ଉପସ୍ଥ ବାଚକ) ବିଶିଷ୍ଟ ଅଟନ୍ତି । ସେ ବ୍ରହ୍ମାଣ୍ଡକୁ ସବୁ ଦିଗରୁ (ଅଧଃ, ଊର୍ଦ୍ଧ୍ୱ ଓ ତିର୍ଯ୍ୟକ୍) ବ୍ୟାପୀ ରହିଛନ୍ତି, ପୁଣି ସେ ଆମ ଦଶ ଆଙ୍ଗୁଳି ପରିମିତ ହୃଦୟକନ୍ଦରରେ ମଧ୍ୟ ଅବସ୍ଥାନ କରିଅଛନ୍ତି ।

**ମନ୍ତ୍ରସଂଖ୍ୟା (୨) :-** ଯଜୁର୍ବେଦ ଅ.୩୫/୨ : ପୁରୁଷ ଏବେଦଗୁଁ - ବର୍ତ୍ତମାନ, ଅତୀତ ଓ ଭବିଷ୍ୟତ ଏପରି ସାର୍ବକାଳିକ ଜଗତ୍ ପ୍ରପଞ୍ଚ ସେହି ବିରାଟ ପୁରୁଷଙ୍କର ହିଁ ସ୍ୱରୂପ । ସେ ଅମୃତତ୍ୱ ଅର୍ଥାତ୍ ଦେବତାଙ୍କର ମଧ୍ୟ ସ୍ୱାମୀ । ସେ ସମଗ୍ର ବିଶ୍ୱର କାରଣ ହୋଇ ମଧ୍ୟ ପ୍ରାଣୀମାନଙ୍କର କର୍ମଫଳ ଭୋଗପାଇଁ ଭୋଗ୍ୟବସ୍ତୁ ଅନ୍ନାଦି ରୂପରେ ପରିଣତ ହୁଅନ୍ତି ।

**ମନ୍ତ୍ରସଂଖ୍ୟା (୩) :-** ଯଜୁର୍ବେଦ ଅ.୩୫/୩ : ଏତାବାନସ୍ୟ ମହିମା - ଏହି ପୂର୍ବୋକ୍ତ (ସାର୍ବକାଳିକ) ମହିମାରେ ସମଗ୍ର ବିଶ୍ୱ ମହିମାନ୍ୱିତ, ଅଥଚ ସେ ଏ ସମସ୍ତର ବହୁତ ଊର୍ଦ୍ଧ୍ୱରେ । ଯାହାଙ୍କର ମହିମାର ଏକପାଦ (ଏକଚତୁର୍ଥାଂଶ) ଏ ସମସ୍ତ ପ୍ରାଣୀ ଜଗତରେ ବ୍ୟାପ୍ତ ଓ ଅବଶିଷ୍ଟ ପାଦ (ଅଂଶତ୍ରୟ) ଦ୍ୟୁଲୋକରେ, ଯାହାଦ୍ୱାରା ଏ ସମଗ୍ର ବିଶ୍ୱବ୍ରହ୍ମାଣ୍ଡ ପ୍ରକାଶିତ ।

ତ୍ରିପାଦୂର୍ଦ୍ଧ୍ୱ ଉଦୈତ୍ପୁରୁଷଃ ପାଦୋଽସ୍ୟେହାଭବତ୍ପୁନଃ । ତତୋ ବିଷ୍ୱଙ୍ ବ୍ୟକ୍ରାମତ୍ସାଶନାନଶନେ ଅଭି ॥୪॥ ତତୋ ବିରାଳଜାୟତ ବିରାଜୋ ଅଧି ପୂରୁଷଃ । ସ ଜାତୋ ଅତ୍ୟରିଚ୍ୟତ ପଶ୍ଚାଦ୍ଭୂମିମଥୋ ପୁରଃ ॥୫॥ ତସ୍ମାଦ୍ ଯଜ୍ଞାତ୍ସର୍ବହୁତଃ ସମ୍ଭୃତଂ ପୃଷଦାଜ୍ୟମ୍ । ପଶୂଁସ୍ତାଁଶ୍ଚକ୍ରେ ବାୟବ୍ୟାନାରଣ୍ୟା ଗ୍ରାମ୍ୟାଶ୍ଚ ଯେ ॥୬॥ ତସ୍ମାଦ୍ ଯଜ୍ଞାତ୍ସର୍ବହୁତ ଋଚଃ ସାମାନି ଜଜ୍ଞିରେ । ଛନ୍ଦାଗୁଁସି ଜଜ୍ଞିରେ ତସ୍ମାଦ୍ୟଜୁସ୍ତସ୍ମାଦଜାୟତ ॥୭॥

---

**ମନ୍ତ୍ରସଂଖ୍ୟା (୪) :-** ଯଜୁର୍ବେଦ ଅ.୩୫/୪ : ତ୍ରିପାଦୂର୍ଦ୍ଧ୍ୱ - ପରମାତ୍ମାଙ୍କର ତିନିପାଦ ସାଂସାରିକ ଗୁଣଦୋଷର ଉର୍ଦ୍ଧ୍ୱରେ ରହି ସମଗ୍ର ବିଶ୍ୱବ୍ରହ୍ମାଣ୍ଡକୁ ଦେଦୀପ୍ୟମାନ କରୁଅଛନ୍ତି ଏବଂ ଏକପାଦ ସମଗ୍ର ଜଗତ୍ ରୂପରେ ଥାଇ ବାରମ୍ବାର ସୃଷ୍ଟି ସଂହାର ପ୍ରକ୍ରିୟାର କାରକ ଅଟନ୍ତି । ସେ ହିଁ ମାୟାଶକ୍ତି ମାଧମରେ ଚେତନ ପ୍ରାଣୀ ଜଗତରେ ଓ ଅଚେତନ ଗିରି, ନଦୀ ଇତ୍ୟାଦି ରୂପରେ ପରିବ୍ୟାପ୍ତ ଅଟନ୍ତି ।

**ମନ୍ତ୍ରସଂଖ୍ୟା (୫) :-** ଯଜୁର୍ବେଦ ଅ.୩୫/୫ : ତତୋ ବିରାଳଜାୟତ - ତାହାଙ୍କ (ପରମାତ୍ମାଙ୍କ)ଠାରୁ ବିରାଟ୍ (ବିବିଧବସ୍ତୁ ଯାହାଙ୍କଠାରେ ଥାଆନ୍ତି, ବିବିଧଂ ରାଜନ୍ତେ ବସ୍ତୁନ୍ୟତ୍ରେତି ବିରାଟ୍) ଉତ୍ପନ୍ନ ହେଲେ ଏବଂ ବିରାଟ୍ଙ୍କଠାରୁ ପୁରୁଷସ୍ୱରୂପ ବ୍ରହ୍ମାଣ୍ଡ, ଯାହାକି ଦେବତା, ମନୁଷ୍ୟ, ପଶୁପକ୍ଷୀ ଇତ୍ୟାଦି ସମସ୍ତ ସୃଷ୍ଟି ସମ୍ଭବ ହେଲା ।

**ମନ୍ତ୍ରସଂଖ୍ୟା (୬) :-** ଯଜୁର୍ବେଦ ଅ.୩୫/୬ : ତସ୍ମାଦ୍ ଯଜ୍ଞାତ୍ - ତାଙ୍କଦ୍ୱାରା ଅନୁଷ୍ଠିତ (ଅଗ୍ନିଷ୍ଟୋମ / ପୁରୁଷମେଧ)[୧] ଯଜ୍ଞରୁ ଦଧି-ଘୃତ ଇତ୍ୟାଦି ଭୋଜ୍ୟ ପଦାର୍ଥମାନ ସୃଷ୍ଟି ହେଲେ । ବାୟୁ ଦେବତା ସମ୍ପର୍କୀୟ[୨] ବନେଚର ପଶୁ ଓ ଗୋରୁ, ଅଶ୍ୱ ଇତ୍ୟାଦି ଗ୍ରାମ୍ୟ ପଶୁମାନେ ମଧ୍ୟ ଉତ୍ପନ୍ନ ହେଲେ ।

**ମନ୍ତ୍ରସଂଖ୍ୟା (୭) :-** ଯଜୁର୍ବେଦ ଅ.୩୫/୭ : ତସ୍ମାଦ୍ ଯଜ୍ଞାତ୍ - ବିଧାତା ପୁରୁଷଙ୍କଦ୍ୱାରା ଅନୁଷ୍ଠିତ ସେହି ଯଜ୍ଞରୁ ଋକ୍, ଯଜୁଃ ଓ ସାମ ବେଦମାନ ତଥା ଗାୟତ୍ରୀ ଇତ୍ୟାଦି ଛନ୍ଦମାନ ମଧ୍ୟ ଆବିର୍ଭୂତ ହେଲେ ।

---

୧ - ଭାଷ୍ୟକାର ଉବଟଙ୍କ ମତରେ ଅଗ୍ନିଷ୍ଟୋମଯଜ୍ଞ, ମାତ୍ର ଅନ୍ୟଭାଷ୍ୟକାର ମହୀଧରଙ୍କ ମତରେ ପୁରୁଷମେଧ ଯଜ୍ଞ ।

୨ - ଶ୍ରୁତିରେ ଅଛି - 'ଅନ୍ତରିକ୍ଷ ଦେବତ୍ୟାଃ ଖଲୁ ବୈ ପଶବଃ' - ଇତି ଶ୍ରୁତେଃ ଅନ୍ତରିକ୍ଷସ୍ୟ ଚ ବାୟୁ ଦେବତ୍ୟତ୍ୱାତ୍, ପଶୂନାଂ ବାୟୁଦେବତ୍ୱମ୍-ମହୀଧରଭାଷ୍ୟ ।

ତସ୍ମାଦଶ୍ୱା ଅଜାୟନ୍ତ ଯେ କେ ଚୋଭୟାଦତଃ । ଗାବୋ ହ ଜଜ୍ଞିରେ ତସ୍ମାତ୍ତସ୍ମାଜ୍ଜାତା ଅଜାବୟଃ ॥୮॥ ତଂ ଯଜ୍ଞଂ ବର୍ହିଷି ପ୍ରୌକ୍ଷନ୍ ପୁରୁଷଂ ଜାତମଗ୍ରତଃ । ତେନ ଦେବା ଅୟଜନ୍ତ ସାଧ୍ୟା ଋଷୟଶ୍ଚ ଯେ ॥୯॥ ଯତ୍ପୁରୁଷଂ ବ୍ୟଦଧୁଃ କତିଧା ବ୍ୟକଳ୍ପୟନ୍ । ମୁଖଂ କିମସ୍ୟାସୀତ୍କିଂ ବାହୂ କିମୂରୂ ପାଦା ଉଚ୍ୟେତେ ॥୧୦॥ ବ୍ରାହ୍ମଣୋଽସ୍ୟ ମୁଖମାସୀଦ୍ବାହୂ ରାଜନ୍ୟଃ କୃତଃ । ଉରୂ ତଦସ୍ୟ ଯଦ୍ବୈଶ୍ୟଃ ପଦ୍ଭ୍ୟାଗୁଁ ଶୂଦ୍ରୋ ଅଜାୟତ ॥୧୧॥ ଚନ୍ଦ୍ରମା ମନସୋ ଜାତଶ୍ଚକ୍ଷୋଃ ସୂର୍ଯ୍ୟୋ ଅଜାୟତ । ଶ୍ରୋତ୍ରାଦ୍ ବାୟୁଶ୍ଚ ପ୍ରାଣଶ୍ଚ ମୁଖାଦଗ୍ନିରଜାୟତ ॥୧୨॥

---

**ମନ୍ତ୍ରସଂଖ୍ୟା (୮) :-** ଯଜୁର୍ବେଦ ଅ.୩୫/୮ : ତସ୍ମାଦଶ୍ୱା – ସେହି ଯଜ୍ଞରୁ ଅଶ୍ୱଜାତୀୟ ତଥା ତତ୍ସହିତ ଅଧୋର୍ଦ୍ଧ୍ୱ ଦନ୍ତପଙ୍କ୍ତି ବିଶିଷ୍ଟ ଗୋରୁ, ଛେଳି ଇତ୍ୟାଦି ପ୍ରାଣୀମାନେ ମଧ୍ୟ ଉତ୍ପନ୍ନ ହେଲେ ।

**ମନ୍ତ୍ରସଂଖ୍ୟା (୯) :-** ଯଜୁର୍ବେଦ ଅ. ୩୫/୯ : ତଂ ଯଜ୍ଞଂ ବର୍ହିଷି – ପ୍ରଥମୋତ୍ପନ୍ନ ପୁରୁଷଙ୍କୁ ଯଜ୍ଞ ନିମିତ୍ତ ଦର୍ଭଦ୍ୱାରା ପ୍ରୋକ୍ଷଣ କରାଗଲା ପରେ ସେହି ପୁରୁଷରୂପ ପଶୁଦ୍ୱାରା ଦେବତାମାନେ ଓ ଋଷିଗଣ ସମସ୍ତେ ଯଜ୍ଞ ସମ୍ପାଦନ କଲେ ।

**ମନ୍ତ୍ରସଂଖ୍ୟା (୧୦) :-** ଯଜୁର୍ବେଦ ଅ.୩୫/୧୦ : ଯତ୍ପୁରୁଷଂ – ଋଷିମାନେ, ଇନ୍ଦ୍ରାଦିଦେବତାମାନେ ଯେଉଁ ପୁରୁଷଙ୍କୁ ଯଜ୍ଞରେ ବିଧାନ କଲେ ଓ ସେହିପରି ଆତ୍ମସାକ୍ଷାତ୍କାରୀ ଯୋଗୀମାନେ ଯାହାଙ୍କୁ ଚିନ୍ତନ କଲେ ତାଙ୍କର ମୁହଁ କ'ଣ ଥିଲା ? ବାହୁ, ଜଙ୍ଘ, ପାଦ କେମିତି ଥିଲା ?

**ମନ୍ତ୍ରସଂଖ୍ୟା (୧୧) :-** ଯଜୁର୍ବେଦ ଅ.୩୫/୧୧ : ବ୍ରାହ୍ମଣୋଽସ୍ୟ – (ପୂର୍ବୋକ୍ତ ପ୍ରଶ୍ନମାନଙ୍କର ଉତ୍ତର) ସେହି ପ୍ରଜାପତିଙ୍କର ବ୍ରାହ୍ମଣ ମୁଖରୁ, କ୍ଷତ୍ରିୟ ବାହୁରୁ, ବୈଶ୍ୟ ଉରୁ (ଜଙ୍ଘଦ୍ୱୟ)ରୁ ଓ ଶୂଦ୍ର ପାଦଦ୍ୱୟରୁ ଉତ୍ପନ୍ନ ହୋଇଥିଲେ । ଅର୍ଥାତ୍ ସେହି ବିରାଟ ପୁରୁଷଙ୍କର ବ୍ରାହ୍ମଣ ମୁଖସ୍ୱରୂପ, କ୍ଷତ୍ରିୟ ବାହୁସ୍ୱରୂପ, ବୈଶ୍ୟ ତଥା ଶୂଦ୍ର କ୍ରମଶଃ ଜଙ୍ଘ ଓ ପାଦସ୍ୱରୂପ ଅଟନ୍ତି ।

**ମନ୍ତ୍ରସଂଖ୍ୟା (୧୨) :-** ଯଜୁର୍ବେଦ ଅ.୩୫/୧୨ : ଚନ୍ଦ୍ରମା ମନସୋ ଜାତଃ – ସେହି ପ୍ରଜାପତିସ୍ୱରୂପ ବିରାଟ ପୁରୁଷଙ୍କ ମନରୁ ଚନ୍ଦ୍ରମା, ଚକ୍ଷୁଦ୍ୱୟରୁ ସୂର୍ଯ୍ୟ, କର୍ଣ୍ଣଦ୍ୱୟରୁ ପ୍ରାଣବାୟୁ ଓ ମୁଖରୁ ଅଗ୍ନି ସୃଷ୍ଟି ହୋଇଥିଲେ ।

ନାଭ୍ୟା ଆସୀଦନ୍ତରିକ୍ଷଗୁଁ ଶୀର୍ଷ୍ଣୋ ଦ୍ୟୌଃ ସମବର୍ତତ । ପଦ୍‌ଭ୍ୟାଂ ଭୂମିର୍ଦିଶଃ ଶ୍ରୋତ୍ରାତ୍ତଥା ଲୋକାଁ୨ଅକଳ୍ପୟନ୍ ॥୧୩॥ ଯତ୍‌ପୁରୁଷେଣ ହବିଷା ଦେବା ଯଜ୍ଞମତନ୍ୱତ । ବସନ୍ତୋଽସ୍ୟାସୀଦାଜ୍ୟଂ ଗ୍ରୀଷ୍ମ ଇଧ୍ମଃ ଶରଦ୍ଧବିଃ ॥୧୪॥ ସପ୍ତାସ୍ୟାସନ୍ ପରିଧୟସ୍ତ୍ରିଃ ସପ୍ତ ସମିଧଃ କୃତାଃ । ଦେବା ଯଦ୍‌ଯଜ୍ଞଂ ତନ୍ୱାନା ଅବଧ୍ନନ୍ ପୁରୁଷଂ ପଶୁମ୍ ॥୧୫॥ ଯଜ୍ଞେନ ଯଜ୍ଞମୟଜନ୍ତ ଦେବାସ୍ତାନି ଧର୍ମାଣି ପ୍ରଥମାନ୍ୟାସନ୍ । ତେ ହ ନାକଂ ମହିମାନଃ ସଚନ୍ତ ଯତ୍ର ପୂର୍ବେ ସାଧ୍ୟାଃ ସନ୍ତି ଦେବାଃ ॥୧୬॥

---

**ମନ୍ତ୍ରସଂଖ୍ୟା (୧୩) :-** ଯଜୁର୍ବେଦ ଅ.୩୫/୧୩ : ନାଭ୍ୟା ଆସୀତ୍ - ସେହି ପ୍ରଜାପତିଙ୍କର ନାଭିଦେଶରୁ ଅନ୍ତରିକ୍ଷ ଅର୍ଥାତ୍ ଆକାଶ, ଶିରରୁ ସ୍ୱର୍ଗ, ପାଦଦ୍ୱୟରୁ ଭୂମି, କର୍ଣ୍ଣଦ୍ୱୟରୁ ଦିଗସମୂହ ଏହିପରି ସମସ୍ତ ଭୂଲୋକ ଆଦି ତାଙ୍କ ଅବୟବରୁ ଜାତ ।

**ମନ୍ତ୍ରସଂଖ୍ୟା (୧୪) :-** ଯଜୁର୍ବେଦ ଅ.୩୫/୧୪ : ଯତ୍ ପୁରୁଷେଣ : ପୂର୍ବୋକ୍ତ ସୃଷ୍ଟି କ୍ରମରେ ବାହ୍ୟ ବସ୍ତୁଗୁଡ଼ିକର ଅନୁତ୍ପନ୍ନତା ହେତୁ ଦେବତାମାନେ ପୁରୁଷ ସ୍ୱରୂପକୁ ମନରେ ହବନୀୟ ଦ୍ରବ୍ୟ ଭାବରେ କଳ୍ପନା କରି ମାନସିକ ଯଜ୍ଞ ସମ୍ପନ୍ନ କରିଥିଲେ, ଯେଉଁଥିରେ ବସନ୍ତ ଋତୁକୁ ଆଜ୍ୟ (ଘୃତ), ଗ୍ରୀଷ୍ମକୁ ସମିଧ (କାଷ୍ଠ) ରୂପରେ, ଶରତ୍‌କୁ ହବିଃ (ହବନୀୟ ଦ୍ରବ୍ୟ ପୁରୋଡାଶାଦି) ଭାବରେ କଳ୍ପନା କରାଯାଇଥିଲା ।

**ମନ୍ତ୍ରସଂଖ୍ୟା (୧୫) :-** ଯଜୁର୍ବେଦ ଅ.୩୫/୧୫ : ସପ୍ତାସ୍ୟାସନ୍ - ଇନ୍ଦ୍ରାଦି ଦେବତାମାନେ ପୁରୁଷମେଧ ରୂପକ ମାନସ ଯଜ୍ଞ ନିମିତ୍ତ ବିରାଟ୍ ପୁରୁଷଙ୍କୁ ଯଜ୍ଞୀୟ ପୁରୁଷ ରୂପରେ, ସାତଗୋଟି ସମୁଦ୍ରକୁ ପରିଧି ଭାବରେ, ତ୍ରିସପ୍ତ ଅର୍ଥାତ୍ ପୃଥିବୀ ଇତ୍ୟାଦି ପଞ୍ଚମହାଭୂତ, ଶବ୍ଦାଦି ପଞ୍ଚ ତନ୍ମାତ୍ର, ବାକ୍ ଆଦି ପଞ୍ଚ କର୍ମେନ୍ଦ୍ରିୟ, ଶ୍ରୋତ୍ରାଦି ପଞ୍ଚ ଜ୍ଞାନେନ୍ଦ୍ରିୟ ଏବଂ ମନ ଏପରି ଏକୋଇଶିଟି ତତ୍ତ୍ୱକୁ ସମିଧ ରୂପରେ ଗ୍ରହଣ କରିଥିଲେ ।

**ମନ୍ତ୍ରସଂଖ୍ୟା (୧୬) :-** ଯଜୁର୍ବେଦ ଅ.୩୫/୧୬ : ଯଜ୍ଞେନ ଯଜ୍ଞଂ - ଇନ୍ଦ୍ରାଦି ଦେବତାମାନେ ଯଜ୍ଞଦ୍ୱାରା ଯଜ୍ଞୀୟ ପୁରୁଷଙ୍କର ବିଧିପୂର୍ବକ ପୂଜା କଲେ । ଯାହା ପୂର୍ବକାଳିକ ଧର୍ମ ଥିଲା । ସେହି ମହିମାନ୍ୱିତ ଯଜ୍ଞଦ୍ୱାରା ଯୋଗୀ ଋଷିମାନେ ସ୍ୱର୍ଗପ୍ରାପ୍ତ ହୋଇଥିଲେ । ଯେଉଁଠାରେ ପୂର୍ବରୁ ସିଦ୍ଧପୁରୁଷ ଓ ଦେବତାମାନେ ବାସ କରୁଥିଲେ ।

ଅଦ୍‌ଭ୍ୟଃ ସମ୍ଭୃତଃ ପୃଥିବ୍ୟୈ ରସାଚ୍ଚ ବିଶ୍ୱକର୍ମଣଃ ସମବର୍ତତାଗ୍ରେ । ତସ୍ୟ ତ୍ୱଷ୍ଟା ବିଦଧଦ୍ରୂପମେତି ତନ୍ମର୍ତ୍ୟସ୍ୟ ଦେବତ୍ୱମାଜାନମଗ୍ରେ ॥୧୭॥

ବେଦାହମେତଂ ପୁରୁଷଂ ମହାନ୍ତମାଦିତ୍ୟବର୍ଣ୍ଣଂ ତମସଃ ପରସ୍ତାତ୍ । ତମେବ ବିଦିତ୍ୱାତି ମୃତ୍ୟୁମେତି ନାନ୍ୟଃ ପନ୍ଥା ବିଦ୍ୟତେଽୟନାୟ ॥୧୮॥

ପ୍ରଜାପତିଶ୍ଚରତି ଗର୍ଭେ ଅନ୍ତରଜାୟମାନୋ ବହୁଧା ବିଜାୟତେ । ତସ୍ୟ ଯୋନିଂ ପରିପଶ୍ୟନ୍ତି ଧୀରାସ୍ତସ୍ମିନ୍‌ହ ତସ୍ଥୁର୍ଭୁବନାନି ବିଶ୍ୱା ॥୧୯॥

---

**ମନ୍ତ୍ରସଂଖ୍ୟା (୧୭) :-** ଯଜୁର୍ବେଦ ଅ.୩୫/୧୭ : ଅଦ୍‌ଭ୍ୟଃ ସଂଭୃତଃ - ଜଳରୁ ସଂଗୃହୀତ ଓ ପିଣ୍ଡୀଭୂତ ଏହି ପୃଥିବୀ । ସେହିପରି ପୃଥିବୀ, ଜଳ, ତେଜ, ବାୟୁ ଓ ଆକାଶରୂପକ ପଞ୍ଚ ମହାଭୂତରୁ ସଂଗୃହୀତ ରସ ଯାହା ବିଶ୍ୱକର୍ମା ରୂପରେ ଥାଇ ହିରଣ୍ୟଗର୍ଭର ସର୍ବପ୍ରଥମ ସୃଷ୍ଟି । ତ୍ୱଷ୍ଟା ଅର୍ଥାତ୍ ଆଦିତ୍ୟ ସେହି ରସରୁ ତାଙ୍କର ସ୍ୱରୂପ ନିର୍ଦ୍ଧାରଣ କରି ପ୍ରତ୍ୟହ ଉଦୟ ହେଲେ ଏବଂ ସେ ହିଁ ପୂର୍ବ କାଳର ମରଣଧର୍ମରୁ ଆଜାନ ଦେବତ୍ୱକୁ ପ୍ରାପ୍ତ ହେଲେ । (ବେଦରେ ଦୁଇପ୍ରକାର ଦେବତାଙ୍କ ବର୍ଣ୍ଣନା କରାଯାଇଅଛି ଯଥା - କର୍ମଦେବ ଓ ଆଜାନଦେବ । ଯେଉଁ ଦେବତାମାନେ ଉତ୍କୃଷ୍ଟକର୍ମମାନ କରି ଦେବତ୍ୱ ପ୍ରାପ୍ତ ହୁଅନ୍ତି ସେମାନଙ୍କୁ କର୍ମଦେବ କୁହାଯାଇଅଛି । ସେହିପରି ଯେଉଁମାନେ ସୃଷ୍ଟି ଆରମ୍ଭରେ ଉତ୍ପନ୍ନ ହୋଇଅଛନ୍ତି ସେମାନେ ଆଜାନଦେବ ଅଟନ୍ତି । କର୍ମଦେବଠାରୁ ଆଜାନଦେବ ଶ୍ରେଷ୍ଠ, ଏଥିରେ ପ୍ରମାଣ ଯଥା - ଯେ ଶତଂ କର୍ମଦେବାନାମାନନ୍ଦାଃ ସ ଏକ ଆଜାନଦେବାନାମାନନ୍ଦଃ (ବୃହ.ଉପ.-୪/୧/୩୫) । ଏଣୁ ସୂର୍ଯ୍ୟାଦି ଦେବତାମାନେ ଆଜାନଦେବସଂଜ୍ଞକ ଅଟନ୍ତି ।)

**ମନ୍ତ୍ରସଂଖ୍ୟା (୧୮) :-** ଯଜୁର୍ବେଦ ଅ.୩୫/୧୮ : ବେଦାହମେତଂ - ମୁଁ ସୂର୍ଯ୍ୟମଣ୍ଡଳାନ୍ତର୍ଗତ ସର୍ବୋତ୍କୃଷ୍ଟ ପୁରୁଷଙ୍କୁ ଜାଣିଛି - ଏହା ଋଷିଙ୍କ ପ୍ରତିବଚନ । ସେହି ପୁରୁଷ ଆଦିତ୍ୟବର୍ଣ୍ଣ ଅଟନ୍ତି, ଯାହାକି ଅନ୍ଧକାର (ଅବିଦ୍ୟା) ରହିତ ଓ ଯାହାଙ୍କୁ ଜାଣିବାଦ୍ୱାରା ମୃତ୍ୟୁକୁ ଅତିକ୍ରମଣ ଅର୍ଥାତ୍ ମୋକ୍ଷପ୍ରାପ୍ତି କରିହୁଏ ଏବଂ ଯାହା ବ୍ୟତିରେକେ ଅନ୍ୟ ମାର୍ଗ ମୁକ୍ତିପାଇଁ କିଛି ନାହିଁ ।

**ମନ୍ତ୍ରସଂଖ୍ୟା (୧୯) :-** ଯଜୁର୍ବେଦ ଅ.୩୫/୧୯ : ପ୍ରଜାପତିଶ୍ଚରତି - ସର୍ବାତ୍ମା ପ୍ରଜାପତି ଅନ୍ତଃ ହୃଦୟରେ ଅବସ୍ଥିତ ହୋଇ ଗର୍ଭମଧ୍ୟରେ ପ୍ରବେଶ କରନ୍ତି, କିନ୍ତୁ

ଯୋ ଦେବେଭ୍ୟ ଆତପତି ଯୋ ଦେବାନାଂ ପୁରୋହିତଃ । ପୂର୍ବୋ ଯୋ ଦେବେଭ୍ୟୋ ଜାତୋ ନମୋ ରୁଚାୟ ବ୍ରାହ୍ମୟେ ॥୨୦॥ ରୁଚଂ ବ୍ରାହ୍ମଂ ଜନୟନ୍ତୋ ଦେବା ଅଗ୍ରେ ତଦବ୍ରୁବନ୍ । ଯସ୍ତ୍ୱୈବଂ ବ୍ରାହ୍ମଣୋ ବିଦ୍ୟାତ୍ତସ୍ୟ ଦେବା ଅସନ୍ବଶେ ॥୨୧॥ ଶ୍ରୀଶ୍ଚ ତେ ଲକ୍ଷ୍ମୀଶ୍ଚ ପତ୍ନ୍ୟା ଅହୋରାତ୍ରେ ପାର୍ଶ୍ୱେ ନକ୍ଷତ୍ରାଣି ରୂପମଶ୍ୱିନୌ ବ୍ୟାତ୍ତମ୍ । ଇଷ୍ଣନ୍ନିଷାଣାମୁଂ ମ ଇଷାଣ ସର୍ବଲୋକଂ ମ ଇଷାଣ ॥୨୨॥

---

ସେ ଅଜ (ଅଜନ୍ମା) ଏଣୁ ନିତ୍ୟ, ଅଥଚ କାର୍ଯ୍ୟକାରଣ ଭାବ ନେଇ ପ୍ରପଞ୍ଚର ବହୁ ରୂପରେ (ମାୟାଶକ୍ତିଦ୍ୱାରା) ପରିଣତ ହୁଅନ୍ତି । ଏହାକୁ ଧୀର ଅର୍ଥାତ୍ କେବଳ ବ୍ରହ୍ମଜ୍ଞାନୀମାନେ 'ଅହଂ ବ୍ରହ୍ମାସ୍ମି' ଏହି ଭାବରେ ଜାଣିପାରନ୍ତି ।

**ମନ୍ତ୍ରସଂଖ୍ୟା (୨୦) :-** ଯଜୁର୍ବେଦ ଅ.୩୫/୨୦ : ଯୋ ଦେବେଭ୍ୟଃ - ଯେ ଆଦିତ୍ୟ ରୂପରେ ସମସ୍ତଙ୍କୁ ପ୍ରକାଶ କରନ୍ତି ଓ ଯେ ଦେବତାମାନଙ୍କ ପୁରୋହିତ ଅର୍ଥାତ୍ ସମସ୍ତ କାର୍ଯ୍ୟରେ ଅଗ୍ରଗାମୀ, ଯେ ସମସ୍ତ ଦେବତାମାନଙ୍କ ପୂର୍ବରୁ ଜାତ, ସେହି ଦେଦୀପ୍ୟମାନ ବ୍ରହ୍ମପୁରୁଷଙ୍କୁ ପ୍ରଣାମ ।

**ମନ୍ତ୍ରସଂଖ୍ୟା (୨୧) :-** ଯଜୁର୍ବେଦ ଅ.୩୫/୨୧ : ଋଚଂ ବ୍ରାହ୍ମଂ ଜନୟନ୍ତ - ବ୍ରହ୍ମାଙ୍କଠାରୁ ଉତ୍ପନ୍ନ ଜ୍ୟୋତିଃସ୍ୱରୂପ ପ୍ରଥମେ ବାକ୍ୟୋଚ୍ଚାରଣ କଲେ, 'ହେ ଆଦିତ୍ୟ ! ତୁମକୁ ପୂର୍ବୋକ୍ତ ପ୍ରକାରେ ଜାତ ହୋଇଥିବାର ଯେ ଜାଣିବେ ତାଙ୍କର ଦେବତାମାନେ ମଧ ବଶ୍ୟ ହେବେ' । ଅର୍ଥାତ୍ ଆଦିତ୍ୟୋପାସକ ସର୍ବପୂଜ୍ୟ ଅଟନ୍ତି ।

**ମନ୍ତ୍ରସଂଖ୍ୟା (୨୨) :-** ଯଜୁର୍ବେଦ ଅ.୩୫/୨୨ : ଶ୍ରୀଶ୍ଚ ତେ - ଋଷି ବ୍ରହ୍ମସ୍ୱରୂପ ଆଦିତ୍ୟଙ୍କୁ ପ୍ରାର୍ଥନା କରି କହୁଛନ୍ତି- ହେ ପରମପୁରୁଷ ! ଶ୍ରୀ (ସମ୍ପତ୍ସ୍ୱରୂପା) ଓ ଲକ୍ଷ୍ମୀ (ସୌନ୍ଦର୍ଯ୍ୟସ୍ୱରୂପା) ତୁମର ପତ୍ନୀଦ୍ୱୟ ଅହୋରାତ୍ର (ଦିବସ ଓ ରାତ୍ରି) ତୁମର ପାର୍ଶଦସ୍ୱରୂପ, ନକ୍ଷତ୍ରମାନେ ତୁମର ସ୍ୱରୂପ (ତୁମ ତେଜରେ ସେମାନେ ତେଜୀୟାନ୍), ଅଶ୍ୱିନୀଦ୍ୱୟ (ଅଶ୍ୱିନୀକୁମାର)ତୁମର ବିସ୍ତୃତ ମୁଖ (ମତାନ୍ତରରେ ସ୍ୱର୍ଗ ଓ ପୃଥିବୀ ତୁମର ମୁଖସ୍ୱରୂପ) । ତୁମଠାରେ ଏତିକି କାମନା ଯେ ମୋର ପରଲୋକ ସୁଖପ୍ରଦ ହେଉ ଓ ସର୍ବ ଲୋକାତ୍ମକ ଅର୍ଥାତ୍ ବ୍ରହ୍ମରୂପ ମୋକ୍ଷ ମୋର ପ୍ରାପ୍ତି ହେଉ ।

—×—

# ତୃତୀୟାଧ୍ୟାୟଃ

## (ଅପ୍ରତିରଥସୂକ୍ତମ୍)

ହରିଃ ଓଁ ଆଶୁଃ ଶିଶାନୋ ବୃଷଭୋ ନ ଭୀମୋ ଘନାଘନଃ କ୍ଷୋଭଣଶ୍ଚର୍ଷଣୀନାମ୍ । ସଙ୍କ୍ରନ୍ଦନୋଽନିମିଷ ଏକବୀରଃ ଶତଗୁଁ ସେନା ଅଜୟତ୍ସାକମିନ୍ଦ୍ରଃ ॥୧॥ ସଙ୍କ୍ରନ୍ଦନେନାନିମିଷେଣ ଜିଷ୍ଣୁନା ଯୁତ୍କାରେଣ ଦୁଶ୍ଚ୍ୟବନେନ ଧୃଷ୍ଣୁନା । ତଦିନ୍ଦ୍ରେଣ ଜୟତ ତତ୍ସହଧ୍ୱଂ ଯୁଧୋ ନର ଇଷୁ-ହସ୍ତେନ ବୃଷ୍ଣା ॥୨॥ ସ ଇଷୁହସ୍ତୈଃ ସ ନିଷଙ୍ଗିଭିର୍ବଶୀ ସଗୁଁସ୍ରଷ୍ଟା ସ ଯୁଧ ଇନ୍ଦ୍ରୋ ଗଣେନ । ସଗୁଁସୃଷ୍ଟଜିତ୍ସୋମପା ବାହୁଶର୍ଧ୍ୟୁଗ୍ରଧନ୍ୱା ପ୍ରତିହିତାଭିରସ୍ତା ॥୩॥

---

## ତୃତୀୟ ଅଧ୍ୟାୟ

## (ଅପ୍ରତିରଥସୂକ୍ତ)

**ମନ୍ତ୍ରସଂଖ୍ୟା (୧) :-** ଯଜୁର୍ବେଦ ଅ.୩୮/୩୩ : ଆଶୁଃ ଶିଶାନୋ - (ଏହି ଅଧ୍ୟାୟର ମନ୍ତ୍ରମାନଙ୍କରେ ଇନ୍ଦ୍ରଙ୍କ ଜୟଗାଥା ବିଷୟରେ ବର୍ଣ୍ଣନା କରାଯାଇଅଛି ।) ଶୀଘ୍ରଗାମୀ, ଅତି ତୀକ୍ଷ୍ଣ ଓ ବୃଷଭ ଭଳି ଅତ୍ୟନ୍ତ ଭୟଙ୍କର ଘାତକସ୍ୱରୂପ ତଥା ମନୁଷ୍ୟମାନଙ୍କ ପାଇଁ ଭୀତିପ୍ରଦ ହେତୁ ଚିତ୍ତଚଞ୍ଚଳତା ଉତ୍ପାଦକ ଓ କ୍ରନ୍ଦନଜନକ ଇନ୍ଦ୍ରଙ୍କ ଆୟୁଧ ବଜ୍ର, ଯାହାଦ୍ୱାରା ଶତସଂଖ୍ୟକ ଶତ୍ରୁସେନାଙ୍କୁ ଇନ୍ଦ୍ର ଏକାକୀ ପରାହତ କରିବା ପାଇଁ ସମର୍ଥ ଅଟନ୍ତି ।

**ମନ୍ତ୍ରସଂଖ୍ୟା (୨) :-** ଯଜୁର୍ବେଦ ଅ.୩୮/୩୪ : ସଂ କ୍ରନ୍ଦନେନ - ହେ ଯୋଦ୍ଧା ମନୁଷ୍ୟମାନେ **!** ପ୍ରଚଣ୍ଡ ଶବ୍ଦକାରୀ, ଏକ ଚିତ୍ତରେ ବିଜୟକାମୀ ଅଥଚ ସହନଶୀଳ ଓ ଜୟଶୀଳ, ନିର୍ଭିକ ବାଣଧାରୀ, କାମନାପୂର୍ତ୍ତିପ୍ରଦ ଓ ଦୁର୍ଜୟ ଭାବ ସମ୍ପନ୍ନ ଇନ୍ଦ୍ରଦେବଙ୍କୁ ପ୍ରସନ୍ନ କରି ଶତ୍ରୁବଳକୁ ବିନାଶ କର ।

**ମନ୍ତ୍ରସଂଖ୍ୟା (୩) :-** ଯଜୁର୍ବେଦ ଅ.୩୮/୩୫ : ସ ଇଷୁହସ୍ତୈଃ - ସେହି ଇନ୍ଦ୍ରଙ୍କୁ ପ୍ରଣାମ, ସେ ବଶୀ ଅର୍ଥାତ୍ ସମସ୍ତ ଶତ୍ରୁଗଣଙ୍କୁ ଯୁଦ୍ଧରେ ତୁଣୀରସ୍ଥ ବାଣଦ୍ୱାରା ପରାହତ କରି ବଶୀଭୂତ କରିଅଛନ୍ତି । ସେ ଶ୍ରେଷ୍ଠ ଧନୁର୍ଧାରୀ, ଯଜ୍ଞରେ ସୋମ ପାନକାରୀ, ବାହୁବଳୀ ଏଣୁ ଆମର ରକ୍ଷାକର୍ତ୍ତା ଅଟନ୍ତି ।

ବୃହସ୍ପତେ ପରିଦୀୟା ରଥେନ ରକ୍ଷୋହାମିତ୍ରାଁ୩ ଅପବାଧମାନଃ ।
ପ୍ରଭଞ୍ଜନ୍‌ସେନାଃ ପ୍ରମୃଣୋ ଯୁଧାଜୟନ୍ନସ୍ମାକମେଧବିତା ରଥାନାମ୍ ॥୪॥
ବଳବିଜ୍ଞାୟ ସ୍ଥବିରଃ ପ୍ରବୀରଃ ସହସ୍ୱାନ୍ ବାଜୀ ସହମାନ ଉଗ୍ରଃ ।
ଅଭିବୀରୋ ଅଭିସତ୍ୱା ସହୋଜା ଜୈତ୍ରମିନ୍ଦ୍ର ରଥମାତିଷ୍ଠ ଗୋବିତ୍ ॥୫॥
ଗୋତ୍ରଭିଦଂ ଗୋବିଦଂ ବଜ୍ରବାହୁଂ ଜୟନ୍ତମଜ୍ମ ପ୍ରମୃଣନ୍ତମୋଜସା । ଇମଗୁଁ
ସଜାତା ଅନୁବୀରୟଧ୍ୱମିନ୍ଦ୍ରଗୁଁ ସଖାୟୋ ଅନୁ ସଗୁଁରଭଧ୍ୱମ୍ ॥୬॥ ଅଭି
ଗୋତ୍ରାଣି ସହସା ଗାହମାନୋଽଦୟୋ ବୀରଃ ଶତମନ୍ୟୁରିନ୍ଦ୍ରଃ । ଦୁଶ୍ଚ୍ୟବନଃ
ପୃତନାଷାଡ୍‌ୟୁଧ୍ୟୋଽସ୍ମାକଗୁଁ ସେନା ଅବତୁ ପ୍ରଯୁତ୍ସୁ ॥୭॥

---

**ମନ୍ତ୍ରସଂଖ୍ୟା (୪) :-** ଯଜୁର୍ବେଦ ଅ.୩୮/୩୬ : ବୃହସ୍ପତେ - ହେ ବୃହସ୍ପତିସ୍ୱରୂପ ଇନ୍ଦ୍ର ! (ମତାନ୍ତରରେ ଇନ୍ଦ୍ରାଦି ଦେବଗଣଙ୍କ ପୁରୋହିତ ରୂପରେ ବୃହସ୍ପତିଙ୍କୁ ସ୍ତୁତି କରାଯାଇଅଛି) ତୁମେ ରଥରେ ସର୍ବତ୍ର ଭ୍ରମଣ କର । ତୁମେ ରାକ୍ଷସମାନଙ୍କ ହତ୍ୟାକାରୀ, ହିଂସକ ଶତ୍ରୁସେନାଙ୍କ ପ୍ରପୀଡକ ଅଟ ।

**ମନ୍ତ୍ରସଂଖ୍ୟା (୫) :-** ଯଜୁର୍ବେଦ ଅ.୩୮/୩୭ : ବଳବିଜ୍ଞାୟଃ - ସମସ୍ତ ଶତ୍ରୁ-ବଳକୁ ଜାଣିପାରୁଥିବା ଚିରନ୍ତନ ସର୍ବାନୁଶାସକ, ପ୍ରଚଣ୍ଡ ପରାକ୍ରମୀ ବୀର, ଅନେକ ବୀରଗଣ ବେଷ୍ଟିତ ଯୁଦ୍ଧରେ ଅତ୍ୟନ୍ତ ପାରଙ୍ଗମ ଓ ଶତ୍ରୁ ସମ୍ମୁଖରେ କ୍ରୂର ଅଥଚ ସ୍ତୁତିଜ୍ଞ ତଥା ସର୍ବପ୍ରାଣୀ ସଂରକ୍ଷକ ହେ ଇନ୍ଦ୍ର ! ତୁମେ ଜୟଶୀଳ ରଥରେ ଆରୋହଣ କର ।

**ମନ୍ତ୍ରସଂଖ୍ୟା (୬) :-** ଯଜୁର୍ବେଦ ଅ.୩୮/୩୮ : ଗୋତ୍ରଭିଦଂ - ହେ ସମାନ ଜନ୍ମା ବନ୍ଧୁ ଦେବଗଣ ! ଏହି ପରାକ୍ରମୀ ଇନ୍ଦ୍ରଙ୍କୁ ଅନୁଗମନ କର ଓ ପ୍ରୋତ୍ସାହିତ କର, (ଅଥବା ଗୋବିଦଂ - ଅର୍ଥାତ୍ ଶାସ୍ତ୍ରଜ୍ଞ ବଜ୍ରପାଣି ଇନ୍ଦ୍ରଙ୍କୁ, ପକ୍ଷାନ୍ତରରେ ଗୋତ୍ର ଅର୍ଥାତ୍ ମେଘକୁ ଭେଦ କରିପାରୁଥିବା ଇନ୍ଦ୍ରଙ୍କୁ ପ୍ରୋତ୍ସାହିତ କର) ଯିଏ କି ଅଜ୍ମ (ଯୁଦ୍ଧର ନାମ) ସଂଗ୍ରାମରେ ନିଜର ବଳ ଓ ପରାକ୍ରମଦ୍ୱାରା ଅସୁର ସୈନ୍ୟଙ୍କୁ ବିନାଶ କରନ୍ତି ।

**ମନ୍ତ୍ରସଂଖ୍ୟା (୭) :-** ଯଜୁର୍ବେଦ ଅ.୩୮/୩୯ : ଅଭିଗୋତ୍ରାଣି - ଗୋତ୍ର ଅର୍ଥାତ୍ ଅସୁରକୁଳକୁ (ଅଥବା ମେଘସମୂହକୁ) ନିଜ ପରାକ୍ରମଦ୍ୱାରା ଆନ୍ଦୋଳିତ କରୁଥିବା

ଇନ୍ଦ୍ର ଆସାଂ ନେତା ବୃହସ୍ପତିର୍ଦକ୍ଷିଣା ଯଜ୍ଞଃ ପୁର ଏତୁ ସୋମଃ । ଦେବସେନାନାମଭିଭଞ୍ଜତୀନାଂ ଜୟନ୍ତୀନାଂ ମରୁତୋ ଯନ୍ତ୍ୱଗ୍ରମ୍ ॥୮॥ ଇନ୍ଦ୍ରସ୍ୟ ବୃଷ୍ଣୋ ବରୁଣସ୍ୟ ରାଜ୍ଞ ଆଦିତ୍ୟାନାଂ ମରୁତାଗୁଁ ଶର୍ଧ ଉଗ୍ରମ୍ । ମହାମନସାଂ ଭୁବନଚ୍ୟବାନାଂ ଘୋଷୋ ଦେବାନାଂ ଜୟତାମୁଦସ୍ଥାତ୍ ॥୯॥ ଉଦ୍ଧର୍ଷୟ ମଘବନ୍ନାୟୁଧାନ୍ୟୁସତ୍ୱନାଂ ମାମକାନାଂ ମନାଗୁଁସି । ଉଦ୍‌ବୃତ୍ରହନ୍ ବାଜିନାଂ ବାଜିନାନ୍ୟୁଦ୍ରଥାନାଂ ଜୟତାଂ ଯନ୍ତୁ ଘୋଷାଃ ॥୧୦॥ ଅସ୍ମାକମିନ୍ଦ୍ରଃ ସମୃତେଷୁ ଧ୍ୱଜେଷ୍ୱସ୍ମାକଂ ଯା ଇଷବସ୍ତା ଜୟନ୍ତୁ । ଅସ୍ମାକଂ ବୀରା ଉତ୍ତରେ ଭବନ୍ତ୍ୱସ୍ମାଁ ଉ ଦେବା ଅବତା ହବେଷୁ ॥୧୧॥

---

ନିର୍ଦ୍ଦୟ, ବୀର, ଶତ ଯଜ୍ଞସମ୍ପନ୍ନକାରୀ ଅଥବା ବହୁ କ୍ରୋଧୀ, ଅପ୍ରତିଦ୍ୱନ୍ଦ୍ୱୀ ଯୋଦ୍ଧା, ଅଦମ୍ୟ ବଳବାନ୍ ଇନ୍ଦ୍ରଦେବ ଯୁଦ୍ଧରେ ଆମର ସୈନ୍ୟବଳକୁ ରକ୍ଷା କରନ୍ତୁ ।

**ମନ୍ତ୍ରସଂଖ୍ୟା (୮) :-** ଯଜୁର୍ବେଦ ଅ.୩୮/୪୦ : ଇନ୍ଦ୍ର ଆସାଂ ନେତା - ଶତ୍ରୁଙ୍କର ଦମନକ୍ଷମ ବିଜୟୀ ଇନ୍ଦ୍ର ଓ ବୃହସ୍ପତି ଦେବସେନାଙ୍କ ନେତା ହୁଅନ୍ତୁ । ଯଜ୍ଞର ଅଧିଷ୍ଠାତା ଯଜ୍ଞପୁରୁଷ ବିଷ୍ଣୁ ଦକ୍ଷିଣ ଦିଗକୁ ରକ୍ଷା କରନ୍ତୁ । ସୋମ (ଚନ୍ଦ୍ର) ଦେବତା ଅଗ୍ରଭାଗକୁ ରକ୍ଷା କରନ୍ତୁ । ଶତ୍ରୁଗଣଙ୍କ ସେନାକୁ ଖଣ୍ଡ ବିଖଣ୍ଡ କରିପାରୁଥିବା ଦେବସେନାଙ୍କ ଅଗ୍ରଭାଗକୁ ମରୁଦ୍‌ଗଣୀୟ ଦେବତାମାନେ ଯାଆନ୍ତୁ ।

**ମନ୍ତ୍ରସଂଖ୍ୟା (୯) :-** ଯଜୁର୍ବେଦ ଅ.୩୮/୪୧ : ଇନ୍ଦ୍ରସ୍ୟ ବୃଷ୍ଣୋ - କାମ୍ୟଫଳପ୍ରଦାତା ଇନ୍ଦ୍ର, ରାଜା ବରୁଣ, ଆଦିତ୍ୟଗଣ ଓ ମରୁଦ୍‌ଗଣଙ୍କ ଉତ୍କୃଷ୍ଟ ବଳ ଏବଂ ଉଚ୍ଚମନା ତଥା ଯୁଦ୍ଧରେ ସ୍ଥିରଚିତ୍ତ ସମ୍ପନ୍ନ ଦେବଗଣ ସମସ୍ତ ଭୁବନକୁ ଉତ୍ତୁଙ୍ଗ ବିଜୟଘୋଷଦ୍ୱାରା ପ୍ରକମ୍ପିତ କରନ୍ତୁ ।

**ମନ୍ତ୍ରସଂଖ୍ୟା (୧୦) :-** ଯଜୁର୍ବେଦ ଅ.୩୮/୪୨ : ଉଦ୍ଧର୍ଷୟ ମଘବନ୍ - ହେ ଧନବାନ୍ ଇନ୍ଦ୍ର ! ଆୟୁଧଗୁଡ଼ିକୁ ହର୍ଷମୁଖରିତ (ଅଧିକ ଶାଣିତ) କର, ମୋର ଏବଂ ସମସ୍ତ ମନୁଷ୍ୟମାନଙ୍କର ମନକୁ ଉତ୍‌ଫୁଲ୍ଲିତ କର । ହେ ବୃତ୍ରହା (ଇନ୍ଦ୍ର) ! ଅଶ୍ୱମାନଙ୍କୁ ଶୀଘ୍ରଗାମୀ କର । ବିଜୟଶୀଳ ରଥଗୁଡ଼ିକ ଶବ୍ଦମୁଖରିତ ହେଉ ।

**ମନ୍ତ୍ରସଂଖ୍ୟା (୧୧) :-** ଯଜୁର୍ବେଦ ଅ.୩୮/୪୩ : ଅସ୍ମାକମିନ୍ଦ୍ର - ଶତ୍ରୁମାନଙ୍କ

ଅମୀଷାଂ ଚିତ୍ତଂ ପ୍ରତିଲୋଭୟନ୍ତୀ ଗୃହାଣାଙ୍ଗାନ୍ୟପ୍ୱେ ପରେହି । ଅଭି ପ୍ରେହି ନିର୍ଦ୍ଦହ ହୃତ୍ସୁ ଶୋକୈରନ୍ଧେନାମିତ୍ରାସ୍ତମସା ସଚନ୍ତାମ୍ ॥୧୨॥ ଅବସୃଷ୍ଟା ପରାପତ ଶରବ୍ୟେ ବ୍ରହ୍ମସଗୁଁଶିତେ । ଗଚ୍ଛାମିତ୍ରାନ୍ ପ୍ରପଦ୍ୟସ୍ୱ ମାମୀଷାଂ କଞ୍ଚନୋଚ୍ଛିଷଃ ॥୧୩॥ ପ୍ରେତା ଜୟତା ନର ଇନ୍ଦ୍ରୋ ବଃ ଶର୍ମ ଯଚ୍ଛତୁ । ଉଗ୍ରା ବଃ ସନ୍ତୁ ବାହବୋଽନାଧୃଷ୍ୟା ଯଥାସଥ ॥୧୪॥

---

ଉଡ୍ଡୀୟମାନ ବିଜୟଧ୍ୱଜରୁ ଆମକୁ ଓ ଆମ ଧ୍ୱଜକୁ ରକ୍ଷା କରନ୍ତୁ । ଇନ୍ଦ୍ରଙ୍କ କୃପା ବଳରେ ଆମ୍ଭ ପ୍ରେରିତ ବାଣଗୁଡ଼ିକ ଶତ୍ରୁସଂହାର ପୂର୍ବକ ବିଜୟୀ ହୁଅନ୍ତୁ । ଆମ୍ଭର ବୀର ସୈନ୍ୟମାନେ ଶତ୍ରୁମାନଙ୍କଠାରୁ ଉତ୍କୃଷ୍ଟ ହୁଅନ୍ତୁ । ହେ ଦେବଗଣ ! ଏହିପରି ଆମ୍ଭମାନଙ୍କଦ୍ୱାରା ପ୍ରଦତ୍ତ ହବନକୁ ସ୍ୱୀକାର କରି ଆମ୍ଭମାନଙ୍କୁ ସର୍ବଦା ରକ୍ଷା କରନ୍ତୁ ।

**ମନ୍ତ୍ରସଂଖ୍ୟା (୧୨) :-** ଯଜୁର୍ବେଦ ଅ.୩୮/୪୪ : ଅମୀଷାଂ ଚିତ୍ତଂ- ବ୍ୟାଧି ଓ ଭୟକୁ ଦୂର କରୁଥିବା ହେ ଦେବତାମାନେ ! ଇନ୍ଦ୍ର ବିରୋଧୀ ଶତ୍ରୁମାନଙ୍କ ଚିତ୍ତକୁ ମୋହଗ୍ରସ୍ତ କରି ସେମାନଙ୍କ ଅଙ୍ଗ (ସୈନ୍ୟ)କୁ ବାରମ୍ବାର ପରାଭୂତ କରନ୍ତୁ । ସେମାନଙ୍କର (ଶତ୍ରୁସୈନ୍ୟଙ୍କ)ହୃଦୟରେ ଧନ ଓ ପୁତ୍ର ନାଶ ନିମିତ୍ତ ଶୋକ ଉଦ୍ରେକ ହେଉ, ଗାଢ଼ ଅନ୍ଧକାର (ଦୁଃଖ)ରେ ସେମାନେ ମ୍ରିୟମାଣ ହୁଅନ୍ତୁ ।

**ମନ୍ତ୍ରସଂଖ୍ୟା (୧୩) :-** ଯଜୁର୍ବେଦ ଅ.୩୮/୪୫ : ଅବସୃଷ୍ଟା ପରାପତ- ବ୍ରହ୍ମାଙ୍କ ମନ୍ତ୍ରଦ୍ୱାରା ତୀକ୍ଷ୍ଣ କରାଯାଇଥିବା ହେ ଶରବ୍ୟ (ଶରମୟ ବାଣ) ! ତୁମେ ଆମଦ୍ୱାରା ପ୍ରେଷିତ ହୋଇ ସମସ୍ତ ଶତ୍ରୁମାନଙ୍କ ଉପରେ ନିପତିତ ହୁଅ ଓ ସେମାନଙ୍କ ଶରୀରରେ ପ୍ରବେଶ କର ଯେପରି ତାଙ୍କ ମଧ୍ୟରୁ କେହି ଜଣେ ହେଲେ ବି ରକ୍ଷା ପାଇପାରିବ ନାହିଁ ।

**ମନ୍ତ୍ରସଂଖ୍ୟା (୧୪) :-** ଯଜୁର୍ବେଦ ଅ.୩୮/୪୬ : ପ୍ରେତା ଜୟତା - ହେ ଆମର ଯୋଦ୍ଧାମାନେ ! ତୁମ୍ଭେମାନେ ଶତ୍ରୁସୈନ୍ୟ ଆଡକୁ ଯାଅ ଏବଂ ବିଜୟଲାଭ କରି ଆସ । ଇନ୍ଦ୍ର ତୁମ୍ଭମାନଙ୍କୁ ବିଜୟଲାଭର ସୁଖ ପ୍ରଦାନ କରନ୍ତୁ । ଏହା ସହିତ ତୁମ୍ଭେମାନେ କାହାଦ୍ୱାରା ତିରସ୍କୃତ ନ ହୋଇ ନିଜର ବାହୁଦ୍ୱୟକୁ ଉଗ୍ର ରୂପରେ ଧାରଣ କର ।

ଅସୌ ଯା ସେନା ମରୁତଃ ପରେଷାମଭ୍ୟୈତି ନ ଓଜସା ସ୍ପର୍ଧମାନା । ତାଂ ଗୂହତ ତମସାପବ୍ରତେନ ଯଥାମୀ ଅନ୍ୟୋ ଅନ୍ୟଂ ନ ଜାନନ୍ ॥୧୫॥ ଯତ୍ର ବାଣାଃ ସମ୍ପତନ୍ତି କୁମାରା ବିଶିଖା ଇବ । ତନ୍ନ ଇନ୍ଦ୍ରୋ ବୃହସ୍ପତିରଦିତିଃ ଶର୍ମ ଯଚ୍ଛତୁ ବିଶ୍ୱାହା ଶର୍ମ ଯଚ୍ଛତୁ ॥୧୬॥ ମର୍ମାଣି ତେ ବର୍ମଣା ଛାଦୟାମି ସୋମସ୍ତ୍ୱା ରାଜାମୃତେନାନୁବସ୍ତାମ୍ । ଉରୋର୍ବରୀୟୋ ବରୁଣସ୍ତେ କୃଣୋତୁ ଜୟନ୍ତଂ ତ୍ୱାନୁ ଦେବା ମଦନ୍ତୁ ॥୧୭॥

---

**ମନ୍ତ୍ରସଂଖ୍ୟା (୧୫) :-** ଯଜୁର୍ବେଦ ଅ.୩୮/୪୭ : ଅସୌ ଯା ସେନା - ହେ ମରୁତ୍ ଦେବତା ! ଯେଉଁ ପ୍ରସିଦ୍ଧ ଶତ୍ରୁଗଣଙ୍କ ସେନା ବଳ ଓ ସ୍ପର୍ଦ୍ଧା ସହିତ ଆମ ଆଡକୁ ମାଡ଼ି ଆସୁଅଛନ୍ତି ସେମାନଙ୍କୁ ଅନ୍ଧକାରାଚ୍ଛନ୍ନ (ମୋହଗ୍ରସ୍ତ) କରନ୍ତୁ, ଯାହ ଫଳରେ ସେମାନେ ପରସ୍ପରକୁ ନ ଜାଣିପାରି କର୍ମରୁ ବିରତ ହେବା ପାଇଁ ବାଧ ହେବେ ।

**ମନ୍ତ୍ରସଂଖ୍ୟା (୧୬) :-** ଯଜୁର୍ବେଦ ଅ.୩୮/୪୮ : ଯତ୍ର ବାଣାଃ - ମୁଣ୍ଡିତ ମସ୍ତକରେ ଚପଳ ବାଳକମାନେ ଯେପରି ଇତସ୍ତତଃ ଭ୍ରମଣ କରନ୍ତି (ଅଥବା ବାଳକମାନଙ୍କ ମୁଣ୍ଡରେ ଯେପରି ଘନ କେଶଗୁଡ଼ିକ ବିକୀର୍ଣ୍ଣ ଭାବରେ ଇତସ୍ତତଃ ରହିଥାଆନ୍ତି), ଠିକ୍ ସେହିପରି ଯୁଦ୍ଧରେ ଶତ୍ରୁପକ୍ଷର ସୈନ୍ୟଗୁଡ଼ିକ ଇତସ୍ତତଃ ଭାବରେ (ଲକ୍ଷ୍ୟଭ୍ରଷ୍ଟ ହୋଇ) ପତିତ ହୁଅନ୍ତୁ, ଯାହା ଫଳରେ ଇନ୍ଦ୍ର, ବୃହସ୍ପତି ଓ ଇନ୍ଦ୍ରଙ୍କ ମାତା ଅଦିତି ସର୍ବଦା ଆମକୁ ସୁଖ ପ୍ରଦାନ କରିବେ ।

**ମନ୍ତ୍ରସଂଖ୍ୟା (୧୭) :-** ଯଜୁର୍ବେଦ ଅ.୩୮/୪୯ : ମର୍ମାଣି ତେ - (ମହାବ୍ରତ ଯଜ୍ଞରେ ଅଧ୍ୱର୍ଯ୍ୟୁ କ୍ଷତ୍ରିୟ ଯଜମାନଙ୍କୁ ପରିଧାନ ନିମିତ୍ତ କବଚ ପ୍ରଦାନ ସମୟରେ କହୁଅଛନ୍ତି) ହେ ବୀର ଯଜମାନ ! ତୁମର ମର୍ମ (ଶରୀରର ପ୍ରମୁଖ ସ୍ଥାନ)ଗୁଡ଼ିକ ବର୍ମ (କବଚ) ଦ୍ୱାରା ଆଚ୍ଛାଦନ କରୁଅଛି । ରାଜା ସୋମ ମରଣ ନିବାରକ ଭାବରେ କବଚ ସ୍ୱରୂପ ହୁଅନ୍ତୁ । ବରୁଣ ତୁମର ଉରୁଦେଶକୁ (ଜଙ୍ଘକୁ) ଅଧିକ ଶକ୍ତିଶାଳୀ କରନ୍ତୁ । ଦେବତାମାନେ ବିଜୟପ୍ରାପ୍ତି ନିମିତ୍ତ ତୁମ୍ଭଙ୍କୁ ଅଧିକ ଉତ୍ସାହିତ କରନ୍ତୁ ।

—x—

# ଚତୁର୍ଥାଧ୍ୟାୟଃ

## (ବିଭ୍ରାଟ୍‌ସୂକ୍ତମ୍ / ସୌରସୂକ୍ତମ୍)

ହରିଃ ଓଁ ବିଭ୍ରାଡ୍ ବୃହତ୍‌ପିବତୁ ସୋମ୍ୟଂ ମଧ୍ୱାୟୁର୍ଦଧଦ୍‌ଯଜ୍ଞପତା ଅବିହ୍ରୁତମ୍ । ବାତଜୂତୋ ଯୋ ଅଭିରକ୍ଷତି ତ୍ମନା ପ୍ରଜାଃ ପୁପୋଷ ପୁରୁଧା ବି ରାଜତି ॥୧॥ ଉଦୁ ତ୍ୟଂ ଜାତବେଦସଂ ଦେବଂ ବହନ୍ତି କେତବଃ । ଦୃଶେ ବିଶ୍ୱାୟ ସୂର୍ଯମ୍ ॥୨॥ ଯେନା ପାବକ ଚକ୍ଷସା ଭୁରଣ୍ୟନ୍ତଂ ଜନାଁ୨ ଅନୁ । ତ୍ୱଂ ବରୁଣ ପଶ୍ୟସି ॥୩॥ ଦୈବ୍ୟା ଅଧ୍ୱର୍ଯୂ ଆଗତଗୁଁ ରଥେନ ସୂର୍ଯ୍ୟତ୍ୱଚା । ମଧ୍ୱା ଯଜ୍ଞଗୁଁ ସମଞ୍ଜାଥେ । ତଂ ପ୍ରତ୍ନଥାୟଂ ବେନଶ୍ଚୋଦୟଚ୍ଛିତ୍ରଂ ଦେବାନାମ୍ ॥୪॥

---

# ଚତୁର୍ଥ ଅଧ୍ୟାୟ

## (ବିଭ୍ରାଡ୍ ସୂକ୍ତ / ସୌରସୂକ୍ତ)

**ମନ୍ତ୍ରସଂଖ୍ୟା (୧) :-** ଯଜୁର୍ବେଦ ଅ.୩୨/୩୦ : ବିଭ୍ରାଡ୍ ବୃହତ୍ - ଦୀପ୍ତିମାନ୍ ସୂର୍ଯ୍ୟ ପ୍ରଜାମାନଙ୍କୁ ଅଖଣ୍ଡ ଆୟୁ ପ୍ରଦାନ କରି ରକ୍ଷା କରିବା ସହିତ ପାଳନ ଓ ପୋଷଣ ମଧ କରୁଅଛନ୍ତି । ସେ ମଧୁର ସ୍ୱାଦବିଶିଷ୍ଟ ସୋମରୂପକ ହବିଃ (ଯଜ୍ଞୀୟ ଦ୍ରବ୍ୟ)କୁ ପାନ କରନ୍ତୁ । ସେ ବାୟୁଯୁକ୍ତ ହୋଇ ସୂର୍ଯ୍ୟମଣ୍ଡଳରେ ଭ୍ରମଣ କରି ବିବିଧ ରୂପରେ ଶୋଭାପାଉଅଛନ୍ତି ।

**ମନ୍ତ୍ରସଂଖ୍ୟା (୨) :-** ଯଜୁର୍ବେଦ ଅ.୩୨/୩୧ : ଉଦୁତ୍ୟଂ ଜାତବେଦସଂ- ପ୍ରଜାମାନଙ୍କ ବିଷୟରେ ସମସ୍ତ କଥାକୁ ଜାଣିପାରୁଥିବା ହେତୁ ଜାତପ୍ରଜ୍ଞ ସୂର୍ଯ୍ୟଦେବତା ଦୀପ୍ତିମାନ୍ କିରଣ ସ୍ୱରୂପ ସମସ୍ତ ଜ୍ଞାନର ଆକର ଓ ବିଶ୍ୱଦ୍ରଷ୍ଟା ଅଟନ୍ତି ।

**ମନ୍ତ୍ରସଂଖ୍ୟା (୩) :-** ଯଜୁର୍ବେଦ ଅ.୩୨/୩୨ : ଯେନା ପାବକ - ହେ ପାଳନକର୍ତ୍ତା ବରୁଣସ୍ୱରୂପ ସୂର୍ଯ୍ୟଦେବ ! ତୁମେ ସ୍ୱର୍ଲୋକକୁ ଗମନ କଲାବେଳେ ଯଜମାନଙ୍କୁ ଭୁରଣ୍ୟୁ (କ୍ଷିପ୍ର ଗତିରେ ତଳକୁ ଆସିପାରୁଥିବା ପକ୍ଷୀବିଶେଷ) ପକ୍ଷୀଭଳି ଦେଖୁଅଛ ।

**ମନ୍ତ୍ରସଂଖ୍ୟା (୪) :-** ଯଜୁର୍ବେଦ ଅ.୩୨/୩୩ : ଦୈବ୍ୟା ଅଧ୍ୱର୍ଯୂ - ହେ ଦୈବୀ ଓ ଅଧ୍ୱର୍ଯୁ ସଂଜ୍ଞକ ଅଶ୍ୱିନିଦ୍ୱୟ ! ତୁମ୍ଭେ ସୂର୍ଯ୍ୟଙ୍କ ଭଳି କାନ୍ତିଯୁକ୍ତ ରଥରେ ଆସି

ତଂ ପ୍ରତ୍ନଥା ପୂର୍ବଥା ବିଶ୍ୱଥେମଥା ଜ୍ୟେଷ୍ଠତାତିଂ ବର୍ହିଷଦଗୁଁ ସ୍ୱର୍ବିଦମ୍ ॥
ପ୍ରତୀଚୀନଂ ବୃଜନଂ ଦୋହସେ ଧୁନିମାଶୁଂ ଜୟନ୍ତମନୁ ଯାସୁ ବର୍ଦ୍ଧସେ ॥୫॥
ଅୟଂ ବେନଶ୍ଚୋଦୟତ୍ ପୃଶ୍ନିଗର୍ଭା ଜ୍ୟୋତିର୍ଜରାୟୂ ରଜସୋ ବିମାନେ ॥
ଇମମପାଗୁଁ ସଙ୍ଗମେ ସୂର୍ଯ୍ୟସ୍ୟ ଶିଶୁଂ ନ ବିପ୍ରା ମତିଭୀ ରିହନ୍ତି ॥୬॥ ଚିତ୍ରଂ
ଦେବାନାମୁଦଗାଦନୀକଂ ଚକ୍ଷୁର୍ମିତ୍ରସ୍ୟ ବରୁଣସ୍ୟାଗ୍ନେଃ । ଆ ପ୍ରା
ଦ୍ୟାବାପୃଥିବୀ ଅନ୍ତରିକ୍ଷଗୁଁ ସୂର୍ଯ୍ୟ ଆତ୍ମା ଜଗତସ୍ତସ୍ଥୁଷଶ୍ଚ ॥୭॥

---

ମଧୁରସ୍ୱଭାବ ବିଶିଷ୍ଟ ହବିଃ ଦ୍ୱାରା ସୋମ, ପୁରୋଡାଶ(ଯଜ୍ଞୀୟ ପିଠା), ଦଧି ଇତ୍ୟାଦିଦ୍ୱାରା ଯଜ୍ଞକୁ ସମ୍ପାଦନ କର ।

**ମନ୍ତ୍ରସଂଖ୍ୟା (୫) :-** ଯଜୁର୍ବେଦ ଅ.୭/୧୧ : ତଂ ପ୍ରତ୍ନଥା - ହେ ଦେବଶ୍ରେଷ୍ଠ ଇନ୍ଦ୍ର **!** ତୁମେ ଯଜ୍ଞମାନଙ୍କରେ ବାରମ୍ବାର ସୋମପାନଦ୍ୱାରା ଅଭିବୃଦ୍ଧି ପ୍ରାପ୍ତ ହୋଇ ବଳବତ୍ ଯଜ୍ଞ ଫଳକୁ ପ୍ରଦାନ କରୁଅଛ । ଭୃଗୁ ଇତ୍ୟାଦି ଚିରନ୍ତନ ଋଷିମାନଙ୍କର ତଥା ସମସ୍ତ ଋଷିପୁତ୍ରମାନଙ୍କର ଏବଂ ଇଦାନୀନ୍ତନ ଯଜମାନଙ୍କର ଯଜ୍ଞଫଳ ପ୍ରଦାତା, ଏଣୁ ତୁମେ ଶ୍ରେଷ୍ଠ ଓ ସ୍ତୁତିଯୋଗ୍ୟ । ତୁମେ ଯଜ୍ଞମାନଙ୍କରେ ଅଧିଷ୍ଠାନ କରି ସ୍ୱର୍ଗଲୋକକୁ ଜାଣିବା ସହିତ ଜୟଶୀଳ ଶତ୍ରୁମାନଙ୍କର ହୃତ୍କମ୍ପନ ସୃଷ୍ଟି କରୁଅଛ ।

**ମନ୍ତ୍ରସଂଖ୍ୟା (୬) :-** ଯଜୁର୍ବେଦ ଅ.୭/୧୫ : ଅୟଂ ବେନଶ୍ଚୋଦୟତ୍ - ଏହି କମନୀୟ ଚନ୍ଦ୍ରମା ଗ୍ରୀଷ୍ମକାଳର ଶେଷଭାଗରେ ସ୍ୱର୍ଗଲୋକସ୍ଥିତ ରବିଙ୍କ ସହାୟତାରେ ଜଳ ସୃଷ୍ଟି କରି ବର୍ଷା ପ୍ରଦାନ କରନ୍ତି । ସେହି ଚନ୍ଦ୍ର ସ୍ତୋତ୍ରାଦିଦ୍ୱାରା ସୋମଲତା ରୂପରେ ପୂଜିତ ହୁଅନ୍ତି ଓ ବ୍ରାହ୍ମଣମାନଙ୍କଦ୍ୱାରା ଶିଶୁ ଭଳି ପରିପାଳିତ ହୁଅନ୍ତି ।

**ମନ୍ତ୍ରସଂଖ୍ୟା (୭) :-** ଯଜୁର୍ବେଦ ଅ.୯/୭ : ଚିତ୍ରଂ ଦେବାନାମୁଦଗାଦନିକଂ- ସୂର୍ଯ୍ୟ ଆଶ୍ଚର୍ଯ୍ୟ ଭାବରେ ନିଜ କିରଣସମୂହଦ୍ୱାରା ସ୍ୱର୍ଲୋକକୁ ଉଦ୍ଭାସିତ କରି ଉଦୟ ହେଉଅଛନ୍ତି । ମିତ୍ର, ବରୁଣ, ଅଗ୍ନିଙ୍କ ଚକ୍ଷୁ ସଦୃଶ ସେ ସମଗ୍ର ସ୍ୱର୍ଗଲୋକ, ଭୂଲୋକ ଓ ଆକାଶକୁ ନିଜ ତେଜଦ୍ୱାରା ପ୍ରକାଶ କରିବା ସହିତ ଜଗତର ଜଙ୍ଗମ ସ୍ଥାବରାଦି ସମସ୍ତଙ୍କ ପ୍ରାଣଦାତା ଓ ଆତ୍ମସ୍ୱରୂପ ଅଟନ୍ତି ।

ଆନ ଇଡ଼ାଭିର୍ବିଦଥେ ସୁଶସ୍ତି ବିଶ୍ୱାନରଃ ସବିତା ଦେବ ଏତୁ । ଅପି ଯଥା ଯୁବାନୋ ମତ୍ସଥା ନୋ ବିଶ୍ୱଂ ଜଗଦଭିପିତ୍ୱେ ମନୀଷା ॥୮॥ ଯଦଦ୍ୟ କଚ୍ଚ ବୃତ୍ରହନ୍ନୁଦଗା ଅଭି ସୂର୍ଯ ॥ ସର୍ବଂ ତଦିନ୍ଦ୍ର ତେ ବଶେ ॥୯॥ ତରଣିର୍ବିଶ୍ୱଦର୍ଶତୋ ଜ୍ୟୋତିଷ୍କୃଦସି ସୂର୍ଯ । ବିଶ୍ୱମା ଭାସି ରୋଚନମ୍ ॥୧୦॥ ତତ୍ସୂର୍ଯସ୍ୟ ଦେବତ୍ୱଂ ତନ୍ମହିତ୍ୱଂ ମଧ୍ୟା କର୍ତୋର୍ବିତତଗୁଁ ସଂଜଭାର । ଯଦେଦଯୁକ୍ତ ହରିତଃ ସଧସ୍ଥାଦାଦ୍ରାତ୍ରୀ ବାସସ୍ତନୁତେ ସିମସ୍ମୈ ॥୧୧॥

---

**ମନ୍ତ୍ରସଂଖ୍ୟା (୮) :-** ଯଜୁର୍ବେଦ ଅ.୩୨/୩୪ : ଆ ନ ଇଡାଭିଃ – ବିଶ୍ୱର ସମସ୍ତ ପ୍ରାଣୀଙ୍କ ହିତକାରୀ ସବିତା (ସୂର୍ଯ୍ୟ) ଦେବତା ଆମ୍ଭର ସ୍ତୁତିଦ୍ୱାରା ସନ୍ତୁଷ୍ଟ ହୋଇ ଯଜ୍ଞଗୃହକୁ ଆସନ୍ତୁ । ସମସ୍ତେ ପ୍ରଶଂସନୀୟ ଇଡା (ଯଜ୍ଞୀୟ ଦ୍ରବ୍ୟବିଶେଷ) ଭକ୍ଷଣ କରନ୍ତୁ । ହେ ଜରାରହିତ ଅମର ଦେବତାମାନେ ! ଆସିବା ସମୟରେ ଯେଭଳି ତୁମ୍ଭେମାନେ ତୃପ୍ତ ଓ ଆନନ୍ଦିତ ଥିଲ, ଠିକ୍ ସେହିଭଳି ଆମ୍ଭର ପୁତ୍ର, ପଶୁ ଇତ୍ୟାଦିଙ୍କୁ ମନ ଓ ବୁଦ୍ଧିରେ ତୃପ୍ତି ପ୍ରଦାନ କର ।

**ମନ୍ତ୍ରସଂଖ୍ୟା (୯) :-** ଯଜୁର୍ବେଦ ଅ.୩୨/୩୫ : ଯଦଦ୍ୟ କଚ୍ଚ – ହେ ବୃତ୍ରହା (ବୃତ୍ରମନ୍ଧକାରଂ ଶାର୍ବରଂ ହନ୍ତୀତି ବୃତ୍ରହା ରବିଃ ତମୋନାଶକଃ) ସୂର୍ଯ୍ୟଦେବ! ହେ ଐଶ୍ୱର୍ଯ୍ୟଯୁକ୍ତ ଇନ୍ଦ୍ର ! ତୁମେ ଆଜି ଯେଉଁ ଆଡ଼କୁ ଯାଉଅଛ ଅଥବା ଯେଉଁ ପ୍ରାଣୀସମୂହଙ୍କୁ ତୁମେ ପ୍ରକାଶ କରୁଅଛ, ତାହା ସବୁ ତୁମ୍ଭର ବଶ ଅଟନ୍ତି ।

**ମନ୍ତ୍ରସଂଖ୍ୟା (୧୦) :-** ଯଜୁର୍ବେଦ ଅ.୩୨/୩୬ : ତରଣିର୍ବିଶ୍ୱଦର୍ଶତୋ – ହେ ସୂର୍ଯ୍ୟ ! ତୁମେ ସମସ୍ତ ତେଜର କର୍ତ୍ତା । ଅଗ୍ନି, ବିଦ୍ୟୁତ୍, ନକ୍ଷତ୍ର, ଚନ୍ଦ୍ର, ଗ୍ରହ, ତାରକା ସମସ୍ତେ ତୁମ ତେଜରେ ତେଜୀୟାନ୍ । ଆକାଶ ମାର୍ଗରେ ତୁମେ ଅତିକ୍ରମଣ କରୁଥିବାରୁ ତୁମର ଦୀପ୍ତିଦ୍ୱାରା ବିଶ୍ୱ ଦୀପ୍ତିମାନ୍ ରୂପରେ ଦର୍ଶନୀୟ ଅଟେ ।

**ମନ୍ତ୍ରସଂଖ୍ୟା (୧୧) :-** ଯଜୁର୍ବେଦ ଅ.୩୨/୩୭ : ତତ୍ସୂର୍ଯ୍ୟସ୍ୟ ଦେବତ୍ୱଂ- ସୂର୍ଯ୍ୟଙ୍କର ଦେବତ୍ୱ ଓ ମହଦୈଶ୍ୱର୍ଯ୍ୟସମ୍ପନ୍ନତ୍ୱ ପ୍ରତିପାଦିତ ହୁଏ ଯେତେବେଳେ ସେ ସମଗ୍ର ଜଗତ୍ ଉପରେ ନିଜର କିରଣସମୂହକୁ ବିସ୍ତାର କରନ୍ତି ଓ ପୁଣି ଯେତେବେଳେ ଆକାଶ ମଣ୍ଡଳରେ ବ୍ୟାପୃତ ନିଜର ପୀତ (ହରିଦ୍ରା) ବର୍ଣ୍ଣର କିରଣକୁ ସଂହରଣ କରନ୍ତି, ଯାହା ଦ୍ୱାରା ରାତ୍ରିର ଅନ୍ଧକାର ସମଗ୍ର ଜଗତରେ ବିସ୍ତୃତିଲାଭ କରେ ।

ତନ୍ମିତ୍ରସ୍ୟ ବରୁଣସ୍ୟାଭିଚକ୍ଷେ ସୂର୍ଯୋ ରୂପଂ କୃଣୁତେ ଦ୍ୟୋରୁପସ୍ଥେ ।
ଅନନ୍ତମନ୍ୟଦ୍ରୁଶଦସ୍ୟ ପାଜଃ କୃଷ୍ଣମନ୍ୟଦ୍ଧରିତଃ ସଂ ଭରନ୍ତି ॥୧୨॥
ବଣ୍ମହାଁ୨ଅସି ସୂର୍ଯ ବଡ଼ାଦିତ୍ୟ ମହାଁ୨ଅସି । ମହସ୍ତେ ସତୋ ମହିମା
ପନସ୍ୟତେଽଦ୍ଧା ଦେବ ମହାଁ୨ଅସି ॥୧୩॥ ବଟ୍ସୂର୍ଯ ଶ୍ରବସା ମହାଁ୨ଅସି
ସତ୍ରା ଦେବ ମହାଁ୨ଅସି । ମହ୍ନା ଦେବାନାମସୁର୍ଯଃ ପୁରୋହିତୋ ବିଭୁ
ଜ୍ୟୋତିରଦାଭ୍ୟମ୍ ॥୧୪॥ ଶ୍ରାୟନ୍ତ ଇବ ସୂର୍ଯ୍ୟଂ ବିଶ୍ୱେଦିନ୍ଦ୍ରସ୍ୟ ଭକ୍ଷତ ।
ବସୂନି ଜାତେ ଜନମାନ ଓଜସା ପ୍ରତି ଭାଗଂ ନ ଦୀଧିମ ॥୧୫॥

---

**ମନ୍ତ୍ରସଂଖ୍ୟା (୧୨) :-** ଯଜୁର୍ବେଦ ଅ.୩୨/୩୮ : ତନ୍ମିତ୍ରସ୍ୟ ବରୁଣସ୍ୟ- ଆକାଶସ୍ଥ ସୂର୍ଯ୍ୟ ବରୁଣଙ୍କ ରୂପ ଧାରଣ କରି ବିଶ୍ୱବାସୀଙ୍କୁ ଦେଖନ୍ତି । ସୂର୍ଯ୍ୟଙ୍କର ଦୁଇଗୋଟି ସ୍ୱରୂପ ଅଛି ଯଥା ଶୁକ୍ଳ ଓ କୃଷ୍ଣ । ମିତ୍ର (ସୁକୃତ) ଅର୍ଥାତ୍ ଶୁକ୍ଳ ରୂପରେ ସେ ଦେଦୀପ୍ୟମାନ (ଯାହାକି ବିଜ୍ଞାନଘନ ଆନନ୍ଦସ୍ୱରୂପ, ନିର୍ଗୁଣ, ଅଦ୍ୱିତୀୟ, ଇନ୍ଦ୍ରିୟାତୀତ, ଅଦ୍ୱୈତ ବ୍ରହ୍ମ) । ପୁଣି ବରୁଣ କୃଷ୍ଣ ରୂପରେ ଦୁଷ୍କୃତ, ଦ୍ୱୈତ, ସଗୁଣସ୍ୱରୂପ, ସମସ୍ତ ଇନ୍ଦ୍ରିୟ ବୃତ୍ତିକୁ ଧାରଣ କରିଥାଆନ୍ତି ।
**ମନ୍ତ୍ରସଂଖ୍ୟା (୧୩) :-** ଯଜୁର୍ବେଦ ଅ.୩୨/୩୯ : ବଣ୍ମହାଁ ଅସି – ହେ ଆଦିତ୍ୟ ! ତୁମେ ମହାନ୍ ଅଟ । ଦେବତାମାନଙ୍କ ମଧ୍ୟରେ ତୁମର ମହିମା ଅଧିକ, ଏଣୁ ସର୍ବପୂଜ୍ୟ । ହେ ଦେଦୀପ୍ୟମାନ ସୂର୍ଯ୍ୟ ! ତୁମେ ପ୍ରକୃତରେ ମହାନ୍ ।
**ମନ୍ତ୍ରସଂଖ୍ୟା (୧୪) :-** ଯଜୁର୍ବେଦ ଅ.୩୨/୪୦ : ବଟ୍ ସୂର୍ଯ୍ୟଶ୍ରବସା – ହେ ସୂର୍ଯ୍ୟଦେବ ! ତୁମେ ଧନରେ ଏବଂ ଯଶରେ ମଧ୍ୟ ମହାନ୍ । ତୁମେ ବସ୍ତୁତଃ ମହାନ୍ । ପ୍ରାଣବାନ୍ ସୂର୍ଯ୍ୟ ସ୍ୱମହିମା ଦୃଷ୍ଟିରୁ ସମସ୍ତ କର୍ମର ପ୍ରାରମ୍ଭରେ ପୂଜ୍ୟ (ସୂର୍ଯ୍ୟଙ୍କୁ ଅର୍ଘ୍ୟ ଦେବା ପରେ ଅନ୍ୟ ଦେବତାଙ୍କୁ ପୂଜା କରାଯାଇଥାଏ) । ଜ୍ୟୋତିଃ ସ୍ୱରୂପରେ ତୁମେ ବ୍ୟାପକ ଓ ଅଦମନୀୟ ଅଟ ।
**ମନ୍ତ୍ରସଂଖ୍ୟା (୧୫) :-** ଯଜୁର୍ବେଦ ଅ.୩୨/୪୧ : ଶ୍ରାୟନ୍ତ ଇବ ସୂର୍ଯ୍ୟ – ସୂର୍ଯ୍ୟଙ୍କ ରଶ୍ମି ସୂର୍ଯ୍ୟଙ୍କୁ ଆଶ୍ରୟ କରି ଇନ୍ଦ୍ରଙ୍କ ଧନବର୍ଷାକୁ ସମସ୍ତଙ୍କ ମଧ୍ୟରେ ବଣ୍ଟନ କରନ୍ତି, ଠିକ୍ ସେହି ପ୍ରକାର ଆମେ ମଧ୍ୟ ଆମ ବଂଶଜାତ ପୁତ୍ରାଦିଙ୍କ ମଧ୍ୟରେ ଉପାର୍ଜିତ ଧନକୁ ଦାୟଭାଗ ଦୃଷ୍ଟିରୁ ସମବଣ୍ଟନ କରୁଅଛୁ ।

ଅଦ୍ୟା ଦେବା ଉଦିତା ସୂର୍ଯସ୍ୟ ନିରଗୁଁହସଃ ପିପୃତା ନିରବଦ୍ୟାତ୍ । ତନ୍ନୋ ମିତ୍ରୋ ବରୁଣୋ ମାମହନ୍ତାମଦିତିଃ ସିନ୍ଧୁଃ ପୃଥିବୀ ଉତ ଦ୍ୟୌଃ ॥୧୬॥
ଆ କୃଷ୍ଣେନ ରଜସା ବର୍ତମାନୋ ନିବେଶୟନ୍ନମୃତଂ ମର୍ତ୍ୟଂ ଚ । ହିରଣ୍ୟୟେନ ସବିତା ରଥେନା ଦେବୋ ଯାତି ଭୁବନାନି ପଶ୍ୟନ୍ ॥୧୭॥

---

**ମନ୍ତ୍ରସଂଖ୍ୟା (୧୬) :-** ଯଜୁର୍ବେଦ ଅ.୩୨/୪୨ : ଅଦ୍ୟା ଦେବା - ହେ ସୂର୍ଯ୍ୟଦେବ **!** ଆଜି ଉଦୟ ହେବାମାତ୍ରେ ଆମକୁ ପୀଡା ଓ ଅପଯଶରୁ ରକ୍ଷା କର । ମିତ୍ର, ବରୁଣ, ଅଦିତି, ସିନ୍ଧୁ, ପୃଥିବୀ ଏବଂ ସ୍ୱର୍ଗ ମଧ୍ୟ ଆମକୁ ନିଷ୍କାମ ଓ ଅନିନ୍ଦିତ ରୂପରେ ଗ୍ରହଣ କରନ୍ତୁ ।

**ମନ୍ତ୍ରସଂଖ୍ୟା (୧୭) :-** ଯଜୁର୍ବେଦ ଅ.୩୨/୪୩ : ଆକୃଷ୍ଣେନ ରଜସା- ସବିତା (ସୂର୍ଯ୍ୟ) ଦେବତା ସ୍ୱର୍ଣ୍ଣନିର୍ମିତ ରଥରେ ଆସୁଅଛନ୍ତି । ରଥରେ କୃଷ୍ଣବର୍ଣ୍ଣଯୁକ୍ତ ରାତ୍ରି ସହିତ ଭ୍ରମଣ କଲାବେଳେ ଦେବତା ଓ ମନୁଷ୍ୟାଦି ପ୍ରାଣୀମାନଙ୍କୁ ନିଜ ନିଜ ସ୍ଥାନରେ ସନ୍ନିବେଶିତ କରି ଭୁବନ ସମୂହକୁ (କେଉଁ ଭୁବନରେ ସାଧୁକର୍ମ ଓ କେଉଁ ଭୁବନରେ ଅସାଧୁ କର୍ମ କରାଯାଉଅଛି) ଅବଲୋକନ କରି ଆସୁଅଛନ୍ତି ।

—x—

# ପଞ୍ଚମାଧ୍ୟାୟଃ

## (ନମକ୍ ଅଧ୍ୟାୟଃ / ରୁଦ୍ରସୂକ୍ତମ୍ / ଶତରୁଦ୍ରୀୟସୂକ୍ତମ୍)

ହରିଃ ଓଁ ନମସ୍ତେ ରୁଦ୍ର ମନ୍ୟବ ଉତୋ ତ ଇଷବେ ନମଃ । ବାହୁଭ୍ୟାମୁତ ତେ ନମଃ ॥୧॥ ଯା ତେ ରୁଦ୍ର ଶିବା ତନୂରଘୋରାପାପକାଶିନୀ । ତୟା ନସ୍ତନ୍ୱା ଶନ୍ତମୟା ଗିରିଶନ୍ତାଭିଚାକଶୀହି ॥୨॥ ଯାମିଷୁଂ ଗିରିଶନ୍ତ ହସ୍ତେ ବିଭର୍ଷ୍ୟସ୍ତବେ । ଶିବାଂ ଗିରିତ୍ର ତାଂ କୁରୁ ମା ହିଗୁଁସୀଃ ପୁରୁଷଂ ଜଗତ୍ ॥୩॥

---

# ପଞ୍ଚମ ଅଧ୍ୟାୟ

## (ନମକ୍ ଅଧ୍ୟାୟ / ରୁଦ୍ରସୂକ୍ତ / ଶତରୁଦ୍ରୀ)

**ମନ୍ତ୍ରସଂଖ୍ୟା (୧) :-** ଯଜୁର୍ବେଦ ଅ.୧୬/୧ : ନମସ୍ତେ ରୁଦ୍ର - ହେ ରୁଦ୍ର ! (ରୁତ୍ = ଦୁଃଖ, ଦୁଃଖକୁ ଦ୍ରାବୟତି = ଦ୍ରବୀଭୂତ ବା ଯେ ବିନାଶ କରନ୍ତି ସେ ରୁଦ୍ର ଅଥବା ରତ୍ = ଜ୍ଞାନ, ରାତି = ଦଦାତି ଅର୍ଥାତ୍ ଯେ ଜ୍ଞାନପ୍ରଦ ଅଥବା ପାପିନଃ ନରାନ୍ ଦୁଃଖଭୋଗେନ ରୋଦୟତି ଅର୍ଥାତ୍ ପାପୀମାନଙ୍କୁ ଦୁଃଖଭୋଗଦ୍ୱାରା ଯେ ରୋଦନ କରାନ୍ତି ସେ ରୁଦ୍ର) ତୁମର କ୍ରୋଧକୁ ମୋର ପ୍ରଣାମ, ତୁମର ଶରକୁ ମୋର ପ୍ରଣାମ, ତୁମର କ୍ରୋଧ ସମ୍ବଳିତ ବାହୁଯୁଗଳକୁ ମଧ୍ୟ ମୋର ପ୍ରଣାମ ।

**ମନ୍ତ୍ରସଂଖ୍ୟା (୨) :-** ଯଜୁର୍ବେଦ ଅ.୧୬/୨ : ଯା ତେ ରୁଦ୍ର - ହେ ରୁଦ୍ର ! ତୁମର ଶରୀର ସୌମ୍ୟ, ଏଣୁ ପୁଣ୍ୟଫଳପ୍ରଦ । ସେହି ପୁଣ୍ୟତମ ଶରୀରରେ କୈଳାସ ପର୍ବତରେ ରହି ତୁମେ ଆମକୁ କୃପାଦୃଷ୍ଟିରେ ଦେଖ ।

**ମନ୍ତ୍ରସଂଖ୍ୟା (୩) :-** ଯଜୁର୍ବେଦ ଅ.୧୬/୩ : ଯାମିଷୁଂ ଗିରିଶନ୍ତ- ହେ ଗିରିଶନ୍ତ (ଗିରୌ = କୈଳାସେ, ସୁଖଂ ତନୋତୀତି) ! ଅର୍ଥାତ୍ ହେ କୈଳାସ ପର୍ବତବାସୀ ! ତୁମେ ଶତ୍ରୁକୁ ପ୍ରହାର ନିମିତ୍ତ ଯେଉଁ ବାଣ ଧାରଣ କରିଅଛ, ହେ ଗିରିତ୍ର ! (ଗିରୌ କୈଳାସପର୍ବତେ ସ୍ଥିତ୍ୱା ତ୍ରାୟତେ ଭକ୍ତାନ୍ = କୈଳାସ ପର୍ବତରେ ଥାଇ ଯେ ଭକ୍ତମାନଙ୍କୁ ରକ୍ଷା କରନ୍ତି) ହେ ଶିବ ! ତୁମର ସେହି ବାଣ କଲ୍ୟାଣକାରୀ ହେଉ । ପୁରୁଷ ଅର୍ଥାତ୍ ପୁତ୍ରପୌତ୍ରାଦି କ୍ରମରେ ଜଗତବାସୀଙ୍କୁ ତଥା ଗୋରୁ, ଅଶ୍ୱ ଇତ୍ୟାଦି ପ୍ରାଣୀମାନଙ୍କୁ ମଧ୍ୟ ବଧ କର ନାହିଁ ।

ଶିବେନ ବଚସା ତ୍ୱା ଗିରିଶାଚ୍ଛା ବଦାମସି । ଯଥା ନଃ ସର୍ବମିଜ୍ଜଗଦୟକ୍ଷ୍ମଗୁଁ ସୁମନା ଅସତ୍ ॥୪॥ ଅଧ୍ୟବୋଚଦଧିବକ୍ତା ପ୍ରଥମୋ ଦୈବ୍ୟୋ ଭିଷକ୍ ॥ ଅହୀଗୁଁଶ୍ଚ ସର୍ବାଞ୍ଜମ୍ଭୟନ୍ତ୍ସର୍ବାଶ୍ଚ ଯାତୁଧାନ୍ୟୋଽଧରାଚୀଃ ପରାସୁବ ॥୫॥ ଅସୌ ଯସ୍ତାମ୍ରୋ ଅରୁଣ ଉତ ବଭ୍ରୁଃ ସୁମଙ୍ଗଳଃ । ଯେ ଚୈନଗୁଁ ରୁଦ୍ରା ଅଭିତୋ ଦିକ୍ଷୁ ଶ୍ରିତାଃ ସହସ୍ରଶୋଽବୈଷାଗୁଁ ହେଳ ଈମହେ ॥୬॥ ଅସୌ ଯୋଽବସର୍ପତି ନୀଳଗ୍ରୀବୋ ବିଲୋହିତଃ । ଉତୈନଂ ଗୋପା ଅଦୃଶ୍ରନ୍ନଦୃଶ୍ରନ୍ନୁଦହାର୍ଯ୍ୟଃ ସ ଦୃଷ୍ଟୋ ମୃଳୟାତି ନଃ ॥୭॥

---

**ମନ୍ତ୍ରସଂଖ୍ୟା (୪) :-** ଯଜୁର୍ବେଦ ଅ.୧୭/୪ : ଶିବେନ ବଚସା - ହେ ଗିରୀଶ ! (ଗିରୌ = କୈଳାସ ପର୍ବତରେ, ଶେତେ = ଶୟନ ବା ଅବସ୍ଥାନ) ତୁମକୁ ପ୍ରାପ୍ତ ହେବା ପାଇଁ ମଙ୍ଗଳପ୍ରଦାୟକ ସ୍ତୁତିଦ୍ୱାରା ଆମେ ପ୍ରାର୍ଥନା କରୁଅଛୁ ଯେ ଆମର ମନୁଷ୍ୟ ପଶୁ ଆଦି ସମସ୍ତ ପ୍ରାଣୀ ଯେପରି ନିରୋଗ ଓ ସୁସ୍ଥ ମାନସିକତାରେ ରହିବେ ତାହା ବିଧାନ କରନ୍ତୁ ।

**ମନ୍ତ୍ରସଂଖ୍ୟା (୫) :-** ଯଜୁର୍ବେଦ ଅ.୧୭/୫ : ଅଧ୍ୟବୋଚଦଧିବକ୍ତା - ସର୍ବଶ୍ରେଷ୍ଠ ଓ ଦେବଲୋକଙ୍କ ଏକମାତ୍ର ବୈଦ୍ୟ ତଥା ପ୍ରଧାନ ବକ୍ତା ମହେଶ୍ୱର ମୋତେ ସବୁଠାରୁ ଅଧିକ କୁହନ୍ତୁ, ଯାହାଦ୍ୱାରା ମୁଁ ଅଧିକ ବଚନଶୀଳ ବା ବାକ୍‌ପଟୁତା ଅର୍ଜନ କରିପାରିବି। ଆପଣ ରୋଗନାଶକ ଏପରିକି ସ୍ମରଣମାତ୍ରକେ ଆପଣ ସବୁପ୍ରକାର ରୋଗକୁ ଦୂର କରନ୍ତି । ହେ ରୁଦ୍ର ! ସମସ୍ତ ନୀଚଗାମୀ ରାକ୍ଷସୀଙ୍କୁ ଏବଂ ରାକ୍ଷସୀ ଗୁଣକୁ ମଧ ନାଶ କରନ୍ତୁ । ଏହା ସହିତ ସର୍ପବ୍ୟାଘ୍ରାଦି ହିଂସ୍ର ଜନ୍ତୁଙ୍କଠାରୁ ମଧ ଆମକୁ ରକ୍ଷା କରନ୍ତୁ ।

**ମନ୍ତ୍ରସଂଖ୍ୟା (୬) :-** ଯଜୁର୍ବେଦ ଅ.୧୭/୬ : ଅସୌ ଯସ୍ତାମ୍ରୋ - (ଆଦିତ୍ୟ ରୂପରେ ରୁଦ୍ରଙ୍କୁ ସ୍ତୁତି କରାଯାଇଅଛି) ଏହି ଯେଉଁ ଆକାଶରେ ତାମ୍ର, ରକ୍ତ ଓ ପିଙ୍ଗଳବର୍ଣ୍ଣ ବିଶିଷ୍ଟ ତଥା ମଙ୍ଗଳସ୍ୱରୂପ ରୁଦ୍ର ଏବଂ ଯାହାଙ୍କର ଅଂଶ (କିରଣ) ସହସ୍ର ରୁଦ୍ର ସଦୃଶ ଚାରିଦିଗକୁ ବିସ୍ତୃତ ସେ ତାଙ୍କ ସମସ୍ତ କ୍ରୋଧକୁ ପ୍ରଶମିତ କରନ୍ତୁ ।

**ମନ୍ତ୍ରସଂଖ୍ୟା (୭) :-** ଯଜୁର୍ବେଦ ଅ.୧୭/୭ : ଅସୌ ଯୋଽବସର୍ପତି- ନୀଳଗ୍ରୀବ

ନମୋଽସ୍ତୁ ନୀଳଗ୍ରୀବାୟ ସହସ୍ରାକ୍ଷାୟ ମୀଳହୁଷେ । ଅଥୋ ଯେ ଅସ୍ୟ ସତ୍ୱାନୋଽହଂ ତେଭ୍ୟୋଽକରଂ ନମଃ ॥୮॥ ପ୍ରମୁଞ୍ଚ ଧନ୍ୱନସ୍ତ୍ୱମୁଭୟୋ-ରାର୍ତ୍ନ୍ୟୋର୍ଜ୍ୟାମ୍ । ଯାଶ୍ଚ ତେ ହସ୍ତ ଇଷବଃ ପରା ତା ଭଗବୋ ବପ ॥୯॥ ବିଜ୍ୟଂ ଧନୁଃ କପର୍ଦିନୋ ବିଶଲ୍ୟୋ ବାଣବାଁଂ ଉତ । ଅନେଶନ୍ନସ୍ୟ ଯା ଇଷବ ଆଭୁରସ୍ୟ ନିଷଙ୍ଗଧିଃ ॥୧୦॥

---

ଅର୍ଥାତ୍ ନୀଳକଣ୍ଠ ଏବଂ ବିଶେଷ ରୂପରେ ଉଦୟାସ୍ତ ସମୟରେ ଯେ ରକ୍ତବର୍ଣ୍ଣଯୁକ୍ତ ସେହି ଆଦିତ୍ୟ ରୂପରେ ରୁଦ୍ର ଧୀରେ ଧୀରେ ଆକାଶରେ ଉଦୟାସ୍ତ ମଧ୍ୟରେ ଗତି କରୁଅଛନ୍ତି । ଯାହାଙ୍କୁ ଗୋପାଳ ବାଳକ ଓ ଜଳ ଆହରଣରତ ସ୍ତ୍ରୀଲୋକମାନେ ମଧ୍ୟ ଦେଖୁଅଛନ୍ତି । (ଗ୍ରାମମାନଙ୍କରେ ସୂର୍ଯ୍ୟୋଦୟ ପରେ ଗୋରୁପଲଙ୍କୁ ଗୋପାଳକମାନେ ଚରିବାକୁ ଛାଡନ୍ତି ଓ ସୂର୍ଯ୍ୟାସ୍ତ ସମୟରେ ପୁଣି ଘରକୁ ବାହୁଡ଼ି ଆଣନ୍ତି । ଗ୍ରାମ୍ୟବଧୂମାନେ ମଧ୍ୟ ସେହିଭଳି ଉଦୟାସ୍ତ ସମୟକୁ ନେଇ ଜଳାଶୟ ବା ନଦୀମାନଙ୍କରୁ ଜଳ ସଂଗ୍ରହ କରିବାକୁ ଯିବା-ଆସିବା କରିଥାଆନ୍ତି) ସେହି ଆଦିତ୍ୟରୂପ ରୁଦ୍ର ଆମ୍ଭମାନଙ୍କୁ ସୁଖ ପ୍ରଦାନ କରନ୍ତୁ ।

**ମନ୍ତ୍ରସଂଖ୍ୟା (୮) :-** ଯଜୁର୍ବେଦ ଅ.୧୭/୮ : ନମୋଽସ୍ତୁ ନୀଳଗ୍ରୀବାୟ- ନୀଳକଣ୍ଠ ସହସ୍ରଚକ୍ଷୁ ସମ୍ପନ୍ନ (ଇନ୍ଦ୍ରସ୍ୱରୂପ), ପର୍ଜନ୍ୟ (ବର୍ଷା) ରୂପ, ଅଥବା ତରୁଣ ରୂପବାନ୍ ଶିବଙ୍କୁ ପ୍ରଣାମ । ତା ସହିତ ତାଙ୍କର ରୁଦ୍ରଗଣଙ୍କୁ ମଧ୍ୟ ମୋର ପ୍ରଣାମ ।

**ମନ୍ତ୍ରସଂଖ୍ୟା (୯) :-** ଯଜୁର୍ବେଦ ଅ.୧୭/୯ : ପ୍ରମୁଞ୍ଚ ଧନ୍ୱନଃ - ହେ ରୁଦ୍ର **!** ତୁମେ ଧନୁର କୋଟି ଦ୍ୱୟରୁ (ଉପର ତଳ) ପ୍ରତ୍ୟଞ୍ଚା ବା ଚାପକୁ ପୃଥକ୍ କର ଏବଂ ହେ ଭଗବାନ୍ ଶିବ **!** ତୁମ ହାତରେ ଥିବା ଶରକୁ ଅନ୍ୟ ଆଡକୁ ନିକ୍ଷେପ କର ।

**ମନ୍ତ୍ରସଂଖ୍ୟା (୧୦) :-** ଯଜୁର୍ବେଦ ଅ.୧୭/୧୦ : ବିଜ୍ୟଂ ଧନୁଃ- ଏବେ କପର୍ଦୀ (ଜଟାଜୁଟଧାରୀ)ଙ୍କ ଧନୁ ଚାପ ରହିତ ଏଣୁ ଶର ନିକ୍ଷେପରେ ଅସମର୍ଥ ଏବଂ ତୂଣୀର (ଶରାସନ) ମଧ୍ୟ ଶରଶୂନ୍ୟ ହୋଇଅଛି ।

ଯା ତେ ହେତିର୍ମୀଢଲୁଷ୍ଟମ ହସ୍ତେ ବଭୂବ ତେ ଧନୁଃ । ତୟାସ୍ମାନ୍ ବିଶ୍ୱତସ୍ତ୍ୱମୟକ୍ଷ୍ମୟା ପରିଭୁଜ ॥୧୧॥ ପରି ତେ ଧନ୍ୱନୋ ହେତିରସ୍ମାନ୍ ବୃଣକ୍ତୁ ବିଶ୍ୱତଃ । ଅଥୋ ଯ ଇଷୁଧିସ୍ତବାରେ ଅସ୍ମନ୍ନିଧେହି ତମ୍ ॥୧୨॥ ଅବତତ୍ୟ ଧନୁଷ୍ଟ୍ୱଗୁଁ ସହସ୍ରାକ୍ଷ ଶତେଷୁଧେ । ନିଶୀର୍ଯ୍ୟ ଶଲ୍ୟାନାଂ ମୁଖା ଶିବୋ ନଃ ସୁମନା ଭବ ॥୧୩॥ ନମସ୍ତ ଆୟୁଧାୟାନାତତାୟ ଧୃଷ୍ଣବେ । ଉଭାଭ୍ୟାମୁତ ତେ ନମୋ ବାହୁଭ୍ୟାଂ ତବ ଧନ୍ୱନେ ॥୧୪॥ ମା ନୋ ମହାନ୍ତମୁତ ମା ନୋ ଅର୍ଭକଂ ମା ନ ଉକ୍ଷନ୍ତମୁତ ମା ନ ଉକ୍ଷିତମ୍ । ମା ନୋ ବଧୀଃ ପିତରଂ ମୋତ ମାତରଂ ମା ନଃ ପ୍ରିୟାସ୍ତନ୍ୱୋ ରୁଦ୍ର ରୀରିଷଃ ॥୧୫॥

---

**ମନ୍ତ୍ରସଂଖ୍ୟା (୧୧) :-** ଯଜୁର୍ବେଦ ଅ.୧୬/୧୧ : ଯାତେ ହେତିଃ - ହେ ଯୁବଶ୍ରେଷ୍ଠ ରୁଦ୍ର ! ତୁମ ହାତରେ ଯେଉଁ ବାଣବର୍ଷଣକାରୀ ଆୟୁଧ ଅଛି, ତାହାଦ୍ୱାରା ସବୁ ପ୍ରକାର ବ୍ୟାଧିକୁ ନିବାରଣ କରି ଆମକୁ ପରିପାଳନ କର ।

**ମନ୍ତ୍ରସଂଖ୍ୟା (୧୨) :-** ଯଜୁର୍ବେଦ ଅ.୧୬/୧୨ : ପରିତେ ଧନ୍ୱନୋ - ହେ ରୁଦ୍ର ! ତୁମର ଧନୁର୍ବାଣ ଆମକୁ ସବୁ ଦିଗରୁ ରକ୍ଷା କରୁ ଏବଂ ତୁମେ ଶରପୂର୍ଣ୍ଣ ତୂଣୀର (ଶରାସନ) ଆମଠାରୁ ଦୂରେଇ ରଖ ।

**ମନ୍ତ୍ରସଂଖ୍ୟା (୧୩) :-** ଯଜୁର୍ବେଦ ଅ.୧୬/୧୩ : ଅବତତ୍ୟଧନୁଷ୍ଟ୍ୱଗୁଁ - ହେ ସହସ୍ରାକ୍ଷ (ଅନେକ ଚକ୍ଷୁ ବା ଅନେକ ଇନ୍ଦ୍ରିୟଯୁକ୍ତ)! ହେ ଶତ ତୂଣୀରଯୁକ୍ତ ରୁଦ୍ର ! ତୁମେ ଆମ ପ୍ରତି ଶିବ (ଶାନ୍ତ) ସୁମନା (ସୁମନସ୍କ) ହୁଅ । ଆୟୁଧ ଧନୁକୁ ଜ୍ୟାନିର୍ମୁକ୍ତ (ଚାପବିହୀନ) କରି ଏବଂ ବାଣକୁ ଆମ ପ୍ରତି ପରାଙ୍‌ମୁଖ ରଖି ଆମକୁ ଅନୁଗୃହୀତ କର ।

**ମନ୍ତ୍ରସଂଖ୍ୟା (୧୪) :-** ଯଜୁର୍ବେଦ ଅ.୧୬/୧୪ : ନମସ୍ତ ଆୟୁଧାୟ - ହେ ରୁଦ୍ର ! ତୁମର ଧନୁରେ ଆରୋପିତ ହୋଇଥିବା ସୁତୀକ୍ଷ୍ଣ ବାଣକୁ ପ୍ରଣାମ । ଆୟୁଧ ଶୋଭିତ ତୁମର ବାହୁଦ୍ୱୟକୁ ପ୍ରଣାମ ଏବଂ ତୁମର ଧନୁକୁ ମଧ୍ୟ ପ୍ରଣାମ ।

**ମନ୍ତ୍ରସଂଖ୍ୟା (୧୫) :-** ଯଜୁର୍ବେଦ ଅ.୧୬/୧୫ : ମାନୋମହାନ୍ତଂ - ହେ ରୁଦ୍ର ! ତୁମେ ଆମର କୌଣସି ମହାନ୍ ବ୍ୟକ୍ତିକୁ, ଶିଶୁକୁ, ତରୁଣକୁ, ଗର୍ଭସ୍ଥ ଶିଶୁକୁ ନ ମାରି ରକ୍ଷା କର । ଆମ ପିତାମାତାଙ୍କୁ ତଥା ଆମ ପ୍ରିୟ ପୁତ୍ରପୌତ୍ରାଦିଙ୍କୁ ମଧ୍ୟ ବିନାଶ କର ନାହିଁ ।

ମା ନସ୍ତୋକେ ତନୟେ ମା ନ ଆୟୁଷି ମା ନୋ ଗୋଷୁ ମା ନୋ ଅଶ୍ୱେଷୁ ରୀରିଷଃ । ମା ନୋ ବୀରାନ୍ ରୁଦ୍ର ଭାମିନୋ ବଧୀର୍ହବିଷ୍ମନ୍ତଃ ସଦମିତ୍ ତ୍ୱା ହବାମହେ ॥୧୬॥ ନମୋ ହିରଣ୍ୟବାହବେ ସେନାନ୍ୟେ ଦିଶାଂ ଚ ପତୟେ ନମୋ ନମୋ ବୃକ୍ଷେଭ୍ୟୋ ହରିକେଶେଭ୍ୟଃ ପଶୂନାଂ ପତୟେ ନମଃ । ନମଃ ଶଷ୍ପିଞ୍ଜରାୟ ତ୍ୱିଷୀମତେ ପଥୀନାଂ ପତୟେ ନମୋ ନମୋ ହରିକେଶାୟୋପବୀତିନେ ପୁଷ୍ଟାନାଂ ପତୟେ ନମଃ ॥୧୭॥ ନମୋ ବଭ୍ଲୁଶାୟ ବ୍ୟାଧିନେଽନ୍ନାନାଂ ପତୟେ ନମୋ ନମୋ ଭବସ୍ୟ ହେତ୍ୟୈ ଜଗତାଂ ପତୟେ ନମଃ । ନମୋ ରୁଦ୍ରାୟାତତାୟିନେ କ୍ଷେତ୍ରାଣାଂ ପତୟେ ନମୋ ନମଃ ସୂତାୟାହନ୍ତ୍ୟୈ ବନାନାଂ ପତୟେ ନମଃ ॥୧୮॥

---

**ମନ୍ତ୍ରସଂଖ୍ୟା (୧୬) :-** ଯଜୁର୍ବେଦ ଅ.୧୬/୧୬ : ମାନସ୍ତୋକେ - ହେ ରୁଦ୍ର **!** ଆମର ପୁତ୍ର ଓ ପୌତ୍ରଙ୍କୁ ହତ୍ୟା କର ନାହିଁ କି ଆମର ଆୟୁଷ ପ୍ରତି ମଧ୍ୟ ଅନିଷ୍ଟ କର ନାହିଁ । ଆମର ଗୋ ସମ୍ପଦ ତଥା ଅଶ୍ୱାଦିଙ୍କୁ ମଧ୍ୟ ହତ୍ୟା କର ନାହିଁ । କ୍ରୋଧାନ୍ୱିତ ହୋଇ ଆମର ବୀରମାନଙ୍କୁ ଏବଂ ଭୃତ୍ୟମାନଙ୍କୁ ମଧ୍ୟ ହତ୍ୟା କର ନାହିଁ । ଆମେ ତୁମର ଶରଣାପନ୍ନ ହୋଇ ସର୍ବଦା ଯଜ୍ଞ ମାଧ୍ୟମରେ ହବିଃ (ଯଜ୍ଞୀୟ ଘୃତାଦି ଦ୍ରବ୍ୟ) ପ୍ରଦାନ କରୁଅଛୁ ।

**ମନ୍ତ୍ରସଂଖ୍ୟା (୧୭) :-** ଯଜୁର୍ବେଦ ଅ.୧୬/୧୭ : ନମୋ ହିରଣ୍ୟବାହବେ- ସୁବର୍ଣ୍ଣ ଆଭରଣ ସ୍ୱରୂପ ଯାହାଙ୍କର ବାହୁଦ୍ୱୟ, ଯେ ସୈନ୍ୟମାନଙ୍କ ନାୟକ, ଯେ ଦିଗମାନଙ୍କର ପାଳକ, ଯାହାଙ୍କର ହରିତ୍‌ବର୍ଣ୍ଣଯୁକ୍ତ ପର୍ଣ୍ଣ (ପତ୍ର) ସଦୃଶ କେଶ ଏବଂ ଯେ ବୃକ୍ଷରୂପଧାରୀ, ଯେ ପଶୁ (ଜୀବ)ମାନଙ୍କ ପାଳକ ହେତୁ ପଶୁପତି, ଯେ ବାଳ (କୋମଳ) ତୃଣ ଭଳି ପୀତବର୍ଣ୍ଣଯୁକ୍ତ ତେଜସ୍ୱୀ, ଯେ ସମସ୍ତ ମାର୍ଗର ରକ୍ଷକ, ଯାହାଙ୍କର ନୀଳବର୍ଣ୍ଣ କେଶ, ଯେ ଜରା (ବାର୍ଦ୍ଧକ୍ୟ) ରହିତ, ମଙ୍ଗଳସ୍ୱରୂପ ଯଜ୍ଞୋପବୀତଧାରୀ, ଗୁଣବାନ୍ ଲୋକଙ୍କର ସ୍ୱାମୀ ସେହି ରୁଦ୍ରଙ୍କୁ ପ୍ରଣାମ ।

**ମନ୍ତ୍ରସଂଖ୍ୟା (୧୮) :-** ଯଜୁର୍ବେଦ ଅ.୧୬/୧୮ : ନମୋ ବଭ୍ଲୁଶାୟ - ବଭ୍ଲୁଶ ଅର୍ଥାତ୍ କପିଳବର୍ଣ୍ଣ ବିଶିଷ୍ଟ ଅଥବା ବିଭର୍ତ୍ତି ରୁଦ୍ରମିତି ବଭ୍ଲୁ = ବୃଷଭଃ, ତସ୍ମିନ୍ ଶେତେ ଏଣୁ ବଭ୍ଲୁଶ = ବୃଷଭାସୀନ (ବ୍ୟାଧିନେ = ବିଧ୍ୟତି ଶତ୍ରୁନିତି) ଶତ୍ରୁବଧକାରୀ,

ନମୋ ରୋହିତାୟ ସ୍ଥପତୟେ ବୃକ୍ଷାଣାଂ ପତୟେ ନମୋ ନମୋ ଭୁବନ୍ତୟେ ବାରିବସ୍କୃତାୟୌଷଧୀନାଂ ପତୟେ ନମଃ । ନମୋ ମନ୍ତ୍ରିଣେ ବାଣିଜାୟ କକ୍ଷାଣାଂ ପତୟେ ନମୋ ନମ ଉଚ୍ଚୈର୍ଘୋଷାୟାକ୍ରନ୍ଦୟତେ ପତ୍ତୀନାଂ ପତୟେ ନମଃ ॥୧୯॥ ନମଃ କୃତ୍ସ୍ନାୟତୟା ଧାବତେ ସତ୍ୱନାଂ ପତୟେ ନମୋ ନମଃ । ସହମାନାୟ ନିବ୍ୟାଧିନ ଆବ୍ୟାଧିନୀନାଂ ପତୟେ ନମଃ । ନମଃ କକୁଭାୟ ନିଷଙ୍ଗିଣେ ସ୍ତେନାନାଂ ପତୟେ ନମୋ ନମୋ ନିଚେରବେ ପରିଚରାୟାରଣ୍ୟାନାଂ ପତୟେ ନମଃ ॥୨୦॥

---

ଅନ୍ନର ସ୍ୱାମୀ, ଆମ୍ଭମାନଙ୍କର ପାଳକ, ସଂସାର ନିବର୍ତ୍ତକ, ଜଗତର ରକ୍ଷକ, ଆତତଧନୁ ଅର୍ଥାତ୍ ବିସ୍ତୃତ ଧନୁ ଧାରଣ କରି ବିଚରଣଶୀଳ, ଆମ ଦେହରୂପକ କ୍ଷେତ୍ରର ପରିପାଳକ, ସୂତାୟ ଅହନ୍ତ୍ୟେ = ସାରଥି ସ୍ୱରୂପ, ଅହନ୍ତା = ନ ହନ୍ତୀତି ଅହନ୍ତା ଅର୍ଥାତ୍ ରୁଦ୍ର ସଂସାରରୂପକ ରଥର ସାରଥି ସ୍ୱରୂପ ଏବଂ ସାରଥି କେବେହେଲେ କାହାରି ହତ୍ୟାକାରୀ ହୁଅନ୍ତି ନାହିଁ ଏଣୁ ସେ ସ୍ୱରୂପତଃ ଅହନ୍ତା, ସେ ବନର ରକ୍ଷକସ୍ୱରୂପ ଏଣୁ ଏ ସମସ୍ତ ରୂପରେ ତାଙ୍କୁ ପ୍ରଣାମ ।

**ମନ୍ତ୍ରସଂଖ୍ୟା (୧୯) :-** ଯଜୁର୍ବେଦ ଅ.୧୬/୧୯ : ନମୋ ରୋହିତାୟ - ରୁଦ୍ର ଲୋହିତବର୍ଣ୍ଣ ବିଶିଷ୍ଟ ବିଶ୍ୱକର୍ମା ସ୍ୱରୂପ, ବୃକ୍ଷମାନଙ୍କର ପାଳକ, ପୃଥିବୀର ବିସ୍ତାରକର୍ତ୍ତା, (ବରିବଃ = ଧନଂ, ତତ୍କୃତଃ ବାରିବସ୍କୃତଃ) ଧନକର୍ତ୍ତା, ସମସ୍ତ ଔଷଧି (ଗ୍ରାମ୍ୟ ଅରଣ୍ୟ = ବଗିଚା ବା ଉଦ୍ୟାନ)ର ପାଳକ, ମନ୍ତ୍ରଣା (ପରାମର୍ଶ) ଦାୟକ, ବ୍ୟାପାରକର୍ତ୍ତା, କକ୍ଷ (ବଣରେ ଥିବା ଲତାଗୁଳ୍ମାଦି)ର ପାଳକ, ଉଚ୍ଚଧ୍ୱନିକାରୀ, ଯୁଦ୍ଧରେ ଶତ୍ରୁଙ୍କ କ୍ରନ୍ଦନକାରକ, ପଦାତି ସୈନ୍ୟଙ୍କ ସ୍ୱାମୀ ସ୍ୱରୂପ ରୁଦ୍ରଙ୍କୁ ପ୍ରଣାମ ।

**ମନ୍ତ୍ରସଂଖ୍ୟା (୨୦) :-** ଯଜୁର୍ବେଦ ଅ.୧୬/୨୦ : ନମଃ କୃତ୍ସ୍ନାୟତୟା - କୃତ୍ସ୍ନାୟତା ଅର୍ଥାତ୍ ଆକର୍ଣ୍ଣ ବିସ୍ତୃତ ଧନୁ ଧାରଣ କରି ଯୁଦ୍ଧରେ ଶୀଘ୍ରଗାମୀ (ଅଥବା କୃତ୍ସ୍ନ = ସମସ୍ତ ଆୟ ବା ଲାଭର ଯେ ପ୍ରାପକ), ସମସ୍ତ ସାତ୍ତ୍ୱିକ ଅଥବା ଶରଣାଗତ ପ୍ରାଣୀମାନଙ୍କର ପାଳକ, ଶତ୍ରୁଙ୍କ ପରାଭବ ପ୍ରତି ସହନଶୀଳ ଅଥଚ ଶୀଘ୍ର ଶତ୍ରୁଙ୍କ ହତ୍ୟାକାରୀ, ଦେବସେନାଙ୍କ ରକ୍ଷକ, ଖଡ୍ଗଧାରୀ, ମହାନ୍, ଗୁପ୍ତଚରଙ୍କର ପାଳକ, ନିଚେରବ ଅର୍ଥାତ୍ ନୀଚବୁଦ୍ଧି ସମ୍ପନ୍ନ (ଅପହରଣ ପାଇଁ ସର୍ବଦା ଚେଷ୍ଟିତ ବ୍ୟକ୍ତି)ଙ୍କ

ନମୋ ବଞ୍ଚତେ ପରିବଞ୍ଚତେ ସ୍ତାୟୂନାଂ ପତୟେ ନମୋ ନମୋ ନିଷଙ୍ଗିଣ ଇଷୁଧିମତେ ତସ୍କରାଣାଂ ପତୟେ ନମଃ ନମଃ ସୃକାୟିଭ୍ୟୋ ଜିଘାଗୁଁସଦ୍‌ଭ୍ୟୋ ମୁଷ୍ଣତାଂ ପତୟେ ନମୋ ନମୋଽସିମଦ୍‌ଭ୍ୟୋ ନକ୍ତଞ୍ଚରଦ୍‌ଭ୍ୟୋ ବିକୃନ୍ତାନାଂ ପତୟେ ନମଃ ॥୨୧॥

---

ରକ୍ଷକ, ପରିଚର (ଦୋକାନ-ବଜାରରୁ ଅପହରଣ କରିବା ଇଚ୍ଛାରେ ଘୂରି ବୁଲୁଥିବା ଲୋକ)ମାନଙ୍କ ପାଳକ, ଅରଣ୍ୟର ସ୍ୱାମୀ ସ୍ୱରୂପ ରୁଦ୍ରଙ୍କୁ ପ୍ରଣାମ[୧] ।

---

୧. ଉଲ୍ଲେଖଯୋଗ୍ୟ ଯେ, ମନ୍ତ୍ରମାନଙ୍କର ଭାଷ୍ୟକାର ମହୀଧରାଚାର୍ଯ୍ୟ ବେଦବାକ୍ୟରେ ପରମେଶ୍ୱରଙ୍କ ପ୍ରତି ଅପମାନସୂଚକ ଯଥା ଚୌର୍ଯ୍ୟାଦି ସ୍ୱରୂପ ବର୍ଣ୍ଣନାର ସମାଧାନ ପାଇଁ କହିଅଛନ୍ତି ଯେ- 'ରୁଦ୍ରୋ ଲୀଳୟା ଚୌରାଦିରୂପଂ ଧତ୍ତେ...' ଇତ୍ୟାଦି । ଯାହାର ରହସ୍ୟ ଯଥା- ଭଗବାନ୍ ରୁଦ୍ର ଲୀଳା ପ୍ରଦର୍ଶନ କରିବା ପ୍ରସଙ୍ଗରେ ଚୌରାଦି ରୂପକୁ ଧାରଣ କରିଥାଆନ୍ତି । ଅଥବା ରୁଦ୍ର ଜଗତ୍ ସ୍ୱରୂପ, ଚୌର ମଧ୍ୟ ଜଗତର ଅନ୍ତର୍ଗତ, ଏଣୁ ସେ ମଧ୍ୟ ରୁଦ୍ର ସ୍ୱରୂପ । ଅଥବା ପ୍ରତ୍ୟେକଙ୍କ ଶରୀରରେ ଜୀବ ଓ ଈଶ୍ୱର ରୂପରେ ଦୁଇ ଭାବରେ ରୁଦ୍ର ଅବସ୍ଥିତ । ଯେଉଁଠି ଚୌରାଦି ରୂପରେ ଜୀବ ଏବଂ ଈଶ୍ୱର ଭାବରେ ରୁଦ୍ର ଲକ୍ଷିତ । ଉଦାହରଣ ଯଥା ନିର୍ବୋଧ ବାଳକକୁ ଚନ୍ଦ୍ର ଦେଖାଇଲାବେଳେ ଆମେ ସମ୍ମୁଖରେ ଥିବା ବୃକ୍ଷର ଶାଖାକୁ ପ୍ରଥମେ ଦେଖାଇ ତା ମାଧ୍ୟମରେ ଯେପରି ଚନ୍ଦ୍ରଙ୍କୁ ଦେଖାଇଥାଉ, ଯାହା ଫଳରେ ସୁବିଧାରେ ବାଳକ ଚନ୍ଦ୍ର ଦର୍ଶନ କରିପାରେ, ଠିକ୍ ସେହିପରି ଗୂଢ଼ ବିଷୟ ଯାହା ଏକାନ୍ତ ଭାବରେ ଅଲୌକିକ ଓ ଅନିର୍ବଚନୀୟ ତାହାର ବିବକ୍ଷା ନିମିତ୍ତ ଲୌକିକ ଦୃଷ୍ଟାନ୍ତକୁ ମଧ୍ୟ ଆଶ୍ରୟ କରାଯାଇଥାଏ । ଏ ବିଷୟକୁ ପରମକାରୁଣିକ ଭଗବାନ୍ ବ୍ୟାସଦେବ ବେଦାନ୍ତଦର୍ଶନାନ୍ତର୍ଗତ ବ୍ରହ୍ମସୂତ୍ର ଗ୍ରନ୍ଥର - 'ଲୋକବତ୍ତୁ ଲୀଳାକୈବଲ୍ୟମ୍' (୨/୧/୩୩) - ଏହି ସୂତ୍ରରେ ନିର୍ଗୁଣ ନିରାକାର ନିର୍ବିକାର ନିରୀହ ନିଃସଙ୍ଗ ବ୍ରହ୍ମ ଜଗତର କଲ୍ୟାଣ ପାଇଁ ଲୀଳାବତାରସ୍ୱରୂପ ରାମ-କୃଷ୍ଣ ଇତ୍ୟାଦି ରୂପରେ ଧରାରେ ଅବତୀର୍ଣ୍ଣ ହୋଇ ମନୁଷ୍ୟ ଭଳି ଆଚରଣ କରିଥାଆନ୍ତି, ଏହା ସ୍ପଷ୍ଟ ପ୍ରତିପାଦନ କରିଅଛନ୍ତି । ପୁନଶ୍ଚ ଶ୍ରୀମଦ୍‌ଭାଗବତ ମହାପୁରାଣରେ ଲୀଳାବତାର ଭଗବାନ୍ କୃଷ୍ଣଙ୍କୁ ଚୌର ଓ ଚୌରାଗ୍ରଗଣ୍ୟ ରୂପରେ ମଧ୍ୟ ବର୍ଣ୍ଣନା କରାଯାଇଅଛି ।)

**ମନ୍ତ୍ରସଂଖ୍ୟା (୨୧) :-** ଯଜୁର୍ବେଦ ଅ.୧୬/୨୧ : ନମୋ ବଞ୍ଚତେ - ବଞ୍ଚତେ ଅର୍ଥାତ୍ ପ୍ରବଞ୍ଚକ (ପ୍ରଭୁଙ୍କ ବିଶ୍ୱସ୍ତ ହୋଇ ଯିଏ ଚୋରି କରେ), ପରିବଞ୍ଚତେ ଅର୍ଥାତ୍ ନିଜ-ପର ବିଚାର ନ କରି ଯେ ସବୁ ସ୍ଥଳରେ ଚୋରି କରୁଥିବା ଚୋର,

ନମ ଉଷ୍ଣୀଷିଣେ ଗିରିଚରାୟ କୁଲୁଞ୍ଚାନାଂ ପତୟେ ନମୋ ନମ ଇଷୁମଦ୍‌ଭ୍ୟୋ ଧନ୍ୱାୟିଭ୍ୟଶ୍ଚ ବୋ ନମଃ । ନମ ଆତନ୍ୱାନେଭ୍ୟଃ ପ୍ରତିଦଧାନେଭ୍ୟଶ୍ଚ ବୋ ନମୋ ନମ ଆୟଚ୍ଛଦ୍‌ଭ୍ୟୋଽସ୍ୟଦ୍‌ଭ୍ୟଶ୍ଚ ବୋ ନମଃ ॥୨୨॥ ନମୋ ବିସୃଜଦ୍‌ଭ୍ୟୋ ବିଧ୍ୟଦ୍‌ଭ୍ୟଶ୍ଚ ବୋ ନମୋ ନମଃ ସ୍ୱପଦ୍‌ଭ୍ୟୋ ଜାଗ୍ରଦ୍‌ଭ୍ୟଶ୍ଚ ବୋ ନମଃ । ନମଃ ଶୟାନେଭ୍ୟ ଆସୀନେଭ୍ୟଶ୍ଚ ବୋ ନମୋ ନମସ୍ତିଷ୍ଠଦ୍‌ଭ୍ୟୋ ଧାବଦ୍‌ଭ୍ୟଶ୍ଚ ବୋ ନମଃ ॥୨୩॥ ନମଃ ସଭାଭ୍ୟଃ ସଭାପତିଭ୍ୟଶ୍ଚ ବୋ ନମୋ ନମୋଽଶ୍ୱେଭ୍ୟୋଽଶ୍ୱପତିଭ୍ୟଶ୍ଚ ବୋ ନମଃ । ନମ ଆବ୍ୟାଧିନୀଭ୍ୟୋ ବିବିଧ୍ୟନ୍ତୀଭ୍ୟଶ୍ଚ ବୋ ନମୋ ନମ ଉଗଣାଭ୍ୟ-ସ୍ତୃଗୁଁହତିଭ୍ୟଶ୍ଚ ବୋ ନମଃ ॥୨୪॥

---

ପୁଣି ଯେ ଦିବାରାତ୍ର ସବୁ ସମୟରେ ଚୌର୍ଯ୍ୟବୃତ୍ତିକୁ ଆଶ୍ରୟ କରେ ଏ ସମସ୍ତଙ୍କର ରକ୍ଷକ ରୂପରେ, ପ୍ରକଟ ଚୋର ଅର୍ଥାତ୍ ଡକାୟତମାନଙ୍କ ସ୍ୱାମୀ, ଖଡ୍‌ଗ ଓ ଧନୁର୍ଧାରୀ ହିଂସେଚ୍ଛୁଙ୍କ ପାଳକ, ଧାନ୍ୟାଦି ଶସ୍ୟ କ୍ଷେତ୍ରରୁ ଶସ୍ୟାପହରଣକାରୀଙ୍କ ପ୍ରଭୁ, ରାତ୍ରିରେ ପଥଚାରୀ ପ୍ରାଣୀମାନଙ୍କୁ ହତ୍ୟାକାରୀ ଓ ଧନ ଲୁଣ୍ଠନକାରୀଙ୍କ ସ୍ୱାମୀ ରୂପରେ ରୁଦ୍ରଙ୍କୁ ପ୍ରଣାମ ।

**ମନ୍ତ୍ରସଂଖ୍ୟା (୨୨) :-** ଯଜୁର୍ବେଦ ଅ.୧୬/୨୨ : ନମ ଉଷ୍ଣୀଷିଣେ - ଉଷ୍ଣୀଷ (ପଗଡ଼ି)ଧାରୀ, ପର୍ବତରେ ବିଚରଣଶୀଳ, କ୍ଷେତ୍ରଗୃହାଦିର ଅପହରଣକାରୀଙ୍କ ପାଳକ ରୁଦ୍ରଙ୍କୁ ନମସ୍କାର । ଧନୁର୍ବାଣଧାରୀ, ଧନୁରେ ଚାପ ସଂଯୋଗକାରୀ ତଥା ପ୍ରତ୍ୟଞ୍ଚାରେ ବାଣ ଆରୋପଣକାରୀ ରୁଦ୍ରଙ୍କୁ ନମସ୍କାର । ଧନୁକୁ ଆକର୍ଷଣ କରୁଥିବା ତଥା ବାଣକୁ ଚତୁଃପାର୍ଶ୍ୱରେ ନିକ୍ଷେପ କରୁଥିବା ରୁଦ୍ରଙ୍କୁ ପ୍ରଣାମ ।

**ମନ୍ତ୍ରସଂଖ୍ୟା (୨୩) :-** ଯଜୁର୍ବେଦ ଅ.୧୬/୨୩ : ନମୋ ବିସୃଜଦ୍‌ଭ୍ୟଃ- ବାଣକୁ ଆକର୍ଷଣ କରି ଶତ୍ରୁଙ୍କ ଉପରେ ନିକ୍ଷେପ କରୁଥିବା ରୁଦ୍ରଙ୍କୁ ନମସ୍କାର । ସୁପ୍ତ ଏବଂ ଜାଗରଣଶୀଳ ରୁଦ୍ରଙ୍କୁ ପ୍ରଣାମ । ଶୋଇଥିବା ଏବଂ ଉପବେଶନ କରିଥିବା ରୁଦ୍ରଙ୍କୁ ପ୍ରଣାମ । ଗତିନିବୃତ୍ତ ଓ ତୀବ୍ର ଗତିଶୀଳ ରୁଦ୍ରଙ୍କୁ ନମସ୍କାର ।

**ମନ୍ତ୍ରସଂଖ୍ୟା (୨୪) :-** ଯଜୁର୍ବେଦ ଅ.୧୬/୨୪ : ନମଃ ସଭାଭ୍ୟଃ - ସଭା ରୂପରେ ଓ ସଭାପତି ରୂପରେ ରୁଦ୍ରଙ୍କୁ ପ୍ରଣାମ । ଅଶ୍ୱ ରୂପରେ ଓ ଅଶ୍ୱପତି

ନମୋ ଗଣେଭ୍ୟୋ ଗଣପତିଭ୍ୟଶ୍ଚ ବୋ ନମୋ ନମୋ ବ୍ରାତେଭ୍ୟୋ ବ୍ରାତପତିଭ୍ୟଶ୍ଚ ବୋ ନମଃ । ନମୋ ଗୃତ୍ସେଭ୍ୟୋ ଗୃତ୍ସପତିଭ୍ୟଶ୍ଚ ବୋ ନମୋ ନମୋ ବିରୂପେଭ୍ୟୋ ବିଶ୍ୱରୂପେଭ୍ୟଶ୍ଚ ବୋ ନମଃ ॥୨୫॥ ନମଃ ସେନାଭ୍ୟଃ ସେନାନିଭ୍ୟଶ୍ଚ ବୋ ନମୋ ନମୋ ରଥିଭ୍ୟୋ ଅରଥେଭ୍ୟଶ୍ଚ ବୋ ନମଃ ॥ ନମଃ କ୍ଷତୃଭ୍ୟଃ ସଂଗୃହୀତୃଭ୍ୟଶ୍ଚ ବୋ ନମୋ ନମୋ ମହଦ୍‌ଭ୍ୟୋ ଅର୍ଭକେଭ୍ୟଶ୍ଚ ବୋ ନମଃ ॥୨୬॥ ନମସ୍ତକ୍ଷଭ୍ୟୋ ରଥକାରେଭ୍ୟଶ୍ଚ ବୋ ନମୋ ନମଃ କୁଲାଲେଭ୍ୟଃ କର୍ମାରେଭ୍ୟଶ୍ଚ ବୋ ନମଃ । ନମୋ ନିଷାଦେଭ୍ୟଃ ପୁଞ୍ଜିଷ୍ଟେଭ୍ୟଶ୍ଚ ବୋ ନମୋ ନମଃ ଶ୍ୱନିଭ୍ୟୋ ମୃଗୟୁଭ୍ୟଶ୍ଚ ବୋ ନମଃ ॥୨୭॥

---

ରୂପରେ ତୁମ୍ଭଙ୍କୁ ପ୍ରଣାମ । ସବୁ ପ୍ରକାର ବାଣଦ୍ୱାରା ବଧ କରିପାରୁଥିବା ଯୋଦ୍ଧାରୂପକ ତଥା ବିବିଧ ପ୍ରକାରରେ ବିଦ୍ଧ କରୁଥିବା ସୈନ୍ୟରୂପକ ରୁଦ୍ରଙ୍କୁ ଏବଂ ଶତ୍ରୁଙ୍କୁ ହତ୍ୟା କର୍ମରେ ସାହାଯ୍ୟ କରୁଥିବା ଦୁର୍ଗାଦି ମାତୃକାଙ୍କୁ ମଧ୍ୟ ପ୍ରଣାମ ।

**ମନ୍ତ୍ରସଂଖ୍ୟା (୨୫) :-** ଯଜୁର୍ବେଦ ଅ.୧୬/୨୫ : ନମୋ ଗଣେଭ୍ୟଃ - ହେ ରୁଦ୍ର **!** ତୁମ ଗଣଙ୍କୁ ତଥା ଗଣପତି ରୂପରେ ତୁମକୁ ପ୍ରଣାମ । ନାନା ଜାତିର ସଙ୍ଘଙ୍କୁ ତଥା ସେହି ଜାତିମାନଙ୍କର ମୁଖ୍ୟ ରୂପରେ ତୁମକୁ ପ୍ରଣାମ । ଲମ୍ପଟଙ୍କୁ ତଥା ଲମ୍ପଟଙ୍କ ସ୍ୱାମୀ ରୂପରେ ତୁମକୁ ନମସ୍କାର । ଜଟାଧାରୀ, ମୁଣ୍ଡିତ ମସ୍ତକ ରୂପକ କୁତ୍ସିତ ରୂପଧାରୀ, ଅଶ୍ୱବଦନ ତଥା ହୟଗ୍ରୀବାଦି ବିଶ୍ୱରୂପ ଗଣ ସ୍ୱରୂପରେ ମଧ୍ୟ ତୁମ୍ଭଙ୍କୁ ନମସ୍କାର ।

**ମନ୍ତ୍ରସଂଖ୍ୟା (୨୬) :-** ଯଜୁର୍ବେଦ ଅ.୧୬/୨୬ : ନମଃ ସେନାଭ୍ୟଃ - ସେନା ଏବଂ ସେନାପତି ରୂପରେ ରୁଦ୍ରଙ୍କୁ ପ୍ରଣାମ । ରଥାରୂଢଙ୍କୁ ତଥା ରଥରହିତଙ୍କୁ, ରଥାଧିଷ୍ଠାତା ଓ ରଥଚାଳକ ସାରଥୀଙ୍କୁ, ମହାବୀରମାନଙ୍କୁ ଏବଂ ପରାକ୍ରମୀ ଶିଶୁମାନଙ୍କୁ ମଧ୍ୟ ରୁଦ୍ର ରୂପରେ ନମସ୍କାର ।

**ମନ୍ତ୍ରସଂଖ୍ୟା (୨୭) :-** ଯଜୁର୍ବେଦ ଅ.୧୬/୨୭ : ନମସ୍ତକ୍ଷଭ୍ୟଃ - ରଥକାର (ବଢ଼େଇ), କୁମ୍ଭକାର, ଲୌହକାର (କମାର), ବ୍ୟାଧ, ମତ୍ସ୍ୟମାଂସ ଭକ୍ଷଣକାରୀ, ଶିକାରି କୁକୁର, ଲୁବ୍‌ଧକ ଅର୍ଥାତ୍ ଶିକାରି କୁକୁରମାନଙ୍କ ସ୍ୱାମୀ ଏ ସମସ୍ତ ରୂପରେ ତୁମକୁ ପ୍ରଣାମ ।

ନମଃ ଶ୍ୱଭ୍ୟଃ ଶ୍ୱପତିଭ୍ୟଶ୍ଚ ବୋ ନମୋ ନମୋ ଭବାୟ ଚ ରୁଦ୍ରାୟ ଚ । ନମଃ ଶର୍ବାୟ ଚ ପଶୁପତୟେ ଚ ନମୋ ନୀଲଗ୍ରୀବାୟ ଚ ଶିତିକଣ୍ଠାୟ ଚ ॥୨୮॥ ନମଃ କପର୍ଦ୍ଦିନେ ଚ ବ୍ୟୁପ୍ତକେଶାୟ ଚ ନମଃ ସହସ୍ରାକ୍ଷାୟ ଚ ଶତଧନ୍ୱନେ ଚ । ନମୋ ଗିରିଶୟାୟ ଚ ଶିପିବିଷ୍ଟାୟ ଚ ନମୋ ମୀଢୁଷ୍ଟମାୟ ଚେଷୁମତେ ଚ ॥୨୯॥ ନମୋ ହ୍ରସ୍ୱାୟ ଚ ବାମନାୟ ଚ ନମୋ ବୃହତେ ଚ ବର୍ଷୀୟସେ ଚ । ନମୋ ବୃଦ୍ଧାୟ ଚ ସବୃଧେ ଚ ନମୋଽଗ୍ର୍ୟାୟ ଚ ପ୍ରଥମାୟ ଚ ॥୩୦॥

---

**ମନ୍ତ୍ରସଂଖ୍ୟା (୨୮) :-** ଯଜୁର୍ବେଦ ଅ.୧୬/୨୮ : ନମଃ ଶ୍ୱଭ୍ୟଃ - କୁକୁର ଏବଂ କୁକୁରଙ୍କ ସ୍ୱାମୀ କିରାତ ଇତ୍ୟାଦି ରୂପରେ ରୁଦ୍ରଙ୍କୁ ପ୍ରଣାମ । ଭବ (ଭବନ୍ତି ଉତ୍ପଦ୍ୟନ୍ତେ ଜନ୍ତବୋଽସ୍ମାଦିତି) ଅର୍ଥାତ୍ ଯାହାଙ୍କଠାରୁ ସମସ୍ତ ଜନ୍ତୁମାନେ ଉତ୍ପନ୍ନ ହୁଅନ୍ତି, ସେହି ଶିବଙ୍କୁ ନମସ୍କାର । ରୁଦ୍ର (ରୁତ୍ ଦୁଃଖଂ ଦ୍ରାବୟତି ନାଶୟତି ରୁଦ୍ରଃ)ଙ୍କୁ ନମସ୍କାର । ଶର୍ବ (ଶୃଣାତି ହିନସ୍ତି ପାପମିତି ଶର୍ବଃ)ଙ୍କୁ ନମସ୍କାର । ପଶୁପତି (ପଶୂନ୍ ଅଜ୍ଞାନ୍ ପାତି ରକ୍ଷୟତି ପଶୁପତିଃ)ଙ୍କୁ ନମସ୍କାର । ନୀଳଗ୍ରୀବ (ବିଷ ଭକ୍ଷଣଦ୍ୱାରା ଯାହାଙ୍କର କଣ୍ଠଦେଶ ନୀଳବର୍ଣ୍ଣ ହୋଇଅଛି ସେହି ନୀଳକଣ୍ଠ)ଙ୍କୁ ନମସ୍କାର । ଶିତିକଣ୍ଠ(ଶିତିଃ ଶ୍ୱେତଃ କଣ୍ଠଃ ନୀଳାତିରିକ୍ତଭାଗଃ ଯସ୍ୟ) ଅର୍ଥାତ୍ ନୀଳବର୍ଣ୍ଣ ବ୍ୟତିରିକ୍ତ ଯେଉଁ ଅବଶିଷ୍ଟ ଶ୍ୱେତବର୍ଣ୍ଣ ବିଶିଷ୍ଟ କଣ୍ଠଭାଗ ଯାହାଙ୍କର, ସେହି ଶିତିକଣ୍ଠଙ୍କୁ ନମସ୍କାର ।

**ମନ୍ତ୍ରସଂଖ୍ୟା (୨୯) :-** ଯଜୁର୍ବେଦ ଅ.୧୬/୨୯ : ନମଃ କପର୍ଦ୍ଦିନେ- ଜଟାଜୁଟଧାରୀ, ମୁଣ୍ଡିତ ମସ୍ତକ, ସହସ୍ରାକ୍ଷ (ଅନେକ ଚକ୍ଷୁଧାରୀ), ବହୁଧନୁର୍ଦ୍ଧାରୀ, କୈଳାସ ପର୍ବତରେ ଶୟନ କରୁଥିବା, ବିଷ୍ଣୁ ଅଥବା ଆଦିତ୍ୟ (ଶିପିବିଷ୍ଟ ଶବ୍ଦରେ ବିଷ୍ଣୁ ଏବଂ ଆଦିତ୍ୟଙ୍କୁ ମଧ୍ୟ ବୁଝାଯାଏ) ରୂପରେ, ମୀଢୁଷ୍ଟମ (ସେକ୍ତା = ତେଜସ୍ୱୀ ଯୁବକ) ଉତ୍ତମ ସ୍ୱାମୀ ରୂପରେ (ମତାନ୍ତରରେ ବର୍ଷଣକାରୀ ମେଘ ରୂପରେ) ଏବଂ ବାଣଯୁକ୍ତ ରୁଦ୍ରଙ୍କୁ ନମସ୍କାର ।

**ମନ୍ତ୍ରସଂଖ୍ୟା (୩୦) :-** ଯଜୁର୍ବେଦ ଅ.୧୬/୩୦ : ନମୋ ହ୍ରସ୍ୱାୟ - ହ୍ରସ୍ୱ ଅର୍ଥାତ୍ ଦୁର୍ବଳ ଶରୀର ବିଶିଷ୍ଟ, ବାମନ ବା ଖର୍ବକାୟ, ବୃହତ୍କାୟ, ବର୍ଷୀୟାନ୍, ବୃଦ୍ଧ, ସବୃଧେ = ଅନୁଭବୀ (ମତାନ୍ତରରେ ସବୃତ୍ = ବିଦ୍ୟାବିନୟାଦିଗୁଣୈର୍ବର୍ଧନ୍ତେ

ନମ ଆଶବେ ଚାଜିରାୟ ଚ ନମଃ ଶୀଘ୍ର୍ୟାୟ ଚ ଶୀଭ୍ୟାୟ ଚ । ନମ ଊର୍ମ୍ୟାୟ ଚାବସ୍ୱନ୍ୟାୟ ଚ ନମୋ ନାଦେୟାୟ ଚ ଦ୍ୱୀପ୍ୟାୟ ଚ ।।୩୧।। ନମୋ ଜ୍ୟେଷ୍ଠାୟ ଚ କନିଷ୍ଠାୟ ଚ ନମଃ ପୂର୍ବଜାୟ ଚାପରଜାୟ ଚ । ନମୋ ମଧ୍ୟମାୟ ଚାପଗଲ୍‌ଭାୟ ଚ ନମୋ ଜଘନ୍ୟାୟ ଚ ବୁଧ୍ନ୍ୟାୟ ଚ ।।୩୨।। ନମଃ ସୋଭ୍ୟାୟ ଚ ପ୍ରତିସର୍ଯାୟ ଚ ନମୋ ଯାମ୍ୟାୟ ଚ କ୍ଷେମ୍ୟାୟ ଚ । ନମଃ ଶ୍ଳୋକ୍ୟାୟ ଚାବସାନ୍ୟାୟ ଚ ନମ ଉର୍ବର୍ଯାୟ ଚ ଖଲ୍ୟାୟ ଚ ।।୩୩।।

---

ବୃଦ୍ଧାଃ ପଣ୍ଡିତାଃ ତୈଃ ସହ ବର୍ତ୍ତତେ ଇତି ସବୃତ୍ ତସ୍ମୈ ସବୃଧେ), ଜଗତର ସୃଷ୍ଟି ପୂର୍ବରୁ ଯାହାଙ୍କର (ରୁଦ୍ରଙ୍କର) ସ୍ଥିତି, ସବୁ କ୍ଷେତ୍ରରେ ପ୍ରଥମ - ଏ ସମସ୍ତ ରୂପରେ ରୁଦ୍ରଙ୍କୁ ନମସ୍କାର ।

**ମନ୍ତ୍ରସଂଖ୍ୟା (୩୧) :-** ଯଜୁର୍ବେଦ ଅ.୧୬/୩୧ : ନମ ଆଶବେ - ସମଗ୍ର ଜଗତରେ ବ୍ୟାପ୍ତ, ସର୍ବଦା ଗତିଶୀଳ, କ୍ଷିପ୍ରକାରୀ, ଜଳପ୍ରବାହୀ (ମତାନ୍ତରରେ ଶୀଭଃ = ଆତ୍ମଶ୍ଲାଘୀ), ଲହରୀଯୁକ୍ତ ଜଳ, ସ୍ଥିର ଜଳ, ନଦୀଜ (ନଦୀରେ ଉତ୍ପନ୍ନ), ଦ୍ୱୀପୋତ୍ପନ୍ନ - ଏ ସମସ୍ତ ସ୍ୱରୂପରେ ରୁଦ୍ରଙ୍କୁ ନମସ୍କାର ।

**ମନ୍ତ୍ରସଂଖ୍ୟା (୩୨) :-** ଯଜୁର୍ବେଦ ଅ. ୧୬/୩୨ : ନମୋ ଜ୍ୟେଷ୍ଠାୟ- ଜ୍ୟେଷ୍ଠ, କନିଷ୍ଠ, ପୂର୍ବଜାତ, ପରବର୍ତ୍ତିଜାତ, ମଧ୍ୟମକାଳରେ ଜାତ ଅର୍ଥାତ୍ ସୃଷ୍ଟିର ପ୍ରାରମ୍ଭରେ ହିରଣ୍ୟଗର୍ଭ ରୂପରେ, ପରେ ପ୍ରଳୟ କାଳରେ କାଳାଗ୍ନି ରୂପରେ ଏବଂ ସୃଷ୍ଟି ପ୍ରଳୟର ମଧ୍ୟଭାଗରେ ଦେବମନୁଷ୍ୟପଶୁପକ୍ଷୀ ରୂପରେ ଜାତ ହେଲେ ଯେଉଁ ରୁଦ୍ର ତାଙ୍କୁ ନମସ୍କାର । ଅପଗଲ୍ଭ ବା ଅପ୍ରଗଲ୍ଭ ଅର୍ଥାତ୍ ଅବ୍ୟୁତ୍ପନ୍ନ ଇନ୍ଦ୍ରିୟ ସ୍ୱରୂପ, ଗୋମହିଷାଦିପଶୁମାନଙ୍କର ଜଙ୍ଘ ରୂପରେ, ବୃକ୍ଷାଦିର ମୂଳ ସ୍ୱରୂପରେ ସେହି ରୁଦ୍ରଙ୍କୁ ନମସ୍କାର ।

**ମନ୍ତ୍ରସଂଖ୍ୟା (୩୩) :-** ଯଜୁର୍ବେଦ ଅ.୧୬/୩୩ : ନମଃ ସୋଭ୍ୟାୟ - ସୋଭ୍ୟ ଅର୍ଥାତ୍ ଗନ୍ଧର୍ବ ନଗରରେ ଉତ୍ପନ୍ନ ଅଥବା ପାପପୁଣ୍ୟଯୁକ୍ତ ମନୁଷ୍ୟ ଲୋକରେ ଜନ୍ମିତ, ବିବାହୋଚିତ ହସ୍ତଗ୍ରନ୍ଥିସୂତ୍ର ଅଥବା ଅଭିଚାରୋତ୍ପନ୍ନ, ପାପୀମାନଙ୍କୁ ନରକଯନ୍ତ୍ରଣା ପ୍ରଦାୟକ, ପୁଣି କୁଶଳପ୍ରଦାତା (ମଙ୍ଗଳବିଧାୟକ), ଶ୍ଳୋକ ଅର୍ଥାତ୍

ନମୋ ବନ୍ୟାୟ ଚ କକ୍ଷ୍ୟାୟ ଚ ନମଃ ଶ୍ରବାୟ ଚ ପ୍ରତିଶ୍ରବାୟ ଚ । ନମ ଆଶୁଷେଣାୟ ଚାଶୁରଥାୟ ଚ ନମଃ ଶୂରାୟ ଚାବଭେଦିନେ ଚ ।।୩୪।। ନମୋ ବିଲ୍ମିନେ ଚ କବଚିନେ ଚ ନମୋ ବର୍ମିଣେ ଚ ବରୂଥିନେ ଚ । ନମଃ ଶ୍ରୁତାୟ ଚ ଶ୍ରୁତସେନାୟ ଚ ନମୋ ଦୁନ୍ଦୁଭ୍ୟାୟ ଚାହନନ୍ୟାୟ ଚ ।।୩୫।। ନମୋ ଧୃଷ୍ଣବେ ଚ ପ୍ରମୃଶାୟ ଚ ନମୋ ନିଷଙ୍ଗିଣେ ଚେଷୁଧିମତେ ଚ । ନମସ୍ତୀକ୍ଷ୍ଣେଷବେ ଚାୟୁଧିନେ ଚ ନମଃ ସ୍ୱାୟୁଧାୟ ଚ ସୁଧନ୍ୱନେ ଚ ।।୩୬।।

---

ବୈଦିକ ମନ୍ତ୍ର ରୂପରେ ଅଥବା ଯଶପ୍ରଦାତା ଭାବରେ, ଅବସାନ୍ୟ ଅର୍ଥାତ୍ ସମାପ୍ତି ଅଥବା ବେଦାନ୍ତବେଦ୍ୟ ରୂପରେ, ଉର୍ବର ଭୂମିରେ ଜାତ ଧାନ୍ୟାଦି ଶସ୍ୟ ସ୍ୱରୂପରେ, ଧାନ୍ୟାଦିଶସ୍ୟକୁ ସଂଗ୍ରହ କରିବା ସ୍ଥାନ ଖଳା ଏହିପରି ସମସ୍ତ ରୂପରେ ରୁଦ୍ରଙ୍କୁ ନମସ୍କାର ।

**ମନ୍ତ୍ରସଂଖ୍ୟା (୩୪) :-** ଯଜୁର୍ବେଦ ଅ. ୧୬/୩୪ : ନମୋ ବନ୍ୟାୟ- ଅରଣ୍ୟୋଭବ, ତୃଣ ଓ ଲତା ରୂପରେ, ଶବ୍ଦ ଏବଂ ପ୍ରତିଶବ୍ଦ ଭାବରେ, ଶୀଘ୍ର ଗତିରେ ଗମନ କରିପାରୁଥିବା ସୈନ୍ୟ, ଶୀଘ୍ର ରଥ ଚାଳକ, ବୀର ଏବଂ ଶତ୍ରୁଙ୍କୁ ବିଦାରଣ କରୁଥିବା ଏ ସମସ୍ତ ରୂପରେ ରୁଦ୍ରଙ୍କୁ ପ୍ରଣାମ ।

**ମନ୍ତ୍ରସଂଖ୍ୟା (୩୫) :-** ଯଜୁର୍ବେଦ ଅ. ୧୬/୩୫ : ନମୋ ବିଲ୍ମିନେ - ଶିରସ୍ତ୍ରାଣ (ମସ୍ତକ ରକ୍ଷାକାରୀ କବଚ), ଶରୀରରକ୍ଷକ କାର୍ପାସ ନିର୍ମିତ କବଚ, ଲୌହ ନିର୍ମିତ ବର୍ମ ବା କବଚ, ହାତୀ ଉପରେ ବସିବା ନିମିତ୍ତ ପ୍ରକୋଷ୍ଠ, ସର୍ବଲୋକ ପ୍ରସିଦ୍ଧ ସୈନ୍ୟ ସମେତ ବିଶିଷ୍ଟ ସେନାପତି, ଦୁନ୍ଦୁଭି (ଭେରୀ) ଶବ୍ଦ, ବାଦ୍ୟଯନ୍ତ୍ରକୁ ବଜେଇବା ପାଇଁ ଯେଉଁ ଦଣ୍ଡାଦି - ଏ ସମସ୍ତ ସ୍ୱରୂପରେ ଭଗବାନ୍ ରୁଦ୍ରଙ୍କୁ ପ୍ରଣାମ ।

**ମନ୍ତ୍ରସଂଖ୍ୟା (୩୬) :-** ଯଜୁର୍ବେଦ ଅ. ୧୬/୩୬ : ନମୋ ଧୃଷ୍ଣବେ - ପ୍ରଗଳ୍ଭ (ପ୍ରତ୍ୟୁତ୍ପନ୍ନମତି), ବିମର୍ଶକାରୀ ପଣ୍ଡିତ, ଖଡ୍ଗ ଏବଂ ବାଣଧାରୀ, ତୀକ୍ଷ୍ଣବାଣ ଓ ଆୟୁଧଧାରୀ, ଶୋଭନ ଆୟୁଧ (ତ୍ରିଶୂଳ) ଓ ଶୋଭନ ଧନୁ (ପିନାକ)କୁ ଧାରଣ କରୁଥିବା ରୁଦ୍ରଙ୍କୁ ନମସ୍କାର ।

ନମଃ ସ୍ରୁତ୍ୟାୟ ଚ ପଥ୍ୟାୟ ଚ ନମଃ କାଟ୍ୟାୟ ଚ ନୀପ୍ୟାୟ ଚ । ନମଃ କୁଲ୍ୟାୟ ଚ ସରସ୍ୟାୟ ଚ ନମୋ ନାଦେୟାୟ ଚ ବୈଶନ୍ତାୟ ଚ ॥୩୭॥ ନମଃ କୂପ୍ୟାୟ ଚାଽବଟ୍ୟାୟ ଚ ନମ ଈଧ୍ରିୟାୟ ଚାତପ୍ୟାୟ ଚ । ନମୋ ମେଘ୍ୟାୟ ଚ ବିଦ୍ୟୁତ୍ୟାୟ ଚ ନମୋ ବର୍ଷ୍ୟାୟ ଚାବର୍ଷ୍ୟାୟ ଚ ॥୩୮॥ ନମୋ ବାତ୍ୟାୟ ଚ ରେଷ୍ମ୍ୟାୟ ଚ ନମୋ ବାସ୍ତବ୍ୟାୟ ଚ ବାସ୍ତୁପାୟ ଚ । ନମଃ ସୋମାୟ ଚ ରୁଦ୍ରାୟ ଚ ନମସ୍ତାମ୍ରାୟ ଚାରୁଣାୟ ଚ ॥୩୯॥ ନମଃ ଶଙ୍ଗବେ ଚ ପଶୁପତୟେ ଚ ନମ ଉଗ୍ରାୟ ଚ ଭୀମାୟ ଚ । ନମୋଽଗ୍ରେବଧାୟ ଚ ଦୂରେବଧାୟ ଚ ନମୋ ହନ୍ତ୍ରେ ଚ ହନୀୟସେ ଚ ॥୪୦॥

---

**ମନ୍ତ୍ରସଂଖ୍ୟା (୩୭) :-** ଯଜୁର୍ବେଦ ଅ.୧୬/୩୭ : ନମଃ ସ୍ରୁତ୍ୟାୟ - କ୍ଷୁଦ୍ରମାର୍ଗ, ବିସ୍ତୃତମାର୍ଗ, ବିଷମମାର୍ଗ, କୁଲ୍ୟ ଅର୍ଥାତ୍ ପ୍ରଣାଳୀ ବା କେନାଲ, ଜଳପ୍ରପାତ, ଜଳାଶୟରୁ ଜାତ, ନଦୀରୁ ଉତ୍ପନ୍ନ ତଥା ପୋଖରୀରୁ ଉଦ୍ଭବ - ଏ ସମସ୍ତ ରୂପରେ ରୁଦ୍ରଙ୍କୁ ପ୍ରଣାମ ।

**ମନ୍ତ୍ରସଂଖ୍ୟା (୩୮) :-** ଯଜୁର୍ବେଦ ଅ.୧୬/୩୮ : ନମଃ କୂପ୍ୟାୟ - କୂପରୁ ଜାତ, ଗର୍ତ୍ତରୁ ଉତ୍ପନ୍ନ, ଛାୟାରୁ ଜାତ, ଆତପ ଅର୍ଥାତ୍ ସୂର୍ଯ୍ୟକିରଣରୁ ଜାତ, ମେଘ ଓ ବିଦ୍ୟୁତ୍‌ରୁ ଉତ୍ପନ୍ନ, ବୃଷ୍ଟିରୁ ଉଦ୍ଭବ ତଥା ବୃଷ୍ଟିରହିତରୁ ଉଦ୍‌ଗମ- ଏ ସମସ୍ତ ସ୍ୱରୂପରେ ରୁଦ୍ରଙ୍କୁ ପ୍ରଣାମ ।

**ମନ୍ତ୍ରସଂଖ୍ୟା (୩୯) :-** ଯଜୁର୍ବେଦ ଅ.୧୬/୩୯ : ନମୋ ବାତ୍ୟାୟ- ବାତ୍ୟାସ୍ୱରୂପ, ପ୍ରଳୟକାଳରେ ମଧ୍ୟ ବିଦ୍ୟମାନ, ବାସ୍ତୁସ୍ୱରୂପ, ବାସ୍ତୁର ପାଳକ ଏପରି ସ୍ୱରୂପରେ ଏବଂ ଉମାସମନ୍ୱିତ ରୁଦ୍ରଙ୍କୁ ପ୍ରଣାମ । ତାମ୍ରବର୍ଣ୍ଣ ଓ ଅରୁଣବର୍ଣ୍ଣ ବିଶିଷ୍ଟ ଶଙ୍କରଙ୍କୁ ପ୍ରଣାମ ।

**ମନ୍ତ୍ରସଂଖ୍ୟା (୪୦) :-** ଯଜୁର୍ବେଦ ଅ.୧୬/୪୦ : ନମଃ ଶଙ୍ଗବେ- ସୁଖପ୍ରଦାୟକ, ପଶୁପତି, ଉଗ୍ରସ୍ୱଭାବ, ଭୟଙ୍କର ସ୍ୱରୂପ, ସମ୍ମୁଖରେ ଶତ୍ରୁଙ୍କୁ ବଧକାରୀ, ଦୂରରୁ ମଧ୍ୟ ଶତ୍ରୁର ସଂହାରକର୍ତ୍ତା, ଶତ୍ରୁ ହତ୍ୟାକାରୀ ଏବଂ ଅତ୍ୟନ୍ତ ହତ୍ୟାକାରୀ, ହରିତ୍‌ବର୍ଣ୍ଣ ପତ୍ର ସଦୃଶ କେଶଯୁକ୍ତ ବୃକ୍ଷସ୍ୱରୂପଧାରୀ, ସଂସାରର ଏକମାତ୍ର ତ୍ରାଣକର୍ତ୍ତା ରୁଦ୍ରଙ୍କୁ ପ୍ରଣାମ ।

ନମୋ ବୃକ୍ଷେଭ୍ୟୋ ହରିକେଶେଭ୍ୟୋ ନମସ୍ତାରାୟ । ନମଃ ଶମ୍ଭବେ ଚ ମୟୋଭବେ ଚ ନମଃ ଶଙ୍କରାୟ ଚ । ମୟସ୍କରାୟ ଚ ନମଃ ଶିବାୟ ଚ ଶିବତରାୟ ଚ ॥୪୧॥ ନମଃ ପାର୍ଯ୍ୟାୟ ଚାବାର୍ଯ୍ୟାୟ ଚ ନମଃ ପ୍ରତରଣାୟ ଚୋତ୍ତରଣାୟ ଚ । ନମସ୍ତୀର୍ଥ୍ୟାୟ ଚ କୂଲ୍ୟାୟ ଚ ନମଃ ଶଷ୍ପ୍ୟାୟ ଚ ଫେନ୍ୟାୟ ଚ ॥୪୨॥ ନମଃ ସିକତ୍ୟାୟ ଚ ପ୍ରବାହ୍ୟାୟ ଚ ନମଃ କିଂଶିଲାୟ ଚ କ୍ଷୟଣାୟ ଚ । ନମଃ କପର୍ଦିନେ ଚ ପୁଲସ୍ତିନେ ଚ ନମ ଇରିଣ୍ୟାୟ ଚ ପ୍ରପଥ୍ୟାୟ ଚ ॥୪୩॥ ନମୋ ବ୍ରଜ୍ୟାୟ ଚ ଗୋଷ୍ଠ୍ୟାୟ ଚ ନମସ୍ତଳ୍ପ୍ୟାୟ ଚ ଗେହ୍ୟାୟ ଚ । ନମୋ ହୃଦ୍ୟାୟ ଚ ନିବେଷ୍ପ୍ୟାୟ ଚ ନମଃ କାଟ୍ୟାୟ ଚ ଗହ୍ୱରେଷ୍ଠାୟ ଚ ॥୪୪॥

---

**ମନ୍ତ୍ରସଂଖ୍ୟା (୪୧) :-** ଯଜୁର୍ବେଦ ଅ.୧୬/୪୧ : ନମଃ ଶମ୍ଭବାୟ ଚ - ସୁଖସ୍ୱରୂପ ଓ ସୁଖକାରୀ, କଲ୍ୟାଣମୟ ଓ କଲ୍ୟାଣକାରୀ, ଶିବସ୍ୱରୂପ ଏବଂ ଅତ୍ୟନ୍ତ ଶୁଭସ୍ୱରୂପ ରୁଦ୍ରଙ୍କୁ ନମସ୍କାର ।

**ମନ୍ତ୍ରସଂଖ୍ୟା (୪୨) :-** ଯଜୁର୍ବେଦ ଅ.୧୬/୪୨ : ନମଃ ପାର୍ଯ୍ୟାୟ - ସଂସାର ସାଗରରୁ ପାର କରି ଜୀବନ୍ମୁକ୍ତି ପ୍ରଦାତା, ସଂସାରାବସ୍ଥାରେ ଯୋଗ୍ୟ ସଂସାରୀତ୍ୱକୁ ପ୍ରାପ୍ତ କରାଉଥିବା, ମନ୍ତ୍ର-ଜପ-ପୂଜା-ଧ୍ୟାନଦ୍ୱାରା ପାପରୁ ତ୍ରାଣକର୍ତ୍ତା, ଶ୍ରେଷ୍ଠ ତତ୍ତ୍ୱଜ୍ଞାନଦ୍ୱାରା ସଂସାରରୁ ଉଦ୍ଧାରକର୍ତ୍ତା, ତୀର୍ଥସ୍ୱରୂପ, ପାପପ୍ରକ୍ଷାଳନ ପାଇଁ ଗଙ୍ଗାଦି ପବିତ୍ର ନଦୀର କୂଳସ୍ୱରୂପ, କୁଶାଦି ପବିତ୍ର ତୃଣରୂପ ଏବଂ ପବିତ୍ର ଜଳର ଫେଣସ୍ୱରୂପ ରୁଦ୍ରଙ୍କୁ ନମସ୍କାର ।

**ମନ୍ତ୍ରସଂଖ୍ୟା (୪୩) :-** ଯଜୁର୍ବେଦ ଅ.୧୬/୪୩ : ନମଃ ସିକତ୍ୟାୟ - ବାଲିରୁ ଜାତ, ଜଳସ୍ରୋତରୁ ଜାତ, କ୍ଷୁଦ୍ର ଶିଳାଖଣ୍ଡରୁ ଉତ୍ପନ୍ନ, ସ୍ଥିର ଜଳାଶୟ ସ୍ୱରୂପ, ଜଟାଜୁଟଧାରୀ, ସର୍ବାନ୍ତର୍ଯ୍ୟାମୀ, ତୃଣରହିତ ସ୍ଥାନରୁ ଜାତ, ଉତ୍କୃଷ୍ଟ ମାର୍ଗ ସମ୍ଭୂତ ଯେଉଁ ଭଗବାନ୍ ରୁଦ୍ର ତାଙ୍କୁ ପ୍ରଣାମ ।

**ମନ୍ତ୍ରସଂଖ୍ୟା (୪୪) :-** ଯଜୁର୍ବେଦ ଅ.୧୬/୪୪ : ନମୋ ବ୍ରଜ୍ୟାୟ - ଗୋଷ୍ଠରୁ ଉତ୍ପନ୍ନ, ଗୋରୁ ବସତିସ୍ଥାନ (ଗୁହାଳ)ରୁ ଉତ୍ପନ୍ନ, ଗୃହରୁ ଜାତ, ହୃଦୟରୁ ସମ୍ଭୂତ, ଜଳର ଆବର୍ତ୍ତ (ଭଉଁରୀ)ରୁ ଅଥବା କୂପରୁ ଜାତ, ଗିରି ଗୁମ୍ଫାନିବାସୀ - ଏହି ସମସ୍ତ ସ୍ୱରୂପରେ ରୁଦ୍ରଙ୍କୁ ପ୍ରଣାମ ।

ନମଃ ଶୁଷ୍କ୍ୟାୟ ଚ ହରିତ୍ୟାୟ ଚ ନମଃ ପାଗୁଁସବ୍ୟାୟ ଚ ରଜସ୍ୟାୟ ଚ ।
ନମୋ ଲୋପ୍ୟାୟ ଚୋଲପ୍ୟାୟ ଚ ନମ ଊର୍ବ୍ୟାୟ ଚ ସୂର୍ବ୍ୟାୟ ଚ ॥୪୫॥
ନମଃ ପର୍ଣ୍ଣାୟ ଚ ପର୍ଣ୍ଣଶଦାୟ ଚ ନମ ଉଦ୍‌ଗୁରମାଣାୟ ଚାଭିଘ୍ନତେ ଚ ।
ନମ ଆଖିଦତେ ଚ ପ୍ରଖିଦତେ ଚ ନମ ଇଷୁକୃଦ୍‌ଭ୍ୟୋ ଧନୁଷ୍କୃଦ୍‌ଭ୍ୟଶ୍ଚ
ବୋ ନମଃ । ନମୋ ବଃ କିରିକେଭ୍ୟୋ ଦେବାନାଗୁଁ ହୃଦୟେଭ୍ୟୋ ନମୋ
ବିଚିନ୍ୱତ୍କେଭ୍ୟୋ ନମୋ ବିକ୍ଷିଣତ୍କେଭ୍ୟୋ ନମ ଆନିର୍ହତେଭ୍ୟଃ ॥୪୬॥
ଦ୍ରାପେ ଅନ୍ଧସସ୍ପତେ ଦରିଦ୍ର ନୀଲଲୋହିତ । ଆସାଂ ପ୍ରଜାନାମେଷାଂ
ପଶୂନାଂ ମା ଭେର୍ମୋ ରୋଙ୍‌ମୋ ଚ ନଃ କିଞ୍ଚନାମମତ୍ ॥୪୭॥

---

**ମନ୍ତ୍ରସଂଖ୍ୟା (୪୫) :-** ଯଜୁର୍ବେଦ ଅ.୧୬/୪୫ : ନମଃ ଶୁଷ୍କ୍ୟାୟ - ଶୁଷ୍କ କାଷ୍ଠାଦିରୁ ଉଦ୍‌ଭବ, ହରିତ୍‌ବର୍ଣ୍ଣ ବିଶିଷ୍ଟ ପତର ଇତ୍ୟାଦିରୁ ଉଦ୍‌ଗମ, ଧୂଳିରୁ ଉତ୍ପନ୍ନ, ରଜଃକଣା (କ୍ଷୁଦ୍ର ଧୂଳିକଣା)ରୁ ସମ୍ଭୂତ, ଅଗମ୍ୟ ପ୍ରଦେଶୋଭବ, ଉଲପ୍ୟନାମକ ତୃଣ ବିଶେଷରୁ ଜାତ, ଭୂମିରୁ ଜାତ, କଲ୍ପାନଳରୁ ଉଦ୍‌ଗତ - ଏହିପରି ସ୍ୱଭାବ ବିଶିଷ୍ଟ ରୁଦ୍ରଙ୍କୁ ପ୍ରଣାମ ।

**ମନ୍ତ୍ରସଂଖ୍ୟା (୪୬) :-** ଯଜୁର୍ବେଦ ଅ.୧୬/୪୬ : ନମଃ ପର୍ଣ୍ଣାୟ - ପତ୍ରରୂପୀ, ପତିତ ପକ୍ୱପତ୍ର ସ୍ୱରୂପ, ଉଦ୍ୟମୀ, ଶତ୍ରୁଙ୍କୁ ସମ୍ମୁଖ ଯୁଦ୍ଧରେ ହତ୍ୟାକାରୀ, ନାସ୍ତିକ ବା ଅଭକ୍ତମାନଙ୍କର ଦୈନ୍ୟ ବା ଦାରିଦ୍ର୍ୟପ୍ରଦ, ପାପୀମାନଙ୍କ ଦୁଃଖଜନକ, ବାଣନିର୍ମାଣକାରୀ ଏବଂ ଧନୁକୁ ମଧ ପ୍ରସ୍ତୁତକାରୀ, ବର୍ଷା ଆଦିଦ୍ୱାରା ଜଗତର ଉତ୍ପତ୍ତିକର୍ତ୍ତା ତଥା ଦେବତାମାନଙ୍କ ହୃଦୟ ସଦୃଶ (ଅଗ୍ନି-ବାୟୁ-ଆଦିତ୍ୟ ସ୍ୱରୂପୀ) ରୁଦ୍ର, ପାପୀ ଏବଂ ପୁଣ୍ୟବାନ୍‌ଙ୍କୁ ପୃଥକ୍ କରୁଥିବା ଓ ପାପକୁ ବିଭିନ୍ନ ରୂପରେ ବିନାଶ କରିପାରୁଥିବା ଅଗ୍ନ୍ୟାଦି ଦେବତାମ୍ନାଙ୍କୁ ନମସ୍କାର । ସୃଷ୍ଟ୍ୟାଦିରେ ଲୋକରୁ ବହିର୍ଭୂତ ସେହି ଅଗ୍ନି-ବାୟୁ-ସୂର୍ଯ୍ୟରୂପକ ରୁଦ୍ରଙ୍କୁ ନମସ୍କାର ।

**ମନ୍ତ୍ରସଂଖ୍ୟା (୪୭) :-** ଯଜୁର୍ବେଦ ଅ.୧୬/୪୭ : ଦ୍ରାପେ ଅନ୍ଧସସ୍ପତେ- ପାପୀମାନଙ୍କୁ ଦୁର୍ଗତି ପ୍ରାପ୍ତିକାରକ ! ହେ ସୋମର ପାଳକ ! ହେ ଦରିଦ୍ର (ନିଷ୍ପରିଗ୍ରହ) ! ହେ ନୀଲଲୋହିତ (କଣ୍ଠ ନୀଳ ମାତ୍ର ଶରୀରର ଅନ୍ୟତ୍ର ଲୋହିତବର୍ଣ୍ଣ ବିଶିଷ୍ଟ)! ହେ ରୁଦ୍ର ! ତୁମେ ଏହି ପ୍ରଜାମାନଙ୍କୁ (ପୁତ୍ର-ପୌତ୍ରାଦିଙ୍କୁ) ତଥା ଏହି ଗବାଦି ପଶୁମାନଙ୍କୁ (ଯେଉଁମାନେ ତୁମଠାରେ ଆଶ୍ରିତ) ଭୟଭୀତ କରାଅ ନାହିଁ ଏବଂ କାହାକୁ ବି ରୁଗ୍ଣ କର ନାହିଁ ।

ଇମା ରୁଦ୍ରାୟ ତବସେ କପର୍ଦିନେ କ୍ଷୟଦ୍‌ବୀରାୟ ପ୍ରଭରାମହେ ମତୀଃ । ଯଥା ଶମସଦ୍ ଦ୍ୱିପଦେ ଚତୁଷ୍ପଦେ ବିଶ୍ୱଂ ପୁଷ୍ଟଂ ଗ୍ରାମେଽଅସ୍ମିନ୍ନ-ନାତୁରମ୍ ॥୪୮॥ ଯା ତେ ରୁଦ୍ର ଶିବା ତନୂଃ ଶିବା ବିଶ୍ୱାହା ଭେଷଜୀ । ଶିବା ରୁତସ୍ୟ ଭେଷଜୀ ତୟା ନୋ ମୃଳ ଜୀବସେ ॥୪୯॥ ପରିଣୋ ହେତୀ ରୁଦ୍ରସ୍ୟ ବୃଜ୍ୟାତ୍‌ପରିତ୍ୱେଷସ୍ୟ ଦୁର୍ମତିର୍ମହୀଗାତ୍ । ଅବ ସ୍ଥିରା ମଘବଦ୍‌ଭ୍ୟସ୍ତନୁଷ୍ୱମୀଢ୍ୱସ୍ତୋକାୟ ତନୟାୟ ମୃଳ ॥୫୦॥ ମୀଲ୍‌ହୁଷ୍ଟମ ଶିବତମ ଶିବୋ ନଃ ସୁମନା ଭବ । ପରମେ ବୃକ୍ଷ ଆୟୁଧଂ ନିଧାୟ କୃତ୍ତିଂ ବସାନ ଆଚର ପିନାକଂ ବିଭ୍ରଦାଗହି ॥୫୧॥

---

**ମନ୍ତ୍ରସଂଖ୍ୟା (୪୮) :-** ଯଜୁର୍ବେଦ ଅ.୧୬/୪୮ : ଇମା ରୁଦ୍ରାୟ - ଆମ୍ଭମାନଙ୍କ ଏହି ସ୍ତୁତି ବଳବାନ୍ ତେଜସ୍ୱୀ ଜଟାଜୁଟଧାରୀ ଶତ୍ରୁ ବିନାଶକାରୀ ଶଙ୍କରଙ୍କ ପାଇଁ ସମର୍ପିତ ହେଉ । ଯାହା ଫଳରେ (ତୁମର ସନ୍ତୋଷଲାଭ ଦ୍ୱାରା) ଆମ ଗ୍ରାମର ସମସ୍ତ ଦ୍ୱିପଦ (ପୁତ୍ରପୌତ୍ରାଦି) ଓ ଚତୁଷ୍ପଦ (ପଶୁ ଇତ୍ୟାଦି) ପ୍ରାଣୀମାନେ ସର୍ବବିଧ ସୁଖସମୃଦ୍ଧି ସହିତ ନିରୁପଦ୍ରବ ଜୀବନଯାପନ କରିପାରିବେ ।

**ମନ୍ତ୍ରସଂଖ୍ୟା (୪୯) :-** ଯଜୁର୍ବେଦ ଅ.୧୬/୪୯ : ଯା ତେ ରୁଦ୍ର ଶିବା - ହେ ରୁଦ୍ର **!** ତୁମର ଯେଉଁ ମଙ୍ଗଳମୟ ଶାନ୍ତ ସ୍ୱରୂପ ଶରୀର, ତାହା ଆମପାଇଁ ସର୍ବଦା ମଙ୍ଗଳପ୍ରଦ ତଥା ସାଂସାରିକ ଆଧିବ୍ୟାଧି ନିବର୍ତ୍ତନ ପାଇଁ ଔଷଧସ୍ୱରୂପ ଅଟେ ।

**ମନ୍ତ୍ରସଂଖ୍ୟା (୫୦) :-** ଯଜୁର୍ବେଦ ଅ.୧୬/୫୦ : ପରିଣୋ ରୁଦ୍ରସ୍ୟ - ରୁଦ୍ରଙ୍କର କ୍ରୋଧିତ ଦୁର୍ମତି ସମ୍ପନ୍ନ ଆୟୁଧସମୂହ ଆମକୁ ବର୍ଜନ କରନ୍ତୁ ଅର୍ଥାତ୍ ଆମ ପାଇଁ ସେମାନେ ବିନାଶକାରୀ ହୁଅନ୍ତୁ ନାହିଁ । ହେ କାମଦ **!** ଯଜମାନଙ୍କ ଭୟ ନିବୃତ୍ତି ନିମିତ୍ତ ଧନୁକୁ ଚାପ ରହିତ କରନ୍ତୁ ଏବଂ ପୁତ୍ର ପୌତ୍ରାଦିଙ୍କ ପ୍ରତି ଦୟା ପ୍ରଦର୍ଶନ ପୂର୍ବକ ସୁଖ ପ୍ରଦାନ କରନ୍ତୁ ।

**ମନ୍ତ୍ରସଂଖ୍ୟା (୫୧) :-** ଯଜୁର୍ବେଦ ଅ.୧୬/୫୧ : ମୀଲ୍‌ହୁଷ୍ଟମ ଶିବତମ - ହେ ଅତିଶୟ କାମସେକ୍ତ (କାମଦକ୍ଷ) ରୁଦ୍ର **!** ହେ ଅତ୍ୟନ୍ତ କଲ୍ୟାଣକାରୀ ଶଙ୍କର **!** ତୁମେ କଲ୍ୟାଣସ୍ୱରୂପ ଆମ ପ୍ରତି ସର୍ବଦା ଶାନ୍ତ ଓ ହୃଷ୍ଟଚିତ୍ତ ସମ୍ପନ୍ନ ହୁଅ । ତୁମେ ଦୂରସ୍ଥ ଉନ୍ନତ ବୃକ୍ଷ (ବଟବୃକ୍ଷ ଇତ୍ୟାଦି)ରେ ତ୍ରିଶୂଳାଦି ଅସ୍ତ୍ରମାନଙ୍କୁ ରଖି ଚର୍ମବସନ

ବିକିରିଦ୍ର ବିଲୋହିତ ନମସ୍ତେ ଅସ୍ତୁ ଭଗବଃ । ଯାସ୍ତେ ସହସ୍ରଗୁଁ ହେତୟୋଽନ୍ୟମସ୍ମନ୍ନିବପନ୍ତୁ ତାଃ ॥୫୨॥ ସହସ୍ରାଣି ସହସ୍ରଶୋ ବାହ୍ୱୋସ୍ତବ ହେତୟଃ । ତାସାମୀଶାନୋ ଭଗବଃ ପରାଚୀନା ମୁଖା କୃଧି ॥୫୩॥ ଅସଂଖ୍ୟାତା ସହସ୍ରାଣି ଯେ ରୁଦ୍ରା ଅଧିଭୂମ୍ୟାମ୍ । ତେଷାଗୁଁ ସହସ୍ରଯୋଜନେଽବ ଧନ୍ୱାନି ତନ୍ମସି ॥୫୪॥ ଅସ୍ମିନ୍ମହତ୍ୟର୍ଣ୍ଣବେଽନ୍ତରିକ୍ଷେ ଭବା ଅଧି । ତେଷାଗୁଁ ସହସ୍ରଯୋଜନେଽବଧନ୍ୱାନି ତନ୍ମସି ॥୫୫॥

---

ପରିଧାନ କରି ଆସ ବା ତପଶ୍ଚର୍ଯ୍ୟା କର । ଆସୁଥିବା ସମୟରେ ପ୍ରତ୍ୟଞ୍ଚାରହିତ କେବଳ ପିନାକ ଧନୁକୁ ଧାରଣ କରି ଆସ ।

**ମନ୍ତ୍ରସଂଖ୍ୟା (୫୨) :-** ଯଜୁର୍ବେଦ ଅ.୧୬/୫୨ : ବିକିରିଦ୍ର ବିଲୋହିତ- ବିକିରିଦ୍ର (ବିବିଧଂ କିରିଂ = ଘାତାଦି ଉପଦ୍ରବଂ ଦ୍ରାବୟତି) ଅର୍ଥାତ୍ ବାଣବିଘାତାଦି ଉପଦ୍ରବର ବିନାଶକ, ବିଗତ ଲୋହିତ (କଳ୍ମଷ) ଶୁଦ୍ଧସ୍ୱରୂପ ହେ ଭଗବାନ୍ ରୁଦ୍ର ! ତୁମ୍ଭଙ୍କୁ ପ୍ରଣାମ । ତୁମର ଯେଉଁ ଅସଂଖ୍ୟ ଆୟୁଧ ସେ ସମସ୍ତ ଆମ ବ୍ୟତିରେକେ ଶତ୍ରୁମାନଙ୍କୁ ହତ୍ୟା କରୁ ।

**ମନ୍ତ୍ରସଂଖ୍ୟା (୫୩) :-** ଯଜୁର୍ବେଦ ଅ.୧୬/୫୩ : ସହସ୍ରାଣି ସହସ୍ରଶୋ- ସମସ୍ତ ଐଶ୍ୱର୍ଯ୍ୟ ଯୁକ୍ତ ହେ ଭଗବାନ୍ ରୁଦ୍ର ! ତୁମର ବାହୁଦ୍ୱୟରେ ସହସ୍ର (ଅସଂଖ୍ୟେୟ) ଆୟୁଧ ରହିଛନ୍ତି । ସେଗୁଡ଼ିକର ସ୍ୱାମୀ ତୁମେ, ତେଣୁ ସେଗୁଡ଼ିକୁ ଆମ ପାଇଁ ପରାଙ୍ମୁଖ କର ।

**ମନ୍ତ୍ରସଂଖ୍ୟା (୫୪) :-** ଯଜୁର୍ବେଦ ଅ.୧୬/୫୪ : ଅସଂଖ୍ୟାତା - ଭୂଲୋକରେ ଯେଉଁ ଅସଂଖ୍ୟ ରୁଦ୍ର ଅବସ୍ଥିତ ସେମାନଙ୍କର ଧନୁଗୁଡ଼ିକ ଆମଠାରୁ ହଜାରେ ଯୋଜନ (ଚାରି କୋଶରେ ଏକ ଯୋଜନ) ବ୍ୟବଧାନରେ ଅବତାରିତ କରିବାକୁ ଆମେ ନିବେଦନ କରୁଅଛୁ ।

**ମନ୍ତ୍ରସଂଖ୍ୟା (୫୫) :-** ଯଜୁର୍ବେଦ ଅ.୧୬/୫୫ : ଅସ୍ମିନ୍ ମହତ୍ୟର୍ଣ୍ଣବେ - ଏହି ମେଘର ଆଶ୍ରୟସ୍ଥଳସ୍ୱରୂପ ବିଶାଳ ଆକାଶରେ ଯେଉଁ ରୁଦ୍ରମାନେ ଅବସ୍ଥିତ ସେମାନଙ୍କ ଧନୁଗୁଡ଼ିକ ହଜାରେ ଯୋଜନ ବ୍ୟବଧାନରେ ଅବତାରିତ କରିବାକୁ ଆମେ ନିବେଦନ କରୁଅଛୁ ।

ନୀଳଗ୍ରୀବାଃ ଶିତିକଣ୍ଠା ଦିବଗୁଁ ରୁଦ୍ରା ଉପଶ୍ରିତାଃ । ତେଷାଗୁଁ ସହସ୍ରଯୋଜନେଽବଧନ୍ୱାନି ତନ୍ମସି ॥୫୬॥ ନୀଳଗ୍ରୀବାଃ ଶିତିକଣ୍ଠାଃ ଶର୍ବା ଅଧଃ କ୍ଷମାଚରାଃ । ତେଷାଗୁଁ ସହସ୍ରଯୋଜନେଽବ ଧନ୍ୱାନି ତନ୍ମସି ॥୫୭॥ ଯେ ବୃକ୍ଷେଷୁ ଶଷ୍ପିଞ୍ଜରା ନୀଳଗ୍ରୀବା ବିଲୋହିତାଃ । ତେଷାଗୁଁ ସହସ୍ରଯୋଜନେଽବ ଧନ୍ୱାନି ତନ୍ମସି ॥୫୮॥ ଯେ ଭୂତାନାମଧିପତୟୋ ବିଶିଖାସଃ କପର୍ଦିନଃ । ତେଷାଗୁଁ ସହସ୍ରଯୋଜନେଽବ ଧନ୍ୱାନି ତନ୍ମସି ॥୫୯॥

---

**ମନ୍ତ୍ରସଂଖ୍ୟା (୫୬) :-** ଯଜୁର୍ବେଦ ଅ.୧୭/୫୬ : ନୀଳଗ୍ରୀବାଃ ଶିତିକଣ୍ଠା - ସ୍ୱର୍ଗସ୍ଥ ରୁଦ୍ରମାନେ କେତେକାଂଶରେ ନୀଳକଣ୍ଠ (ନୀଳଗ୍ରୀବ) ଓ ତଦତିରିକ୍ତ ଅଂଶରେ ଶ୍ୱେତକଣ୍ଠ । ସେମାନଙ୍କର ଧନୁଗୁଡ଼ିକ ହଜାରେ ଯୋଜନ ଦୂରରେ ଅବତାରଣ କରିବାକୁ ଆମ୍ଭେମାନେ ନିବେଦନ କରୁଅଛୁ ।

**ମନ୍ତ୍ରସଂଖ୍ୟା (୫୭) :-** ଯଜୁର୍ବେଦ ଅ.୧୭/୫୭ : ନୀଳଗ୍ରୀବାଃ ଶିତିକଣ୍ଠାଃ - ଭୂମିର ଅଧୋଭାଗରେ (ପାତାଳରେ) ଯେଉଁ ଶିବମାନେ ବିଚରଣ କରୁଅଛନ୍ତି, ସେହି ନୀଳଗ୍ରୀବ ଓ ଶ୍ୱେତକଣ୍ଠ ରୁଦ୍ରମାନଙ୍କ ଧନୁଗୁଡ଼ିକ ହଜାରେ ଯୋଜନ ଦୂରରେ ଅବତାରିତ କରିବାକୁ ଆମ୍ଭେ ନିବେଦନ କରୁଅଛୁ ।

**ମନ୍ତ୍ରସଂଖ୍ୟା (୫୮) :-** ଯଜୁର୍ବେଦ ଅ.୧୭/୫୮ : ଯେ ବୃକ୍ଷେଷୁ - ନବୀନ ତୃଣ ସଦୃଶ ହରିତ୍‌ବର୍ଣ୍ଣ ବିଶିଷ୍ଟ ବୃକ୍ଷମାନଙ୍କରେ ଯେଉଁ ରୁଦ୍ରମାନେ ତଥା ନୀଳକଣ୍ଠ ଏବଂ ଲୋହିତାଦି ଧାତୁଗତ ବର୍ଣ୍ଣବିଶିଷ୍ଟ (ତେଜୋମୟ ଶରୀର)ଅଥବା ଲୋହିତବର୍ଣ୍ଣ ବିଶିଷ୍ଟ ରୁଧିର ରହିତ (କେବଳ ମାଂସାଦିଯୁକ୍ତ ଶରୀରଧାରୀ) ରୁଦ୍ରମାନଙ୍କର ଧନୁଗୁଡ଼ିକ ହଜାରେ ଯୋଜନ ଦୂରରେ ଅବତାରଣ କରିବାକୁ ଆମ୍ଭେ ନିବେଦନ କରୁଅଛୁ ।

**ମନ୍ତ୍ରସଂଖ୍ୟା (୫୯) :-** ଯଜୁର୍ବେଦ ଅ.୧୭/୫୯ : ଯେ ଭୂତାନାଂ - ଯେଉଁ ରୁଦ୍ରମାନେ ପ୍ରାଣୀମାନଙ୍କର ଅଧିପତି ତଥା ଯେଉଁମାନେ ମୁଣ୍ଡିତମସ୍ତକ (ବିଶିଖ = ବିଗତ ଶିଖା ମାତ୍ର ଏଠାରେ ଶିଖା ଶବ୍ଦରେ କେଶକୁ ଲକ୍ଷ୍ୟ କରାଯାଇଅଛି), ଯେଉଁମାନେ ଜଟାଜୁଟଧାରୀ ସେମାନଙ୍କର ଧନୁଗୁଡ଼ିକ ହଜାରେ ଯୋଜନ ବ୍ୟବଧାନରେ ଅବତାରିତ କରିବାକୁ ଆମେ ନିବେଦନ କରୁଅଛୁ ।

ଯେ ପଥାଂ ପଥିରକ୍ଷିଣ ଐଲବୃଦା ଆୟୁର୍ୟୁଧଃ । ତେଷାଗୁଁ ସହସ୍ରଯୋଜନେଽବ ଧନ୍ୱାନି ତନ୍ମସି ॥୬୦॥ ଯେ ତୀର୍ଥାନି ପ୍ରଚରନ୍ତି ସୃକାହସ୍ତା ନିଷଙ୍ଗିଣଃ । ତେଷାଗୁଁ ସହସ୍ରଯୋଜନେଽବ ଧନ୍ୱାନି ତନ୍ମସି ॥୬୧॥ ଯେଽନ୍ନେଷୁ ବିବିଧନ୍ତି ପାତ୍ରେଷୁ ପିବତୋ ଜନାନ୍ । ତେଷାଗୁଁ ସହସ୍ରଯୋଜନେଽବ ଧନ୍ୱାନି ତନ୍ମସି ॥୬୨॥ ଯ ଏତାବନ୍ତଶ୍ଚ ଭୂୟାଗୁଁ ସଶ୍ଚ ଦିଶୋ ରୁଦ୍ରା ବିତସ୍ଥିରେ । ତେଷାଗୁଁ ସହସ୍ରଯୋଜନେଽବ ଧନ୍ୱାନି ତନ୍ମସି ॥୬୩॥

---

**ମନ୍ତ୍ରସଂଖ୍ୟା (୬୦) :-** ଯଜୁର୍ବେଦ ଅ.୧୬/୬୦ : ଯେ ପଥାଂ ପଥି ରକ୍ଷିଣ - ଯେଉଁ ରୁଦ୍ରମାନେ ଲୌକିକ ଏବଂ ବୈଦିକ ମାର୍ଗର ଅଧିପତି ତଥା ଅନ୍ନର ଧାରକ (ଅଥବା ଇଳା = ପୃଥିବୀ ତତ୍ସମ୍ପର୍କୀୟ ପାର୍ଥିବ, ପାର୍ଥିବ ବସ୍ତୁର ଧାରଣକର୍ତ୍ତା), ଜୀବଜଗତର ସ୍ଥିତିକାଳ ପର୍ଯ୍ୟନ୍ତ ଯେତେ ସଂଖ୍ୟକ ରୁଦ୍ରମାନେ ଯୁଦ୍ଧ କର୍ତ୍ତା, ସେ ସମସ୍ତଙ୍କର ଧନୁକୁ ସହସ୍ର ଯୋଜନ ଦୂରରେ ଅବନତ କରିବା ପାଇଁ ଆମେ ପ୍ରାର୍ଥନା କରୁଅଛୁ ।

**ମନ୍ତ୍ରସଂଖ୍ୟା (୬୧) :-** ଯଜୁର୍ବେଦ ଅ.୧୬/୬୧ : ଯେ ତୀର୍ଥାନି - ପ୍ରୟାଗ, କାଶୀ ଆଦି ତୀର୍ଥମାନଙ୍କରେ ସୃକା ନାମକ ଆୟୁଧ (ମତାନ୍ତରରେ ଫାସୀର ଦଉଡ଼ି) ଏବଂ ଖଡ୍‌ଗ ଧାରଣ କରି ଯେଉଁ ରୁଦ୍ରଗଣ ବିଚରଣ କରନ୍ତି, ସେମାନଙ୍କ ଧନୁ ସମୂହକୁ ହଜାରେ (ଅସଂଖ୍ୟ) ଯୋଜନ ଦୂରରେ ଅବତାରିତ କରିବାକୁ ଆମେ ନିବେଦନ କରୁଅଛୁ ।

**ମନ୍ତ୍ରସଂଖ୍ୟା (୬୨) :-** ଯଜୁର୍ବେଦ ଅ.୧୬/୬୨ : ଯେଽନ୍ନେଷୁ - ଯେଉଁ ରୁଦ୍ରଗଣ ପ୍ରାଣୀମାନଙ୍କର ଭୋଜ୍ୟ ପଦାର୍ଥରେ ରହି ଧାତୁ ବୈଷମ୍ୟଦ୍ୱାରା ବ୍ୟାଧିକାରକ ତଥା ପାନପାତ୍ରସ୍ଥ କ୍ଷୀର ଓ ଉଦକାଦିରେ ରହି ବିବିଧ ରୋଗର କାରଣ ହୁଅନ୍ତି ସେମାନଙ୍କର ଧନୁ ଗୁଡ଼ିକୁ ହଜାରେ (ଅସଂଖ୍ୟେୟ) ଯୋଜନ ଦୂରରେ ଅବତାରିତ କରିବାକୁ ଆମେ ନିବେଦନ କରୁଅଛୁ ।

**ମନ୍ତ୍ରସଂଖ୍ୟା (୬୩) :-** ଯଜୁର୍ବେଦ ଅ.୧୬/୬୩ : ଯ ଏତାବନ୍ତଶ୍ଚ - ଯେଉଁ ରୁଦ୍ରମାନଙ୍କ ମହିମା ଏ ପର୍ଯ୍ୟନ୍ତ ବର୍ଣ୍ଣନା କରାଗଲା ସେମାନେ ଦଶଦିଗକୁ ବ୍ୟାପୀ

ନମୋଽସ୍ତୁ ରୁଦ୍ରେଭ୍ୟୋ ଯେ ଦିବି ଯେଷାଂ ବର୍ଷମିଷବଃ । ତେଭ୍ୟୋ ଦଶ ପ୍ରାଚୀର୍ଦଶ ଦକ୍ଷିଣା ଦଶ ପ୍ରତୀଚୀର୍ଦଶୋଦୀଚୀର୍ଦଶୋର୍ଧ୍ୱାଃ । ତେଭ୍ୟୋ ନମୋଽସ୍ତୁ ତେ ନୋଽବନ୍ତୁ ତେ ନୋ ମୃଳୟନ୍ତୁ ତେ ଯଂ ଦ୍ୱିଷ୍ମୋ ଯଶ୍ଚ ନୋ ଦ୍ୱେଷ୍ଟି ତମେଷାଂ ଜମ୍ଭେ ଦଧ୍ମଃ ॥ ନମୋଽସ୍ତୁ ରୁଦ୍ରେଭ୍ୟୋ ଯେଽନ୍ତରିକ୍ଷେ ଯେଷାଂ ବାତ ଇଷବଃ । ତେଭ୍ୟୋ ଦଶ ପ୍ରାଚୀର୍ଦଶ ଦକ୍ଷିଣା ଦଶ ପ୍ରତୀଚୀର୍ଦଶୋଦୀଚୀର୍ଦଶୋର୍ଧ୍ୱାଃ । ତେଭ୍ୟୋ ନମୋଽସ୍ତୁ ତେ ନୋଽବନ୍ତୁ ତେ ନୋ ମୃଡ଼ୟନ୍ତୁ  ତେ ଯଂ ଦ୍ୱିଷ୍ମୋ ଯଶ୍ଚ ନୋ ଦ୍ୱେଷ୍ଟି ତମେଷାଂ ଜମ୍ଭେ ଦଧ୍ମଃ ॥ ନମୋଽସ୍ତୁ ରୁଦ୍ରେଭ୍ୟୋ ଯେ ପୃଥିବ୍ୟାଂ ଯେଷାମନ୍ନମିଷବଃ ।

---

ରହିଛନ୍ତି । ସେମାନଙ୍କ ଧନୁ ସବୁକୁ ହଜାରେ (ଅସଂଖ୍ୟ) ଯୋଜନ ବ୍ୟବଧାନରେ ଅବନତ କରିବାକୁ ପ୍ରାର୍ଥନା କରୁଅଛୁ ।

**ମନ୍ତ୍ରସଂଖ୍ୟା (୬୪) :-** ଯଜୁର୍ବେଦ ଅ.୧୭/୬୪ : ନମୋଽସ୍ତୁ ରୁଦ୍ରେଭ୍ୟଃ - ଯେଉଁ ରୁଦ୍ରମାନେ ସ୍ୱର୍ଗଲୋକରେ ଥାଇ ବାଣ ରୂପରେ ବର୍ଷାର କାରକ ଅଟନ୍ତି ଅର୍ଥାତ୍ ଅତିବୃଷ୍ଟି ଇତ୍ୟାଦି ଯେଉଁ ଛଅଗୋଟି 'ଈତି' (ମହାବିପତ୍ତି) ଯଥା-

ଅତିବୃଷ୍ଟିରନାବୃଷ୍ଟିଃ ଶଲଭା ମୂଷିକାଃ ଖଗାଃ ।
ପ୍ରତ୍ୟାସନ୍ନାଶ୍ଚ ରାଜାନଃ ଷଡେତା ଈତୟଃ ସ୍ମୃତାଃ ॥

ଯାହାଦ୍ୱାରା ରୁଦ୍ର ପ୍ରାଣୀମାନଙ୍କୁ ବିନାଶ କରନ୍ତି । ପୂର୍ବ-ପଶ୍ଚିମ-ଦକ୍ଷିଣ-ଉତ୍ତର-ଦିଗସ୍ଥିତ ତଥା ଊର୍ଦ୍ଧ୍ୱସ୍ଥ ସେହି (ଦଶ ଦିଗସ୍ଥିତ) ରୁଦ୍ରଗଣଙ୍କୁ ଆମ୍ଭେ ଦଶ ଅଙ୍ଗୁଳିଦ୍ୱାରା ଅର୍ଥାତ୍ ଯୋଡ଼ହସ୍ତ ହୋଇ ପ୍ରଣାମ କରୁଅଛୁ । ସେମାନେ ଆମକୁ ରକ୍ଷା କରନ୍ତୁ, ସୁଖ ପ୍ରଦାନ କରନ୍ତୁ । ଅଧିକନ୍ତୁ ସେହି ରୁଦ୍ରମାନେ ଯାହାଙ୍କୁ ଦ୍ୱେଷ କରୁଅଛନ୍ତି ଆମେ ମଧ୍ୟ ତାଙ୍କୁ ଦ୍ୱେଷ କରୁଅଛୁ । ପୁନଶ୍ଚ ଯେଉଁ ନର ଆମମାନଙ୍କ ଦ୍ୱେଷକାରକ ତାକୁ ପୂର୍ବୋକ୍ତ ରୁଦ୍ରମାନଙ୍କ କରାଳ ମୁଖରେ ନିକ୍ଷେପ କରୁଅଛୁ । ହେ ମହେଶ୍ୱର ! ଆମ ପ୍ରତି ଦ୍ୱେଷ ଭାବାପନ୍ନକୁ ଆପଣ ଭକ୍ଷଣ କରନ୍ତୁ ଓ ଆମ୍ଭମାନଙ୍କୁ ରକ୍ଷା କରନ୍ତୁ ।

ତେଭ୍ୟୋ ଦଶ ପ୍ରାଚୀର୍ଦଶଦକ୍ଷିଣା ଦଶ ପ୍ରତୀଚୀର୍ଦଶୋଦୀଚୀର୍ଦଶୋର୍ଧ୍ୱାଃ ।
ତେଭ୍ୟୋ ନମୋଽସ୍ତୁ ତେ ନୋଽବନ୍ତୁ ତେ ନୋ ମୃଳୟନ୍ତୁ ତେ ଯଂ ଦ୍ୱିଷ୍ମୋ
ଯଶ୍ଚ ନୋ ଦ୍ୱେଷ୍ଟି ତମେଷାଂ ଜମ୍ଭେ ଦଧ୍ମଃ ॥୬୪॥

---

ଅନ୍ତରିକ୍ଷ ଅର୍ଥାତ୍ ଆକାଶରେ ଯେଉଁ ରୁଦ୍ରମାନେ ଅଛନ୍ତି ସେମାନଙ୍କୁ ପ୍ରଣାମ । ସେମାନେ କୁବାୟୁରୂପ ଆୟୁଧଦ୍ୱାରା ଅନ୍ନକୁ ଅଥବା ପୂର୍ବମନ୍ତ୍ରୋକ୍ତ ଇତି ଜନିତ ବିପତ୍ତି ଉତ୍ପନ୍ନ କରି ଲୋକଙ୍କୁ ବିନାଶ କରନ୍ତି । ସେହି ପୂର୍ବ-ପଶ୍ଚିମ-ଉତ୍ତର-ଦକ୍ଷିଣ ଦିଗସ୍ଥିତ ତଥା ଊର୍ଦ୍ଧ୍ୱସ୍ଥ (ଦଶଦିଗ ସ୍ଥିତ) ରୁଦ୍ରଗଣଙ୍କୁ ଆମ୍ଭେ ଦଶାଙ୍ଗୁଳିଦ୍ୱାରା ଅର୍ଥାତ୍ ହାତଯୋଡ଼ି ପ୍ରଣାମ କରୁଅଛୁ ।

ପୃଥିବୀସ୍ଥ ରୁଦ୍ରମାନଙ୍କୁ ପ୍ରଣାମ । ଯେଉଁ ରୁଦ୍ରଗଣ ଅନ୍ନକୁ ଆୟୁଧ କରି କଦନ୍ନ ଇତ୍ୟାଦି ମାଧ୍ୟମରେ ଚୌର୍ଯ୍ୟାଦି ପ୍ରବୃତ୍ତିକୁ ସୃଷ୍ଟି କରନ୍ତି ଏବଂ ନାନାବିଧ ରୋଗର ମଧ୍ୟ କାରଣ ହୋଇ ମୃତ୍ୟୁମୁଖରେ ପକାଇଥାଆନ୍ତି ସେହି ଅନ୍ନାୟୁଧଧାରୀ ପୂର୍ବ-ପଶ୍ଚିମ-ଦକ୍ଷିଣ-ଉତ୍ତର ଦିଗସ୍ଥିତ ତଥା ଊର୍ଦ୍ଧ୍ୱସ୍ଥ (ଏହିପରି ଦଶ ଦିଗ ସ୍ଥିତ) ରୁଦ୍ରଗଣଙ୍କୁ ଆମ୍ଭେ ଦଶାଙ୍ଗୁଳିଦ୍ୱାରା ଅର୍ଥାତ୍ ହାତଯୋଡ଼ି ପ୍ରଣାମ କରୁଅଛୁ ।

—x—

# ଷଷ୍ଠାଧ୍ୟାୟଃ

## (ନୀଳସୂକ୍ତମ୍)

ହରିଃ ଓଁ ବୟଗ୍ଁ ସୋମ ବ୍ରତେ ତବ ମନସ୍ତନୂଷୁ ବିଭ୍ରତଃ । ପ୍ରଜାବନ୍ତଃ ସଚେମହି ॥୧॥ ଏଷ ତେ ରୁଦ୍ର ଭାଗଃ ସହ ସ୍ୱସ୍ରାମ୍ବିକୟା ତଂ ଜୁଷସ୍ୱ ସ୍ୱାହା । ଏଷ ତେ ରୁଦ୍ର ଭାଗ ଆଖୁସ୍ତେ ପଶୁଃ ॥୨॥

---

## ଷଷ୍ଠ ଅଧ୍ୟାୟ

(ମହାମୃତ୍ୟୁଞ୍ଜୟସୂକ୍ତ)

**ମନ୍ତ୍ରସଂଖ୍ୟା (୧) :-** ଯଜୁର୍ବେଦ ଅ.୩/୬୪ : ବୟଗ୍ଁ ସୋମବ୍ରତେ - ପିତୃଯଜ୍ଞ (ଶ୍ରାଦ୍ଧ)ରେ ସୋମ ନାମକ ଦେବତାଙ୍କ ଆରାଧନା ପ୍ରସଙ୍ଗରେ (ସୋମାୟ ପିତୃମତେ ସ୍ୱାହା) ଏହି ମନ୍ତ୍ରକୁ ଉଲ୍ଲେଖ କରାଯାଇଛି । ହେ ସୋମ ! ଆମେ (ଯଜମାନମାନେ) ତୁମ ବ୍ରତ କର୍ମରେ ନିରତ ଥାଇ ତୁମ ଶରୀରଠାରେ ଆମ ମନ ନିବେଶ କରୁଅଛୁ । ତୁମର କରୁଣାରୁ ଆମେ ପୁତ୍ର-ପୌତ୍ରାଦିଙ୍କୁ ପ୍ରାପ୍ତ ହୋଇ ତୁମ ସେବାରେ ତତ୍ପର ରହିବୁ ।

**ମନ୍ତ୍ରସଂଖ୍ୟା (୨) :-** ଯଜୁର୍ବେଦ ଅ.୩/୬୫ : ଏଷ ତେ ରୁଦ୍ର - ହେ ରୁଦ୍ର ! (ରୋଦୟତି ବିରୋଧିନାଂ ଶତମିତି ରୁଦ୍ରଃ) ତୁମେ ତୁମ ଭଗିନୀ ଅମ୍ବିକାଙ୍କ ସହିତ ଆମ୍ଭଦ୍ୱାରା ପ୍ରଦତ୍ତ ପୁରୋଡାଶକୁ (ଯଜ୍ଞରେ ପ୍ରଦେୟ ପିଠା ବିଶେଷ, ଯାହା ଯଜ୍ଞରେ ହବି ଅର୍ଥାତ୍ ଆହୁତିଦ୍ୱାରା ଦେବତାଙ୍କୁ ପ୍ରଦାନ କରାଯାଏ) ଗ୍ରହଣ କରି ଏହି ହବନକୁ ସଫଳ କର । ସେହିପରି ଅଧିକ ଏକ ପୁରୋଡାଶର ଅଂଶକୁ ତୁମର ପଶୁ ରୂପରେ ମୂଷିକକୁ ସମର୍ପିତ ହେଉ, ଯାହାଦ୍ୱାରା ଅତ୍ୟନ୍ତ କ୍ରୋଧୀ ରୁଦ୍ର ସନ୍ତୁଷ୍ଟ ହୋଇ ଭଗିନୀ ଅମ୍ବିକାଙ୍କ ସହିତ ଯଜମାନଙ୍କ ପଶୁକୁ ହତ୍ୟା କରିବେ ନାହିଁ[1] ।

---

୧. ଏଠାରେ ଉଲ୍ଲେଖଯୋଗ୍ୟ ଯେ ଶ୍ରୁତିରେ ରୁଦ୍ରଙ୍କ ଭଗିନୀ ରୂପରେ 'ଅମ୍ବିକା'ଙ୍କୁ ବର୍ଣ୍ଣନା କରାଯାଇଅଛି ଯଥା- 'ଅମ୍ବିକା ହ ବୈ ନାମାସ୍ୟ ସ୍ୱସା ତୟାସ୍ୟୈଷ ସହ ଭାଗଃ' । ପ୍ରକରଣ ଅନୁସାରେ ରୁଦ୍ର ନାମକ ଯେଉଁ କ୍ରୂର ଦେବତା ଯେତେବେଳେ ବିରୋଧୀକୁ ମାରିବା ପାଇଁ ଇଚ୍ଛା କରନ୍ତି, ସେତେବେଳେ ସେ ଭଗିନୀ ଅମ୍ବିକାଙ୍କ ସାହାଯ୍ୟ ନେଇଥାଆନ୍ତି । ସେ ଅମ୍ବିକା ଶରତ୍କାଳୀନ ରୂପ ଗ୍ରହଣ କରି ଜରା (ବାର୍ଦ୍ଧକ୍ୟ)ଆଦିକୁ ଉତ୍ପନ୍ନ କରି ବିରୋଧୀକୁ ହତ୍ୟା କରନ୍ତି । (ଶୁ.ଯ.ବେ.ସଂହିତା, ମହୀଧରଭାଷ୍ୟ) ।

ଅବ ରୁଦ୍ରମଦୀମହ୍ୟବ ଦେବଂ ତ୍ର୍ୟମ୍ବକମ୍ । ଯଥା ନୋ ବସ୍ୟସସ୍କରଦ୍ ଯଥା ନଃ ଶ୍ରେୟସସ୍କରଦ୍ ଯଥା ନୋ ବ୍ୟବସାୟୟାତ୍ ।।୩।। ଭେଷଜମସି ଭେଷଜଂ ଗବେଽଶ୍ୱାୟ ପୁରୁଷାୟ ଭେଷଜମ୍ । ସୁଗଂ ମେଷାୟ ମେଷ୍ୟୈ ।।୪।। ତ୍ର୍ୟମ୍ବକଂ ଯଜାମହେ ସୁଗନ୍ଧିଂ ପୁଷ୍ଟିବର୍ଧନମ୍ । ଉର୍ବାରୁକମିବ ବନ୍ଧନାନ୍ମୃତ୍ୟୋର୍ମୁକ୍ଷୀୟ ମାମୃତାତ୍ ।।୫।। ତ୍ର୍ୟମ୍ବକଂ ଯଜାମହେ ସୁଗନ୍ଧିଂ ପତିବେଦନମ୍ । ଉର୍ବାରୁକମିବ ବନ୍ଧନାଦିତୋ ମୁକ୍ଷୀୟ ମାମୁତଃ ।।୬।।

---

**ମନ୍ତ୍ରସଂଖ୍ୟା (୩) :-** ଯଜୁର୍ବେଦ ଅ.୩/୬୬ : ଅବ ରୁଦ୍ରମଦୀମହ୍ୟବ - ତିନିଗୋଟି ଅମ୍ବକ ଅର୍ଥାତ୍ ତିନି ନେତ୍ରବିଶିଷ୍ଟ ଦେବ ତ୍ର୍ୟମ୍ବକଙ୍କୁ ମନରେ ଚିନ୍ତା କରୁଅଛୁ । ଅନ୍ୟ ଦେବତାଙ୍କଠାରୁ ପୃଥକ୍ ଭାବରେ ତାଙ୍କୁ ଭୋଜନ ପ୍ରଦାନ କରୁଅଛୁ । ଯାହାଦ୍ୱାରା ସେ ଆମ ଉପରେ ପ୍ରସନ୍ନ ହୋଇ ଆମକୁ ନିବାସପ୍ରାପ୍ତ କରାଇବା ସହିତ ଆମର ମଙ୍ଗଳ ସାଧକ ଓ ସମସ୍ତ କାର୍ଯ୍ୟରେ ସଫଳତା ପ୍ରାପ୍ତିକାରକ ହେବେ ।

**ମନ୍ତ୍ରସଂଖ୍ୟା (୪) :-** ଯଜୁର୍ବେଦ ଅ.୩/୬୭ : ଭେଷଜମସି - ହେ ରୁଦ୍ର **!** ତୁମେ ସାକ୍ଷାତ୍ ରୋଗର ଔଷଧ ଭଳି ସର୍ବବିଧ ଉପଦ୍ରବ ନିବାରକ ଅଟ । ଏଣୁ ଆମର ସମସ୍ତ ଗୋରୁ, ଘୋଡା ଓ ପୁରୁଷଙ୍କ ସର୍ବବ୍ୟାଧି ନିବାରକ ଔଷଧ ସ୍ୱରୂପ ତୁମେ ଆମ ମେଷମାନଙ୍କୁ ମଧ୍ୟ ସୁଖ ପ୍ରଦାନ କର ।

**ମନ୍ତ୍ରସଂଖ୍ୟା (୫) :-** ଯଜୁର୍ବେଦ ଅ.୩/୬୮ : ତ୍ର୍ୟମ୍ବକଂ - ଦିବ୍ୟ ଗନ୍ଧଯୁକ୍ତ, ଧନ-ଧାନ୍ୟାଦି ସମସ୍ତ ସମୃଦ୍ଧିର ଅଭିବର୍ଦ୍ଧକ, ନେତ୍ରତ୍ରୟ ବିଶିଷ୍ଟ ରୁଦ୍ରଙ୍କୁ ପୂଜା କରୁଅଛୁ । ହେ ତ୍ର୍ୟମ୍ବକ **!** ଫୁଟି (ଫଳବିଶେଷ) ଯେପରି ପାଚିଗଲେ ଆପେ ଆପେ ବୃନ୍ତଚ୍ୟୁତ ହୁଏ, ଠିକ୍ ସେହିପରି ତୁମେ ଆମକୁ ମୃତ୍ୟୁରୁ (ମୃତ୍ୟୁ ଶବ୍ଦରେ ଜନ୍ମ ଓ ମୃତ୍ୟୁରୂପକ ସଂସାରଚକ୍ରକୁ ନିଆଯାଇଅଛି) ମୁକ୍ତ କର । ସ୍ୱର୍ଗ ଓ ମୋକ୍ଷ ପ୍ରାପ୍ତି ରୂପକ ଅମୃତତ୍ୱରୁ ଆମକୁ ବଞ୍ଚିତ କର ନାହିଁ । ଅର୍ଥାତ୍ ତୁମେ ଆମକୁ ସଂସାରାବସ୍ଥାରେ ଅଭ୍ୟୁଦୟ ତଥା ଅନ୍ତିମାବସ୍ଥାରେ ନିଃଶ୍ରେୟସ ବା ମୁକ୍ତି ପ୍ରଦାନ କର ।

**ମନ୍ତ୍ରସଂଖ୍ୟା (୬) :-** ଯଜୁର୍ବେଦ ଅ.୩/୬୯ : ତ୍ର୍ୟମ୍ବକଂ - ଆମ୍ଭେ (କୁମାରୀମାନେ) ତିନି ନେତ୍ରଧାରୀଙ୍କ ପୂଜା କରୁଅଛୁ । ଯେ କି ପୂର୍ବୋକ୍ତି ଅନୁସାରେ ସ୍ୱର୍ଗୀୟ ଗନ୍ଧଯୁକ୍ତ ଓ ଧନଧାନ୍ୟାଦି ସମୃଦ୍ଧି ପ୍ରଦାନ ଓ ଆମ୍ଭ (କୁମାରୀ କନ୍ୟା)ମାନଙ୍କ ପାଇଁ

ଏତେନ ରୁଦ୍ରାବସେନ ପରୋ ମୂଜବତୋଽତୀ ହି । ଅବତତଧନ୍ୱା ପିନାକାବସଃ କୃତ୍ତିବାସା ଅହିଗୁଁସନ୍ନଃ ଶିବଃ ଶାନ୍ତୋଽତୀହି ॥୭॥

---

ଉତ୍ତମ ପତିପ୍ରାପକ । ବିବାହ ପରେ ପିତୃବଂଶୀୟ (ବାପା, ମା, ଭାଇ, ଭଗିନୀ ଇତ୍ୟାଦି) ସମସ୍ତ ସମ୍ପର୍କରୁ ପାଚିଲା ଫୁଟି ବୃନ୍ତଚ୍ୟୁତ ହେଲା ପରି ଆମେ ମଧ୍ୟ ମୁକ୍ତ ହେବୁ । ମାତ୍ର ବିବାହ ପରବର୍ତ୍ତି ସମୟରେ ଆମେ କେବେ ବି ପତିଙ୍କଠାରୁ ମୁକ୍ତ ଅର୍ଥାତ୍ ଅଲଗା ହେବୁ ନାହିଁ । ଅର୍ଥାତ୍ ପିତୃଗୋତ୍ର (ବଂଶ) ଏବଂ ପିତ୍ରାଳୟ ଇତ୍ୟାଦିକୁ ସବୁଦିନ ପାଇଁ ଛାଡ଼ି ସ୍ୱାମୀଙ୍କ ଗୋତ୍ର (ବଂଶ) ଓ ଗୃହକୁ ତ୍ର୍ୟମ୍ବକଙ୍କ ପ୍ରସାଦରୁ ପ୍ରାପ୍ତ ହେବୁ ।

**ମନ୍ତ୍ରସଂଖ୍ୟା (୭) :-** ଯଜୁର୍ବେଦ ଅ.୩/୭୦ : ଏତେନ ରୁଦ୍ରାବସେନ - ହେ ରୁଦ୍ର ! ତୁମେ ଏହି ଅବଶିଷ୍ଟ ପୁରୋଡାଶକୁ (ଯଜ୍ଞୀୟ ପିଠା) ସାଥୀରେ ନେଇ ପିନାକ ଧନୁକୁ ଜ୍ୟା (ଚାପ) ମୁକ୍ତ ତଥା ବସ୍ତ୍ରାବୃତ କରି, ଚର୍ମାମ୍ବର (ମହିଷାସୁର ପୁତ୍ର ଗଜାସୁରର ଚର୍ମ) ପରିଧାନ ପୂର୍ବକ ଆମ ପ୍ରତି ହିଂସୁକ ନ ହୋଇ କଲ୍ୟାଣକାରକ ହୋଇ ମୁଜବାନ୍ ପର୍ବତକୁ ଅତିକ୍ରମଣ କରି ଆଗକୁ ଚାଲିଯାଅ ।

—×—

# ସପ୍ତମାଧ୍ୟାୟଃ

## (ଜଟାସୂକ୍ତମ୍)

ହରିଃ ଓଁ ଉଗ୍ରଶ୍ଚ ଭୀମଶ୍ଚ ଧ୍ୱାନ୍ତଶ୍ଚ ଧୁନିଶ୍ଚ । ସାସହ୍ୱାଗୁଁଶ୍ଚାଭିଯୁଗ୍ୱା ଚ ବିକ୍ଷିପଃ ସ୍ୱାହା ॥୧॥ ଅଗ୍ନିଗୁଁ ହୃଦୟେନାଶନିଗୁଁ ହୃଦୟାଗ୍ରେଣ ପଶୁପତିଂ କୃତ୍ସ୍ନହୃଦୟେନ ଭବଂ ଯକ୍ନା । ଶର୍ବଂ ମତସ୍ନାଭ୍ୟାମୀଶାନଂ ମନ୍ୟୁନା ମହାଦେବମନ୍ତଃ ପର୍ଶବ୍ୟେନୋଗ୍ରଂ ଦେବଂ ବନିଷ୍ଠୁନା ବସିଷ୍ଠହନୁଃ ଶିଙ୍ଗୀନି କୋଶ୍ୟାଭ୍ୟାମ୍॥୨॥

---

## ସପ୍ତମ ଅଧ୍ୟାୟ

(ଜଟାଧ୍ୟାୟ)

**ମନ୍ତ୍ରସଂଖ୍ୟା (୧) :-** ଯଜୁର୍ବେଦ ଅ.୩୯/୬ : ଓଁ ଉଗ୍ରଶ୍ଚ ଭୀମଶ୍ଚ - (ଏହି ମନ୍ତ୍ରଦ୍ୱାରା ଉଗ୍ରାଦି ସାତ ମରୁଦ୍‌ଗଣଙ୍କ ରୂପରେ ଶିବଙ୍କୁ ଆହୁତି ପ୍ରଦାନ କରାଯାଇଅଛି ।) ଉଗ୍ର ଅର୍ଥାତ୍ ଉତ୍କୃଷ୍ଟ, ଭୀମ ଭୀତିକାରକ, ଧ୍ୱାନ୍ତ (ଧ୍ୱନତି ଶବ୍ଦଂ କରୋତି) ଶବ୍ଦଜନକ, ଧ୍ୱନି (ଧ୍ୱନୟତି = କମ୍ପୟତି) ଅର୍ଥାତ୍ ଶତ୍ରୁଙ୍କ ହୃଦୟରେ କମ୍ପନ ସୃଷ୍ଟିକାରୀ ଶବ୍ଦ, ସାସହ୍ୱାନ୍ (ସହତେ = ଶତ୍ରୂନ୍ ଅଭିଭବତି) ଶତ୍ରୁଙ୍କ ଗର୍ବନାଶକାରୀ, ଅଭିଯୁଗ୍‌ବା (ଅଭିଯୁନକ୍ତି ଅସ୍ମତ୍ ସମ୍ମୁଖଂ ଯୋଗଂ ପ୍ରାପ୍ନୋତି) ସମ୍ମୁଖୀକରଣ, ବିକ୍ଷିପ = ଶତ୍ରୁଙ୍କୁ ବିକ୍ଷେପଣକାରୀ - ଏହିପରି ସାତ ମରୁଦ୍‌ଗଣଙ୍କ ନିମିତ୍ତ ସ୍ୱାହା (ଆହୁତି) ପ୍ରଦାନ କରୁଅଛୁ ।

**ମନ୍ତ୍ରସଂଖ୍ୟା (୨) :-** ଯଜୁର୍ବେଦ ଅ.୩୯/୭ : ଅଗ୍ନିଗୁଁ ହୃଦୟେନ - (ଅଶ୍ୱମେଧ ଯଜ୍ଞ ପ୍ରକରଣରେ ଏହି ତିନିଗୋଟି-୨ୟ, ୩ୟ ଓ ୪ର୍ଥ ମନ୍ତ୍ର ଉଲ୍ଲିଖିତ ଅଛି) ଅଶ୍ୱର ହୃଦୟରୂପକ ଅଙ୍ଗ ପ୍ରଦାନ କରି ଅଗ୍ନିଦେବତାଙ୍କୁ ମୁଁ ସନ୍ତୁଷ୍ଟ କରୁଅଛି, ସେହିପରି ହୃଦୟର ଅଗ୍ରଭାଗଦ୍ୱାରା ଅଶନି ଅର୍ଥାତ୍ ବଜ୍ର ବା ବିଦ୍ୟୁତ୍ ଦେବତାଙ୍କୁ, ସମଗ୍ର ହୃଦୟକୁ ପଶୁପତି ଦେବତାଙ୍କୁ, ଯକୃତ୍ ଭବଙ୍କୁ, ମତସ୍ନା ନାମକ ହୃଦୟାସ୍ଥି-ବିଶେଷଦ୍ୱୟ ଶର୍ବଦେବଙ୍କୁ, ମନ୍ୟୁ ଅର୍ଥାତ୍ ଅଶ୍ୱସମ୍ବନ୍ଧି କ୍ରୋଧଦ୍ୱାରା ଈଶାନ ଦେବଙ୍କୁ, ଅନ୍ତଃସ୍ଥିତ ପାର୍ଶ୍ୱଅସ୍ଥିସମ୍ବନ୍ଧୀ ମାଂସଦ୍ୱାରା ମହାଦେବଙ୍କୁ, ପାର୍ଶ୍ୱସ୍ଥ ଅସ୍ଥି ଏବଂ ସ୍ଥୂଳ ଅନ୍ତ୍ରଦ୍ୱାରା ଉଗ୍ରଦେବଙ୍କୁ, କପାଳର ଅଧୋଭାଗରେ ଥିବା ହନୁ ଓ ହୃଦୟ କୋଶାନ୍ତର୍ଗତ ମାଂସପିଣ୍ଡଦ୍ୱାରା ଶିଙ୍ଗୀନି ନାମକ ଦେବତାଙ୍କୁ ସନ୍ତୁଷ୍ଟ କରୁଅଛି ।

ଉଗ୍ରଁ ଲୋହିତେନ ମିତ୍ରଗୁଁ ସୌବ୍ରତ୍ୟେନ ରୁଦ୍ରଂ ଦୌର୍ବ୍ରତ୍ୟେନେନ୍ଦ୍ରଂ ପ୍ରକ୍ରୀଳେନ ମରୁତୋ ବଳେନ ସାଧ୍ୟାନ୍‌ପ୍ରମୁଦା । ଭବସ୍ୟ କଣ୍ଠ୍ୟଗୁଁ ରୁଦ୍ରସ୍ୟାନ୍ତଃ ପାର୍ଶ୍ୱ୍ୟଂ ମହାଦେବସ୍ୟ ଯକୃଚ୍ଛର୍ବସ୍ୟ ବନିଷ୍ଠୁଃ ପଶୁପତେଃ ପୁରୀତତ୍ ॥୩॥ ଲୋମଭ୍ୟଃ ସ୍ୱାହା ଲୋମଭ୍ୟଃ ସ୍ୱାହା ତ୍ୱଚେ ସ୍ୱାହା ତ୍ୱଚେ ସ୍ୱାହା ଲୋହିତାୟ ସ୍ୱାହା ଲୋହିତାୟ ସ୍ୱାହା ମେଦସେ ସ୍ୱାହା ମେଦସେ ସ୍ୱାହା । ମାଗୁଁସେଭ୍ୟଃ ସ୍ୱାହା ମାଗୁଁସେଭ୍ୟଃ ସ୍ୱାହା ସ୍ନାବଭ୍ୟଃ ସ୍ୱାହା ସ୍ନାବଭ୍ୟଃ ସ୍ୱାହା ସ୍ଥଭ୍ୟଃ ସ୍ୱାହା ସ୍ଥଭ୍ୟଃ ସ୍ୱାହା ମଜ୍ଜଭ୍ୟଃ ସ୍ୱାହା ମଜ୍ଜଭ୍ୟଃ ସ୍ୱାହା । ରେତସେ ସ୍ୱାହା ପାୟବେ ସ୍ୱାହା ॥୪॥ ଆୟାସାୟ ସ୍ୱାହା ପ୍ରାୟାସାୟ ସ୍ୱାହା ସଁଯାସାୟ ସ୍ୱାହା ବିୟାସାୟ ସ୍ୱାହୋଦ୍ୟାସାୟ ସ୍ୱାହା । ଶୁଚେ ସ୍ୱାହା ଶୋଚତେ ସ୍ୱାହା ଶୋକାୟ ସ୍ୱାହା ॥୫॥

---

**ମନ୍ତ୍ରସଂଖ୍ୟା (୩) :-** ଯଜୁର୍ବେଦ ଅ.୩୯/୮ : ଉଗ୍ରଂ ଲୋହିତେନ - ଅଶ୍ୱର ରୁଧିର ପ୍ରଦାନ କରି ଉଗ୍ରଦେବତାଙ୍କୁ ପ୍ରୀତ କରୁଅଛି । ଶୋଭନ କର୍ମଦ୍ୱାରା ସୂର୍ଯ୍ୟଦେବଙ୍କୁ, ଦୌର୍ବ୍ରତ୍ୟ ଅର୍ଥାତ୍ ସ୍ଖଳନାଦି ଦୁଷ୍କର୍ମଦ୍ୱାରା ରୁଦ୍ରଦେବଙ୍କୁ, ଉତ୍ତମ କ୍ରୀଡାଦ୍ୱାରା ଇନ୍ଦ୍ରଦେବଙ୍କୁ, ସାମର୍ଥ୍ୟଦ୍ୱାରା ମରୁତ୍ ଦେବଙ୍କୁ, ପ୍ରମୋଦଦ୍ୱାରା ସାଧଗଣ ଦେବତା ବିଶେଷଙ୍କୁ, କଣ୍ଠସ୍ଥାନୀୟ ମାଂସଦ୍ୱାରା ଭବ ଦେବଙ୍କୁ, ପାର୍ଶ୍ୱ ମଧ୍ୟଭାଗସ୍ଥ ମାଂସ ରୁଦ୍ର ଦେବଙ୍କୁ, ଯକୃତ୍ ମହାଦେବଙ୍କୁ, ସ୍ଥୁଳ ଅନ୍ତଭାଗ ଶର୍ବଙ୍କୁ, ହୃଦୟକୁ ଆଚ୍ଛାଦନ କରୁଥିବା ଅନ୍ତ ପଶୁପତିଙ୍କୁ ଅର୍ପଣ କରୁଅଛି ।

**ମନ୍ତ୍ରସଂଖ୍ୟା (୪) :-** ଯଜୁର୍ବେଦ ଅ.୩୯/୯ : ଲୋମଭ୍ୟ ସ୍ୱାହା - (ଏହି ମନ୍ତ୍ରଠାରୁ କ୍ରମଶଃ ୪ ଗୋଟି ମନ୍ତ୍ରରେ ଅଶ୍ୱମେଧ ଯଜ୍ଞାନ୍ତର୍ଗତ ପ୍ରାୟଶ୍ଚିତ୍ତ ଆହୁତି ପ୍ରଦାନ କରାଯାଇଅଛି । ଏହି ମନ୍ତ୍ରରେ ମଧ୍ୟ ପୂର୍ବବତ୍ ଅଶ୍ୱର ଅଙ୍ଗବିଶେଷକୁ ଆହୁତିଦ୍ୱାରା ଅର୍ପଣ କରାଯାଇଅଛି ।) ଅଶ୍ୱର ଲୋମ, ତ୍ୱକ୍ ଅର୍ଥାତ୍ ଚର୍ମ, ରକ୍ତ, ମେଦ (ଚର୍ବି), ମାଂସ, ସ୍ନାୟୁ (ନାଡ଼ୀ), ଅସ୍ଥି, ମଜ୍ଜା, ବୀର୍ଯ୍ୟ, ଗୁହ୍ୟଦ୍ୱାର - ଏ ସମସ୍ତ ଶରୀରର ଅଂଶବିଶେଷକୁ ଆହୁତିଦ୍ୱାରା ପ୍ରଦାନ କରୁଅଛି ।

**ମନ୍ତ୍ରସଂଖ୍ୟା (୫) :-** ଯଜୁର୍ବେଦ ଅ.୩୯/୧୦ : ଆୟାସାୟ ସ୍ୱାହା - ଆୟାସ, ପ୍ରାୟାସ, ସଂଯାସ, ବିୟାସ, ଉଦ୍ୟାସ, ଶୁଚ୍ (ଶୋକ), ଶୋଚତ, ଶୋଚମାନ, ଶୋକ - ଏହି ଦେବତାବିଶେଷଙ୍କ ନିମିତ୍ତ ଆହୁତି ପ୍ରଦାନ କରୁଅଛି ।

ତପସେ ସ୍ୱାହା ତପ୍ୟମାନାୟ ସ୍ୱାହା ତପ୍ତାୟ ସ୍ୱାହା । ନିଷ୍କୃତ୍ୟୈ ସ୍ୱାହା ପ୍ରାୟଶ୍ଚିତ୍ୟୈ ସ୍ୱାହା ଭେଷଜାୟ ସ୍ୱାହା ॥୬॥ ଯମାୟ ସ୍ୱାହାନ୍ତକାୟ ସ୍ୱାହା ମୃତ୍ୟବେ ସ୍ୱାହା । ବ୍ରହ୍ମିହତ୍ୟାୟୈ ସ୍ୱାହା ବିଶ୍ୱେଭ୍ୟୋ ଦେବେଭ୍ୟଃ ସ୍ୱାହା ଦ୍ୟାବାପୃଥିବୀଭ୍ୟାଗୁଁ ସ୍ୱାହା ॥୭॥

---

**ମନ୍ତ୍ରସଂଖ୍ୟା (୬) :-** ଯଜୁର୍ବେଦ ଅ.୩୯/୧୧ : ତପସେ ସ୍ୱାହା - (ପୂର୍ବ ମନ୍ତ୍ର ଭଳି ଏହି ମନ୍ତ୍ରରେ ମଧ ତତ୍ ତନ୍ନାମଧାରୀ ଦେବତା ବିଶେଷଙ୍କ ଉଦ୍ଦେଶ୍ୟରେ ଆହୁତି ପ୍ରଦାନ କରାଯାଇଅଛି ।) ତପସ୍ (ତପଃ), ତପ୍ୟତ୍, ତପ୍ୟମାନ, ତପ୍ତ, ଘର୍ମ, ନିଷ୍କୃତି, ପ୍ରାୟଶ୍ଚିତ୍ତି, ଭେଷଜ - ଏ ସମସ୍ତ ଦେବତା ବିଶେଷଙ୍କୁ ଆହୁତି ପ୍ରଦାନ କରୁଅଛି ।

**ମନ୍ତ୍ରସଂଖ୍ୟା (୭) :-** ଯଜୁର୍ବେଦ ଅ.୩୯/୧୨ : ଯମାୟ ସ୍ୱାହା - ଯମ, ଅନ୍ତକ, ମୃତ୍ୟୁ, ବ୍ରହ୍ମ, ବ୍ରହ୍ମହତ୍ୟା, ବିଶ୍ୱେଦେବ, ଦ୍ୟାବାପୃଥିବୀ - ଏ ସମସ୍ତ ଦେବତାଙ୍କୁ ଆହୁତି ପ୍ରଦାନ କରୁଅଛି ।

—×—

# ଅଷ୍ଟମାଧ୍ୟାୟଃ

## (ଚମକ୍ ଅଧ୍ୟାୟଃ)

ହରିଃ ଓଁ ବାଜଶ୍ଚ ମେ ପ୍ରସବଶ୍ଚ ମେ ପ୍ରୟତିଶ୍ଚ ମେ ପ୍ରସିତିଶ୍ଚ ମେ । ଧୀତିଶ୍ଚ ମେ କ୍ରତୁଶ୍ଚ ମେ ସ୍ୱରଶ୍ଚ ମେ ଶ୍ଳୋକଶ୍ଚ ମେ । ଶ୍ରାବଶ୍ଚ ମେ ଶ୍ରୁତିଶ୍ଚ ମେ ଜ୍ୟୋତିଶ୍ଚ ମେ ସ୍ୱଶ୍ଚ ମେ ଯଜ୍ଞେନ କଳ୍ପନ୍ତାମ୍ ॥୧॥ ପ୍ରାଣଶ୍ଚ ମେଽପାନଶ୍ଚ ମେ ବ୍ୟାନଶ୍ଚ ମେଽସୁ ଚ ମେ । ଚିତ୍ତଂ ଚ ମ ଆଧୀତଂ ଚ ମେ ବାକ୍ ଚ ମେ ମନଶ୍ଚ ମେ । ଚକ୍ଷୁଶ୍ଚ ମେ ଶ୍ରୋତ୍ରଂ ଚ ମେ ଦକ୍ଷଶ୍ଚ ମେ ବଳଂ ଚ ମେ ଯଜ୍ଞେନ କଳ୍ପନ୍ତାମ୍ ॥୨॥ ଓଜଶ୍ଚ ମେ ସହଶ୍ଚ ମ ଆତ୍ମା ଚ ମେ ତନୂଶ୍ଚ ମେ । ଶର୍ମ ଚ ମେ ବର୍ମ ଚ ମେଽଙ୍ଗାନି ଚ ମେଽସ୍ଥୀନି ଚ ମେ । ପରୂଁଷି ଚ ମେ ଶରୀରାଣି ଚ ମ ଆୟୁଶ୍ଚ ମେ ଜରା ଚ ମେ ଯଜ୍ଞେନ କଳ୍ପନ୍ତାମ୍ ॥୩॥

---

## ଅଷ୍ଟମାଧ୍ୟାୟ

(ଚମକ୍ ଅଧ୍ୟାୟ)

**ମନ୍ତ୍ରସଂଖ୍ୟା (୧) :-** ଯଜୁର୍ବେଦ ଅ.୧୯/୧୩ : ବାଜଶ୍ଚ ମେ - ବାଜ ଅର୍ଥାତ୍ ଅନ୍ନ, ଅନ୍ନଦାନ ବିଷୟକ ଅଭ୍ୟନୁଜ୍ଞା, ଶୁଦ୍ଧି, ଅନ୍ନ ବିଷୟକ ଉତ୍ସୁକତା, ଧ୍ୟାନ, ସଙ୍କଳ୍ପ, ସାଧୁଶବ୍ଦ ବା ସୁସ୍ୱର, ଶ୍ଳୋକ, ବେଦମନ୍ତ୍ର ପଠନ ଓ ଶ୍ରବଣ ସାମର୍ଥ୍ୟ, ଜ୍ୟୋତି, ସ୍ୱର୍ଗ - ଏ ସମସ୍ତ ମୋତେ ଯଜ୍ଞଦ୍ୱାରା ପ୍ରାପ୍ତ ହୁଅନ୍ତୁ (ଏ ଅଧ୍ୟାୟରେ ସର୍ବତ୍ର 'ଚ' ଶବ୍ଦଦ୍ୱାରା ସମୂହ ଅର୍ଥାତ୍ ଯେମିତି ବାଜଶ୍ଚ = ଅନ୍ନସମୂହ ଏହିପରି ବୁଝାଯିବ ।)

**ମନ୍ତ୍ରସଂଖ୍ୟା (୨) :-** ଯଜୁର୍ବେଦ ଅ.୧୯/୧୪ : ପ୍ରାଣଶ୍ଚ ମେ - ଶରୀରାନ୍ତର୍ଗତ ଉର୍ଦ୍ଧ୍ୱ ସଞ୍ଚାରୀ ବାୟୁ, ଅଧଃସଞ୍ଚାରୀ ବାୟୁ, ସର୍ବ ଶରୀର ସଞ୍ଚାରୀ ବାୟୁ, ପ୍ରବୃତ୍ତି ପ୍ରଦାୟକ ବାୟୁ, ଚିତ୍ତ, ବାହ୍ୟବିଷୟ ସମ୍ବନ୍ଧୀ ଜ୍ଞାନ, ବାକ୍ୟ, ମନ, ଚକ୍ଷୁ, କର୍ଣ୍ଣ, ଜ୍ଞାନେନ୍ଦ୍ରିୟଗତ କୁଶଳତା, ଶରୀର ଓ କର୍ମେନ୍ଦ୍ରିୟଗତ କୁଶଳତା - ଏ ସମସ୍ତ ମୋତେ ଯଜ୍ଞଦ୍ୱାରା ପ୍ରାପ୍ତ ହୁଅନ୍ତୁ ।

**ମନ୍ତ୍ରସଂଖ୍ୟା (୩) :-** ଯଜୁର୍ବେଦ ଅ.୧୯/୧୫ : ଓଜଶ୍ଚ ମେ - ଶାରୀରିକ ବଳ, ଶତ୍ରୁଙ୍କୁ ପରାଭବ ଦେଇପାରୁଥିବା ଶକ୍ତି, ପରମାତ୍ମା, ସୁନ୍ଦର ଶରୀର, ସର୍ବବିଧ

ଜ୍ୟୈଷ୍ଠ୍ୟଂ ଚ ମ ଆଧିପତ୍ୟଂ ଚ ମେ ମନ୍ୟୁଶ୍ଚ ମେ ଭାମଶ୍ଚ ମେ । ଅମଶ୍ଚ ମେଽମ୍ଭଶ୍ଚ ମେ ଜେମା ଚ ମେ ମହିମା ଚ ମେ ବରିମା ଚ ମେ । ପ୍ରଥିମା ଚମେ ବର୍ଷିମା ଚ ମେ ଦ୍ରାଘିମା ଚ ମେ । ବୃଦ୍ଧଂ ଚ ମେ ବୃଦ୍ଧିଶ୍ଚ ମେ ଯଜ୍ଞେନ କଳ୍ପନ୍ତାମ୍ ।।୪।। ସତ୍ୟଂ ଚ ମେ ଶ୍ରଦ୍ଧା ଚ ମେ ଜଗଚ୍ଚ ମେ ଧନଂ ଚ ମେ ବିଶ୍ୱଂ ଚ ମେ ମହଶ୍ଚ ମେ କ୍ରୀଳା ଚ ମେ ମୋଦଶ୍ଚ ମେ । ଜାତଂ ଚ ମେ ଜନିଷ୍ୟମାଣଞ୍ଚ ମେ ସୂକ୍ତଂ ଚ ମେ ସୁକୃତଂ ଚ ମେ ଯଜ୍ଞେନ କଳ୍ପନ୍ତାମ୍ ।।୫।। ବିତ୍ତଂ ଚ ମେ ବେଦ୍ୟଂ ଚ ମେ ଭୂତଂ ଚ ମେ ଭବିଷ୍ୟଚ୍ଚ ମେ । ସୁଗଂ ଚ ମେ ସୁପଥ୍ୟଂ ଚ ମ ଋଦ୍ଧଂ ଚ ମ ଋଦ୍ଧିଶ୍ଚ ମେ । କ୍ଳୃପ୍ତଂ ଚ ମେ କ୍ଳୃପ୍ତିଶ୍ଚ ମେ ମତିଶ୍ଚ ମେ ସୁମତିଶ୍ଚ ମେ ଯଜ୍ଞେନ କଳ୍ପନ୍ତାମ୍ ।।୬।।

---

ସୁଖ, ସୁରକ୍ଷାକବଚ, ହସ୍ତାଦି ସମସ୍ତ ଅବୟବ, ଶରୀରାନ୍ତର୍ଗତ ଅସ୍ଥି ସମୂହ, ଅଙ୍ଗୁଳି ପର୍ବ ସମୂହ, ସମସ୍ତ ଶରୀରର ଅବୟବ ସମୂହ, ପରମାୟୁ, ବାର୍ଦ୍ଧକ୍ୟ ପର୍ଯ୍ୟନ୍ତ ନିରାମୟ ଦୀର୍ଘଜୀବନ- ଏ ସମସ୍ତ ମୋତେ ଯଜ୍ଞଦ୍ୱାରା ପ୍ରାପ୍ତ ହୁଅନ୍ତୁ ।

**ମନ୍ତ୍ରସଂଖ୍ୟା (୪) :-** ଯଜୁର୍ବେଦ ଅ.୧୯/୧୬ : ଜୈଷ୍ଠ୍ୟଂ ଚ ମେ- ଜ୍ୟେଷ୍ଠତ୍ୱ, ସ୍ୱାମୀତ୍ୱ, କ୍ରୋଧ, ତେଜ, ଅପରିମିତବଳ, ଥଣ୍ଡା ମଧୁର ଜଳ, ବିଜୟ ସାମର୍ଥ୍ୟ, ସମ୍ପତ୍ତ୍ୟାଦିରେ ମହତ୍ତ୍ୱ, ପ୍ରଜାଦିରେ ସଂଖ୍ୟାଧିକ୍ୟ, ଗୃହକ୍ଷେତ୍ରାଦି ବିଷୟରେ ବିସ୍ତୃତି, ଦୀର୍ଘଜୀବୀତ୍ୱ, ଅବିଚ୍ଛିନ୍ନ ବଂଶ ପରମ୍ପରା, ଅନ୍ନ ଧନାଦିରେ ପ୍ରାଚୁର୍ଯ୍ୟ, ବିଦ୍ୟାଦି ରୁଚିରେ ଉତ୍କୃଷ୍ଟତା - ଏ ସମସ୍ତ ଯଜ୍ଞଦ୍ୱାରା ପ୍ରାପ୍ତ ହେଉ ।

**ମନ୍ତ୍ରସଂଖ୍ୟା (୫) :-** ଯଜୁର୍ବେଦ ଅ.୧୯/୧୭ : ସତ୍ୟଂ ଚ ମେ - ଯଥାର୍ଥଭାଷୀ, ପରଲୋକରେ ଶ୍ରଦ୍ଧା ଓ ବିଶ୍ୱାସ, ଜଙ୍ଗମ (ଗୋମହିଷାଦି ପଶୁ), ସୁବର୍ଣ୍ଣାଦି ଧନ, ସ୍ଥାବର ସମ୍ପତ୍ତି, ଦୀପ୍ତି, କ୍ରୀଡ଼ା, ହର୍ଷ, ପୁତ୍ରୋତ୍ପତ୍ତି ସୁଖ, ଭବିଷ୍ୟତ ବଂଶ ପରମ୍ପରା, ଦେବସ୍ତୁତି, ଅଦୃଷ୍ଟ (ପୁଣ୍ୟ) - ଏ ସମସ୍ତ ମୋତେ ଯଜ୍ଞଦ୍ୱାରା ସୁଲଭ୍ୟ ହେଉ ।

**ମନ୍ତ୍ରସଂଖ୍ୟା (୬) :-** ଯଜୁର୍ବେଦ ଅ.୧୯/୧୮ : ବିତ୍ତଂ ଚ ମେ - ବିତ୍ତ, ଲବ୍ଧବ୍ୟ ବସ୍ତୁ, ପୂର୍ବପ୍ରାପ୍ତ କ୍ଷେତ୍ରାଦି ସୁରକ୍ଷା, ଭାବି ପ୍ରାପ୍ତବ୍ୟ କ୍ଷେତ୍ରାଦି, ସୁଗମ୍ୟ ଦେଶ, ହିତକାରକ ବସ୍ତୁ, ସମୃଦ୍ଧ ଯଜ୍ଞଫଳ ପ୍ରାପ୍ତି, କାର୍ଯ୍ୟସମ୍ପାଦକ ଦ୍ରବ୍ୟାଦି, ସ୍ୱକାର୍ଯ୍ୟସିଦ୍ଧି ସାମର୍ଥ୍ୟ, ଦୁର୍ଘଟ କାର୍ଯ୍ୟ ସାଧନରେ ନିଶ୍ଚୟାତ୍ମିକା ବୁଦ୍ଧି - ଏ ସମସ୍ତ ମୋତେ ଯଜ୍ଞଦ୍ୱାରା ହିଁ ପ୍ରାପ୍ତ ହେଉ ।

ଯନ୍ତା ଚ ମେ ଧର୍ତା ଚ ମେ କ୍ଷେମଶ୍ଚ ମେ ଧୃତିଶ୍ଚ ମେ । ବିଶ୍ୱଂ ଚ ମେ ମହଶ୍ଚ ମେ ସଁବିଚ୍ଚ ମେ ଜ୍ଞାତ୍ରଂ ଚ ମେ । ସୀରଂ ଚ ମେ ଲୟଶ୍ଚ ମେ ସୂଶ୍ଚ ମେ ପ୍ରସୂଶ୍ଚ ମେ ଯଜ୍ଞେନ କଳ୍ପନ୍ତାମ୍ ।।୭।। ଶଂ ଚ ମେ ମୟଶ୍ଚ ମେ ପ୍ରିୟଂ ଚ ମେଽନୁକାମଶ୍ଚ ମେ । କାମଶ୍ଚ ମେ ସୌମନସଶ୍ଚ ମେ ଭଗଶ୍ଚ ମେ ଦ୍ରବିଣଂ ଚ ମେ । ଭଦ୍ରଂ ଚ ମେ ଶ୍ରେୟଶ୍ଚ ମେ ବସୀୟଶ୍ଚ ମେ ଯଶଶ୍ଚ ମେ ଯଜ୍ଞେନ କଳ୍ପନ୍ତାମ୍ ।।୮।। ଊର୍କ୍‌ଚ ମେ ସୂନୃତା ଚ ମେ ପୟଶ୍ଚ ମେ ରସଶ୍ଚ ମେ । ଘୃତଂ ଚ ମେ ମଧୁ ଚ ମେ ସଗ୍ଧିଶ୍ଚ ମେ ସପୀତିଶ୍ଚ ମେ । କୃଷିଶ୍ଚ ମେ ବୃଷ୍ଟିଶ୍ଚ ମେ ଜୈତ୍ରଂ ଚ ମ ଔଦ୍ଭିଦ୍ୟଂ ଚ ମେ ଯଜ୍ଞେନ କଳ୍ପନ୍ତାମ୍ ।।୯।।

---

**ମନ୍ତ୍ରସଂଖ୍ୟା (୭) :-** ଯଜୁର୍ବେଦ ଅ.୧୯/୧୯ : ଯନ୍ତା ଚ ମେ- ଅଶ୍ୱାଦି ବାହାନର ନିୟନ୍ତୃତ୍ୱ, ପିତ୍ରାଦି ରୂପରେ ପରିପାଳକତ୍ୱ, ପ୍ରାପ୍ତ ଧନାଦିର ପରିରକ୍ଷଣ କ୍ଷମତା, ଆପତ୍କାଳରେ ଧୈର୍ଯ୍ୟ, ସର୍ବବିଧ ଅନୁକୂଳତା, ଦେବାଦି ଅର୍ଚ୍ଚନ କ୍ଷମତା, ବେଦାଦିଶାସ୍ତ୍ରଜ୍ଞାନ, ଜ୍ଞାନବିଜ୍ଞାନାହରଣ ସାମର୍ଥ୍ୟ, ଅନୁଗତଙ୍କ ପ୍ରତି ପ୍ରେରଣା ପ୍ରଦାନ କ୍ଷମତା, ସୁସନ୍ତାନୋତ୍ପତ୍ତିକର୍ତ୍ତା, କୃଷିକର୍ମ ପ୍ରତିବନ୍ଧକ ନିବାରଣ କ୍ଷମତା - ଏ ସମସ୍ତ ଯଜ୍ଞଦ୍ୱାରା ମୋ ପାଇଁ ସୁଲଭ ହେଉ ।

**ମନ୍ତ୍ରସଂଖ୍ୟା (୮) :-** ଯଜୁର୍ବେଦ ଅ.୧୯/୨୦ : ଶଂ ଚ ମେ ମୟଶ୍ଚ - ଐହିକ ସୁଖ, ପାରଲୌକିକ ସୁଖ, ପ୍ରୀତିଦାୟକ ବସ୍ତୁ, ମନର ଅନୁକୂଳ ପଦାର୍ଥ, ବିଷୟଭୋଗ ଜନିତ ସୁଖ, ମାନସିକ ସୁଖ ଓ ଶାନ୍ତି, ସୌଭାଗ୍ୟ, ଧନସମ୍ପତ୍ତି, ସର୍ବବିଧ ସାଂସାରିକ କଲ୍ୟାଣ, ପାରଲୌକିକ ମଙ୍ଗଳପ୍ରାପ୍ତି, ସର୍ବବିଧ ସୁଖ ପ୍ରଦାୟକ ବାସସ୍ଥାନ (ଗୃହ) ଓ ଯଶ - ଏ ସମସ୍ତ ଯଜ୍ଞଦ୍ୱାରା ପ୍ରାପ୍ତ ହେଉ ।

**ମନ୍ତ୍ରସଂଖ୍ୟା (୯) :-** ଯଜୁର୍ବେଦ ଅ.୧୯/୨୧ : ଊର୍କ ଚ ମେ - ଅନ୍ନ, ପ୍ରିୟବାକ୍ୟ, ଦୁଗ୍ଧ, ସର୍ବବିଧ ରସ, ଘୃତ, ମଧୁ, ବନ୍ଧୁଙ୍କ ସହିତ ଭୋଜନ ଓ ପାନ, କୃଷିଲବ୍ଧ ଶସ୍ୟ, ସମୟାନୁସାର ବୃଷ୍ଟି, ଜୟଲାଭର ସାମର୍ଥ୍ୟ, ସର୍ବବିଧ ବୃକ୍ଷ ଇତ୍ୟାଦି ଯଜ୍ଞଦ୍ୱାରା ପ୍ରାପ୍ତ ହେଉ ।

ଋତଂ ଚ ମେଽମୃତଂ ଚ ମେଽଯକ୍ଷ୍ମଂ ଚ ମେଽନାମୟଚ୍ଚ ମେ । ଜୀବାତୁଶ୍ଚ ମେ ଦୀର୍ଘାୟୁତ୍ୱଂ ଚ ମେଽନମିତ୍ରଂ ଚ ମେଽଭୟଂ ଚ ମେ । ସୁଗଂ ଚ ମେ ଶୟନଂ ଚ ମେ ସୂଷାଶ୍ଚ ମେ ସୁଦିନଂ ଚ ମେ ଯଜ୍ଞେନ କଳ୍ପନ୍ତାମ୍ ॥୧୦॥ ରୟିଶ୍ଚ ମେ ରାୟଶ୍ଚ ମେ ପୁଷ୍ଟଂ ଚ ମେ ପୁଷ୍ଟିଶ୍ଚ ମେ । ବିଭୁ ଚ ମେ ପ୍ରଭୁ ଚ ମେ ପୂର୍ଣ୍ଣଂ ଚ ମେ ପୂର୍ଣ୍ଣତରଂ ଚ ମେ । କୁୟବଂ ଚ ମେଽକ୍ଷିତଂ ଚ ମେଽନ୍ନଂ ଚ ମେଽକ୍ଷୁଚ୍ଚମେ ଯଜ୍ଞେନ କଳ୍ପନ୍ତାମ୍ ॥୧୧॥ ବ୍ରୀହୟଶ୍ଚ ମେ ଯବାଶ୍ଚ ମେ ମାଷାଶ୍ଚ ମେ ତିଲାଶ୍ଚ ମେ । ମୁଦ୍‌ଗାଶ୍ଚ ମେ ଖଲ୍ୱାଶ୍ଚ ମେ ପ୍ରିୟଙ୍ଗବଶ୍ଚ ମେଽଣବଶ୍ଚ ମେ । ଶ୍ୟାମାକାଶ୍ଚ ମେ ନୀବାରାଶ୍ଚ ମେ ଗୋଧୂମାଶ୍ଚ ମେ ମସୂରାଶ୍ଚ ମେ ଯଜ୍ଞେନ କଳ୍ପନ୍ତାମ୍ ॥୧୨॥ ଅଶ୍ମା ଚ ମେ ମୃତ୍ତିକା ଚ ମେ ଗିରୟଶ୍ଚ ମେ ପର୍ବତାଶ୍ଚ ମେ । ସିକତାଶ୍ଚ ମେ ବନସ୍ପତୟଶ୍ଚ ମେ ହିରଣ୍ୟଂ ଚ ମେଽୟଶ୍ଚ ମେ । ସୀସଂ ଚ ମେ ତ୍ରପୁ ଚ ମେ ଶ୍ୟାମଂ ଚ ମେ ଲୋହଂ ଚ ମେ ଯଜ୍ଞେନ କଳ୍ପନ୍ତାମ୍ ॥୧୩॥

---

**ମନ୍ତ୍ରସଂଖ୍ୟା (୧୦) :-** ଯଜୁର୍ବେଦ ଅ.୧୯/୨୨ : ଋତଂ ଚ ମେ – ଯଜ୍ଞାଦି ପୁଣ୍ୟକର୍ମ ଓ ତଜ୍ଜନିତ ସ୍ୱର୍ଗାଦିଫଳ, ଧାତୁକ୍ଷୟାଦି ରୋଗାଭାବ, ପୀଡ଼ାଭାବ, ବ୍ୟାଧିନାଶକ ଔଷଧ, ଦୀର୍ଘ ପରମାୟୁ, ଶତ୍ରୁବିହୀନତ୍ୱ, ଭୀତିଶୂନ୍ୟତ୍ୱ, ସୁଖ, ସୁଖପ୍ରଦ ଶଯ୍ୟା, ସୁଖପ୍ରଦାୟକ ପ୍ରାତଃକାଳ, ଯଜ୍ଞ-ଦାନ-ଅଧ୍ୟୟନାଦି ସମନ୍ୱିତ ସୁଦିନ- ଏ ସମସ୍ତ ମୋତେ ଯଜ୍ଞଦ୍ୱାରା ପ୍ରାପ୍ତ ହେଉ ।

**ମନ୍ତ୍ରସଂଖ୍ୟା (୧୧) :-** ଯଜୁର୍ବେଦ ଅ.୧୯/୨୩ : ରୟିଶ୍ଚ ମେ – ସୁବର୍ଣ୍ଣ, ମୁକ୍ତାଦିମଣି, ଶରୀରପୁଷ୍ଟିକାରକ ବସ୍ତୁ, ଧନର ପ୍ରାଚୁର୍ଯ୍ୟ, ଅନେକାନେକ ହସ୍ତ୍ୟଶ୍ୱାଦି ସମୃଦ୍ଧି, କ୍ଷୁଦ୍ର ଧାନ୍ୟର ପ୍ରାପ୍ତି, ଭୁକ୍ତାନ୍ନର ସୁପରିପାକ – ଏ ସମସ୍ତ ମୋତେ ଯଜ୍ଞଦ୍ୱାରା ସୁଲଭ ହେଉ ।

**ମନ୍ତ୍ରସଂଖ୍ୟା (୧୨) :-** ଯଜୁର୍ବେଦ ଅ.୧୯/୨୪ : ବ୍ରୀହୟଶ୍ଚ ମେ – ଧାନ, ଯବ, ବିରି, ତିଳ, ମୁଗ, ଚଣା, ପ୍ରିୟଙ୍ଗୁ (ପିପ୍ପଳୀ), ଅଣୁ (ଚୀନା ଧାନ୍ୟ ନାମକ ଏକ ପ୍ରକାର ଶସ୍ୟ), ଶ୍ୟାମାକ (ଶୁଆଁ), ନୀବାର (ତୃଣଧାନ୍ୟ), ଗହମ, ମସୂର- ଏସବୁ ଯଜ୍ଞ ମାଧ୍ୟମରେ ମୋତେ ପ୍ରାପ୍ତ ହେଉ ।

**ମନ୍ତ୍ରସଂଖ୍ୟା (୧୩) :-** ଯଜୁର୍ବେଦ ଅ.୧୯/୨୫ : ଅଶ୍ମା ଚ ମେ – ପଥର,

ଅଗ୍ନିଶ୍ଚ ମ ଆପଶ୍ଚ ମେ ବୀରୁଧଶ୍ଚ ମ ଓଷଧୟଶ୍ଚ ମେ । କୃଷ୍ଟପଚ୍ୟାଶ୍ଚ ମେଽକୃଷ୍ଟପଚ୍ୟାଶ୍ଚ ମେ ଗ୍ରାମ୍ୟାଶ୍ଚ ମେ ପଶବ ଆରଣ୍ୟାଶ୍ଚ ମେ । ବିତ୍ତଂ ଚ ମେ ବିତ୍ତିଶ୍ଚ ମେ ଭୂତଂ ଚ ମେ ଭୂତିଶ୍ଚ ମେ ଯଜ୍ଞେନ କଳ୍ପନ୍ତାମ୍ ॥୧୪॥ ବସୁ ଚ ମେ ବସତିଶ୍ଚ ମେ କର୍ମ ଚ ମେ ଶକ୍ତିଶ୍ଚ ମେ ॥ ଅର୍ଥଶ୍ଚ ମେ ଯାମଶ୍ଚ ମ ଇତ୍ୟା ଚ ମେ ଗତିଶ୍ଚ ମେ ଯଜ୍ଞେନ କଳ୍ପନ୍ତାମ୍ ॥୧୫॥ ଅଗ୍ନିଶ୍ଚ ମ ଇନ୍ଦ୍ରଶ୍ଚ ମେ ସୋମଶ୍ଚ ମ ଇନ୍ଦ୍ରଶ୍ଚ ମେ । ସବିତା ଚ ମ ଇନ୍ଦ୍ରଶ୍ଚ ମେ ସରସ୍ୱତୀ ଚ ମ ଇନ୍ଦ୍ରଶ୍ଚ ମେ । ପୂଷା ଚ ମ ଇନ୍ଦ୍ରଶ୍ଚ ମେ ବୃହସ୍ପତିଶ୍ଚ ମ ଇନ୍ଦ୍ରଶ୍ଚ ମେ ଯଜ୍ଞେନ କଳ୍ପନ୍ତାମ୍ ॥୧୬॥

---

ମୃତ୍ତିକା, କ୍ଷୁଦ୍ର ପାହାଡ଼, ବୃହତ୍ ପର୍ବତ, ବାଲୁକା, ବନସ୍ପତି (ପୁଷ୍ପବିନା ଫଳବାନ୍ ବୃକ୍ଷ ଯଥା- ପଣସ, ଉଦୁମ୍ବର) ସୁବର୍ଣ୍ଣ, ଲୁହା, ତମ୍ବା, ସୀସା (ଧାତୁବିଶେଷ), ତ୍ରପୁ=ରଙ୍ଗ (ଝାଳେଇବା କାମରେ ଲାଗୁଥିବା ରାଙ୍ଗା)- ଏ ସମସ୍ତ ଯଜ୍ଞଦ୍ୱାରା ମୋତେ ସୁଲଭ୍ୟ ହେଉ ।

**ମନ୍ତ୍ରସଂଖ୍ୟା (୧୪) :-** ଯଜୁର୍ବେଦ ଅ.୧୯/୨୬ : ଅଗ୍ନିଶ୍ଚ ମ ଆପଶ୍ଚ ମେ - ପାର୍ଥିବ ଅଗ୍ନି, ଅନ୍ତରିକ୍ଷସ୍ଥ ଜଳ, ଗୁଳ୍ମ (ବିସ୍ତୃତ ଲତା), ବିଭିନ୍ନ ଔଷଧୀୟ ଗୁଣଯୁକ୍ତ ତୃଣ, କୃଷି ଓ ବୀଜ ବପନରୁ ଲଭ୍ୟ ଔଷଧୀୟ ବୃକ୍ଷ, କୃଷି ଓ ବୀଜ ବପନ ବିନା ଲଭ୍ୟ ଔଷଧୀୟ ବୃକ୍ଷ, ଗୋ-ମହିଷାଦି ଗୃହପାଳିତ ପଶୁ, ହସ୍ତୀ ଆଦି ବନ୍ୟଜନ୍ତୁ, ପୂର୍ବ ପ୍ରାପ୍ତ ଧନ, ଭବିଷ୍ୟତରେ ପ୍ରାପ୍ତବ୍ୟଧନ, ଜନ୍ମିତ ପୁତ୍ରାଦି, ସ୍ୱ ଉପାର୍ଜିତ ଐଶ୍ୱର୍ଯ୍ୟ - ଏ ସମସ୍ତ ଯଜ୍ଞଦ୍ୱାରା ମୋତେ ପ୍ରାପ୍ତ ହେଉ ।

**ମନ୍ତ୍ରସଂଖ୍ୟା (୧୫) :-** ଯଜୁର୍ବେଦ ଅ.୧୯/୨୭ : ବସୁ ଚ ମେ - ଗୋଧନ, ଗୃହ, ଅଗ୍ନିହୋତ୍ରାଦି କର୍ମ ଏବଂ ସେହି କର୍ମ ସାଧନ କରିବାର ସାମର୍ଥ୍ୟ, ଅଭିଳଷିତ ପଦାର୍ଥ, ପ୍ରାପ୍ତବ୍ୟ ଅର୍ଥ, ଇଷ୍ଟପ୍ରାପ୍ତିର ଉପାୟ, ଇଷ୍ଟପ୍ରାପ୍ତି - ଏ ସମସ୍ତ ମୋତେ ଯଜ୍ଞମାଧ୍ୟମରେ ପ୍ରାପ୍ତ ହେଉ ।

**ମନ୍ତ୍ରସଂଖ୍ୟା (୧୬) :-** ଯଜୁର୍ବେଦ ଅ.୧୯/୨୮ : ଅଗ୍ନିଶ୍ଚ ମ ଇନ୍ଦ୍ରଶ୍ଚ - ଇନ୍ଦ୍ରଙ୍କ ସହିତ ଅଗ୍ନି, ସୋମ, ସାବିତ୍ରୀ, ସରସ୍ୱତୀ, ସୂର୍ଯ୍ୟ, ବୃହସ୍ପତି - ଏ ସମସ୍ତ ଦେବତା ଯଜ୍ଞଦ୍ୱାରା ମୋ ପ୍ରତି ପ୍ରସନ୍ନ ହୁଅନ୍ତୁ ।

ମିତ୍ରଶ୍ଚ ମ ଇନ୍ଦ୍ରଶ୍ଚ ମେ ବରୁଣଶ୍ଚ ମ ଇନ୍ଦ୍ରଶ୍ଚ ମେ । ଧାତା ଚ ମ ଇନ୍ଦ୍ରଶ୍ଚ ମେ ତ୍ୱଷ୍ଟା ଚ ମ ଇନ୍ଦ୍ରଶ୍ଚ ମେ । ମରୁତଶ୍ଚ ମ ଇନ୍ଦ୍ରଶ୍ଚ ମେ ବିଶ୍ୱେ ଚ ମେ ଦେବା ଇନ୍ଦ୍ରଶ୍ଚ ମେ ଯଜ୍ଞେନ କଳ୍ପନ୍ତାମ୍ ॥୧୭॥ ପୃଥିବୀ ଚ ମ ଇନ୍ଦ୍ରଶ୍ଚ ମେଽନ୍ତରିକ୍ଷଂ ଚ ମ ଇନ୍ଦ୍ରଶ୍ଚ ମେ । ଦ୍ୟୌଶ୍ଚ ମ ଇନ୍ଦ୍ରଶ୍ଚ ମେ ସମାଶ୍ଚ ମ ଇନ୍ଦ୍ରଶ୍ଚ ମେ । ନକ୍ଷତ୍ରାଣି ଚ ମ ଇନ୍ଦ୍ରଶ୍ଚ ମେ ଦିଶଶ୍ଚ ମ ଇନ୍ଦ୍ରଶ୍ଚ ମେ ଯଜ୍ଞେନ କଳ୍ପନ୍ତାମ୍ ॥୧୮॥ ଅଗୁଁଶୁଶ୍ଚ ମେ ରଶ୍ମିଶ୍ଚ ମେଽଦାଭ୍ୟଶ୍ଚ ମେଽଧିପତିଶ୍ଚ ମେ । ଉପାଗୁଁଶୁଶ୍ଚ ମେଽନ୍ତର୍ଯାମଶ୍ଚ ମ ଐନ୍ଦ୍ରବାୟବଶ୍ଚ ମେ ମୈତ୍ରାବରୁଣଶ୍ଚ ମେ । ଆଶ୍ୱିନଶ୍ଚ ମେ ପ୍ରତିପ୍ରସ୍ଥାନଶ୍ଚ ମେ ଶୁକ୍ରଶ୍ଚ ମେ ମନ୍ଥୀ ଚ ମେ ଯଜ୍ଞେନ କଳ୍ପନ୍ତାମ୍ ॥୧୯॥ ଆଗ୍ରୟଣଶ୍ଚ ମେ ବୈଶ୍ୱଦେବଶ୍ଚ ମେ ଧ୍ରୁବଶ୍ଚ ମେ ବୈଶ୍ୱାନରଶ୍ଚ ମେ ।ଐନ୍ଦ୍ରାଗ୍ନଶ୍ଚ ମେ ମହାବୈଶ୍ୱଦେବଶ୍ଚ ମେ ମରୁତ୍ୱତୀୟାଶ୍ଚ ମେ ନିଷ୍କେବଲ୍ୟଶ୍ଚ ମେ ।

---

**ମନ୍ତ୍ରସଂଖ୍ୟା (୧୭) :-** ଯଜୁର୍ବେଦ ଅ.୧୯/୨୯ : ମିତ୍ରଶ୍ଚ ମ ଇନ୍ଦ୍ରଶ୍ଚ ମେ - ମିତ୍ର (ସୂର୍ଯ୍ୟ / ବରୁଣ), ଧାତା (ବ୍ରହ୍ମା) ତ୍ୱଷ୍ଟା (ଦ୍ୱାଦଶ ଆଦିତ୍ୟଗଣ), ବାୟୁ, ବିଶ୍ୱେଦେବା - ଏ ସମସ୍ତ ଦେବତା ଇନ୍ଦ୍ରଙ୍କ ସହିତ ଯଜ୍ଞ ମାଧ୍ୟମରେ ମୋ ପ୍ରତି ପ୍ରସନ୍ନ ହୁଅନ୍ତୁ ।

**ମନ୍ତ୍ରସଂଖ୍ୟା (୧୮) :-** ଯଜୁର୍ବେଦ ଅ.୧୯/୩୦ : ପୃଥିବୀ ଚ ମେ- ପୃଥିବୀ, ଅନ୍ତରିକ୍ଷ (ଆକାଶ), ସ୍ୱର୍ଗ, ସଂବତ୍ସର, ଅଶ୍ୱିନୀ ଆଦି ନକ୍ଷତ୍ରଗଣ, ପୂର୍ବାଦି ଦିଗ ସମୂହ - ଇନ୍ଦ୍ରଙ୍କ ସମେତ ଏ ସମସ୍ତଙ୍କ ଅଧିଷ୍ଠାତା ଦେବତା ଯଜ୍ଞରେ ମୋ ପ୍ରତି ସନ୍ତୁଷ୍ଟ ହୁଅନ୍ତୁ ।

**ମନ୍ତ୍ରସଂଖ୍ୟା (୧୯) :-** ଯଜୁର୍ବେଦ ଅ.୧୯/୩୧ : ଅଗୁଁଶୁଶ୍ଚ ମେ- (ଏଠାରେ ଯଜ୍ଞମାନଙ୍କରେ ବ୍ୟବହୃତ ବିଭିନ୍ନ ପାତ୍ର ଯାହାକି ଗ୍ରହରୂପକ ପାରିଭାଷିକ ଶବ୍ଦଦ୍ୱାରା କୁହାଯାଇଅଛି) ଅଂଶୁଗ୍ରହ, ରଶ୍ମି, ଅଦାଭ୍ୟ, ଅଧିପତି, ଉପାଂଶୁ, ଅନ୍ତର୍ଯ୍ୟାମ, ଐନ୍ଦ୍ରବାୟବ, ମୈତ୍ରାବରୁଣ, ଆଶ୍ୱିନ, ପ୍ରତିପ୍ରସ୍ଥାନ, ଶୁକ୍ର ଏବଂ ମନ୍ଥୀ - ଏ ସମସ୍ତ ଗ୍ରହ (ପାତ୍ର) ମାନେ ଯଜ୍ଞଦ୍ୱାରା ପ୍ରାପ୍ତ ହୁଅନ୍ତୁ ।

ସାବିତ୍ରଶ୍ଚ ମେ ସାରସ୍ୱତଶ୍ଚ ମେ ପାତ୍ନୀବତଶ୍ଚ ମେ ହାରିଯୋଜନଶ୍ଚ ମେ ଯଜ୍ଞେନ କଳ୍ପନ୍ତାମ୍ ॥୨୦॥ ସ୍ରୁଚଶ୍ଚ ମେ ଚମସାଶ୍ଚ ମେ ବାୟବ୍ୟାନି ଚ ମେ ଦ୍ରୋଣକଳଶଶ୍ଚ ମେ । ଗ୍ରାବାଣଶ୍ଚ ମେଽଧିଷବଣେ ଚ ମେ ପୂତଭୃଚ୍ଚ ମ ଆଧବନୀୟଶ୍ଚ ମେ । ବେଦିଶ୍ଚ ମେ ବର୍ହିଶ୍ଚ ମେ ସ୍ୱଗାକାରଶ୍ଚ ମେଽବଭୃଥଶ୍ଚ ମେ ଯଜ୍ଞେନ କଳ୍ପନ୍ତାମ୍ ॥୨୧॥ ଅଗ୍ନିଶ୍ଚ ମେ ଘର୍ମଶ୍ଚ ମେଽର୍କଶ୍ଚ ମେ ସୂର୍ଯଶ୍ଚ ମେ । ପ୍ରାଣଶ୍ଚ ମେଽଶ୍ୱମେଧଶ୍ଚ ମେ ପୃଥିବୀ ଚ ମେଽଦିତିଶ୍ଚ ମେ । ଦିତିଶ୍ଚ ମେ ଦ୍ୟୌଶ୍ଚ ମେଽଙ୍ଗୁଳୟଃ ଶକ୍ୱରୟୋ ଦିଶଶ୍ଚ ମେ ଯଜ୍ଞେନ କଳ୍ପନ୍ତାମ୍ ॥୨୨॥

---

**ମନ୍ତ୍ରସଂଖ୍ୟା (୨୦) :-** ଯଜୁର୍ବେଦ ଅ.୧୯/୩୨ : ଆଗ୍ରୟଣଶ୍ଚ ମେ- ପୂର୍ବ ମନ୍ତ୍ରଭଳି ଯଜ୍ଞୀୟ ପାତ୍ର ବା ଅଧିଦେବତା ଓ ପ୍ରତ୍ୟଧିଦେବତା ସହିତ ଏଥିରେ ମଧ ଗ୍ରହ ବିଷୟରେ କୁହାଯାଇଅଛି । ଆଗ୍ରୟଣ, ବୈଶ୍ୱଦେବ, ଧ୍ରୁବ, ବୈଶ୍ୱାନର, ଐନ୍ଦ୍ରାଗ୍ନ, ମହାବୈଶ୍ୱଦେବ, ମରୁତ୍ୱତୀୟ, ନିଷ୍କୈବଲ୍ୟ, ସାବିତ୍ର, ସାରସ୍ୱତ, ପାତ୍ନୀବ୍ରତ ଏବଂ ହାରିଯୋଜନ ନାମକ ଗ୍ରହ(ପାତ୍ର)ମାନେ ଯଜ୍ଞଦ୍ୱାରା ସନ୍ତୋଷଲାଭ କରନ୍ତୁ ।

**ମନ୍ତ୍ରସଂଖ୍ୟା (୨୧) :-** ଯଜୁର୍ବେଦ ଅ.୧୯/୩୩ : ସ୍ରୁଚଶ୍ଚ ମେ - (ଯଜ୍ଞୀୟ ପାତ୍ର ବିଷୟକ) - ଜୁହୂ, ସ୍ରୁବ, ସ୍ରୁକ୍ (ସ୍ରୁଚ), ଚମସ, ବାୟବ୍ୟ, କାଷ୍ଠନିର୍ମିତ କଳଶ, ପ୍ରସ୍ତରସମୂହ, କାଷ୍ଠଫଳକ, ପୁତଭୃତ୍ ଓ ଆହବନୀୟ ନାମକ ଦୁଇଟି ସୋମପାତ୍ର, ବେଦ (ଯଜ୍ଞନିମିତ୍ତ ପରିଷ୍କୃତଭୂମି), କୁଶ, ଅବଭୃଥ (ଦୀକ୍ଷାନ୍ତ ଯଜ୍ଞ ବିଶେଷ ସ୍ନାନ) ସ୍ୱଗାକାର (ଶମ୍ଯୁବାକ) - ଏ ସମସ୍ତ ମୋତେ ଯଜ୍ଞ ନିମିତ୍ତ ପ୍ରାପ୍ତ ହୁଅନ୍ତୁ ।

**ମନ୍ତ୍ରସଂଖ୍ୟା (୨୨) :-** ଯଜୁର୍ବେଦ ଅ.୧୯/୩୪ : ଅଗ୍ନିଶ୍ଚ ମେ - ଅଗ୍ନି (ଅଗ୍ନି ପଦରେ ଏଠାରେ ସାମାନ୍ୟ ଅଗ୍ନି ବଦଳରେ ଅଗ୍ନିଷ୍ଟୋମ ଯଜ୍ଞନିମିତ୍ତ ଆହିତାଗ୍ନିକୁ ଅଭିହିତ କରାଯାଇଅଛି), ଘର୍ମ (ପ୍ରବର୍ଗ୍ୟ ନାମକ ଯଜ୍ଞବିଶେଷ), ଅର୍କ ଅର୍ଥାତ୍ ସୂର୍ଯ୍ୟ ସ୍ୱରୂପ ଇନ୍ଦ୍ରଙ୍କ ନିମିତ୍ତ ପୁରୋଡାଶ (ଯଜ୍ଞୀୟ ପିଠା) ପ୍ରଦାନ ପରକ ଯାଗ ବିଶେଷର ନାମ (ଇନ୍ଦ୍ରାୟ ଅର୍କବତେ ପୁରୋଡାଶଂ), ସୂର୍ଯ୍ୟ (ସୌର୍ଯ୍ୟଂ ଚରୁମ୍) ସୂର୍ଯ୍ୟ ସମ୍ବନ୍ଧୀୟ ଚରୁ ପ୍ରଦାନ ନିମିତ୍ତ ଯଜ୍ଞ । ପ୍ରାଣ (ଗବାମୟନ ନାମକ ଯଜ୍ଞ), ଅଶ୍ୱମେଧ ଯଜ୍ଞ, ପୃଥିବୀ, ଅଦିତି, ଦିତି, ସ୍ୱର୍ଗ, ଅଙ୍ଗୁଳି (ବିରାଟ ପୁରୁଷର ଅବୟବ), ସମସ୍ତ ଶକ୍ତି, ପୂର୍ବାଦି ଦିଗମାନେ ମୋର ଯଜ୍ଞଦ୍ୱାରା ସିଦ୍ଧ ହୁଅନ୍ତୁ ।

ବ୍ରତଞ୍ଚ ମ ଋତବଶ୍ଚ ମେ ସଂବତ୍ସରଶ୍ଚ ମେ ତପଶ୍ଚ ମେ । ଅହୋରାତ୍ରେ ଊର୍ବଷ୍ଠୀବେ ବୃହଦ୍ରଥନ୍ତରେ ଚ ମେ ଯଜ୍ଞେନ କଳ୍ପନ୍ତାମ୍ ॥୨୩॥ ଏକା ଚ ମେ ତିସ୍ରଶ୍ଚ ମେ ତିସ୍ରଶ୍ଚ ମେ ପଞ୍ଚ ଚ ମେ ପଞ୍ଚ ଚ ମେ ସପ୍ତ ଚ ମେ ସପ୍ତ ଚ ମେ ନବ ଚ ମେ ନବ ଚ ମ ଏକାଦଶ ଚ ମ ଏକାଦଶ ଚ ମେ ତ୍ରୟୋଦଶ ଚ ମେ ତ୍ରୟୋଦଶ ଚ ମେ । ପଞ୍ଚଦଶ ଚ ମେ ପଞ୍ଚଦଶ ଚ ମେ ସପ୍ତଦଶ ଚ ମେ ସପ୍ତଦଶ ଚ ମେ ନବଦଶ ଚ ମେ ନବଦଶ ଚ ମ ଏକବିଗୁଁଶତିଶ୍ଚ ମ ଏକବିଗୁଁଶତିଶ୍ଚ ମେ ତ୍ରୟୋବିଗୁଁଶତିଶ୍ଚ ମେ ତୟୋବିଗୁଁଶତିଶ୍ଚ ମେ ପଞ୍ଚବିଗୁଁଶତିଶ୍ଚ ମେ ପଞ୍ଚବିଗୁଁଶତିଶ୍ଚ ମେ ସପ୍ତବିଗୁଁଶତିଶ୍ଚ ମେ ସପ୍ତବିଗୁଁଶତିଶ୍ଚ ମେ ନବବିଗୁଁଶତିଶ୍ଚ ମେ ନବବିଗୁଁଶତିଶ୍ଚ ମେ । ଏକତ୍ରିଗୁଁଶଚ୍ଚ ମ ଏକତ୍ରିଗୁଁଶଚ୍ଚ ମେ ତ୍ରୟସ୍ତ୍ରିଗୁଁଶଚ୍ଚ ମେ ଯଜ୍ଞେନ କଳ୍ପନ୍ତାମ୍ ॥୨୪॥

---

**ମନ୍ତ୍ରସଂଖ୍ୟା (୨୩) :-** ଯଜୁର୍ବେଦ ଅ.୧୯/୩୫ : ବ୍ରତଂ ଚ ମେ - ନିୟମ, ବସନ୍ତ ପ୍ରଭୃତି ଋତୁ ସମୂହ, ତପସ୍ୟା (କୃଚ୍ଛ ଚାନ୍ଦ୍ରାୟଣାଦି), ପ୍ରଭବ ପ୍ରଭୃତି ସଂବତ୍ସର, ଦିନରାତ୍ରି, ଜଂଘ ଓ ଆଣ୍ଠୁ, ବୃହତ୍ ଏବଂ ରଥନ୍ତର ନାମକ ସାମମନ୍ତ୍ରଦ୍ୱୟ- ଏ ସମସ୍ତ ଯଜ୍ଞଦ୍ୱାରା ମୋର ସିଦ୍ଧିଲାଭ ହେଉ ।

**ମନ୍ତ୍ରସଂଖ୍ୟା (୨୪) :-** ଯଜୁର୍ବେଦ ଅ.୧୯/୩୬ : ଏକା ଚ ମେ - (ବେଦରେ କୁହାଯାଇଅଛି- 'ଏତଦ୍ ବୈ ଦେବାଃ ସର୍ବାନ୍ କାମାନ୍ ଆପ୍ତ୍ୱା ଅୟୁଗ୍ମଭିଃ ସ୍ତୋମୈଃ ସ୍ୱର୍ଗଂ ଲୋକମାୟଂସ୍ତଥୈବୈତଦ୍ ଯଜମାନଃ ସର୍ବାନ୍ କାମାନ୍ ଆପ୍ତ୍ୱା ଅୟୁଗ୍ମଭିଃ ସ୍ତୋମୈଃ ସ୍ୱର୍ଗଂ ଲୋକମେତି'- (୯.୩.୩.୨) ଅର୍ଥାତ୍ ଦେବତାମାନେ ଯେପରି ଅୟୁଗ୍ମ ଅର୍ଥାତ୍ ବେଯୋଡ଼ ସାମମନ୍ତ୍ରଦ୍ୱାରା ସମସ୍ତ କାମନା ପୂରଣ କରି ସ୍ୱର୍ଗଲୋକକୁ ଆସିଥିଲେ ଠିକ୍ ସେହିପରି ଯଜମାନ ଅୟୁଗ୍ମ ସାମମନ୍ତ୍ରଦ୍ୱାରା ସମସ୍ତ କାମନା ପୂରଣ କରି ସ୍ୱର୍ଗଲୋକ ପ୍ରାପ୍ତ ହୁଅନ୍ତି) । ମନ୍ତ୍ରରେ ସମସ୍ତ ଅୟୁଗ୍ମ ଅର୍ଥାତ୍ ବେଯୋଡ଼ ସଂଖ୍ୟାର ଅତିଶୟ ଆଦର ହେତୁ ପ୍ରତ୍ୟେକଙ୍କୁ ଦୁଇଥର କରି କୁହାଯାଇଅଛି, ଯଥା- ଏକ, ତିନି-ତିନି, ପାଞ୍ଚ-ପାଞ୍ଚ, ସାତ-ସାତ, ନଅ-ନଅ, ଏଗାର-ଏଗାର, ପନ୍ଦର-ପନ୍ଦର, ସତର-ସତର, ଉଣେଇଶ-ଉଣେଇଶ, ଏକୋଇଶ-ଏକୋଇଶ, ତେଇଶ-ତେଇଶ, ପଚିଶ-ପଚିଶ, ସତେଇଶ-ସତେଇଶ, ଅଣତିରିଶ-ଅଣତିରିଶ, ଏକତିରିଶ-ଏକତିରିଶ, ତେତ୍ରିଶ-ତେତ୍ରିଶ - ଏ ସମସ୍ତ ଯଜ୍ଞଦ୍ୱାରା ମୋତେ ପ୍ରାପ୍ତ ହୁଅନ୍ତୁ ।

ଚତସ୍ରଶ୍ଚ ମେଽଷ୍ଟୌ ଚ ମେଽଷ୍ଟୌ ଚ ମେ ଦ୍ୱାଦଶ ଚ ମେ ଦ୍ୱାଦଶ ଚ ମେ । ଷୋଡ଼ଶ ଚ ମେ ଷୋଡ଼ଶ ଚ ମେ ବିଗୁଁଶତିଶ୍ଚ ମେ ବିଗୁଁଶତିଶ୍ଚ ମେ । ଚତୁର୍ବିଗୁଁଶତିଶ୍ଚ ମେ ଚତୁର୍ବିଗୁଁଶତିଶ୍ଚ ମେଽଷ୍ଟାବିଗୁଁଶତିଶ୍ଚ ମେଽଷ୍ଟାବିଗୁଁଶତିଶ୍ଚ ମେ । ଦ୍ୱାତ୍ରିଗୁଁଶଚ୍ଚ ମେ ଦ୍ୱାତ୍ରିଗୁଁଶଚ୍ଚ ମେ ଷଟ୍ତ୍ରିଗୁଁଶଚ୍ଚ ମେ ଷଟ୍ତ୍ରିଗୁଁଶଚ୍ଚ ମେ । ଚତ୍ୱାରିଗୁଁଶଚ୍ଚ ମେ ଚତ୍ୱାରିଗୁଁଶଚ୍ଚ ମେ ଚତୁଶ୍ଚତ୍ୱାରିଗୁଁଶଚ୍ଚ ମେ ଚତୁଶ୍ଚତ୍ୱାରିଗୁଁଶଚ୍ଚ ମେଽଷ୍ଟାଚତ୍ୱାରିଗୁଁଶଚ୍ଚ ମେ ଯଜ୍ଞେନ କଳ୍ପନ୍ତାମ୍ ॥୨୫॥ ତ୍ର୍ୟବିଶ୍ଚ ମେ ତ୍ର୍ୟବୀ ଚ ମେ ଦିତ୍ୟବାଟ୍ ଚ ମେ ଦିତ୍ୟୌହୀ ଚ ମେ । ପଞ୍ଚାବିଶ୍ଚ ମେ ପଞ୍ଚାବୀ ଚ ମେ ତ୍ରିବତ୍ସଶ୍ଚ ମେ ତ୍ରିବତ୍ସା ଚ ମେ । ତୁର୍ଯବାଟ୍ ଚ ମେ ତୁର୍ଯୌହୀ ଚ ମେ ଯଜ୍ଞେନ କଳ୍ପନ୍ତାମ୍ ॥୨୬॥ ପଷ୍ଠବାଟ୍ ଚ ମେ ପଷ୍ଠୌହୀ ଚ ମ ଉକ୍ଷା ଚ ମେ ବଶା ଚ ମେ ଋଷଭଶ୍ଚ ମେ ବେହଚ୍ଚ ମେଽନଡ୍ବାଂଶ୍ଚ ମେ ଧେନୁଶ୍ଚ ମେ ଯଜ୍ଞେନ କଳ୍ପନ୍ତାମ୍ ॥୨୭॥

---

**ମନ୍ତ୍ରସଂଖ୍ୟା (୨୫) :-** ଯଜୁର୍ବେଦ ଅ.୧୯/୩୭ : ଚତସ୍ରଶ୍ଚ ମେ - (ପୂର୍ବୋକ୍ତ ଅଯୁଗ୍ମ ସଂଖ୍ୟା ପରି ଯୁଗ୍ମ ସଂଖ୍ୟାଦ୍ୱାରା ସ୍ତୁତି କରି ଦେବତାମାନଙ୍କ ଭଳି ଯଜମାନ ସ୍ୱର୍ଗପ୍ରାପ୍ତ ହୁଅନ୍ତି ।) ଚାରି, ଆଠ-ଆଠ, ବାର-ବାର, ଷୋହଳ-ଷୋହଳ, କୋଡ଼ିଏ-କୋଡ଼ିଏ, ଚବିଶ-ଚବିଶ, ଅଠେଇଶ-ଅଠେଇଶ, ବତିଶ-ବତିଶ, ଛତିଶ-ଛତିଶ, ଚୌରାଳିଶ-ଚୌରାଳିଶ, ଅଠଚାଳିଶ-ଅଠଚାଳିଶ ଯଜ୍ଞଦ୍ୱାରା ପ୍ରାପ୍ତ ହୁଅନ୍ତୁ ।

**ମନ୍ତ୍ରସଂଖ୍ୟା (୨୬) :-** ଯଜୁର୍ବେଦ ଅ.୧୯/୩୮ : ତ୍ର୍ୟବିଶ୍ଚ ମେ ତ୍ର୍ୟବି ଚ ମେ-ତ୍ର୍ୟବୀ (ଅବି ଅର୍ଥାତ୍ ଷଣ୍ମାସ, ତ୍ରି ଅବି ଅର୍ଥାତ୍ ତିନୋଟି ଷଣ୍ମାସ ଯାହାକି ଦେଢ଼ ବର୍ଷକୁ ବୁଝାଏ) ଦେଢ଼ବର୍ଷର ବୃଷ ଏବଂ ଛଡ଼ା, ଦୁଇବର୍ଷର ବୃଷ ଓ ଗାଈ (ଛଡା), ସାର୍ଦ୍ଧ ଦୁଇବର୍ଷର ବୃଷଭ ଓ ଛଡ଼ା, ତିନି ବର୍ଷର ଗାଈ ଓ ବଳଦ, ସାର୍ଦ୍ଧ ତିନି ବର୍ଷର ଧେନୁ ଓ ବୃଷଭ - ଏ ସମସ୍ତ ଯଜ୍ଞାନୁଷ୍ଠାନ ଦ୍ୱାରା ମୋତେ ପ୍ରାପ୍ତ ହୁଅନ୍ତୁ ।

**ମନ୍ତ୍ରସଂଖ୍ୟା (୨୭) :-** ଯଜୁର୍ବେଦ ଅ.୧୯/୩୯ : ପଷ୍ଠ୍ୱାଟ୍ ଚ ମେ - ଚାରି ବର୍ଷର ବୃଷଭ, ସେଚନକ୍ଷମ ବୃଷଭ, ବନ୍ଧ୍ୟା ଗାଈ, ଅତି ଯୁବ ବୃଷଭ, ଗର୍ଭୋପଘାତିନୀ ଧେନୁ, ଶଗଡ଼ବାହକ ବୃଷଭ, ନବପ୍ରସୂତା ଧେନୁ ମୋତେ ଯଜ୍ଞଦ୍ୱାରା ସଂପ୍ରାପ୍ତ ହୁଅନ୍ତୁ ।

ବାଜାୟ ସ୍ୱାହା ପ୍ରସବାୟ ସ୍ୱାହା ପିଜାୟ ସ୍ୱାହା କ୍ରତବେ ସ୍ୱାହା । ବସବେ ସ୍ୱାହା ହର୍ପତୟେ ସ୍ୱାହା । ଅହ୍ନେ ମୁଗ୍ଧାୟ ସ୍ୱାହା ମୁଗ୍ଧାୟ ବୈନଶିଁନାୟ ସ୍ୱାହା ବିନଶିଁନ ଆନ୍ତ୍ୟାୟନାୟ ସ୍ୱାହାନ୍ତ୍ୟାୟ ଭୌବନାୟ ସ୍ୱାହା । ଭୁବନସ୍ୟ ପତୟେ ସ୍ୱାହାଧିପତୟେ ସ୍ୱାହା ପ୍ରଜାପତୟେ ସ୍ୱାହା ॥୨୮॥

---

**ମନ୍ତ୍ରସଂଖ୍ୟା (୨୮) :-** ଯଜୁର୍ବେଦ ଅ.୧୯/୪୦ : ବାଜାୟ ସ୍ୱାହା - ବାଜ ଅର୍ଥାତ୍ ଅନ୍ନ, ତନ୍ନିମିତ୍ତ ସ୍ୱାହା (ବାଜ ଇତ୍ୟାଦି ଚୈତ୍ର ପ୍ରଭୃତି ମାସଗୁଡ଼ିକର ନାମ, ଅନ୍ନ ପ୍ରାଚୁର୍ଯ୍ୟ ପ୍ରଦାୟକ ହେତୁ ଚୈତ୍ର ଅନ୍ନ ସ୍ୱରୂପ, ଏଣୁ ଅନ୍ନସ୍ୱରୂପ ଚୈତ୍ର ମାସକୁ ଆହୁତି ପ୍ରଦାନ), ପ୍ରସବାୟ = ଜଳକ୍ରୀଡା ନିମିତ୍ତ ଅନୁଜ୍ଞା ପ୍ରଦାନକାରୀ ହେତୁ ପ୍ରସବ ଅର୍ଥାତ୍ ବୈଶାଖ ମାସଙ୍କ ପାଇଁ ସ୍ୱାହା, ଅପିଜ = ଅପ୍ସୁ (ଜଳରେ) ଜାୟତେ ଇତି ଅପିଜ ଅର୍ଥାତ୍ ଜଳକ୍ରୀଡାରତ ହେତୁ ଜ୍ୟେଷ୍ଠମାସ, ତାଙ୍କ ପାଇଁ ସ୍ୱାହା, ଚାତୁର୍ମାସ୍ୟାଦି କ୍ରତୁ(ଯାଗ) ପ୍ରାଚୁର୍ଯ୍ୟ ହେତୁ କ୍ରତୁ ଶବ୍ଦ ଆଷାଢ଼ ମାସପରକ, ସେହି ଆଷାଢ଼ ମାସଙ୍କ ପାଇଁ ସ୍ୱାହା, ବସୁ = ଚାତୁର୍ମାସ୍ୟ ସମୟରେ ବହିର୍ଗମନ ନିଷିଦ୍ଧ ହେତୁ ଶ୍ରାବଣ ମାସକୁ ବସୁ କୁହାଯାଇଅଛି । ଏଣୁ ସେହି ବସୁ ଅର୍ଥାତ୍ ଶ୍ରାବଣ ମାସଙ୍କ ପାଇଁ ସ୍ୱାହା । ଦିନ ସ୍ୱାମୀ ସୂର୍ଯ୍ୟ ସେ ତାପ ପ୍ରଦାନ କରୁଥିବା ହେତୁ ଭାଦ୍ରପଦ ମାସ ଅଭିଧେୟ ଅହର୍ପତି ତାଙ୍କ ପାଇଁ ସ୍ୱାହା, ଶୈତ୍ୟ ଓ ଗାଢ଼ ତୁଷାରରୂପକ ମୋହଦ୍ୱାରା ପରିବ୍ୟାପ୍ତ ଆଶ୍ୱିନମାସଙ୍କ ନିମିତ୍ତ ସ୍ୱାହା, ସ୍ନାନାଚମନାଦି ନିୟମଦ୍ୱାରା ପାପନାଶକ ଓ ମୋହ ନିବର୍ତ୍ତକ ରୂପକ କାର୍ତ୍ତିକ ମାସଙ୍କ ପାଇଁ ସ୍ୱାହା, ସୃଷ୍ଟିର ବିନାଶ ପରେ ମଧ୍ୟ ଅବଶେଷ ରୂପରେ ତିଷ୍ଠି ରହୁଥିବା ହେତୁ ଅବିନାଶୀ ଭଗବାନ୍ ବିଷ୍ଣୁସ୍ୱରୂପ ମାର୍ଗଶୀର୍ଷ ମାସ (ମାସାନାଂ ମାର୍ଗଶୀର୍ଷୋଽହଂ) ତାଙ୍କ ନିମିତ୍ତ ସ୍ୱାହା, ଭୁବନମଣ୍ଡଳର ଅନ୍ତରେ ଯେ ଲୋକହିତ ପାଇଁ ଜଠରାଗ୍ନିକୁ ଦୀପ୍ତି ପ୍ରଦାନ କରି ଶରୀରର ପୁଷ୍ଟିସାଧନ କରୁଥିବା ପୌଷମାସ ତାଙ୍କ ନିମିତ୍ତ ସ୍ୱାହା, ପ୍ରାତଃସ୍ନାନ ପୂର୍ବକ ଦାନାଦି ପୁଣ୍ୟକର୍ମଦ୍ୱାରା ଲୋକପାଳକ ରୂପରେ ମାଘମାସଙ୍କ ପାଇଁ ସ୍ୱାହା, ଲୋକଙ୍କୁ ଅଧିକ ପାଳନ ଓ ପୋଷଣଦ୍ୱାରା ଉପକାର ସାଧନ କରୁଥିବା ଫାଲ୍ଗୁନ ମାସଙ୍କ ନିମିତ୍ତ ସ୍ୱାହା । ଏହିପରି ଦ୍ୱାଦଶ ମାସର ଅଧିଷ୍ଠାତା ପ୍ରଜାପତି ଦେବତାଙ୍କ ସନ୍ତୋଷ ନିମିତ୍ତ ସ୍ୱାହା । ହେ ଅଗ୍ନିଦେବତା ! ଯେଉଁ ଯେଉଁ ସ୍ଥାନରେ ଯାଗ ଅନୁଷ୍ଠିତ ହୁଏ ସେ ସମସ୍ତ ତୁମର ରାଜ୍ୟ, ତୁମେ ମଧ୍ୟ ମିତ୍ର ଅର୍ଥାତ୍ ବନ୍ଧୁଭାବାପନ୍ନ ଯଜମାନର ଅଗ୍ନିଷ୍ଟୋମାଦି ଯାଗାନୁଷ୍ଠାନ ମାଧ୍ୟମରେ ନିୟାମକ ଅଟ । ଏଣୁ ବର୍ଷା

ଇୟଂ ତେ ରାଣ୍ମିତ୍ରାୟ ଯନ୍ତାସି ୟମନଃ ଉର୍ଜେ ତ୍ୱା ବୃଷ୍ଟ୍ୟୈ ତ୍ୱା ପ୍ରଜାନାଂ ତ୍ୱାଧିପତ୍ୟାୟ ॥୨୯॥ ଆୟୁର୍ଯଜ୍ଞେନ କଳ୍ପତାଂ ପ୍ରାଣୋ ଯଜ୍ଞେନ କଳ୍ପତାଂ ଚକ୍ଷୁର୍ଯଜ୍ଞେନ କଳ୍ପତାଗୁଁ ଶ୍ରୋତ୍ରଂ ଯଜ୍ଞେନ କଳ୍ପତାମ୍ । ବାଗ୍‌ଯଜ୍ଞେନ କଳ୍ପତାଂ ମନୋ ଯଜ୍ଞେନ କଳ୍ପତାମାତ୍ମା ଯଜ୍ଞେନ କଳ୍ପତାଂ ପୃଷ୍ଠଂ ଯଜ୍ଞେନ କଳ୍ପତାମ୍ । ବ୍ରହ୍ମ ଯଜ୍ଞେନ କଳ୍ପତାଂ ଯଜ୍ଞୋ ଯଜ୍ଞେନ କଳ୍ପତାଂ ଜ୍ୟୋତିର୍ଯଜ୍ଞେନ କଳ୍ପତାଗୁଁ ସ୍ୱର୍ଯଜ୍ଞେନ କଳ୍ପତାମ୍ ॥୩୦॥ ସ୍ତୋମଶ୍ଚ ଯଜୁଶ୍ଚ ଋକ୍‌ଚ ସାମ ଚ ବୃହଚ୍ଚ ରଥନ୍ତରଂ ଚ । ସ୍ୱର୍ଦେବା ଅଗନ୍ମାମୃତା ଅଭୂମ ପ୍ରଜାପତେଃ ପ୍ରଜା ଅଭୂମ ବେଟ୍ ସ୍ୱାହା ॥୩୧॥

---

ମାଧ୍ୟମରେ ବିଶିଷ୍ଟ ଅନ୍ନରସ ପ୍ରଦାତା, ପ୍ରଜାଙ୍କ ଅଧିପତି ସ୍ୱରୂପ ତୁମକୁ ବସୋର୍ଧାରାଦ୍ୱାରା (ଘୃତଧାରାଦ୍ୱାରା) ଅଭିଷେଚନ କରୁଅଛି ।

**ମନ୍ତ୍ରସଂଖ୍ୟା (୨୯) :-** ଯଜୁର୍ବେଦ ଅ.୧୯/୪୧ : ଇୟଂ ତେ ରାଣ୍ମିତ୍ରାୟ - ହେ ଅଗ୍ନିଦେବ! ଏ ସମଗ୍ର ବିଶ୍ୱ ତୁମର ରାଜ୍ୟ, ଏ ରାଜ୍ୟରେ ଯେଉଁଠି ବି ଯାଗ କରାଯାଏ ସେ ସବୁର ତୁମେ ହିଁ ଅଧିପତି । ପୁଣି ତୁମେ ସମସ୍ତ ଅଗ୍ନିହୋତ୍ରାଦି ଯାଗ ମାଧ୍ୟମରେ ଯଜମାନର ନିୟାମକ ଅଟ । ଏଣୁ ଆମର ଅନ୍ନରସାଦି ନିମିତ୍ତ ତଥା ବୃଷ୍ଟ୍ୟାଦି ପାଇଁ ଆମେ ତୁମର ଅଭିଷେଚନ କରୁଅଛୁ ।

**ମନ୍ତ୍ରସଂଖ୍ୟା (୩୦) :-** ଯଜୁର୍ବେଦ ଅ.୧୯/୪୨ : ଆୟୁର୍ଯଜ୍ଞେନ - ଯଜ୍ଞଦ୍ୱାରା ପରମାୟୁ, ପ୍ରାଣ, ଚକ୍ଷୁ, କର୍ଣ୍ଣ, ବାକ୍, ମନ, ଆତ୍ମା, ବେଦ ଓ ଜ୍ୟୋତିଃସ୍ୱରୂପ ସ୍ୱୟଂ ପ୍ରକାଶ ପରମାତ୍ମା ବିଷୟକଜ୍ଞାନ, ସ୍ୱର୍ଗସ୍ଥାନ, ସ୍ତବ ଓ ମନ୍ତ୍ରସ୍ୱରୂପ ଋଗ୍-ଯଜୁ-ସାମବେଦ ଅନ୍ତର୍ଗତ ବୃହତ୍ ଓ ରଥନ୍ତର ମନ୍ତ୍ର-ବିଷୟକ ଜ୍ଞାନବିଶେଷ ଯଜ୍ଞଦ୍ୱାରା ସମସ୍ତେ ପ୍ରାପ୍ତ ହୁଅନ୍ତୁ । ଯାହା ଫଳରେ ଯଜମାନ ଦେବତ୍ୱ ପ୍ରାପ୍ତ ହୋଇ ସ୍ୱର୍ଗଲୋକକୁ ଯାଇଅଛନ୍ତି । ଏଣୁ ଏ ସମସ୍ତ ପ୍ରାପ୍ତି ପାଇଁ ଆମେ ବସୋର୍ଧାରା ଦ୍ୱାରା ବଷଟ୍‌କାର ମାଧ୍ୟମରେ ତୁମ୍ଭଙ୍କୁ (ଦେବତାମାନଙ୍କୁ) ପ୍ରୀତ କରୁଅଛୁ ।

**ମନ୍ତ୍ରସଂଖ୍ୟା (୩୧) :-** ଯଜୁର୍ବେଦ ଅ.୧୯/୪୩ : ସ୍ତୋମଶ୍ଚ ଯଜୁଶ୍ଚ - ସ୍ତୋମ (ଯଜୁର୍ବେଦର ମନ୍ତ୍ରବିଶେଷ), ଯଜୁର୍ବେଦ, ଋଗ୍‌ବେଦ, ସାମ (ଗାନ), ବୃହତ୍ (ଛନ୍ଦବିଶେଷ), ରଥନ୍ତର ନାମକ ସାମମନ୍ତ୍ର - ଏଭଳି ମନ୍ତ୍ରମାନଙ୍କ ମାଧ୍ୟମରେ ଯଜମାନମାନେ ସ୍ୱର୍ଗକୁ ଗମନ କରିଅଛନ୍ତି । ଆମେ ମଧ୍ୟ ତାହାଦ୍ୱାରା ପ୍ରଜାପତିଙ୍କ ପ୍ରଜା ହୋଇଅଛୁ । ଏଣୁ ଆମର ମଧ୍ୟ ସ୍ୱର୍ଗପ୍ରାପ୍ତି ହେବ ।

—x—

# ନବମାଧ୍ୟାୟଃ

## (ଶାନ୍ତିସୂକ୍ତମ୍ / ଶାନ୍ତ୍ୟଧ୍ୟାୟଃ)

ହରିଃ ଓଁ ଋଚଂ ବାଚଂ ପ୍ରପଦ୍ୟେ ମନୋ ଯଜୁଃ ପ୍ରପଦ୍ୟେ ସାମ ପ୍ରାଣଂ ପ୍ରପଦ୍ୟେ ଚକ୍ଷୁଃ ଶ୍ରୋତ୍ରଂ ପ୍ରପଦ୍ୟେ । ବାଗୋଜଃ ସହୌଜୋ ମୟି ପ୍ରାଣାପାନୌ ॥୧॥ ଯନ୍ମେ ଛିଦ୍ରଂ ଚକ୍ଷୁଷୋ ହୃଦୟସ୍ୟ ମନସୋ ବାତିତୃଣ୍ଣଂ ବୃହସ୍ପତିର୍ମେ ତଦ୍ଦଧାତୁ । ଶଂ ନୋ ଭବତୁ ଭୁବନସ୍ୟ ଯସ୍ପତିଃ ॥୨॥ ଭୂର୍ଭୁବଃ ସ୍ୱଃ । ତତ୍ସବିତୁର୍ବରେଣ୍ୟଂ ଭର୍ଗୋ ଦେବସ୍ୟ ଧୀମହି । ଧିୟୋ ଯୋ ନଃ ପ୍ରଚୋଦୟାତ୍ ॥୩॥

---

# ନବମ ଅଧ୍ୟାୟ

(ଶାନ୍ତ୍ୟଧ୍ୟାୟ)

**ମନ୍ତ୍ରସଂଖ୍ୟା (୧) :-** ଯଜୁର୍ବେଦ ଅ.୩୬/୧ : ଋଚଂ ବାଚଂ - ଋଗ୍‌ବେଦ ସ୍ୱରୂପ ବାଣୀର, ଯଜୁର୍ବେଦ ସ୍ୱରୂପ ମନର, ସାମବେଦସ୍ୱରୂପ ପ୍ରାଣର, ଚକ୍ଷୁ ଇନ୍ଦ୍ରିୟର ଓ କର୍ଣ୍ଣେନ୍ଦ୍ରିୟର ମୁଁ ଶରଣ ଯାଉଅଛି । ବାକ୍ ଓ ଓଜ (ବଳ) ପ୍ରାଣାପାନ ସହିତ ଏକତ୍ରିତ ହୋଇ ମୋଠାରେ ନିବାସ କରନ୍ତୁ ।

**ମନ୍ତ୍ରସଂଖ୍ୟା (୨) :-** ଯଜୁର୍ବେଦ ଅ.୩୬/୨ : ଯନ୍ମେ ଛିଦ୍ରଂ ଚକ୍ଷୁଷା- ପ୍ରବର୍ଗ୍ୟ(ଯଜ୍ଞବିଶେଷ)ର ଆଚରଣଦ୍ୱାରା ଚକ୍ଷୁରେ ଓ ହୃଦୟରେ ଯେଉଁ ଛିଦ୍ର (ଦୋଷ) ତଥା ଅତି ହିଂସାଦ୍ୱାରା ମନରେ ଯେତେ ଅବଖଣ୍ଡନ (ବ୍ୟାକୁଳତା) ଜାତ ହୋଇଅଛି, ସେ ସବୁକୁ ଦେବଗୁରୁ ବୃହସ୍ପତି ନିବର୍ତ୍ତନ (ଉପଚାର) କରନ୍ତୁ । ସମଗ୍ର ଭୁବନ ମଣ୍ଡଳର ଅଧିପତି ଯେଉଁ ପ୍ରବର୍ଗ୍ୟ ରୂପକ ଯଜ୍ଞବିଶେଷ ତାହା ଆମ ପାଇଁ ସୁଖପ୍ରଦାୟକ ହୁଅନ୍ତୁ । ଅର୍ଥାତ୍ ବୃହସ୍ପତିଙ୍କ ଦ୍ୱାରା ଛିଦ୍ର ବା ଦୋଷ ଦୂରୀକରଣ ହେତୁ ପ୍ରବର୍ଗ୍ୟ ଅନିଷ୍ଟକାରୀ ନ ହୋଇ ଆମ ପାଇଁ କଲ୍ୟାଣ ପ୍ରଦାତା ହୁଅନ୍ତୁ ।

**ମନ୍ତ୍ରସଂଖ୍ୟା (୩) :-** ଯଜୁର୍ବେଦ ଅ.୩୬/୩ : ଭୂର୍ଭୁବଃ ସ୍ୱଃ - ଭୂଲୋକ (ପୃଥିବୀ), ଭୁବଲୋକ (ଆକାଶ), ସ୍ୱର୍ଲୋକ (ସ୍ୱର୍ଗ) - ଏ ସମସ୍ତ ଲୋକକୁ ପ୍ରକାଶିତ କରୁଥିବା ପ୍ରେରଣାଦାୟକ ଅନ୍ତର୍ଯ୍ୟାମୀ ରୂପରେ ସମସ୍ତଙ୍କଦ୍ୱାରା ବନ୍ଦନୀୟ ସବିତା ଦେବତା ଆମର ବୁଦ୍ଧିକୁ ସତ୍କର୍ମ ଅନୁଷ୍ଠାନ କରିବା ପାଇଁ ପ୍ରଚୋଦିତ କରନ୍ତୁ ।

କୟା ନଶ୍ଚିତ୍ର ଆଭୁବଦୂତୀ ସଦାବୃଧଃ ସଖା । କୟା ଶଚିଷ୍ଠୟା ବୃତା ॥୪॥ କସ୍ତ୍ୱା ସତ୍ୟୋ ମଦାନାଂ ମଗୁଁହିଷ୍ଠୋ ମତ୍ସଦନ୍ଧସଃ । ଦୃଢ଼ା ଚିଦାରୁଜେ ବସୁ॥୫॥ ଅଭୀ ଷୁ ଣଃ ସଖୀନାମବିତା ଜରିତୃଣାମ୍ । ଶତଂ ଭବାସ୍ୟୂତିଭିଃ ॥୬॥ କୟା ତ୍ୱଂ ନ ଊତ୍ୟାଭି ପ୍ରମନ୍ଦସେ ବୃଷନ୍ । କୟା ସ୍ତୋତୃଭ୍ୟ ଆ ଭର ॥୭॥ ଇନ୍ଦ୍ରୋ ବିଶ୍ୱସ୍ୟ ରାଜତି । ଶଂ ନୋ ଅସ୍ତୁ ଦ୍ୱିପଦେ ଶଂ ଚତୁଷ୍ପଦେ ॥୮॥

---

**ମନ୍ତ୍ରସଂଖ୍ୟା (୪) :-** ଯଜୁର୍ବେଦ ଅ.୩୬/୪ : କୟା ନଶ୍ଚିତ୍ର - ଆମର କେଉଁ ତର୍ପଣ (ସ୍ତୁତି)ଦ୍ୱାରା ବିଚିତ୍ର ବା ପୂଜ୍ୟ ଇନ୍ଦ୍ରଦେବତା ସଖା ଅର୍ଥାତ୍ ଅନୁକୂଳ ସହାୟକ ହେବେ । ଆମର କେଉଁ କେଉଁ କର୍ମଦ୍ୱାରା (ଯାଗଦ୍ୱାରା) ସେ ଅତିଶୟ ହିତସାଧକ ବା ରକ୍ଷକ ହେବେ ।

**ମନ୍ତ୍ରସଂଖ୍ୟା (୫) :-** ଯଜୁର୍ବେଦ ଅ.୩୬/୫ : କସ୍ତ୍ୱା ସତ୍ୟୋ ମଦାନାଂ - ହେ ଇନ୍ଦ୍ର ! ସମସ୍ତ ମାଦକ ପେୟ ମଧ୍ୟରୁ କେଉଁ ସୋମରୂପକ ମାଦକର ଅଂଶ ତୁମକୁ ଅଧିକ ମାଦକତା ପ୍ରଦାନ କରିବ ? ମଦଜନକ ହବି (ଆହୁତି)ଗୁଡ଼ିକ ମଧ୍ୟରୁ ତୁମପାଇଁ କେଉଁ ହବି ଅଧିକ ମାଦକତା ପ୍ରଦାୟକ ହେବ ? ଯାହାଦ୍ୱାରା ତୁମେ ମଦମତ୍ତ ହୋଇ ଆମକୁ ଶତ୍ରୁଙ୍କ ଅଧିକୃତ ସମସ୍ତ ବସ୍ତୁକୁ ଅର୍ଥାତ୍ ଧନସମ୍ପତ୍ତିକୁ ପ୍ରଦାନ କରିବ ।

**ମନ୍ତ୍ରସଂଖ୍ୟା (୬) :-** ଯଜୁର୍ବେଦ ଅ.୩୬/୬ : ଅଭି ଷୁ ଣଃ ସଖୀନାମ୍ - ହେ ଇନ୍ଦ୍ର ଦେବତା ! ତୁମେ ଆମ ମିତ୍ରମାନଙ୍କର ବିଶେଷତଃ ତୁମକୁ ସ୍ତୁତି କରୁଥିବା ବ୍ୟକ୍ତିଙ୍କର ଓ ଋତ୍ୱିକ୍‌ମାନଙ୍କ ପାଇଁ ନାନା ରୂପ ଧାରଣ କରି ଲାଳନପାଳନ କରୁଅଛ ।

**ମନ୍ତ୍ରସଂଖ୍ୟା (୭) :-** ଯଜୁର୍ବେଦ ଅ.୩୬/୭ : କୟା ତ୍ୱଂ ନ - ହେ ବୃଷନ୍ ! (ବୃଷ୍ଟିକର୍ତ୍ତା ଇନ୍ଦ୍ର !) କେଉଁ ସ୍ତୁତିଦ୍ୱାରା ବା ଆହୁତି ପ୍ରଦାନଦ୍ୱାରା ତୁମେ ଆନନ୍ଦିତ ହୋଇ ଯଜମାନଙ୍କୁ ଧନ ପ୍ରଦାନ କରୁଅଛ ? ଯାହାକୁ ଆମେ ମଧ୍ୟ ଆଚରଣ କରିବୁ ।

**ମନ୍ତ୍ରସଂଖ୍ୟା (୮) :-** ଯଜୁର୍ବେଦ ଅ.୩୬/୮ : ଇନ୍ଦ୍ରୋ ବିଶ୍ୱସ୍ୟ - ବିଶ୍ୱବ୍ରହ୍ମାଣ୍ଡର ପ୍ରକାଶକ ଆଦିତ୍ୟ ଅଥବା ମହାକାୟ ଓ ପରମୈଶ୍ୱର୍ଯ୍ୟ ସମ୍ପନ୍ନ ଇନ୍ଦ୍ର ଆମ ଦ୍ୱିପଦ ଅର୍ଥାତ୍ ଆମର ପୁତ୍ରପୌତ୍ରାଦିଙ୍କର ଓ ଚତୁଷ୍ପଦ ଅର୍ଥାତ୍ ପଶୁ ସମ୍ପତ୍ତିର ସୁଖପ୍ରଦାୟକ ହୁଅନ୍ତୁ ।

ଶଂ ନୋ ମିତ୍ରଃ ଶଂ ବରୁଣଃ ଶଂ ନୋ ଭବତ୍ୱର୍ଯମା । ଶଂ ନ ଇନ୍ଦ୍ରୋ ବୃହସ୍ପତିଃ ଶଂ ନୋ ବିଷ୍ଣୁରୁରୁକ୍ରମଃ ॥୯॥ ଶଂ ନୋ ବାତଃ ପବତାଗୁଁ ଶଂ ନସ୍ତପତୁ ସୂର୍ଯଃ । ଶଂ ନଃ କନିକ୍ରଦଦ୍ଦେବଃ ପର୍ଜନ୍ୟୋ ଅଭି ବର୍ଷତୁ ॥୧୦॥ ଅହାନି ଶଂ ଭବନ୍ତୁ ନଃ ଶଗୁଁ ରାତ୍ରୀଃ ପ୍ରତିଧୀୟତାମ୍ । ଶଂ ନ ଇନ୍ଦ୍ରାଗ୍ନୀ ଭବତାମବୋଭିଃ ଶଂ ନ ଇନ୍ଦ୍ରାବରୁଣା ରାତହବ୍ୟା । ଶଂ ନ ଇନ୍ଦ୍ରାପୂଷଣା ବାଜସାତୌ ଶମିନ୍ଦ୍ରାସୋମା ସୁବିତାୟ ଶଂ ଯୋଃ ॥୧୧॥ ଶଂ ନୋ ଦେବୀରଭିଷ୍ଟୟ ଆପୋ ଭବନ୍ତୁ ପୀତୟେ । ଶଂ ଯୋରଭି ସ୍ରବନ୍ତୁ ନଃ ॥୧୨॥

---

**ମନ୍ତ୍ରସଂଖ୍ୟା (୯) :-** ଯଜୁର୍ବେଦ ଅ.୩୬/୯ : ଶଂ ନୋ ମିତ୍ରଃ – ସୂର୍ଯ୍ୟ, ବରୁଣ, ଅର୍ଯ୍ୟମା, ଦେବେଶ ଇନ୍ଦ୍ର, ଦେବଗୁରୁ ବୃହସ୍ପତି ଏବଂ ବ୍ୟାପକ ପଦନ୍ୟାସଦ୍ୱାରା ସର୍ବତ୍ର ବ୍ୟାପ୍ତ ବିଷ୍ଣୁ ଆମର ମଙ୍ଗଳବିଧାନ କରନ୍ତୁ ।

**ମନ୍ତ୍ରସଂଖ୍ୟା (୧୦) :-** ଯଜୁର୍ବେଦ ଅ.୩୬/୧୦ : ଶଂ ନୋ ବାତଃ – ଆମ ପାଇଁ ସୁଖପ୍ରଦାୟକ ବାୟୁ ପ୍ରବହମାନ ହୁଅନ୍ତୁ । ପ୍ରାଣୀମାନଙ୍କୁ ସ୍ୱ ସ୍ୱ କର୍ମରେ ପ୍ରେରଣାଦାୟକ ସୂର୍ଯ୍ୟ ନିଜର ଆରୋଗ୍ୟପ୍ରଦ କିରଣ ସହିତ ଆମକୁ ଉତ୍ତାପ ପ୍ରଦାନ କରି ସମସ୍ତ ହିତସାଧନ କରନ୍ତୁ । ପ୍ରଚଣ୍ଡ ମେଘନାଦ ସହିତ ବୃଷ୍ଟିଦେବ ଆମକୁ ଜଳ ପ୍ରଦାନ ମାଧ୍ୟମରେ ସୁଖ ବିଧାନ କରନ୍ତୁ ।

**ମନ୍ତ୍ରସଂଖ୍ୟା (୧୧) :-** ଯଜୁର୍ବେଦ ଅ.୩୬/୧୧ : ଅହାନି ଶଂ – ଆମ ପାଇଁ ସମସ୍ତ ରାତ୍ରି ସହିତ ଦିବସଗୁଡ଼ିକ ସୁଖପ୍ରଦ ହୁଅନ୍ତୁ । ଇନ୍ଦ୍ରଦେବ ଓ ଅଗ୍ନି ଦେବତା ଆମକୁ ସୁଖରେ ପାଳନ କରନ୍ତୁ । ହବି (ଆହୁତି)ଦ୍ୱାରା ତୃପ୍ତ ଇନ୍ଦ୍ର ଏବଂ ବରୁଣ ଦେବତା ଆମର କଲ୍ୟାଣ ସାଧନ କରନ୍ତୁ । ଇନ୍ଦ୍ର ଏବଂ ପୁଷନ୍ (ଆଦିତ୍ୟ) ଅନ୍ନପ୍ରଦାନକରି ଆମର ମଙ୍ଗଳକାରକ ହୁଅନ୍ତୁ । ଇନ୍ଦ୍ର ଏବଂ ସୋମ (ଚନ୍ଦ୍ର) ସୁଖ ବିଧାନ ତଥା ସମସ୍ତ ରୋଗ ପ୍ରଶମନ ଏବଂ ସର୍ବବିଧ ଭୟ ନିବାରଣ ଦ୍ୱାରା ଆମର ହିତକାରକ ହୁଅନ୍ତୁ ।

**ମନ୍ତ୍ରସଂଖ୍ୟା (୧୨) :-** ଯଜୁର୍ବେଦ ଅ.୩୬/୧୨ : ଶଂ ନୋ ଦେବୀରଭିଷ୍ଟୟ- ସ୍ନାନପାନାଦି ଅଭୀଷ୍ଟ ସାଧନଦ୍ୱାରା ଜଳଦେବୀ ଆମର ସୁଖ ପ୍ରଦାୟିକା ହୁଅନ୍ତୁ ତଥା ସମସ୍ତ ରୋଗର ଉପଶମନ ଓ ଭୟ ନିବାରଣ ପାଇଁ ମଧ୍ୟ ଅନୁକୂଳ ହୁଅନ୍ତୁ ।

ସ୍ୟୋନା ପୃଥିବୀ ନୋ ଭବାନୃକ୍ଷରା ନିବେଶନୀ । ଯଚ୍ଛା ନଃ ଶର୍ମ ସପ୍ରଥାଃ ॥୧୩॥ ଆପୋ ହି ଷ୍ଠା ମୟୋଭୁବସ୍ତା ନ ଊର୍ଜେ ଦଧାତନ । ମହେ ରଣାୟ ଚକ୍ଷସେ ॥୧୪॥ ଯୋ ବଃ ଶିବତମୋ ରସସ୍ତସ୍ୟ ଭାଜୟତେହ ନଃ । ଉଶତୀରିବ ମାତରଃ ॥୧୫॥ ତସ୍ମା ଅରଂ ଗମାମ ବୋ ଯସ୍ୟ କ୍ଷୟାୟ ଜିନ୍ୱଥ । ଆପୋ ଜନୟଥା ଚ ନଃ ॥୧୬॥ ଦ୍ୟୌଃ ଶାନ୍ତିରନ୍ତରିକ୍ଷଗୁଁ ଶାନ୍ତିଃ ପୃଥିବୀ ଶାନ୍ତିରାପଃ ଶାନ୍ତିରୋଷଧୟଃ ଶାନ୍ତିଃ । ବନସ୍ପତୟଃ ଶାନ୍ତିର୍ବ୍ରହ୍ମ ଶାନ୍ତିଃ ସର୍ବଗୁଁଶାନ୍ତିଃ ଶାନ୍ତିରେବ ଶାନ୍ତିଃ ॥୧୭॥

---

**ମନ୍ତ୍ରସଂଖ୍ୟା (୧୩) :-** ଯଜୁର୍ବେଦ ଅ.୩୬/୧୩ : ସ୍ୟୋନା ପୃଥିବୀ - ହେ ପୃଥିବୀ ! ତୁମେ ଆମ ପାଇଁ ସୁଖପ୍ରଦାୟିନୀ ହୁଅ, ଯେପରି ଆମେ ଚୋର ଓ ଦାୟାଦ ଆଦିଙ୍କଦ୍ୱାରା ପ୍ରଦତ୍ତ ଦୁଃଖରୁ ରକ୍ଷା ପାଇ ନିଷ୍କଣ୍ଟକ ଭାବରେ ବସବାସ କରିପାରିବୁ ।

**ମନ୍ତ୍ରସଂଖ୍ୟା (୧୪) :-** ଯଜୁର୍ବେଦ ଅ.୩୬/୧୪ : ଆପୋ ହି ଷ୍ଠା - ହେ ଜଳ! ତୁମେ ଯେପରି ସ୍ନାନପାନାଦି କାର୍ଯ୍ୟ ସାଧନଦ୍ୱାରା ଆମର ସର୍ବବିଧ ସୁଖପ୍ରଦାୟକ, ଠିକ୍ ସେହିପରି ସମସ୍ତ ପ୍ରକାର ଭୋଗ୍ୟ ରସଗୁଡ଼ିକର ଭୋକ୍ତୃତ୍ୱ-ଯୋଗ୍ୟତା ଆମକୁ ପ୍ରଦାନକର ଓ ତତ୍ ସହିତ ସର୍ବତ୍ର ରମଣୀୟ ଦୃଷ୍ଟି ନିମିତ୍ତ ମଧ୍ୟ ଯୋଗ୍ୟ କର, ଅର୍ଥାତ୍ ଐହିକ ସୁଖ ଭୋଗ ସହିତ ଆମ୍ଭଙ୍କୁ ବ୍ରହ୍ମସାକ୍ଷାତ୍କାରକ୍ଷମ ମଧ୍ୟ କର ।

**ମନ୍ତ୍ରସଂଖ୍ୟା (୧୫) :-** ଯଜୁର୍ବେଦ ଅ.୩୬/୧୫ : ଯୋ ବଃ ଶିବତମ - ହେ ଜଳ ! ମା'ମାନେ ଯେପରି ଶିଶୁଙ୍କୁ ନିଜର ସ୍ତନ୍ୟପାନ କରାନ୍ତି, ଠିକ୍ ସେହିପରି ତୁମର ଐହିକ ସୁଖପ୍ରଦାୟକ ଯେଉଁ ସର୍ବବିଧ ରସ ତତ୍ପ୍ରାପ୍ତି ନିମିତ୍ତ ଆମ୍ଭଙ୍କୁ ପ୍ରତିଭାଗୀ କର ।

**ମନ୍ତ୍ରସଂଖ୍ୟା (୧୬) :-** ଯଜୁର୍ବେଦ ଅ.୩୬/୧୬ : ତସ୍ମା ଅରଂ ଗମାମ - ହେ ଜଳ ! ତୁମେ ଜଗତର ଆଧାରରୂପ, ଆମ ପ୍ରଦତ୍ତ ଆହୁତିଦ୍ୱାରା ତୁମେ ପ୍ରୀତ ହୋଇ ବ୍ରହ୍ମାଦିସ୍ତମ୍ବପର୍ଯ୍ୟନ୍ତ ସମସ୍ତ ଜଗତକୁ ତୃପ୍ତି ପ୍ରଦାନ କରୁଅଛ । ଆମକୁ ଭୋକ୍ତା ରୂପରେ ଜାତ କରିଅଛ ତଥା ପୁତ୍ରପୌତ୍ରାଦିଙ୍କ ଉତ୍ପତ୍ତି ପାଇଁ ମଧ୍ୟ ଆମକୁ ସମର୍ଥ କରୁଅଛ ।

**ମନ୍ତ୍ରସଂଖ୍ୟା (୧୭) :-** ଯଜୁର୍ବେଦ ଅ.୩୬/୧୭ : ଦ୍ୟୌଃ ଶାନ୍ତିରନ୍ତରିକ୍ଷଗୁଁ-

ଦୃତେ ଦୃଗୁଁହ ମା ମିତ୍ରସ୍ୟ ମା ଚକ୍ଷୁଷା ସର୍ବାଣି ଭୂତାନି ସମୀକ୍ଷନ୍ତାମ୍ । ମିତ୍ରସ୍ୟାହଂ ଚକ୍ଷୁଷା ସର୍ବାଣି ଭୂତାନି ସମୀକ୍ଷେ । ମିତ୍ରସ୍ୟ ଚକ୍ଷୁଷା ସମୀକ୍ଷାମହେ ॥୧୮॥ ଦୃତେ ଦୃଗୁଁହ ମା । ଜ୍ୟୋକ୍ତେ ସଂଦୃଶି ଜୀବ୍ୟାସଂ ଜ୍ୟୋକ୍ତେ ସଂଦୃଶି ଜୀବ୍ୟାସମ୍ ॥୧୯॥ ନମସ୍ତେ ହରସେ ଶୋଚିସେ ନମସ୍ତେ ଅସ୍ତ୍ୱର୍ଚିଷେ । ଅନ୍ୟାଁସ୍ତେ ଅସ୍ମତ୍ତପନ୍ତୁ ହେତୟଃ ପାବକୋ ଅସ୍ମଭ୍ୟଗୁଁ ଶିବୋ ଭବ ॥୨୦॥

---

ଦ୍ୟୁଲୋକ (ସ୍ୱର୍ଗ), ଆକାଶ, ପୃଥିବୀ, ଜଳ, ଔଷଧି (ଲତା, ଗୁଳ୍ମ) ବୃକ୍ଷ, ବିଶ୍ୱେଦେବା, ବ୍ରହ୍ମ (ବେଦତ୍ରୟ) ସର୍ବ ଅର୍ଥାତ୍ ସମଗ୍ର ଜଗତ୍ ମୋ ପାଇଁ ଶାନ୍ତିପ୍ରଦ ହୁଅନ୍ତୁ । ଏପରିକି ସର୍ବବିଧ ଶାନ୍ତି ମଧ୍ୟ ସ୍ୱରୂପରେ ମୋ ପ୍ରତି ଶାନ୍ତିପ୍ରଦାୟକ ହୁଅନ୍ତୁ ।

**ମନ୍ତ୍ରସଂଖ୍ୟା (୧୮) :-** ଯଜୁର୍ବେଦ ଅ.୩୬/୧୮ : ଦୃତେ ଦୃଗୁଁ ହ - ହେ ମହାବୀର ଇନ୍ଦ୍ର ! ଜରା (ବାର୍ଦ୍ଧକ୍ୟ) ଜର୍ଜରିତ ଏହି ଶରୀରରେ ମୋତେ ତୁମେ ଦୃଢ କର । ଯାହା ଫଳରେ ସମସ୍ତ ପ୍ରାଣୀମାନେ ମୋତେ ମିତ୍ର ଦୃଷ୍ଟିରେ ଦେଖିବେ ଓ ମୁଁ ସମସ୍ତଙ୍କର ପ୍ରିୟପାତ୍ର ହୋଇପାରିବି । ପୁନଶ୍ଚ ମୁଁ ମଧ୍ୟ ଯେପରି ସମସ୍ତ ପ୍ରାଣୀଙ୍କୁ ମିତ୍ର ଦୃଷ୍ଟିରେ ଦେଖିବି ଯାହାଦ୍ୱାରା ସମସ୍ତେ ମୋର ପ୍ରିୟ ହେବେ । ଏହିପରି ଆମେ ସମସ୍ତେ ପରସ୍ପର ମଧ୍ୟରେ ହିଂସା ବା ଦ୍ରୋହ ରହିତ ହୋଇ ମିତ୍ରତ୍ୱର ବନ୍ଧନରେ ବାନ୍ଧିହୋଇ ଶାନ୍ତିରେ ରହିପାରିବୁ ।

**ମନ୍ତ୍ରସଂଖ୍ୟା (୧୯) :-** ଯଜୁର୍ବେଦ ଅ.୩୬/୧୯ : ଦୃତେ ଦୃଗୁଁ ହ ମା - ହେ ସୁରଶ୍ରେଷ୍ଠ ସୂର୍ଯ୍ୟଦେବ ! ତୁମେ ମୋର ସ୍ଥିତିକୁ ଦୃଢ କର । ତୁମ କୃପାଦୃଷ୍ଟିରେ ମୁଁ ଚିରକାଳ ବଞ୍ଚି ରହିବି । ତୁମ କୃପା ଦୃଷ୍ଟିରେ ମୁଁ ଚିରକାଳ ବଞ୍ଚି ରହିପାରିବି । (ଅଧିକ ଆଦର ନିମିତ୍ତ ପୁନରୁକ୍ତି) ।

**ମନ୍ତ୍ରସଂଖ୍ୟା (୨୦) :-** ଯଜୁର୍ବେଦ ଅ.୩୬/୨୦ : ନମସ୍ତେ ହରସେ - ହେ ଅଗ୍ନିଦେବ ! ସମସ୍ତ ପ୍ରକାର ରସକୁ ହରଣ କରୁଥିବା ତଥା ସମସ୍ତ ପଦାର୍ଥକୁ ପ୍ରକାଶ କରୁଥିବା ତୁମର ତେଜସ୍ୱରୂପକୁ ପ୍ରଣାମ । ସେହିପରି ହେ ପାବକ (ଅଗ୍ନିଦେବ) ! ତାପପ୍ରଦାନକାରୀ ତୁମର ସମସ୍ତ ଆୟୁଧ ମଧ୍ୟ ଆମ୍ଭମାନଙ୍କ ପାଇଁ ମଙ୍ଗଳପ୍ରଦ ହେଉ ।

ନମସ୍ତେ ଅସ୍ତୁ ବିଦ୍ୟୁତେ ନମସ୍ତେ ସ୍ତନୟିତ୍ନବେ । ନମସ୍ତେ ଭଗବନ୍ନସ୍ତୁ ଯତଃ ସ୍ୱଃ ସମୀହସେ ॥୨୧॥ ଯତୋଯତଃ ସମୀହସେ ତତୋ ନୋ ଅଭୟଂ କୁରୁ । ଶଂ ନଃ କୁରୁ ପ୍ରଜାଭ୍ୟୋଽଭୟଂ ନଃ ପଶୁଭ୍ୟଃ ॥୨୨॥ ସୁମିତ୍ରିୟା ନ ଆପ ଓଷଧୟଃ ସନ୍ତୁ ଦୁର୍ମିତ୍ରିୟାସ୍ତସ୍ମୈ ସନ୍ତୁ । ଯୋଽସ୍ମାନ୍ଦ୍ୱେଷ୍ଟି ଯଂ ଚ ବୟଂ ଦ୍ୱିଷ୍ମଃ ॥୨୩॥ ତଚ୍ଚକ୍ଷୁର୍ଦେବହିତଂ ପୁରସ୍ତାଚ୍ଛୁକ୍ରମୁଚ୍ଚରତ୍ । ପଶ୍ୟେମ ଶରଦଃ ଶତଂ ଜୀବେମ ଶରଦଃ ଶତଗୁଁ ଶୃଣୁୟାମ ଶରଦଃ ଶତଂ ମଦୀନାଃ ସ୍ୟାମ ଶରଦଃ ଶତଂ ଭୂୟଶ୍ଚ ଶରଦଃ ଶତାତ୍ ॥୨୪॥

---

**ମନ୍ତ୍ରସଂଖ୍ୟା (୨୧) :-** ଯଜୁର୍ବେଦ ଅ.୩୬/୨୧ : ନମସ୍ତେ ଅସ୍ତୁ - ହେ ସୁରଶ୍ରେଷ୍ଠ ଅଗ୍ନିଦେବ ! ବିଦ୍ୟୁତ୍ ରୂପରେ ତୁମକୁ ପ୍ରଣାମ । ଭୀଷଣ ଗର୍ଜନକାରୀ ମେଘ ରୂପରେ ତୁମକୁ ପ୍ରଣାମ । ଯେଉଁସବୁ କାରଣ ପାଇଁ ତୁମେ ସ୍ୱର୍ଗକୁ ଯିବା ଲାଗି ଚେଷ୍ଟାରତ, ଏଣୁ ତୁମକୁ ପ୍ରଣାମ ।

**ମନ୍ତ୍ରସଂଖ୍ୟା (୨୨) :-** ଯଜୁର୍ବେଦ ଅ.୩୬/୨୨ : ଯତୋ ଯତଃ - ହେ ଭଗବନ୍ ! ଯେତେ ଯେତେ ଦୁଷ୍କର୍ମରୁ ତୁମେ ଆମକୁ ନିବୃତ୍ତ ରହିବାକୁ ଚେଷ୍ଟା କରୁଅଛ, ସେତେ ସେତେ ଆମକୁ ଭୟରହିତ ମଧ୍ୟ କର । ସେହିପରି ଆମ୍ଭର ପୁତ୍ର ପୌତ୍ରାଦିଙ୍କୁ ସୁଖୀ କର ଓ ଆମକୁ ପଶୁମାନଙ୍କଠାରୁ ମଧ୍ୟ ନିର୍ଭୟତା ପ୍ରଦାନ କର ।

**ମନ୍ତ୍ରସଂଖ୍ୟା (୨୩) :-** ଯଜୁର୍ବେଦ ଅ.୩୬/୨୩ : ସୁମିତ୍ରିୟା ନ - ସମସ୍ତ ଜଳ ଓ ଔଷଧି (ପକ୍ୱଫଳ ପ୍ରଦାନକାରୀ ବୃକ୍ଷଲତା) ଆମର ସୁମିତ୍ର ରୂପରେ ଅବସ୍ଥାନ କରନ୍ତୁ । ଯେଉଁ ଶତ୍ରୁମାନେ ଆମ୍ଭଙ୍କୁ ଦ୍ୱେଷ କରୁଅଛନ୍ତି ତଥା ଆମେ ମଧ୍ୟ ଯାହାଙ୍କୁ ଦ୍ୱେଷ କରୁଅଛୁ ଏହି ଉଭୟ ପ୍ରକାର ଶତ୍ରୁଙ୍କ ପାଇଁ ତୁମ୍ଭେ ଜଳ ଓ ଔଷଧି ବୃକ୍ଷଲତାକୁ ଅମିତ୍ର ଅର୍ଥାତ୍ ଶତ୍ରୁ ରୂପରେ ପରିଣତ କର ।

**ମନ୍ତ୍ରସଂଖ୍ୟା (୨୪) :-** ଯଜୁର୍ବେଦ ଅ.୩୬/୨୪ : ତଚ୍ଚକ୍ଷୁର୍ଦେବହିତଂ - ପୂର୍ବୋକ୍ତ ମନ୍ତ୍ରମାନଙ୍କରେ ଯାହାଙ୍କୁ ଆମେ ସୁରଶ୍ରେଷ୍ଠ ବା ମହାବୀର ରୂପରେ ସ୍ତୁତି କରିଅଛୁ ସେ ସମଗ୍ର ଜଗତର ନେତ୍ରସ୍ୱରୂପ, ସମସ୍ତ ଦେବତାଙ୍କ ହିତ ବା ପ୍ରିୟ ଏବଂ ଶୁଦ୍ଧ ସ୍ୱରୂପ ଅର୍ଥାତ୍ ସର୍ବବିଧ ପାପରହିତ, ସେ ଆଦିତ୍ୟଦେବ ପୂର୍ବ ଦିଗରୁ ଉଦୟ ହେଉଅଛନ୍ତି । ଯାହାଙ୍କ ପ୍ରସାଦରୁ ଆମେ ଶହେବର୍ଷ ପର୍ଯ୍ୟନ୍ତ ଚକ୍ଷୁ ଇନ୍ଦ୍ରିୟଦ୍ୱାରା

ନିର୍ବିଘ୍ନରେ ସବୁ ଦେଖିପାରିବୁ । ସ୍ୱାଧୀନ ଭାବରେ ଶହେବର୍ଷ ପର୍ଯ୍ୟନ୍ତ ବଞ୍ଚି ରହିପାରିବୁ, ଶହେବର୍ଷ ପର୍ଯ୍ୟନ୍ତ ସବୁ ସ୍ପଷ୍ଟ ଶୁଣିପାରିବୁ, ଅସ୍ଖଳିତ ବାଗିନ୍ଦ୍ରିୟ ସମ୍ପନ୍ନ ହୋଇ ରହିପାରିବୁ, ଶହେ ବର୍ଷ ପର୍ଯ୍ୟନ୍ତ ଆମକୁ କାହା ପାଖରେ ଦୈନ୍ୟଭାବ ପ୍ରକାଶ କରିବାକୁ ନ ପଡୁ । (ଏ ମନ୍ତ୍ରରେ ସମସ୍ତ 'ଶହେବର୍ଷ ପଦ' ସାଙ୍କେତିକ ଅର୍ଥ ବହନ କରନ୍ତି ଅର୍ଥାତ୍ ଶତବର୍ଷ ପଦରେ ବହୁକାଳ ରୂପକ ଅର୍ଥ ଅଭିପ୍ରେତ) ।

—×—

# ଦଶମାଧ୍ୟାୟଃ

## (ସ୍ୱସ୍ତିପ୍ରାର୍ଥନାଧ୍ୟାୟଃ)

**ହରିଃ ଓଁ ସ୍ୱସ୍ତି ନ ଇନ୍ଦ୍ରୋ ବୃଦ୍ଧଶ୍ରବାଃ ସ୍ୱସ୍ତି ନଃ ପୂଷା ବିଶ୍ୱବେଦାଃ । ସ୍ୱସ୍ତି ନସ୍ତାର୍କ୍ଷ୍ୟୋ ଅରିଷ୍ଟନେମିଃ ସ୍ୱସ୍ତି ନୋ ବୃହସ୍ପତିର୍ଦଧାତୁ ॥୧॥ ପୟଃ ପୃଥିବ୍ୟାଂ ପୟ ଓଷଧୀଷୁ ପୟୋ ଦିବ୍ୟନ୍ତରିକ୍ଷେ ପୟୋଧାଃ । ପୟସ୍ୱତୀଃ ପ୍ରଦିଶଃ ସନ୍ତୁ ମହ୍ୟମ୍ ॥୨॥ ବିଷ୍ଣୋ ରରାଟମସି ବିଷ୍ଣୋଃ ଶ୍ନପ୍ତ୍ରେ ସ୍ଥୋ ବିଷ୍ଣୋଃ ସ୍ୟୂରସି ବିଷ୍ଣୋର୍ଧ୍ରୁବୋଽସି । ବୈଷ୍ଣବମସି ବିଷ୍ଣବେ ତ୍ୱା ॥୩॥**

---

# ଦଶମ ଅଧ୍ୟାୟ

## (ସ୍ୱସ୍ତିପ୍ରାର୍ଥନାଧ୍ୟାୟ)

**ମନ୍ତ୍ରସଂଖ୍ୟା (୧) :-** ଯଜୁର୍ବେଦ ଅ. ୨୭/୨୩ : ସ୍ୱସ୍ତିନ ଇନ୍ଦ୍ରୋ – ହେ ଦେବଶ୍ରେଷ୍ଠ ଇନ୍ଦ୍ର ! ହେ ସର୍ବଜ୍ଞ ସୂର୍ଯ୍ୟଦେବ ! ହେ ବିନତାନନ୍ଦନ ଗରୁଡ ! ହେ ଦେବଗୁରୁ ବୃହସ୍ପତି ! ଆପଣମାନେ ସମସ୍ତେ ଆମର ସର୍ବବିଧ ମଙ୍ଗଳ ସାଧନ କରନ୍ତୁ ।

**ମନ୍ତ୍ରସଂଖ୍ୟା (୨) :-** ଯଜୁର୍ବେଦ ଅ. ୨୦/୭ : ପୟଃ ପୃଥିବ୍ୟାଂ – ହେ ଅଗ୍ନିଦେବ ! ତୁମେ ପୃଥିବୀକୁ ରସାନ୍ୱିତ କର । ଔଷଧି ! (ଫୁଲଫଳଯୁକ୍ତ ବୃକ୍ଷଲତାରେ) ତୁମେ ରସକୁ ସଞ୍ଚରିତ କର । ସ୍ୱର୍ଗରେ ଓ ଆକାଶରେ ମଧ୍ୟ ରସକୁ ଧାରଣ କରିଥାଅ । ତୁମ କୃପାବଳରେ ମୋ ନିମିତ୍ତ ଦିଗବିଦିଗ ସବୁ ରସଯୁକ୍ତ ହୁଅନ୍ତୁ ।

**ମନ୍ତ୍ରସଂଖ୍ୟା (୩) :-** ଯଜୁର୍ବେଦ ଅ. ୫/୨୭ : ବିଷ୍ଣୋରରାଟମସି – (ହବିର୍ଧାନ ନାମଧେୟ ଯଜ୍ଞ ନିମିତ୍ତ ମଣ୍ଡପ ନିର୍ମାଣ ପ୍ରସଙ୍ଗ କ୍ରମରେ ଏହି ମନ୍ତ୍ର ଉଲ୍ଲିଖିତ ।

ଅଗ୍ନିର୍ଦେବତା ବାତୋ ଦେବତା ସୂର୍ଯୋ ଦେବତା ଚନ୍ଦ୍ରମା ଦେବତା । ବସବୋ ଦେବତା ରୁଦ୍ରା ଦେବତା । ଆଦିତ୍ୟା ଦେବତା ମରୁତୋ ଦେବତା ବିଶ୍ୱେ ଦେବା ଦେବତା ବୃହସ୍ପତିର୍ଦେବତା । ଇନ୍ଦ୍ରୋଦେବତା ବରୁଣୋ ଦେବତା ॥୪॥ ଓଁ ସଦ୍ୟୋଜାତଂ ପ୍ରପଦ୍ୟାମି ସଦ୍ୟୋଜାତାୟ ବୈ ନମୋ ନମଃ । ଭବେଭବେ ନାତି ଭବେ ଭବସ୍ୱ ମାଂ ଭବୋଭବାୟ ନମଃ ॥୫॥ ବାମଦେବାୟ ନମୋ ଜ୍ୟେଷ୍ଠାୟ ନମଃ ଶ୍ରେଷ୍ଠାୟ ନମୋ ରୁଦ୍ରାୟ ନମଃ । କାଳାୟ ନମଃ କଳବିକରଣାୟ ନମୋ ବଳବିକରଣାୟ ନମଃ ॥ ବଳାୟ ନମୋ ବଳପ୍ରମଥନାୟ ନମଃ । ସର୍ବଭୂତଦମନାୟ ନମୋ ମନୋନ୍ମନାୟ ନମଃ ॥୬॥

---

ହବିର୍ଧାନ ଯଜ୍ଞମଣ୍ଡପ ସାବୟବ ବିଷ୍ଣୁ ଦେବତା ସମ୍ବନ୍ଧୀୟ ହେତୁ ଏହା ବିଷ୍ଣୁ ନାମରେ ନାମିତ । ମଣ୍ଡପର ପୂର୍ବଦ୍ୱାର ସ୍ଥିତ ସ୍ତମ୍ଭଦ୍ୱୟର ମଧ୍ୟଭାଗରେ କୁଶ ନିର୍ମିତ ମାଳା ଯଜ୍ଞପୁରୁଷର ଲଲାଟ ରୂପରେ ପରିକଳ୍ପିତ, ଯାହାଙ୍କୁ ଏଠାରେ ପ୍ରାର୍ଥନା କରାଯାଇଅଛି) । ତୁମେ (କୁଶ ନିର୍ମିତ ମାଳା) ବିଷ୍ଣୁମୂର୍ତ୍ତି ରୂପରେ ହବିର୍ଧାନ ମଣ୍ଡପର ଲଲାଟସ୍ଥାନୀୟ ଅଟ । ହେ ଲଲାଟର ଉଭୟପାର୍ଶ୍ୱ ! ତୁମ୍ଭେ ବିଷ୍ଣୁ ନାମଧେୟ ହବିର୍ଧାନ ମଣ୍ଡପର ଓଷ୍ଠଦ୍ୱୟର ସନ୍ଧି ସ୍ୱରୂପ ଅଟ । (ଗ୍ରନ୍ଥିଦ୍ୱୟ ନିର୍ମାଣ ପ୍ରସଙ୍ଗରେ) ହେ ରଜ୍ଜୁଗ୍ରନ୍ଥିଦ୍ୱୟ ! ତୁମେ ହବିର୍ଧାନ ମଣ୍ଡପର ଗ୍ରନ୍ଥି । ହେ ହବିର୍ଧାନ ମଣ୍ଡପ ! ତୁମେ ବିଷ୍ଣୁଦେବତା ସମ୍ବନ୍ଧୀୟ, ଏଣୁ ବିଷ୍ଣୁଦେବତାଙ୍କ ପ୍ରୀତି ନିମିତ୍ତ ତୁମକୁ ସ୍ପର୍ଶ କରୁଅଛି ।

**ମନ୍ତ୍ରସଂଖ୍ୟା (୪) :-** ଯଜୁର୍ବେଦ ଅ.୧୫/୨୨ : ଅଗ୍ନିର୍ଦେବତା - (ଯଜ୍ଞବେଦୀ ନିର୍ମାଣ ପାଇଁ ଇଷ୍ଟକା ଅର୍ଥାତ୍ ଇଟା ଚୟନ ପ୍ରକରଣରେ ପ୍ରାର୍ଥନା ସ୍ୱରୂପ ଏହି ମନ୍ତ୍ର ଆସିଅଛି) ହେ ଇଷ୍ଟକା ! ତୁମେ ଅଗ୍ନି, ବାୟୁ, ସୂର୍ଯ୍ୟ, ଚନ୍ଦ୍ରମା, ବସୁ, ରୁଦ୍ର, ଆଦିତ୍ୟ, ମରୁଦ୍‌ଗଣ, ବିଶ୍ୱେଦେବା, ବୃହସ୍ପତି, ଇନ୍ଦ୍ର, ବରୁଣ ଏ ସମସ୍ତ ଦେବତାସ୍ୱରୂପ ଅଟ ।

**ମନ୍ତ୍ରସଂଖ୍ୟା (୫ ଓ ୬) :-** ତୈତ୍ତିରୀୟାରଣ୍ୟକ ୧୦/୪୩/୧ : ସଦ୍ୟୋ ଜାତଂ- ମୁଁ ସଦ୍ୟୋଜାତ ଶିବଙ୍କ ଶରଣାପନ୍ନ ହେଉଅଛି । ସେହି ସଦ୍ୟୋଜାତ ସ୍ୱରୂପ ଶିବଙ୍କୁ ପ୍ରଣାମ । ସଂସାରର ଉତ୍ପତ୍ତି କର୍ତ୍ତା, ସଂସାରର ଯୋଗକ୍ଷେମ ପ୍ରଦାତା

ଅଘୋରେଭ୍ୟୋଽଥ ଘୋରେଭ୍ୟୋ ଘୋର ଘୋରତରେଭ୍ୟଃ । ସର୍ବେଭ୍ୟଃ ସର୍ବଶର୍ବେଭ୍ୟୋ ନମସ୍ତେଽଅସ୍ତୁ ରୁଦ୍ରରୂପେଭ୍ୟଃ ॥୭॥

---

ତଥା ସଂସାରାତୀତ (ମୋକ୍ଷ) ଅବସ୍ଥାର ମଧ୍ୟ ପ୍ରାପକ ଶିବଙ୍କୁ ପ୍ରଣାମ । (ବ୍ରହ୍ମାଙ୍କ ସୃଷ୍ଟିରେ ଶିବଙ୍କ ପାଞ୍ଚଗୋଟି ମୁଖର ବର୍ଣ୍ଣନା କରାଯାଇଅଛି ଯଥା- ସଦ୍ୟୋଜାତ, ତତ୍ପୁରୁଷ, ବାମଦେବ, ଈଶାନ ଓ ଅଘୋର ।) ଉଲ୍ଲେଖଯୋଗ୍ୟ ଯେ ଶିବ ହେଉଛନ୍ତି ସର୍ବବିଧ ଜ୍ଞାନର ଭଣ୍ଡାର । ସେ ଜ୍ଞାନସ୍ୱରୂପ ଅଟନ୍ତି । ଏଣୁ ଜ୍ଞାନପ୍ରାପ୍ତି ପାଇଁ ଜିଜ୍ଞାସୁ ଦେବ, ଦାନବ, ମାନବ - ଏପରିକି ସମସ୍ତ ଜ୍ଞାନାର୍ଥୀ ପ୍ରାଣୀମାନେ ପରମେଶ୍ୱର ଶିବଙ୍କୁ ଆରାଧନା ଓ ଉପାସନା କରନ୍ତି । ବିଶେଷ କରି ଶିବଙ୍କର ସଦ୍ୟୋଜାତ ଇତ୍ୟାଦି ପଞ୍ଚବକ୍ତ୍ର ଉପାସନା ସେଥିପାଇଁ ଉଦ୍ଦିଷ୍ଟ । ସେହି ପାଞ୍ଚଗୋଟି ମୁଖଦ୍ୱାରା ଶିବ ସମସ୍ତ ବ୍ରହ୍ମାଣ୍ଡର ଜୀବମାନଙ୍କ ପ୍ରତି କଲ୍ୟାଣକାରୀ ଦୃଷ୍ଟି ନିକ୍ଷେପ କରି ଧର୍ମାର୍ଥକାମମୋକ୍ଷରୂପକ ପୁରୁଷାର୍ଥ ଚତୁଷ୍ଟୟ ପ୍ରଦାନ କରିଥାଆନ୍ତି । ସେଥିପାଇଁ ପଶ୍ଚିମ ଦିଗକୁ ତାଙ୍କର ଯେଉଁ ମୁଖ ତାହା ସଦ୍ୟୋଜାତ ନାମରେ ନାମିତ ଯାହା ପରମେଶ୍ୱରତ୍ୱ ବୋଧପରକ । ସେହିପରି ଉତ୍ତର ଦିଗକୁ ଯେଉଁ ମୁଖ ତାହା ବାମଦେବ ରୂପରେ ବର୍ଣ୍ଣିତ । ବାମଦେବ ଶବ୍ଦର ପ୍ରମୁଖ ଅର୍ଥ କ୍ରିୟାଶୀଳ ଓ ଦୀପ୍ତିମାନ୍ । ଏହି ବାମଦେବ ଶବ୍ଦରେ ନଅଗୋଟି ତତ୍ତ୍ୱର ସମାହାର ଯଥା- ଜ୍ୟେଷ୍ଠ, ଶ୍ରେଷ୍ଠ, ରୁଦ୍ର, କାଳ, କଳ ବିକରଣ (କାଳର ବିନ୍ୟାସ), ବଳବିକରଣ (ଆତ୍ମଶକ୍ତିର ପରିପ୍ରକାଶ), ବଳପ୍ରମଥନ (ଆତ୍ମଶକ୍ତିର ବିଲୋଡ଼ନ) ସର୍ବଭୂତ ଦମନ ଓ ମନୋନ୍ମନ (ଉତ୍କଣ୍ଠିତ ମନ) । ଏଣୁ ଏହି ନଅଗୋଟି ତତ୍ତ୍ୱ ସମନ୍ୱିତ ବାମଦେବଙ୍କୁ ପ୍ରଣାମ ।

**ମନ୍ତ୍ରସଂଖ୍ୟା (୭) :-** ତୈ.ଆ. ୧୦/୪୫/୧ : ଅଘୋରେଭ୍ୟୋଽଥ - ପୂର୍ବୋକ୍ତ ଶିବଙ୍କ ପଞ୍ଚମୁଖରୁ ଅନ୍ୟତମ ମୁଖ ଅଘୋର ସଂଜ୍ଞକ । ଯାହା ଦକ୍ଷିଣଦିଗ ଅଭିମୁଖୀ । ଘୋର ଅର୍ଥାତ୍ ଉଗ୍ର ବା ଭୟଙ୍କର ଏଣୁ ରୁଦ୍ର ଅଘୋର ଅର୍ଥାତ୍ ଶାନ୍ତସ୍ୱରୂପ ଓ ସାତ୍ତ୍ୱିକ ଭାବ ବିଶିଷ୍ଟ । ଅନ୍ୟ ଚାରିଗୋଟି ମୁଖ ରାଜସ ଓ ତାମସ ସ୍ୱଭାବ ହେତୁ ଘୋର ଓ ଘୋରତର ଅର୍ଥାତ୍ ଉଗ୍ର ଏବଂ ଉଗ୍ରତର । ଶର୍ବ ଅର୍ଥାତ୍ ସଂହାରକ (ଶୃଣାତି = ସଂହରତୀତି) ସେ ପୁଣି ସଂହାରର ମଧ୍ୟ ସଂହାରକର୍ତ୍ତା ଅର୍ଥାତ୍ ମହାକାଳ ସ୍ୱରୂପ । ଏଣୁ ଏହି ତ୍ରିବିଧ (ସଦ୍ୟୋଜାତ, ବାମଦେବ ଓ ଅଘୋର) ରୁଦ୍ର ରୂପଙ୍କୁ ମୁଁ ସର୍ବତଃ ପ୍ରଣାମ କରୁଅଛି ।

ତତ୍ପୁରୁଷାୟ ବିଦ୍ମହେ ମହାଦେବାୟ ଧୀମହି । ତନ୍ନୋ ରୁଦ୍ରଃ ପ୍ରଚୋଦୟାତ୍ ॥୮॥ ଈଶାନଃ ସର୍ବବିଦ୍ୟାନାମୀଶ୍ୱରଃ ସର୍ବଭୂତାନାମ୍ । ବ୍ରହ୍ମାଧିପତିର୍ବ୍ରହ୍ମଣୋଽଧିପତିର୍ବ୍ରହ୍ମା ଶିବୋ ମେଽଅସ୍ତୁ ସଦା ଶିବୋମ୍ ॥୯॥ ବିଶ୍ୱାନି ଦେବ ସବିତର୍ଦ୍ଦୁରିତାନି ପରା ସୁବ । ଯଦ୍ଭଦ୍ରଂ ତନ୍ନ ଆ ସୁବ ॥୧୦॥ ଓଁ ଦ୍ୟୌଃ ଶାନ୍ତିରନ୍ତରିକ୍ଷଗୁଁ ଶାନ୍ତିଃ ପୃଥିବୀ ଶାନ୍ତିରାପଃ ଶାନ୍ତିରୋଷଧୟଃ ଶାନ୍ତିଃ । ବନସ୍ପତୟଃ ଶାନ୍ତିର୍ବିଶ୍ୱେ ଦେବାଃ ଶାନ୍ତିର୍ବ୍ରହ୍ମ ଶାନ୍ତିଃ ସର୍ବ ଗୁଁ ଶାନ୍ତିଃ ଶାନ୍ତିରେବ ଶାନ୍ତିଃ ସା ମା ଶାନ୍ତିରେଧି ॥୧୧॥

---

**ମନ୍ତ୍ରସଂଖ୍ୟା (୮) :-** ତୈ.ଆ.-୧୦/୪୬/୧ : ତତ୍ପୁରୁଷାୟ - ଶିବଙ୍କ ପୂର୍ବଦିଗର ମୁଖ ତତ୍ପୁରୁଷ ସଂଜ୍ଞକ ସେହି ପ୍ରସିଦ୍ଧ ପୁରୁଷ ସ୍ୱରୂପ ଦେବଦେବ ମହାଦେବଙ୍କୁ ଆମେ ଧ୍ୟାନ କରୁଅଛୁ । ଯାହାଙ୍କ ବିଷୟରେ ସମସ୍ତ ନିଗମ ଓ ଆଗମଶାସ୍ତ୍ରମାନେ ବହୁଧା ବର୍ଣ୍ଣନା କରିଅଛନ୍ତି । ସେହି ରୁଦ୍ର ଆମ୍ଭମାନଙ୍କ ମନରେ ଆହୁରି ଅଧିକ ଜାଣିବାପାଇଁ ପ୍ରେରଣା ପ୍ରଦାନ କରନ୍ତୁ ।

**ମନ୍ତ୍ରସଂଖ୍ୟା (୯) :-** ତୈ.ଆ.-୧୦/୪୭/୧ : ଈଶାନଃ ସର୍ବବିଦ୍ୟାନାଂ - ସର୍ବବିଧ ବିଦ୍ୟାର ଈଶାନ ସଂଜ୍ଞକ ଊର୍ଦ୍ଧ୍ୱମୁଖରୁଦ୍ର ହେଉଛନ୍ତି ଶ୍ରେଷ୍ଠ ଭଣ୍ଡାର । ତାଙ୍କଠାରେ ଈଶିତୃତ୍ୱ (ପ୍ରଭୁତ୍ୱ) ଥିବା ହେତୁ ସେ ସମସ୍ତଙ୍କ ପାଇଁ ଈଶ୍ୱରପଦବାଚ୍ୟ । ସେ ବ୍ରହ୍ମ ଅର୍ଥାତ୍ ବେଦର ଅଧିପତି ପୁଣି ବ୍ରହ୍ମା ଅର୍ଥାତ୍ ହିରଣ୍ୟଗର୍ଭଙ୍କର ମଧ୍ୟ ପ୍ରଭୁ । ଏଣୁ ଏହିଭଳି ବିଶିଷ୍ଟ ଗୁଣ ସମ୍ପନ୍ନ ପରମାତ୍ମା ଶିବ ମୋ ପ୍ରତି କୃପାପରବଶ ହୋଇ ମୋର ସର୍ବଦା ମଙ୍ଗଳ ବିଧାନ କରନ୍ତୁ ।

**ମନ୍ତ୍ରସଂଖ୍ୟା (୧୦) :-** ଯଜୁର୍ବେଦ-ଅ.୩୪/୩ - ବିଶ୍ୱାନି ଦେବ-ହେ ସବିତାଦେବ ! ତୁମେ ଆମର ସମସ୍ତ ପାପ ଗୁଡ଼ିକୁ ଦୂର କର । ଯାହା ଆମପାଇଁ କଲ୍ୟାଣପ୍ରଦ ସେଗୁଡ଼ିକୁ ଆମକୁ ପ୍ରାପ୍ତ କରାଅ ।

**ମନ୍ତ୍ରସଂଖ୍ୟା (୧୧) :-** ଯଜୁର୍ବେଦ-ଅ.୩୬/୧୭ - ଦ୍ୟୌଃ ଶାନ୍ତିଃ - ଦ୍ୟୁଲୋକ (ସ୍ୱର୍ଗ), ଆକାଶ, ପୃଥିବୀ, ଜଳ, ଔଷଧି (ଲତା-ଗୁଳ୍ମ) ବୃକ୍ଷ, ବିଶ୍ୱେଦେବା, ବ୍ରହ୍ମ (ବେଦତ୍ରୟ) ଏପରିକି ସମଗ୍ର ଜଗତ୍ ମୋ ପାଇଁ ଶାନ୍ତିପ୍ରଦ ହେଉ । ସର୍ବବିଧ ଶାନ୍ତି ମଧ୍ୟ ସ୍ୱରୂପରେ ମୋ ପ୍ରତି ଶାନ୍ତିପ୍ରଦାୟକ ହୁଅନ୍ତୁ ।

ଓଁ ସର୍ବେଷାଂ ବା ଏଷ ବେଦାନାଗୁଁ ରସୋ ଯସ୍ସାମ । ସର୍ବେଷାମେବୈନ-ମେତଦ୍ୱେଦାନାଗୁଁ ରସେନାଭିଷିଞ୍ଚତି ॥୧୨॥ ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ ସୁଶାନ୍ତିର୍ଭବତୁ । ସର୍ବାରିଷ୍ଟଶାନ୍ତିର୍ଭବତୁ । ଅନେନ ରୁଦ୍ରାଭିଷେକକର୍ମଣା କୃତେନ ଶ୍ରୀଭବାନୀଶଙ୍କରମହାରୁଦ୍ରଃ ପ୍ରୀୟତାମ୍ । ଓଁ ସର୍ବଂ ସଦାଶିବାର୍ପଣମସ୍ତୁ । ଓଁ ।

---

**ମନ୍ତ୍ରସଂଖ୍ୟା (୧୨)** - ସର୍ବେଷାଂ ବା :- ସମସ୍ତ ବେଦମାନଙ୍କର ସନ୍ନିବିଷ୍ଟ ଗୂଢ଼ତତ୍ତ୍ୱର ନିର୍ଯାସରସସ୍ୱରୂପ ସାମବେଦ ଅଥବା ଭଗବାନ୍ ବିଷ୍ଣୁ ସାମବେଦ ସ୍ୱରୂପ (ବେଦାନାଂ ସାମବେଦୋଽସ୍ମି-ଗୀତା) ଅଟନ୍ତି । ସେ ସାମବେଦ ବିଷ୍ଣୁ ସାମରସଦ୍ୱାରା ସମସ୍ତ ବେଦମାନଙ୍କୁ ଅଭିସିଞ୍ଚନ କରୁଅଛନ୍ତି ।

—×—

# ତୃତୀୟପରିଚ୍ଛେଦଃ

# ଶୁକ୍ଳଯଜୁର୍ବେଦାନ୍ତର୍ଗତମାଧ୍ୟନ୍ଦିନଶାଖୀୟରୁଦ୍ରାଷ୍ଟାଧ୍ୟାୟୀ

## ପ୍ରଥମାଧ୍ୟାୟଃ

## (ସଂକଳ୍ପସୂକ୍ତମ୍ / ଗଣପତିସୂକ୍ତମ୍)

ହରିଃ ଓଁ ଗଣାନାନ୍ତ୍ୱା ଗଣପତିଗୁଁ ହବାମହେ ପ୍ରିୟାଣାନ୍ତ୍ୱା ପ୍ରିୟପତିଗୁଁ ହବାମହେ । ନିଧୀନାନ୍ତ୍ୱା ନିଧିପତିଗୁଁ ହବାମହେ ॥୧॥ ଗାୟତ୍ରୀ-ତ୍ରିଷ୍ଟୁବ୍‌ଜଗତ୍ୟନୁଷ୍ଟୁପ୍‌ପଙ୍କ୍ତ୍ୟା ସହ । ବୃହତ୍ୟୁଷ୍ଣିହା କକୁପ୍‌ସୂଚୀଭିଃ ଶମ୍ୟନ୍ତୁ ତ୍ୱା ॥୨॥ ଦ୍ୱିପଦା ଯାଶ୍ଚତୁଷ୍ପଦାସ୍ତ୍ରିପଦା ଯାଶ୍ଚ ଷଟ୍‌ପଦାଃ । ବିଚ୍ଛନ୍ଦା ଯାଶ୍ଚ ସଚ୍ଛନ୍ଦାଃ ସୂଚୀଭିଃ ଶମ୍ୟନ୍ତୁ ତ୍ୱା ॥୩॥

---

## ପ୍ରଥମ ଅଧ୍ୟାୟ

### (ଗଣପତି ସୂକ୍ତ / ଶିବସଂକଳ୍ପ ସୂକ୍ତ)

### (ଓଡ଼ିଆ ଭାବାନୁବାଦ)

**ମନ୍ତ୍ରସଂଖ୍ୟା (୧) :-** ଯଜୁର୍ବେଦ - ଅ.୨୩/୧୯ - ଗଣାନାଂ ତ୍ୱାଃ ଆମ୍ଭେ ଗଣମାନଙ୍କ ମଧ୍ୟରେ ତୁମକୁ ଗଣପତି (ଅଧ୍ୟକ୍ଷ) ରୂପରେ ଆହ୍ୱାନ କରୁଅଛୁ । ପ୍ରିୟମାନଙ୍କ ମଧ୍ୟରେ ତୁମକୁ ପ୍ରିୟପତି (ପ୍ରିୟ ସ୍ୱାମୀ) ଭାବରେ ଏବଂ ନିଧି ଅର୍ଥାତ୍ ସମ୍ପତ୍ତି ମଧ୍ୟରେ ଶ୍ରେଷ୍ଠ ସମ୍ପତ୍ତି (ନିଧିପତି) ସ୍ୱରୂପ ତୁମକୁ ଆବାହନ କରୁଅଛୁ ।

**ମନ୍ତ୍ରସଂଖ୍ୟା (୨) :-** ଯଜୁର୍ବେଦ - ଅ.୨୩/୩୩ - ଗାୟତ୍ରୀ ତ୍ରିଷ୍ଟୁପ୍:- ଗାୟତ୍ରୀ, ତ୍ରିଷ୍ଟୁପ୍, ଜଗତୀ, ଅନୁଷ୍ଟୁପ୍, ପଙ୍‌କ୍ତି ସହ ବୃହତୀ, ଉଷ୍ଣିହା ସହ କକୁପ୍- ଏହି ଛନ୍ଦମାନେ (ସୁନା, ରୂପା ଓ ତମ୍ବା ନିର୍ମିତ) ଛୁଞ୍ଚିମାନଙ୍କଦ୍ୱାରା ତୁମର ସଂସ୍କାର କରନ୍ତୁ ।

**ମନ୍ତ୍ରସଂଖ୍ୟା (୩) :-** ଯଜୁର୍ବେଦ - ଅ.୨୩/୩୪ - ଦ୍ୱିପଦା ଯା : ଦୁଇ ପାଦବିଶିଷ୍ଟ ଛନ୍ଦମାନ ଦ୍ୱିପଦା, ସେହିପରି ତିନିପାଦବିଶିଷ୍ଟ ଛନ୍ଦ ତ୍ରିପଦା, ଚାରିପାଦ ବିଶିଷ୍ଟ ଚତୁଷ୍ପଦା, ଛଅପାଦ ବିଶିଷ୍ଟ ଷଟ୍‌ପଦା, ଛନ୍ଦ ଲକ୍ଷଣ ବିହୀନ ବିଚ୍ଛନ୍ଦା, ଛନ୍ଦଲକ୍ଷଣ ସମ୍ପନ୍ନ ସଚ୍ଛନ୍ଦା । ହେ ଅଶ୍ୱ ! ଏମାନେ ତୁମକୁ ଛୁଞ୍ଚିଦ୍ୱାରା ସଂସ୍କାରସମ୍ପନ୍ନ କରନ୍ତୁ ।

ସହସ୍ତୋମାଃ ସହ ଛନ୍ଦସ ଆବୃତଃ ସହ ପ୍ରମା ଋଷୟଃ ସପ୍ତଦୈବ୍ୟାଃ ।
ପୂର୍ବେଷାମ୍ପନ୍ଥାମନୁଦୃଶ୍ୟ ଧୀରା ଅନ୍ୱାଲେଭିରେ ରଥ୍ୟୋ ନ ରଶ୍ମୀନ୍ ॥୪॥
ଯଜ୍ଜାଗ୍ରତୋ ଦୂରମୁଦୈତି ଦୈବଂ ତଦୁ ସୁପ୍ତସ୍ୟ ତଥୈବୈତି । ଦୂରଙ୍ଗମଂ ଜ୍ୟୋତିଷାଂ ଜ୍ୟୋତିରେକଂ ତନ୍ମେ ମନଃ ଶିବସଂକଳ୍ପମସ୍ତୁ ॥୫॥ ଯେନ କର୍ମାଣ୍ୟପସୋ ମନୀଷିଣୋ ଯଜ୍ଞେ କୃଣ୍ୱନ୍ତି ବିଦଥେଷୁ ଧୀରାଃ । ଯଦପୂର୍ବଂ ଯକ୍ଷମନ୍ତଃ ପ୍ରଜାନାଂ ତନ୍ମେ ମନଃ ଶିବସଂକଳ୍ପମସ୍ତୁ ॥୬॥

---

**ମନ୍ତ୍ରସଂଖ୍ୟା (୪) :-** ଯଜୁର୍ବେଦ - ଅ.୩୪/୪୯ - ସହସ୍ତୋମାଃ : ସ୍ତବ, ଛନ୍ଦ, କର୍ମ ତଥା ପ୍ରମାଣ ସହିତ (ଭରଦ୍ୱାଜ, କଶ୍ୟପ, ଗୌତମ, ଅତ୍ରି, ବିଶ୍ୱାମିତ୍ର, ଜମଦଗ୍ନି, ବଶିଷ୍ଠ ପ୍ରଭୃତି) ସାତଜଣ ଋଷି । ରଥର ସାରଥି ଯେପରି ଘୋଡ଼ାର ଲଗାମ୍‌କୁ ଗ୍ରହଣ କରି ରଥ ଚାଳନା କରେ ଓ ଅଭୀଷ୍ଟ ଦେଶ ପ୍ରାପ୍ତି କରାଏ, ଠିକ୍ ସେହିପରି ଏହି ବୁଦ୍ଧିମାନ୍ ଋଷିମାନେ ପୂର୍ବକଳ୍ପର ଦୈବୀଶକ୍ତି ସମ୍ପନ୍ନ ଋଷିଙ୍କଦ୍ୱାରା ପ୍ରଦର୍ଶିତ ମାର୍ଗକୁ ଅବଲମ୍ବନ କରି ସୃଷ୍ଟି କର୍ମକୁ ପ୍ରାରମ୍ଭ କରିଥିଲେ ।

**ମନ୍ତ୍ରସଂଖ୍ୟା (୫) :-** ଯଜୁର୍ବେଦ - ଅ.୩୪/୧ - ଯଜ୍ଜାଗ୍ରତୋ : ଦୈବୀଶକ୍ତି ସମ୍ପନ୍ନ ଯେଉଁ ମନ ଜାଗ୍ରତ ଅବସ୍ଥାରେ ଚକ୍ଷୁରାଦି ଇନ୍ଦ୍ରିୟ ଅପେକ୍ଷା ବହୁ ଦୂରଗାମୀ, ଅଥଚ୍ ଯେ ପୁଣି ଆତ୍ମସାକ୍ଷାତ୍କାର ପାଇଁ ସହାୟକ (ମନସୈବାନୁଦ୍ରଷ୍ଟବ୍ୟ-ମେତଦପ୍ରମେୟଂ ଧ୍ରୁବମ୍), ଯେ ସୁଷୁପ୍ତି ଅବସ୍ଥାରେ ବହୁଦୂରକୁ ଚାଲିଯାଏ ଓ ଜାଗ୍ରତରେ ଫେରିଆସେ, ଯେ ଅତୀତ, ଅନାଗତ ଓ ବର୍ତ୍ତମାନ, ଦୂର, ନିକଟ, ବ୍ୟବହିତ ପଦାର୍ଥମାନଙ୍କର ମଧ୍ୟ ଗ୍ରାହକ, ଯେ ଚକ୍ଷୁ ଆଦି ଇନ୍ଦ୍ରିୟମାନଙ୍କର ପ୍ରକାଶକ ଓ ପ୍ରବର୍ତ୍ତକ (ବିଷୟ ଜ୍ଞାନପାଇଁ ଆତ୍ମା ମନ ସହିତ, ମନ ଇନ୍ଦ୍ରିୟ ସହିତ, ଇନ୍ଦ୍ରିୟ ବିଷୟ ସହିତ ସଂଯୁକ୍ତ ହେବା ଆବଶ୍ୟକ) । ଏହିଭଳି ଜ୍ୟୋତିମାନଙ୍କ ମଧ୍ୟରେ ଏକମାତ୍ର ଜ୍ୟୋତି (ପ୍ରକାଶକ) ଯେଉଁ ମୋ ମନ ସେ ଶାନ୍ତ ଅବସ୍ଥାକୁ ପ୍ରାପ୍ତ ହେଉ ।

**ମନ୍ତ୍ରସଂଖ୍ୟା (୬) :-** ଯଜୁର୍ବେଦ ଅ.୩୪/୨ - ଯେନ କର୍ମାଣି : ଯେଉଁ ମନଦ୍ୱାରା ମେଧାବୀ କର୍ମତତ୍ପର ବ୍ୟକ୍ତିମାନେ ଯଜ୍ଞାଦି ଅନୁଷ୍ଠାନର ବିଧିବିଧାନରେ ନିପୁଣତା ଅର୍ଜନ କରିଅଛନ୍ତି, ଯେ କି ଅପୂର୍ବ ସ୍ୱରୂପ (ଇନ୍ଦ୍ରିୟମାନଙ୍କ ପୂର୍ବରୁ ସୃଷ୍ଟ) ଓ ପରମପୂଜ୍ୟ ତଥା ପ୍ରାଣୀମାନଙ୍କର ଅନ୍ତର୍ଗତ (ଶରୀର ମଧ୍ୟରେ ସ୍ଥିତ) ସେହି ମୋର ମନ ଶାନ୍ତ ଅବସ୍ଥାକୁ ପ୍ରାପ୍ତ ହେଉ ।

ଯତ୍ପ୍ରଜ୍ଞାନମୁତ ଚେତୋ ଧୃତିଶ୍ଚ ଯଜ୍ଜ୍ୟୋତିରନ୍ତରମୃତଂ ପ୍ରଜାସୁ । ଯସ୍ମାନ୍ନ ଋତେ କିଂଚନ କର୍ମ କ୍ରିୟତେ ତନ୍ମେ ମନଃ ଶିବସଂକଳ୍ପମସ୍ତୁ ॥୭॥ ଯେନେଦଂ ଭୂତଂ ଭୁବନଂ ଭବିଷ୍ୟତ୍ପରିଗୃହୀତମମୃତେନ ସର୍ବମ୍ । ଯେନ ଯଜ୍ଞସ୍ତାୟତେ ସପ୍ତହୋତା ତନ୍ମେ ମନଃ ଶିବସଂକଳ୍ପମସ୍ତୁ ॥୮॥ ଯସ୍ମିନ୍ନୃଚଃ ସାମ ଯଜୂଁଷି ଯସ୍ମିନ୍ ପ୍ରତିଷ୍ଠିତା ରଥନାଭାବିବାରାଃ । ଯସ୍ମିଁଶ୍ଚିତ୍ତଁ ସର୍ବମୋତଂ ପ୍ରଜାନାଂ ତନ୍ମେ ମନଃ ଶିବସଂକଳ୍ପମସ୍ତୁ ॥୯॥

---

**ମନ୍ତ୍ରସଂଖ୍ୟା (୭) :-** ଯଜୁର୍ବେଦ ଅ.୩୪/୩ - ଯତ୍ ପ୍ରଜ୍ଞାନଂ : ଯେଉଁ ମନ ସାମାନ୍ୟ ଓ ବିଶେଷ ଜ୍ଞାନର ଜନକ, ଧୈର୍ଯ୍ୟର ଉତ୍ପାଦକ, ସମସ୍ତ ଇନ୍ଦ୍ରିୟମାନଙ୍କର ପ୍ରକାଶକ ଏବଂ ଜ୍ୟୋତିଃସ୍ୱରୂପ, ଅବିନାଶୀ, ଯାହା ବ୍ୟତିରେକେ କୌଣସି କର୍ମ ପ୍ରତି ପ୍ରାଣୀମାନଙ୍କର ପ୍ରବୃତ୍ତି ସୃଷ୍ଟି ହୋଇପାରେ ନାହିଁ ସେହି ମୋର ମନ ଶାନ୍ତ ଅବସ୍ଥାକୁ ପ୍ରାପ୍ତ ହେଉ ।

**ମନ୍ତ୍ରସଂଖ୍ୟା (୮) :-** ଯଜୁର୍ବେଦ ଅ.୩୪/୪ - ଯେନେଦଂ : ଯେଉଁ ଆମର ମନଦ୍ୱାରା ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ - ଏହି ତିନି କାଳର ସମସ୍ତ ପଦାର୍ଥ ପ୍ରତୀତ ହୁଏ, ଯାହାଦ୍ୱାରା ସପ୍ତ ହୋତୃସମ୍ପନ୍ନ ଅଗ୍ନିଷ୍ଟୋମାଦି ଯଜ୍ଞମାନ (ଅଗ୍ନିଷ୍ଟୋମ ଯଜ୍ଞରେ ସାତ ଜଣ ହୋତା ଥାଆନ୍ତି) ବିସ୍ତୃତିଲାଭ କରନ୍ତି ସେହି ମୋର ମନ ଶାନ୍ତ ଅବସ୍ଥାକୁ ପ୍ରାପ୍ତ ହେଉ ।

**ମନ୍ତ୍ରସଂଖ୍ୟା (୯) :-** ଯଜୁର୍ବେଦ ଅ.୩୪/୫ - ଯସ୍ମିନ୍ ଋଚଃ : ମନରେ ଋକ୍, ଯଜୁଃ ଓ ସାମ ବେଦମାନଙ୍କର ମନ୍ତ୍ରମାନେ ପ୍ରତିଷ୍ଠିତ (ସମସ୍ତ ଜ୍ଞାନ ମନରେ ସନ୍ନିହିତ, ଏଣୁ ମନ ସୁସ୍ଥ ଥିଲେ ଜ୍ଞାନର ପରିପ୍ରକାଶ ନିମିତ୍ତ ଶବ୍ଦୋଚ୍ଚାରଣ ଶକ୍ତି ସୁସମ୍ପନ୍ନ ହୁଏ) । ଏହା ଯେପରି ରଥଚକ୍ରର ମଧ୍ୟଭାଗରେ ଥିବା ଅର (ଅଖ) ଚକ୍ରକୁ ଗତିଶୀଳ କରିବାର ସାମର୍ଥ୍ୟ ପ୍ରଦାନ କରେ, ଅଥବା ତନ୍ତୁଗୁଡ଼ିକ ଯେଭଳି ଆତାନ ବିତାନ (ଓତପ୍ରୋତ/ଲମ୍ବପ୍ରସ୍ଥ) ଭାବରେ ବସ୍ତ୍ରସ୍ୱରୂପ ନିର୍ମାଣ କରନ୍ତି, ଠିକ୍ ସେହିଭଳି ସୁସ୍ଥ ମନରେ ସନ୍ନିବେଶିତ ଶବ୍ଦଜାଳ ସମସ୍ତ ଜ୍ଞାନର ସ୍ୱରୂପପ୍ରାପ୍ତିକାରକ । ଏପରି ଯେଉଁ ମୋର ମନ ତାହା ଶାନ୍ତାବସ୍ଥାକୁ ପ୍ରାପ୍ତ ହେଉ ।

ସୁଷାରଥିରଶ୍ୱାନିବ ଯନ୍ମନୁଷ୍ୟାନ୍ନେନୀୟତେଭୀ ଶୁଭିର୍ବାଜିନ ଇବ ।
ହୃତ୍ପ୍ରତିଷ୍ଠଂ ଯଦଜିରଂ ଜବିଷ୍ଠଂ ତନ୍ନେ ମନଃ ଶିବସଂକଳ୍ପମସ୍ତୁ ॥୧୦॥

—×—

# ଦ୍ୱିତୀୟାଧ୍ୟାୟଃ

## (ପୁରୁଷସୂକ୍ତମ୍)

ହରିଃ ଓଁ ସହସ୍ରଶୀର୍ଷା ପୁରୁଷଃ ସହସ୍ରାକ୍ଷଃ ସହସ୍ରପାତ୍ । ସଭୂମିଗୁଁ ସର୍ବତ ସ୍ପୃତ୍ୱାତ୍ୟତିଷ୍ଠଦ୍ଦଶାଙ୍ଗୁଳମ୍ ॥୧॥

---

**ମନ୍ତ୍ରସଂଖ୍ୟା (୧୦) :-** ଯଜୁର୍ବେଦ ଅ.୩୪/୬ - ସୁଷାରଥିଃ : ଯେପରି ଦକ୍ଷ ସାରଥି ରଥର ଅଶ୍ୱମାନଙ୍କୁ ଲଗାମ୍‌ଦ୍ୱାରା ସୁନିୟନ୍ତ୍ରିତ କରିଥାଏ, ସେହିପରି ମନ ମନୁଷ୍ୟର ବୁଦ୍ଧିକୁ ପ୍ରଚୋଦିତ କରିବା ସହିତ ଅଜିର ଅର୍ଥାତ୍ ବାଲ୍ୟାଦି ଅବସ୍ଥା ଭେଦରେ ମଧ୍ୟ ଯେ ଅପରିବର୍ତ୍ତିତ ତଥା ଅତ୍ୟନ୍ତ ବେଗବାନ୍ ସେହି ମୋର ମନ ଶୁଭ ସଂକଳ୍ପ ଯୁକ୍ତ ହେଉ ।

# ଦ୍ୱିତୀୟ ଅଧ୍ୟାୟ

## (ପୁରୁଷସୂକ୍ତ)

**ମନ୍ତ୍ରସଂଖ୍ୟା (୧) :-** ଯଜୁର୍ବେଦ ଅ. ୩୧/୧ : ଓଁ ସହସ୍ରଶୀର୍ଷା : - ପରମାତ୍ମା ଅନେକ ଶିର (ସହସ୍ର ଶବ୍ଦ ଏଠାରେ ଅନେକତ୍ୱବାଚକ), ଅନେକ ଚକ୍ଷୁ, (ସହସ୍ରାକ୍ଷ - ଏଠାରେ ଚକ୍ଷୁରୂପକ ଅର୍ଥ ଉପଲକ୍ଷିତ, ବସ୍ତୁତଃ ଅକ୍ଷ ଶବ୍ଦ ପାଞ୍ଚ ଜ୍ଞାନେନ୍ଦ୍ରିୟ ଅର୍ଥାତ୍ କର୍ଣ୍ଣ, ଚର୍ମ, ଚକ୍ଷୁ, ଜିହ୍ୱା ଓ ନାସିକା ଏହାର ବାଚକ), ଅନେକ ପାଦ (ଏଠାରେ ପାଦ ମଧ୍ୟ ପଞ୍ଚ କର୍ମେନ୍ଦ୍ରିୟ ଯଥା- ବାକ୍, ପାଣି, ପାଦ, ପାୟୁ ଓ ଉପସ୍ଥ ବାଚକ) ବିଶିଷ୍ଟ ଅଟନ୍ତି । ସେ ବ୍ରହ୍ମାଣ୍ଡକୁ ସବୁ ଦିଗରୁ (ଅଧଃ, ଊର୍ଦ୍ଧ୍ୱ ଓ ତିର୍ଯ୍ୟକ୍) ବ୍ୟାପୀ ରହିଛନ୍ତି, ପୁଣି ସେ ଆମ ଦଶ ଆଙ୍ଗୁଳି ପରିମିତ ହୃଦୟକନ୍ଦରରେ ମଧ୍ୟ ଅବସ୍ଥାନ କରିଅଛନ୍ତି ।

ପୁରୁଷ ଏବେଦଗୁଁ ସର୍ବଂ ଯଦ୍ଭୂତଂ ଯଚ୍ଚ ଭାବ୍ୟମ୍ । ଉତାମୃତତ୍ୱସ୍ୟେଶାନୋ ଯଦନ୍ନେନାତିରୋହତି ॥୨॥ ଏତାବାନସ୍ୟ ମହିମାତୋ ଜ୍ୟାୟାଗୁଁଶ୍ଚ ପୂରୁଷଃ । ପାଦୋଽସ୍ୟ ବିଶ୍ୱା ଭୂତାନି ତ୍ରିପାଦସ୍ୟାମୃତଂ ଦିବି ॥୩॥ ତ୍ରିପାଦୂର୍ଦ୍ଧ୍ୱ ଉଦୈତ୍ପୁରୁଷଃ ପାଦୋଽସ୍ୟେହାଭବତ୍ପୁନଃ । ତତୋ ବିଷ୍ୱଙ୍ ବ୍ୟକ୍ରାମତ୍ସାଶନାନଶନେ ଅଭି ॥୪॥ ତତୋ ବିରାଡ଼ଜାୟତ ବିରାଜୋ ଅଧି ପୂରୁଷଃ । ସ ଜାତୋ ଅତ୍ୟରିଚ୍ୟତ ପଶ୍ଚାଦ୍ଭୂମିମଥୋ ପୁରଃ ॥୫॥

---

**ମନ୍ତ୍ରସଂଖ୍ୟା (୨) :-** ଯଜୁର୍ବେଦ ଅ. ୩୧/୨ : ପୁରୁଷ ଏବେଦଗୁଁ - ବର୍ତ୍ତମାନ, ଅତୀତ ଓ ଭବିଷ୍ୟତ ଏପରି ସାର୍ବକାଳିକ ଜଗତ୍ ପ୍ରପଞ୍ଚ ସେହି ବିରାଟ ପୁରୁଷଙ୍କର ହିଁ ସ୍ୱରୂପ । ସେ ଅମୃତତ୍ୱ ଅର୍ଥାତ୍ ଦେବତାଙ୍କର ମଧ୍ୟ ସ୍ୱାମୀ । ସେ ସମଗ୍ର ବିଶ୍ୱର କାରଣ ହୋଇ ମଧ୍ୟ ପ୍ରାଣୀମାନଙ୍କର କର୍ମଫଳ ଭୋଗପାଇଁ ଭୋଗ୍ୟବସ୍ତୁ ଅନ୍ନାଦି ରୂପରେ ପରିଣତ ହୁଅନ୍ତି ।

**ମନ୍ତ୍ରସଂଖ୍ୟା (୩) :-** ଯଜୁର୍ବେଦ ଅ. ୩୧/୩ : ଏତାବାନସ୍ୟ ମହିମା - ଏହି ପୂର୍ବୋକ୍ତ (ସାର୍ବକାଳିକ) ମହିମାରେ ସମଗ୍ର ବିଶ୍ୱ ମହିମାନ୍ୱିତ, ଅଥଚ ସେ ଏ ସମସ୍ତର ବହୁତ ଉର୍ଦ୍ଧ୍ୱରେ । ଯାହାଙ୍କର ମହିମାର ଏକପାଦ (ଏକଚତୁର୍ଥାଂଶ) ଏ ସମସ୍ତ ପ୍ରାଣୀ ଜଗତରେ ବ୍ୟାପ୍ତ ଓ ଅବଶିଷ୍ଟ ପାଦ (ଅଂଶତ୍ରୟ) ଦ୍ୟୁଲୋକରେ, ଯାହାଦ୍ୱାରା ଏ ସମଗ୍ର ବିଶ୍ୱବ୍ରହ୍ମାଣ୍ଡ ପ୍ରକାଶିତ ।

**ମନ୍ତ୍ରସଂଖ୍ୟା (୪) :-** ଯଜୁର୍ବେଦ ଅ. ୩୧/୪ : ତ୍ରିପାଦୂର୍ଦ୍ଧ୍ୱ - ପରମାତ୍ମାଙ୍କର ତିନିପାଦ ସାଂସାରିକ ଗୁଣଦୋଷର ଉର୍ଦ୍ଧ୍ୱରେ ରହି ସମଗ୍ର ବିଶ୍ୱବ୍ରହ୍ମାଣ୍ଡକୁ ଦେଦୀପ୍ୟମାନ କରୁଅଛନ୍ତି ଏବଂ ଏକପାଦ ସମଗ୍ର ଜଗତ୍ ରୂପରେ ଥାଇ ବାରମ୍ବାର ସୃଷ୍ଟି ସଂହାର ପ୍ରକ୍ରିୟାର କାରକ ଅଟନ୍ତି । ସେ ହିଁ ମାୟାଶକ୍ତି ମାଧ୍ୟମରେ ଚେତନ ପ୍ରାଣୀ ଜଗତରେ ଓ ଅଚେତନ ଗିରି, ନଦୀ ଇତ୍ୟାଦି ରୂପରେ ପରିବ୍ୟାପ୍ତ ଅଟନ୍ତି ।

**ମନ୍ତ୍ରସଂଖ୍ୟା (୫) :-** ଯଜୁର୍ବେଦ ଅ. ୩୧/୫ : ତତୋ ବିରାଡ଼ଜାୟତ - ତାହାଙ୍କ (ପରମାତ୍ମାଙ୍କ)ଠାରୁ ବିରାଟ୍ (ବିବିଧବସ୍ତୁ ଯାହାଙ୍କଠାରେ ଥାଆନ୍ତି, ବିବିଧଂ ରାଜନ୍ତେ ବସ୍ତୁନ୍ୟତ୍ରେତି ବିରାଟ୍) ଉତ୍ପନ୍ନ ହେଲେ ଏବଂ ବିରାଟ୍ଙ୍କଠାରୁ ପୁରୁଷସ୍ୱରୂପ ବ୍ରହ୍ମାଣ୍ଡ, ଯାହାକି ଦେବତା, ମନୁଷ୍ୟ, ପଶୁପକ୍ଷୀ ଇତ୍ୟାଦି ସମସ୍ତ ସୃଷ୍ଟି ସମ୍ଭବ ହେଲା ।

ତସ୍ମାଦ୍ ଯଜ୍ଞାତ୍ସର୍ବହୁତଃ ସମ୍ଭୃତମ୍ପୃଷଦାଜ୍ୟମ୍ । ପଶୂଗୁଁସ୍ତାଗୁଁଶ୍ଚକ୍ରେ ବାୟବ୍ୟାନାରଣ୍ୟା ଗ୍ରାମ୍ୟାଶ୍ଚ ଯେ ॥୬॥ ତସ୍ମାଦ୍ ଯଜ୍ଞାତ୍ସର୍ବହୁତ ଋଚଃ ସାମାନି ଜଜ୍ଞିରେ । ଛନ୍ଦାଗୁଁସି ଜଜ୍ଞିରେ ତସ୍ମାଦ୍ୟଜୁସ୍ତସ୍ମାଦଜାୟତ ॥୭॥ ତସ୍ମାଦଶ୍ୱା ଅଜାୟନ୍ତ ଯେ କେ ଚୋଭୟାଦତଃ । ଗାବୋ ହ ଜଜ୍ଞିରେ ତସ୍ମାତ୍ତସ୍ମାଜ୍ଜାତା ଅଜାବୟଃ ॥୮॥ ତଂ ଯଜ୍ଞଂ ବର୍ହିଷି ପ୍ରୌକ୍ଷନ୍ ପୁରୁଷଂ ଜାତମଗ୍ରତଃ । ତେନ ଦେବା ଅୟଜନ୍ତ ସାଧ୍ୟା ଋଷୟଶ୍ଚ ଯେ ॥୯॥ ଯତ୍ପୁରୁଷଂ ବ୍ୟଦଧୁଃ କତିଧା ବ୍ୟକଳ୍ପୟନ୍ । ମୁଖଂ କିମସ୍ୟାସୀତ୍କିଂ ବାହୂ କିମୂରୂ ପାଦା ଉଚ୍ୟେତେ ॥୧୦॥

---

**ମନ୍ତ୍ରସଂଖ୍ୟା (୬) :-** ଯଜୁର୍ବେଦ ଅ. ୩୧/୬ : ତସ୍ମାଦ୍ ଯଜ୍ଞାତ୍ - ତାଙ୍କଦ୍ୱାରା ଅନୁଷ୍ଠିତ (ଅଗ୍ନିଷ୍ଟୋମ / ପୁରୁଷମେଧ)[1] ଯଜ୍ଞରୁ ଦଧି-ଘୃତ ଇତ୍ୟାଦି ଭୋଜ୍ୟ ପଦାର୍ଥମାନ ସୃଷ୍ଟି ହେଲେ । ବାୟୁ ଦେବତା ସମ୍ପର୍କୀୟ[2] ବନେଚର ପଶୁ ଓ ଗୋରୁ, ଅଶ୍ୱ ଇତ୍ୟାଦି ଗ୍ରାମ୍ୟ ପଶୁମାନେ ମଧ୍ୟ ଉତ୍ପନ୍ନ ହେଲେ ।

**ମନ୍ତ୍ରସଂଖ୍ୟା (୭) :-** ଯଜୁର୍ବେଦ ଅ. ୩୧/୭ : ତସ୍ମାଦ୍ ଯଜ୍ଞାତ୍ - ବିଧାତା ପୁରୁଷଙ୍କଦ୍ୱାରା ଅନୁଷ୍ଠିତ ସେହି ଯଜ୍ଞରୁ ଋକ୍, ଯଜୁଃ ଓ ସାମ ବେଦମାନ ତଥା ଗାୟତ୍ରୀ ଇତ୍ୟାଦି ଛନ୍ଦମାନ ମଧ୍ୟ ଆବିର୍ଭୂତ ହେଲେ ।

**ମନ୍ତ୍ରସଂଖ୍ୟା (୮) :-** ଯଜୁର୍ବେଦ ଅ. ୩୧/୮ : ତସ୍ମାଦଶ୍ୱା - ସେହି ଯଜ୍ଞରୁ ଅଶ୍ୱଜାତୀୟ ତଥା ତତ୍ସହିତ ଅଧୋର୍ଦ୍ଧ୍ୱ ଦନ୍ତପଙ୍କ୍ତି ବିଶିଷ୍ଟ ଗୋରୁ, ଛେଳି ଇତ୍ୟାଦି ପ୍ରାଣୀମାନେ ମଧ୍ୟ ଉତ୍ପନ୍ନ ହେଲେ ।

**ମନ୍ତ୍ରସଂଖ୍ୟା (୯) :-** ଯଜୁର୍ବେଦ ଅ. ୩୧/୯ : ତଂ ଯଜ୍ଞଂ ବର୍ହିଷି - ପ୍ରଥମୋତ୍ପନ୍ନ ପୁରୁଷଙ୍କୁ ଯଜ୍ଞ ନିମିତ୍ତ ଦର୍ଭଦ୍ୱାରା ପ୍ରୋକ୍ଷଣ କରାଗଲା ପରେ ସେହି ପୁରୁଷରୂପ ପଶୁଦ୍ୱାରା ଦେବତାମାନେ ଓ ଋଷିଗଣ ସମସ୍ତେ ଯଜ୍ଞ ସମ୍ପାଦନ କଲେ ।

**ମନ୍ତ୍ରସଂଖ୍ୟା (୧୦) :-** ଯଜୁର୍ବେଦ ଅ. ୩୧/୧୦ : ଯତ୍ପୁରୁଷଂ - ଋଷିମାନେ, ଇନ୍ଦ୍ରାଦିଦେବତାମାନେ ଯେଉଁ ପୁରୁଷଙ୍କୁ ଯଜ୍ଞରେ ବିଧାନ କଲେ ଓ ସେହିପରି ଆତ୍ମସାକ୍ଷାତ୍କାରୀ ଯୋଗୀମାନେ ଯାହାଙ୍କୁ ଚିନ୍ତନ କଲେ ତାଙ୍କର ମୁହଁ କ'ଣ ଥିଲା ? ବାହୁ, ଜଙ୍ଘ, ପାଦ କେମିତି ଥିଲା ?

---

୧ - ଭାଷ୍ୟକାର ଉବଟଙ୍କ ମତରେ ଅଗ୍ନିଷ୍ଟୋମଯଜ୍ଞ, ମାତ୍ର ଅନ୍ୟଭାଷ୍ୟକାର ମହୀଧରଙ୍କ ମତରେ ପୁରୁଷମେଧ ଯଜ୍ଞ ।

୨ - ଶ୍ରୁତିରେ ଅଛି - 'ଅନ୍ତରିକ୍ଷ ଦେବତ୍ୟାଃ ଖଲୁ ବୈ ପଶବଃ' - ଇତି ଶ୍ରୁତେଃ ଅନ୍ତରିକ୍ଷସ୍ୟ ଚ ବାୟୁ ଦେବତ୍ୟତ୍ୱାତ୍, ପଶୂନାଂ ବାୟୁଦେବତ୍ୱମ୍-ମହୀଧରଭାଷ୍ୟ ।

ବ୍ରାହ୍ମଣୋଽସ୍ୟ ମୁଖମାସୀଦ୍ବାହୂ ରାଜନ୍ୟଃ କୃତଃ । ଊରୂ ତଦସ୍ୟ ଯଦ୍‌ବୈଶ୍ୟଃ ପଦ୍‌ଭ୍ୟାଗୁଁ ଶୂଦ୍ରୋ ଅଜାୟତ ॥୧୧॥ ଚନ୍ଦ୍ରମା ମନସୋ ଜାତଶ୍ଚକ୍ଷୋଃ ସୂର୍ଯ୍ୟୋ ଅଜାୟତ । ଶ୍ରୋତ୍ରାଦ୍ ବାୟୁଶ୍ଚ ପ୍ରାଣଶ୍ଚ ମୁଖାଦଗ୍ନିରଜାୟତ ॥୧୨॥ ନାଭ୍ୟା ଆସୀଦନ୍ତରିକ୍ଷଗୁଁ ଶୀର୍ଷ୍ଣୋ ଦ୍ୟୌଃ ସମବର୍ତ୍ତତ । ପଦ୍‌ଭ୍ୟାଂ ଭୂମିର୍ଦିଶଃ ଶ୍ରୋତ୍ରାତ୍ତଥା ଲୋକାଁ୨ ଅକଳ୍ପୟନ୍ ॥୧୩॥ ଯତ୍‌ପୁରୁଷେଣ ହବିଷା ଦେବା ଯଜ୍ଞମତନ୍ୱତ । ବସନ୍ତୋଽସ୍ୟାସୀଦାଜ୍ୟଂ ଗ୍ରୀଷ୍ମ ଇଧ୍ମଃ ଶରଦ୍ଧବିଃ ॥୧୪॥

---

**ମନ୍ତ୍ରସଂଖ୍ୟା (୧୧) :-** ଯଜୁର୍ବେଦ ଅ. ୩୧/୧୧ : ବ୍ରାହ୍ମଣୋଽସ୍ୟ - (ପୂର୍ବୋକ୍ତ ପ୍ରଶ୍ନମାନଙ୍କର ଉତ୍ତର) ସେହି ପ୍ରଜାପତିଙ୍କର ବ୍ରାହ୍ମଣ ମୁଖରୁ, କ୍ଷତ୍ରିୟ ବାହୁରୁ, ବୈଶ୍ୟ ଊରୁ (ଜଙ୍ଘଦ୍ୱୟ)ରୁ ଓ ଶୂଦ୍ର ପାଦଦ୍ୱୟରୁ ଉତ୍ପନ୍ନ ହୋଇଥିଲେ । ଅର୍ଥାତ୍ ସେହି ବିରାଟ ପୁରୁଷଙ୍କର ବ୍ରାହ୍ମଣ ମୁଖସ୍ୱରୂପ, କ୍ଷତ୍ରିୟ ବାହୁସ୍ୱରୂପ, ବୈଶ୍ୟ ତଥା ଶୂଦ୍ର କ୍ରମଶଃ ଜଙ୍ଘ ଓ ପାଦସ୍ୱରୂପ ଅଟନ୍ତି ।

**ମନ୍ତ୍ରସଂଖ୍ୟା (୧୨) :-** ଯଜୁର୍ବେଦ ଅ. ୩୧/୧୨ : ଚନ୍ଦ୍ରମା ମନସୋ ଜାତଃ - ସେହି ପ୍ରଜାପତିସ୍ୱରୂପ ବିରାଟ ପୁରୁଷଙ୍କ ମନରୁ ଚନ୍ଦ୍ରମା, ଚକ୍ଷୁଦ୍ୱୟରୁ ସୂର୍ଯ୍ୟ, କର୍ଣ୍ଣଦ୍ୱୟରୁ ପ୍ରାଣବାୟୁ ଓ ମୁଖରୁ ଅଗ୍ନି ସୃଷ୍ଟି ହୋଇଥିଲେ ।

**ମନ୍ତ୍ରସଂଖ୍ୟା (୧୩) :-** ଯଜୁର୍ବେଦ ଅ. ୩୧/୧୩ : ନାଭ୍ୟା ଆସୀତ୍ - ସେହି ପ୍ରଜାପତିଙ୍କର ନାଭିଦେଶରୁ ଅନ୍ତରିକ୍ଷ ଅର୍ଥାତ୍ ଆକାଶ, ଶିରରୁ ସ୍ୱର୍ଗ, ପାଦଦ୍ୱୟରୁ ଭୂମି, କର୍ଣ୍ଣଦ୍ୱୟରୁ ଦିଗସମୂହ ଏହିପରି ସମସ୍ତ ଭୂଲୋକ ଆଦି ତାଙ୍କ ଅବୟବରୁ ଜାତ ।

**ମନ୍ତ୍ରସଂଖ୍ୟା (୧୪) :-** ଯଜୁର୍ବେଦ ଅ. ୩୧/୧୪ : ଯତ୍ ପୁରୁଷେଣ : ପୂର୍ବୋକ୍ତ ସୃଷ୍ଟି କ୍ରମରେ ବାହ୍ୟ ବସ୍ତୁଗୁଡ଼ିକର ଅନୁତ୍ପନ୍ନତା ହେତୁ ଦେବତାମାନେ ପୁରୁଷ ସ୍ୱରୂପକୁ ମନରେ ହବନୀୟ ଦ୍ରବ୍ୟ ଭାବରେ କଳ୍ପନା କରି ମାନସିକ ଯଜ୍ଞ ସମ୍ପନ୍ନ କରିଥିଲେ, ଯେଉଁଥିରେ ବସନ୍ତ ଋତୁକୁ ଆଜ୍ୟ (ଘୃତ), ଗ୍ରୀଷ୍ମକୁ ସମିଧ (କାଷ୍ଠ) ରୂପରେ, ଶରତ୍‌କୁ ହବିଃ (ହବନୀୟ ଦ୍ରବ୍ୟ ପୁରୋଡାଶାଦି) ଭାବରେ କଳ୍ପନା କରାଯାଇଥିଲା ।

ସପ୍ତାସ୍ୟାସନ୍ ପରିଧୟସ୍ତିଃ ସପ୍ତ ସମିଧଃ କୃତାଃ । ଦେବା ଯଦ୍ୟଜ୍ଞଂ ତନ୍ୱାନା ଅବଧ୍ନନ୍ ପୁରୁଷଂ ପଶୁମ୍ ॥୧୫॥ ଯଜ୍ଞେନ ଯଜ୍ଞମୟଜନ୍ତ ଦେବାସ୍ତାନି ଧର୍ମାଣି ପ୍ରଥମାନ୍ୟାସନ୍ । ତେ ହ ନାକଂ ମହିମାନଃ ସଚନ୍ତ ଯତ୍ର ପୂର୍ବେ ସାଧ୍ୟାଃ ସନ୍ତି ଦେବାଃ ॥୧୬॥ ଅଦ୍‌ଭ୍ୟଃ ସମ୍ଭୃତଃ ପୃଥିବ୍ୟୈ ରସାଚ୍ଚ ବିଶ୍ୱକର୍ମଣଃ ସମବର୍ତତାଗ୍ରେ । ତସ୍ୟ ତ୍ୱଷ୍ଟା ବିଦଧଦ୍ରୂପମେତି ତନ୍ମର୍ତ୍ୟସ୍ୟ ଦେବତ୍ୱମାଜାନମଗ୍ରେ ॥୧୭॥

---

**ମନ୍ତ୍ରସଂଖ୍ୟା (୧୫) :-** ଯଜୁର୍ବେଦ ଅ. ୩୧/୧୫ : ସପ୍ତାସ୍ୟାସନ୍ - ଇନ୍ଦ୍ରାଦି ଦେବତାମାନେ ପୁରୁଷମେଧ ରୂପକ ମାନସ ଯଜ୍ଞ ନିମିତ୍ତ ବିରାଟ୍ ପୁରୁଷଙ୍କୁ ଯଜ୍ଞୀୟ ପୁରୁଷ ରୂପରେ, ସାତଗୋଟି ସମୁଦ୍ରକୁ ପରିଧି ଭାବରେ, ତ୍ରିସପ୍ତ ଅର୍ଥାତ୍ ପୃଥିବୀ ଇତ୍ୟାଦି ପଞ୍ଚମହାଭୂତ, ଶବ୍ଦାଦି ପଞ୍ଚ ତନ୍ମାତ୍ର, ବାକ୍ ଆଦି ପଞ୍ଚ କର୍ମେନ୍ଦ୍ରିୟ, ଶ୍ରୋତ୍ରାଦି ପଞ୍ଚ ଜ୍ଞାନେନ୍ଦ୍ରିୟ ଏବଂ ମନ ଏପରି ଏକୋଇଶିଟି ତତ୍ତ୍ୱକୁ ସମିଧ ରୂପରେ ଗ୍ରହଣ କରିଥିଲେ ।

**ମନ୍ତ୍ରସଂଖ୍ୟା (୧୬) :-** ଯଜୁର୍ବେଦ ଅ. ୩୧/୧୬ : ଯଜ୍ଞେନ ଯଜ୍ଞଂ - ଇନ୍ଦ୍ରାଦି ଦେବତାମାନେ ଯଜ୍ଞଦ୍ୱାରା ଯଜ୍ଞୀୟ ପୁରୁଷଙ୍କର ବିଧିପୂର୍ବକ ପୂଜା କଲେ । ଯାହା ପୂର୍ବକାଳିକ ଧର୍ମ ଥିଲା । ସେହି ମହିମାନ୍ୱିତ ଯଜ୍ଞଦ୍ୱାରା ଯୋଗୀ ଋଷିମାନେ ସ୍ୱର୍ଗପ୍ରାପ୍ତ ହୋଇଥିଲେ । ଯେଉଁଠାରେ ପୂର୍ବରୁ ସିଦ୍ଧପୁରୁଷ ଓ ଦେବତାମାନେ ବାସ କରୁଥିଲେ ।

**ମନ୍ତ୍ରସଂଖ୍ୟା (୧୭) :-** ଯଜୁର୍ବେଦ ଅ. ୩୧/୧୭ : ଅଦ୍‌ଭ୍ୟଃ ସଂଭୃତଃ - ଜଳରୁ ସଂଗୃହୀତ ଓ ପିଣ୍ଡୀଭୂତ ଏହି ପୃଥିବୀ । ସେହିପରି ପୃଥିବୀ, ଜଳ, ତେଜ, ବାୟୁ ଓ ଆକାଶରୂପକ ପଞ୍ଚ ମହାଭୂତରୁ ସଂଗୃହୀତ ରସ ଯାହା ବିଶ୍ୱକର୍ମା ରୂପରେ ଥାଇ ହିରଣ୍ୟଗର୍ଭର ସର୍ବପ୍ରଥମ ସୃଷ୍ଟି । ତ୍ୱଷ୍ଟା ଅର୍ଥାତ୍ ଆଦିତ୍ୟ ସେହି ରସରୁ ତାଙ୍କର ସ୍ୱରୂପ ନିର୍ଧାରଣ କରି ପ୍ରତ୍ୟହ ଉଦୟ ହେଲେ ଏବଂ ସେ ହିଁ ପୂର୍ବ କାଳର ମରଣଧର୍ମରୁ ଆଜାନ ଦେବତ୍ୱକୁ ପ୍ରାପ୍ତ ହେଲେ । (ବେଦରେ ଦୁଇପ୍ରକାର ଦେବତାଙ୍କ ବର୍ଣ୍ଣନା କରାଯାଇଅଛି ଯଥା - କର୍ମଦେବ ଓ ଆଜାନଦେବ । ଯେଉଁ ଦେବତାମାନେ ଉତ୍କୃଷ୍ଟକର୍ମମାନ କରି ଦେବତ୍ୱ ପ୍ରାପ୍ତ ହୁଅନ୍ତି ସେମାନଙ୍କୁ କର୍ମଦେବ କୁହାଯାଇଅଛି । ସେହିପରି ଯେଉଁମାନେ ସୃଷ୍ଟି ଆରମ୍ଭରେ ଉତ୍ପନ୍ନ ହୋଇଅଛନ୍ତି

ବେଦାହମେତଂ ପୁରୁଷଂ ମହାନ୍ତମାଦିତ୍ୟବର୍ଣ୍ଣଂ ତମସଃ ପରସ୍ତାତ୍ । ତମେବ ବିଦିତ୍ୱାତି ମୃତ୍ୟୁମେତି ନାନ୍ୟଃ ପନ୍ଥା ବିଦ୍ୟତେଽୟନାୟ ॥୧୮॥ ପ୍ରଜାପତିଶ୍ଚରତି ଗର୍ଭେ ଅନ୍ତରଜାୟମାନୋ ବହୁଧା ବିଜାୟତେ । ତସ୍ୟ ଯୋନିଂ ପରିପଶ୍ୟନ୍ତି ଧୀରାସ୍ତସ୍ମିନ୍ହ ତସ୍ଥୁର୍ଭୁବନାନି ବିଶ୍ୱା ॥୧୯॥ ଯୋ ଦେବେଭ୍ୟ ଆତପତି ଯୋ ଦେବାନାଂ ପୁରୋହିତଃ । ପୂର୍ବୋ ଯୋ ଦେବେଭ୍ୟୋ ଜାତୋ ନମୋ ରୁଚାୟ ବ୍ରାହ୍ମୟେ ॥୨୦॥

---

ସେମାନେ ଆଜାନଦେବ ଅଟନ୍ତି । କର୍ମଦେବଠାରୁ ଆଜାନଦେବ ଶ୍ରେଷ୍ଠ, ଏଥିରେ ପ୍ରମାଣ ଯଥା - ଯେ ଶତଂ କର୍ମଦେବାନାମାନନ୍ଦାଃ ସ ଏକ ଆଜାନଦେବାନାମାନନ୍ଦଃ (ବୃହ.ଉପ.-୪/୧/୩୫) । ଏଣୁ ସୂର୍ଯ୍ୟାଦି ଦେବତାମାନେ ଆଜାନଦେବସଂଜ୍ଞକ ଅଟନ୍ତି ।)

**ମନ୍ତ୍ରସଂଖ୍ୟା (୧୮) :-** ଯଜୁର୍ବେଦ ଅ. ୩୧/୧୮ : ବେଦାହମେତଂ - ମୁଁ ସୂର୍ଯ୍ୟମଣ୍ଡଳାନ୍ତର୍ଗତ ସର୍ବୋତ୍କୃଷ୍ଟ ପୁରୁଷଙ୍କୁ ଜାଣିଛି - ଏହା ଋଷିଙ୍କ ପ୍ରତିବଚନ । ସେହି ପୁରୁଷ ଆଦିତ୍ୟବର୍ଣ୍ଣ ଅଟନ୍ତି, ଯାହାକି ଅନ୍ଧକାର (ଅବିଦ୍ୟା) ରହିତ ଓ ଯାହାଙ୍କୁ ଜାଣିବାଦ୍ୱାରା ମୃତ୍ୟୁକୁ ଅତିକ୍ରମଣ ଅର୍ଥାତ୍ ମୋକ୍ଷପ୍ରାପ୍ତି କରିହୁଏ ଏବଂ ଯାହା ବ୍ୟତିରେକେ ଅନ୍ୟ ମାର୍ଗ ମୁକ୍ତିପାଇଁ କିଛି ନାହିଁ ।

**ମନ୍ତ୍ରସଂଖ୍ୟା (୧୯) :-** ଯଜୁର୍ବେଦ ଅ. ୩୧/୧୯ : ପ୍ରଜାପତିଶ୍ଚରତି - ସର୍ବାତ୍ମା ପ୍ରଜାପତି ଅନ୍ତଃ ହୃଦୟରେ ଅବସ୍ଥିତ ହୋଇ ଗର୍ଭମଧ୍ୟରେ ପ୍ରବେଶ କରନ୍ତି, କିନ୍ତୁ ସେ ଅଜ (ଅଜନ୍ମା) ଏଣୁ ନିତ୍ୟ, ଅଥଚ କାର୍ଯ୍ୟକାରଣ ଭାବ ନେଇ ପ୍ରପଞ୍ଚର ବହୁ ରୂପରେ (ମାୟାଶକ୍ତିଦ୍ୱାରା) ପରିଣତ ହୁଅନ୍ତି । ଏହାକୁ ଧୀର ଅର୍ଥାତ୍ କେବଳ ବ୍ରହ୍ମଜ୍ଞାନୀମାନେ 'ଅହଂ ବ୍ରହ୍ମାସ୍ମି' ଏହି ଭାବରେ ଜାଣିପାରନ୍ତି ।

**ମନ୍ତ୍ରସଂଖ୍ୟା (୨୦) :-** ଯଜୁର୍ବେଦ ଅ. ୩୧/୨୦ : ଯୋ ଦେବେଭ୍ୟଃ - ଯେ ଆଦିତ୍ୟ ରୂପରେ ସମସ୍ତଙ୍କୁ ପ୍ରକାଶ କରନ୍ତି ଓ ଯେ ଦେବତାମାନଙ୍କ ପୁରୋହିତ ଅର୍ଥାତ୍ ସମସ୍ତ କାର୍ଯ୍ୟରେ ଅଗ୍ରଗାମୀ, ଯେ ସମସ୍ତ ଦେବତାମାନଙ୍କ ପୂର୍ବରୁ ଜାତ, ସେହି ଦେଦୀପ୍ୟମାନ ବ୍ରହ୍ମପୁରୁଷଙ୍କୁ ପ୍ରଣାମ ।

ରୁଚଂ ବ୍ରାହ୍ମଂ ଜନୟନ୍ତୋ ଦେବା ଅଗ୍ରେ ତଦବ୍ରୁବନ୍ । ଯସ୍ତ୍ୱୈବଂ ବ୍ରାହ୍ମଣୋ ବିଦ୍ୟାତ୍ତସ୍ୟ ଦେବା ଅସନ୍ୱଶେ ॥୨୧॥ ଶ୍ରୀଶ୍ଚ ତେ ଲକ୍ଷ୍ମୀଶ୍ଚ ପତ୍ନ୍ୟା ଅହୋରାତ୍ରେ ପାର୍ଶ୍ୱେ ନକ୍ଷତ୍ରାଣି ରୂପମଶ୍ୱିନୌ ବ୍ୟାତ୍ତମ୍ । ଇଷ୍ଣନ୍ନିଷାଣାମୁଂ ମ ଇଷାଣ ସର୍ବଲୋକଂ ମ ଇଷାଣ ॥୨୨॥

---

**ମନ୍ତ୍ରସଂଖ୍ୟା (୨୧) :-** ଯଜୁର୍ବେଦ ଅ. ୩୧/୨୧ : ରଚଂ ବ୍ରାହ୍ମଂ ଜନୟନ୍ତ - ବ୍ରହ୍ମାଙ୍କଠାରୁ ଉତ୍ପନ୍ନ ଜ୍ୟୋତିଃସ୍ୱରୂପ ପ୍ରଥମେ ବାକ୍ୟୋଚ୍ଚାରଣ କଲେ, 'ହେ ଆଦିତ୍ୟ ! ତୁମକୁ ପୂର୍ବୋକ୍ତ ପ୍ରକାରେ ଜାତ ହୋଇଥିବାର ଯେ ଜାଣିବେ ତାଙ୍କର ଦେବତାମାନେ ମଧ୍ୟ ବଶ୍ୟ ହେବେ' । ଅର୍ଥାତ୍ ଆଦିତ୍ୟୋପାସକ ସର୍ବପୂଜ୍ୟ ଅଟନ୍ତି ।
**ମନ୍ତ୍ରସଂଖ୍ୟା (୨୨) :-** ଯଜୁର୍ବେଦ ଅ. ୩୧/୨୨ : ଶ୍ରୀଶ୍ଚ ତେ - ଋଷି ବ୍ରହ୍ମସ୍ୱରୂପ ଆଦିତ୍ୟଙ୍କୁ ପ୍ରାର୍ଥନା କରି କହୁଛନ୍ତି- ହେ ପରମପୁରୁଷ ! ଶ୍ରୀ (ସମ୍ପତ୍‌ସ୍ୱରୂପା) ଓ ଲକ୍ଷ୍ମୀ (ସୌନ୍ଦର୍ଯ୍ୟସ୍ୱରୂପା) ତୁମର ପତ୍ନୀଦ୍ୱୟ ଅହୋରାତ୍ର (ଦିବସ ଓ ରାତ୍ରି) ତୁମର ପାର୍ଶ୍ୱଦସ୍ୱରୂପ, ନକ୍ଷତ୍ରମାନେ ତୁମର ସ୍ୱରୂପ (ତୁମ ତେଜରେ ସେମାନେ ତେଜୀୟାନ୍), ଅଶ୍ୱିନୀଦ୍ୱୟ (ଅଶ୍ୱିନୀକୁମାର)ତୁମର ବିସ୍ତୃତ ମୁଖ (ମତାନ୍ତରରେ ସ୍ୱର୍ଗ ଓ ପୃଥିବୀ ତୁମର ମୁଖସ୍ୱରୂପ) । ତୁମଠାରେ ଏତିକି କାମନା ଯେ ମୋର ପରଲୋକ ସୁଖପ୍ରଦ ହେଉ ଓ ସର୍ବ ଲୋକାତ୍ମକ ଅର୍ଥାତ୍ ବ୍ରହ୍ମରୂପ ମୋକ୍ଷ ମୋର ପ୍ରାପ୍ତି ହେଉ ।

—×—

# ତୃତୀୟାଧ୍ୟାୟଃ

## (ଅପ୍ରତିରଥସୂକ୍ତମ୍)

ହରିଃ ଓଁ ଆଶୁଃ ଶିଶାନୋ ବୃଷଭୋ ନ ଭୀମୋ ଘନାଘନଃ କ୍ଷୋଭଣଶ୍ଚର୍ଷଣୀନାମ୍ । ସଙ୍କ୍ରନ୍ଦନୋଽନିମିଷ ଏକବୀରଃ ଶତଗୁଁ ସେନା ଅଜୟସ୍ାକମିନ୍ଦ୍ରଃ ॥୧॥ ସଙ୍କ୍ରନ୍ଦନେନାନିମିଷେଣ ଜିଷ୍ଣୁନା ଯୁକ୍ାରେଣ ଦୁଶ୍ଚ୍ୟବନେନ ଧୃଷ୍ଣୁନା । ତଦିନ୍ଦ୍ରେଣ ଜୟତ ତସ୍ହଧ୍ୱଂ ଯୁଧୋ ନର ଇଷୁ-ହସ୍ତେନ ବୃଷ୍ଣା ॥୨॥ ସ ଇଷୁହସ୍ତୈଃ ସ ନିଷଙ୍ଗିଭିର୍ବଶୀ ସଗୁଁସ୍ରଷ୍ଟା ସ ଯୁଧ ଇନ୍ଦ୍ରୋ ଗଣେନ । ସଗୁଁସୃଷ୍ଟଜିତ୍ସୋମପା ବାହୁଶର୍ଧ୍ୟୁଗ୍ରଧନ୍ୱା ପ୍ରତିହିତାଭିରସ୍ତା ॥୩॥

---

## ତୃତୀୟ ଅଧ୍ୟାୟ

## (ଅପ୍ରତିରଥସୂକ୍ତ)

**ମନ୍ତ୍ରସଂଖ୍ୟା (୧) :-** ଯଜୁର୍ବେଦ ଅ. ୧୭/୩୩ : ଆଶୁଃ ଶିଶାନୋ - (ଏହି ଅଧ୍ୟାୟର ମନ୍ତ୍ରମାନଙ୍କରେ ଇନ୍ଦ୍ରଙ୍କ ଜୟଗାଥା ବିଷୟରେ ବର୍ଣ୍ଣନା କରାଯାଇଅଛି ।) ଶୀଘ୍ରଗାମୀ, ଅତି ତୀକ୍ଷ୍ଣ ଓ ବୃଷଭ ଭଳି ଅତ୍ୟନ୍ତ ଭୟଙ୍କର ଘାତକସ୍ୱରୂପ ତଥା ମନୁଷ୍ୟମାନଙ୍କ ପାଇଁ ଭୀତିପ୍ରଦ ହେତୁ ଚିତ୍ତଚଞ୍ଚଳତା ଉତ୍ପାଦକ ଓ କ୍ରନ୍ଦନଜନକ ଇନ୍ଦ୍ରଙ୍କ ଆୟୁଧ ବଜ୍ର, ଯାହାଦ୍ୱାରା ଶତସଂଖ୍ୟକ ଶତ୍ରୁସେନାଙ୍କୁ ଇନ୍ଦ୍ର ଏକାକୀ ପରାହତ କରିବା ପାଇଁ ସମର୍ଥ ଅଟନ୍ତି ।

**ମନ୍ତ୍ରସଂଖ୍ୟା (୨) :-** ଯଜୁର୍ବେଦ ଅ. ୧୭/୩୪ : ସଂ କ୍ରନ୍ଦନେନ - ହେ ଯୋଦ୍ଧା ମନୁଷ୍ୟମାନେ **!** ପ୍ରଚଣ୍ଡ ଶବ୍ଦକାରୀ, ଏକ ଚିତ୍ତରେ ବିଜୟକାମୀ ଅଥଚ ସହନଶୀଳ ଓ ଜୟଶୀଳ, ନିର୍ଭିକ ବାଣଧାରୀ, କାମନାପୂର୍ତ୍ତିପ୍ରଦ ଓ ଦୁର୍ଜୟ ଭାବ ସମ୍ପନ୍ନ ଇନ୍ଦ୍ରଦେବଙ୍କୁ ପ୍ରସନ୍ନ କରି ଶତ୍ରୁବଳକୁ ବିନାଶ କର ।

**ମନ୍ତ୍ରସଂଖ୍ୟା (୩) :-** ଯଜୁର୍ବେଦ ଅ. ୧୭/୩୫ : ସ ଇଷୁହସ୍ତୈଃ - ସେହି ଇନ୍ଦ୍ରଙ୍କୁ ପ୍ରଣାମ, ସେ ବଶୀ ଅର୍ଥାତ୍ ସମସ୍ତ ଶତ୍ରୁଗଣଙ୍କୁ ଯୁଦ୍ଧରେ ତୂଣୀରସ୍ଥ ବାଣଦ୍ୱାରା ପରାହତ କରି ବଶୀଭୂତ କରିଅଛନ୍ତି । ସେ ଶ୍ରେଷ୍ଠ ଧନୁର୍ଧାରୀ, ଯଜ୍ଞରେ ସୋମ ପାନକାରୀ, ବାହୁବଳୀ ଏଣୁ ଆମର ରକ୍ଷାକର୍ତ୍ତା ଅଟନ୍ତି ।

ବୃହସ୍ପତେ ପରିଦୀୟା ରଥେନ ରକ୍ଷୋହାମିତ୍ରାଁ୩ ଅପବାଧମାନଃ ।
ପ୍ରଭଞ୍ଜନ୍‌ସେନାଃ ପ୍ରମୃଣୋ ଯୁଧାଜୟନ୍ନସ୍ମାକମେଧବିତା ରଥାନାମ୍ ॥୪॥
ବଳବିଜ୍ଞାୟ ସ୍ଥବିରଃ ପ୍ରବୀରଃ ସହସ୍ୱାନ୍ ବାଜୀ ସହମାନ ଉଗ୍ରଃ ।
ଅଭିବୀରୋ ଅଭିସତ୍ୱା ସହୋଜା ଜୈତ୍ରମିନ୍ଦ୍ର ରଥମାତିଷ୍ଠ ଗୋବିତ୍ ॥୫॥
ଗୋତ୍ରଭିଦଂ ଗୋବିଦଂ ବଜ୍ରବାହୁଂ ଜୟନ୍ତମଜ୍ମ ପ୍ରମୃଣନ୍ତମୋଜସା । ଇମଗୁଁ ସଜାତା ଅନୁବୀରୟଧ୍ୱମିନ୍ଦ୍ରଗୁଁ ସଖାୟୋ ଅନୁ ସଗୁଁରଭଧ୍ୱମ୍ ॥୬॥ ଅଭି ଗୋତ୍ରାଣି ସହସା ଗାହମାନୋଽଦୟୋ ବୀରଃ ଶତମନ୍ୟୁରିନ୍ଦ୍ରଃ । ଦୁଶ୍ଚ୍ୟବନଃ ପୃତନାଷାଡ୍‌ୟୁଧ୍ୟୋଽସ୍ମାକଗୁଁ ସେନା ଅବତୁ ପ୍ରଯୁସ୍ତୁ ॥୭॥

---

**ମନ୍ତ୍ରସଂଖ୍ୟା (୪) :-** ଯଜୁର୍ବେଦ ଅ. ୧୭/୩୬ : ବୃହସ୍ପତେ - ହେ ବୃହସ୍ପତିସ୍ୱରୂପ ଇନ୍ଦ୍ର ! (ମତାନ୍ତରରେ ଇନ୍ଦ୍ରାଦି ଦେବଗଣଙ୍କ ପୁରୋହିତ ରୂପରେ ବୃହସ୍ପତିଙ୍କୁ ସ୍ତୁତି କରାଯାଇଅଛି) ତୁମେ ରଥରେ ସର୍ବତ୍ର ଭ୍ରମଣ କର । ତୁମେ ରାକ୍ଷସମାନଙ୍କ ହତ୍ୟାକାରୀ, ହିଂସକ ଶତ୍ରୁସେନାଙ୍କ ପ୍ରପୀଡକ ଅଟ ।

**ମନ୍ତ୍ରସଂଖ୍ୟା (୫) :-** ଯଜୁର୍ବେଦ ଅ. ୧୭/୩୭ : ବଳବିଜ୍ଞାୟଃ - ସମସ୍ତ ଶତ୍ରୁ-ବଳକୁ ଜାଣିପାରୁଥିବା ଚିରନ୍ତନ ସର୍ବାନୁଶାସକ, ପ୍ରଚଣ୍ଡ ପରାକ୍ରମୀ ବୀର, ଅନେକ ବୀରଗଣ ବେଷ୍ଟିତ ଯୁଦ୍ଧରେ ଅତ୍ୟନ୍ତ ପାରଙ୍ଗମ ଓ ଶତ୍ରୁ ସମ୍ମୁଖରେ କ୍ରୂର ଅଥଚ ସ୍ତୁତିଙ୍କ ତଥା ସର୍ବପ୍ରାଣୀ ସଂରକ୍ଷକ ହେ ଇନ୍ଦ୍ର ! ତୁମେ ଜୟଶୀଳ ରଥରେ ଆରୋହଣ କର ।

**ମନ୍ତ୍ରସଂଖ୍ୟା (୬) :-** ଯଜୁର୍ବେଦ ଅ. ୧୭/୩୮ : ଗୋତ୍ରଭିଦଂ - ହେ ସମାନ ଜନ୍ମା ବନ୍ଧୁ ଦେବଗଣ ! ଏହି ପରାକ୍ରମୀ ଇନ୍ଦ୍ରଙ୍କୁ ଅନୁଗମନ କର ଓ ପ୍ରୋତ୍ସାହିତ କର, (ଅଥବା ଗୋବିଦଂ - ଅର୍ଥାତ୍ ଶାସ୍ତ୍ରଜ୍ଞ ବଜ୍ରପାଣି ଇନ୍ଦ୍ରଙ୍କୁ, ପକ୍ଷାନ୍ତରରେ ଗୋତ୍ର ଅର୍ଥାତ୍ ମେଘକୁ ଭେଦ କରିପାରୁଥିବା ଇନ୍ଦ୍ରଙ୍କୁ ପ୍ରୋତ୍ସାହିତ କର) ଯିଏ କି ଅଜ୍ମ (ଯୁଦ୍ଧର ନାମ) ସଂଗ୍ରାମରେ ନିଜର ବଳ ଓ ପରାକ୍ରମଦ୍ୱାରା ଅସୁର ସୈନ୍ୟଙ୍କୁ ବିନାଶ କରନ୍ତି ।

**ମନ୍ତ୍ରସଂଖ୍ୟା (୭) :-** ଯଜୁର୍ବେଦ ଅ. ୧୭/୩୯ : ଅଭିଗୋତ୍ରାଣି - ଗୋତ୍ର ଅର୍ଥାତ୍ ଅସୁରକୁଳକୁ (ଅଥବା ମେଘସମୂହକୁ) ନିଜ ପରାକ୍ରମଦ୍ୱାରା ଆନ୍ଦୋଳିତ

ଇନ୍ଦ୍ର ଆସାଂ ନେତା ବୃହସ୍ପତିର୍ଦକ୍ଷିଣା ଯଜ୍ଞଃ ପୁର ଏତୁ ସୋମଃ ।
ଦେବସେନାନାମଭିଭଞ୍ଜତୀନାଂ ଜୟନ୍ତୀନାଂ ମରୁତୋ ଯନ୍ତ୍ୱଗ୍ରମ୍ ॥୮॥
ଇନ୍ଦ୍ରସ୍ୟ ବୃଷ୍ଣୋ ବରୁଣସ୍ୟ ରାଜ୍ଞ ଆଦିତ୍ୟାନାଂ ମରୁତାଗୁଁ ଶର୍ଧ ଉଗ୍ରମ୍ ।
ମହାମନସାଂ ଭୁବନଚ୍ୟବାନାଂ ଘୋଷୋ ଦେବାନାଂ ଜୟତାମୁଦସ୍ଥାତ୍ ॥୯॥
ଉଦ୍ଧର୍ଷୟ ମଘବନ୍ନାୟୁଧାନ୍ୟୁତ୍ସତ୍ୱନାଂ ମାମକାନାଂ ମନାଗୁଁସି । ଉଦ୍‌ବୃତ୍ରହନ୍
ବାଜିନାଂ ବାଜିନାନ୍ୟୁଦ୍ରଥାନାଂ ଜୟତାଂ ଯନ୍ତୁ ଘୋଷାଃ ॥୧୦॥ ଅସ୍ମାକମିନ୍ଦ୍ରଃ
ସମୃତେଷୁ ଧ୍ୱଜେଷ୍ୱସ୍ମାକଂ ଯା ଇଷବସ୍ତା ଜୟନ୍ତୁ । ଅସ୍ମାକଂ ବୀରା ଉତ୍ତରେ
ଭବନ୍ତ୍ୱସ୍ମାଁ ଉ ଦେବା ଅବତା ହବେଷୁ ॥୧୧॥

---

କରୁଥିବା ନିର୍ଦ୍ଦୟ, ବୀର, ଶତ ଯଜ୍ଞସମ୍ପନ୍ନକାରୀ ଅଥବା ବହୁ କ୍ରୋଧୀ, ଅପ୍ରତିଦ୍ୱନ୍ଦ୍ୱୀ ଯୋଦ୍ଧା, ଅଦମ୍ୟ ବଳବାନ୍ ଇନ୍ଦ୍ରଦେବ ଯୁଦ୍ଧରେ ଆମର ସୈନ୍ୟବଳକୁ ରକ୍ଷା କରନ୍ତୁ ।

**ମନ୍ତ୍ରସଂଖ୍ୟା (୮) :-** ଯଜୁର୍ବେଦ ଅ. ୧୭/୪୦ : ଇନ୍ଦ୍ର ଆସାଂ ନେତା - ଶତ୍ରୁଙ୍କର ଦମନକ୍ଷମ ବିଜୟୀ ଇନ୍ଦ୍ର ଓ ବୃହସ୍ପତି ଦେବସେନାଙ୍କ ନେତା ହୁଅନ୍ତୁ । ଯଜ୍ଞର ଅଧିଷ୍ଠାତା ଯଜ୍ଞପୁରୁଷ ବିଷ୍ଣୁ ଦକ୍ଷିଣ ଦିଗକୁ ରକ୍ଷା କରନ୍ତୁ । ସୋମ (ଚନ୍ଦ୍ର) ଦେବତା ଅଗ୍ରଭାଗକୁ ରକ୍ଷା କରନ୍ତୁ । ଶତ୍ରୁଗଣଙ୍କ ସେନାକୁ ଖଣ୍ଡ ବିଖଣ୍ଡ କରିପାରୁଥିବା ଦେବସେନାଙ୍କ ଅଗ୍ରଭାଗକୁ ମରୁଦ୍‌ଗଣୀୟ ଦେବତାମାନେ ଯାଆନ୍ତୁ ।

**ମନ୍ତ୍ରସଂଖ୍ୟା (୯) :-** ଯଜୁର୍ବେଦ ଅ. ୧୭/୪୧ : ଇନ୍ଦ୍ରସ୍ୟ ବୃଷ୍ଣୋ - କାମ୍ୟଫଳପ୍ରଦାତା ଇନ୍ଦ୍ର, ରାଜା ବରୁଣ, ଆଦିତ୍ୟଗଣ ଓ ମରୁଦ୍‌ଗଣଙ୍କ ଉତ୍କୃଷ୍ଟ ବଳ ଏବଂ ଉଚ୍ଚମନା ତଥା ଯୁଦ୍ଧରେ ସ୍ଥିରଚିତ୍ତ ସମ୍ପନ୍ନ ଦେବଗଣ ସମସ୍ତ ଭୁବନକୁ ଉତ୍ତୁଙ୍ଗ ବିଜୟଘୋଷଦ୍ୱାରା ପ୍ରକମ୍ପିତ କରନ୍ତୁ ।

**ମନ୍ତ୍ରସଂଖ୍ୟା (୧୦) :-** ଯଜୁର୍ବେଦ ଅ. ୧୭/୪୨ : ଉଦ୍ଧର୍ଷୟ ମଘବନ୍ - ହେ ଧନବାନ୍ ଇନ୍ଦ୍ର ! ଆୟୁଧଗୁଡ଼ିକୁ ହର୍ଷମୁଖରିତ (ଅଧିକ ଶାଣିତ) କର, ମୋର ଏବଂ ସମସ୍ତ ମନୁଷ୍ୟମାନଙ୍କର ମନକୁ ଉତ୍‌ଫୁଲ୍ଲିତ କର । ହେ ବୃତ୍ରହା (ଇନ୍ଦ୍ର) ! ଅଶ୍ୱମାନଙ୍କୁ ଶୀଘ୍ରଗାମୀ କର । ବିଜୟଶୀଳ ରଥଗୁଡ଼ିକ ଶବ୍ଦମୁଖରିତ ହେଉ ।

**ମନ୍ତ୍ରସଂଖ୍ୟା (୧୧) :-** ଯଜୁର୍ବେଦ ଅ. ୧୭/୪୩ : ଅସ୍ମାକମିନ୍ଦ୍ର - ଶତ୍ରୁମାନଙ୍କ

ଅମୀଷାଂ ଚିତ୍ତଂ ପ୍ରତିଲୋଭୟନ୍ତୀ ଗୃହାଣାଙ୍ଗାନ୍ୟପ୍ୱେ ପରେହି । ଅଭି ପ୍ରେହି ନିର୍ଦ୍ଦହ ହୃତ୍ସୁ ଶୋକୈରନ୍ଧେନାମିତ୍ରାସ୍ତମସା ସଚନ୍ତାମ୍ ॥୧୨॥ ଅବସୃଷ୍ଟା ପରାପତ ଶରବ୍ୟେ ବ୍ରହ୍ମସଗୁଁଶିତେ । ଗଚ୍ଛାମିତ୍ରାନ୍ ପ୍ରପଦ୍ୟସ୍ୱ ମାମୀଷାଂ କଞ୍ଚନୋଚ୍ଛିଷଃ ॥୧୩॥ ପ୍ରେତା ଜୟତା ନର ଇନ୍ଦ୍ରୋ ବଃ ଶର୍ମ ଯଚ୍ଛତୁ । ଉଗ୍ରା ବଃ ସନ୍ତୁ ବାହବୋଽନାଧୃଷ୍ୟା ଯଥାସଥ ॥୧୪॥

---

ଉଡ୍ଡୀୟମାନ ବିଜୟଧ୍ୱଜରୁ ଆମକୁ ଓ ଆମ ଧ୍ୱଜକୁ ରକ୍ଷା କରନ୍ତୁ । ଇନ୍ଦ୍ରଙ୍କ କୃପା ବଳରେ ଆମ୍ଭ ପ୍ରେରିତ ବାଣଗୁଡ଼ିକ ଶତ୍ରୁସଂହାର ପୂର୍ବକ ବିଜୟୀ ହୁଅନ୍ତୁ । ଆମ୍ଭର ବୀର ସୈନ୍ୟମାନେ ଶତ୍ରୁମାନଙ୍କଠାରୁ ଉତ୍କୃଷ୍ଟ ହୁଅନ୍ତୁ । ହେ ଦେବଗଣ ! ଏହିପରି ଆମ୍ଭମାନଙ୍କଦ୍ୱାରା ପ୍ରଦତ୍ତ ହବନକୁ ସ୍ୱୀକାର କରି ଆମ୍ଭମାନଙ୍କୁ ସର୍ବଦା ରକ୍ଷା କରନ୍ତୁ ।

**ମନ୍ତ୍ରସଂଖ୍ୟା (୧୨) :-** ଯଜୁର୍ବେଦ ଅ. ୧୭/୪୪ : ଅମୀଷାଂ ଚିତ୍ତଂ- ବ୍ୟାଧି ଓ ଭୟକୁ ଦୂର କରୁଥିବା ହେ ଦେବତାମାନେ ! ଇନ୍ଦ୍ର ବିରୋଧୀ ଶତ୍ରୁମାନଙ୍କ ଚିତ୍ତକୁ ମୋହଗ୍ରସ୍ତ କରି ସେମାନଙ୍କ ଅଙ୍ଗ (ସୈନ୍ୟ)କୁ ବାରମ୍ବାର ପରାଭୂତ କରନ୍ତୁ । ସେମାନଙ୍କର (ଶତ୍ରୁସୈନ୍ୟଙ୍କ)ହୃଦୟରେ ଧନ ଓ ପୁତ୍ର ନାଶ ନିମିତ୍ତ ଶୋକ ଉଦ୍ରେକ ହେଉ, ଗାଢ଼ ଅନ୍ଧକାର (ଦୁଃଖ)ରେ ସେମାନେ ମ୍ରିୟମାଣ ହୁଅନ୍ତୁ ।

**ମନ୍ତ୍ରସଂଖ୍ୟା (୧୩) :-** ଯଜୁର୍ବେଦ ଅ. ୧୭/୪୫ : ଅବସୃଷ୍ଟା ପରାପତ- ବ୍ରହ୍ମାଙ୍କ ମନ୍ତ୍ରଦ୍ୱାରା ତୀକ୍ଷ୍ଣ କରାଯାଇଥିବା ହେ ଶରବ୍ୟ (ଶରମୟ ବାଣ)! ତୁମେ ଆମଦ୍ୱାରା ପ୍ରେଷିତ ହୋଇ ସମସ୍ତ ଶତ୍ରୁମାନଙ୍କ ଉପରେ ନିପତିତ ହୁଅ ଓ ସେମାନଙ୍କ ଶରୀରରେ ପ୍ରବେଶ କର ଯେପରି ତାଙ୍କ ମଧ୍ୟରୁ କେହି ଜଣେ ହେଲେ ବି ରକ୍ଷା ପାଇପାରିବ ନାହିଁ ।

**ମନ୍ତ୍ରସଂଖ୍ୟା (୧୪) :-** ଯଜୁର୍ବେଦ ଅ. ୧୭/୪୬ : ପ୍ରେତା ଜୟତା - ହେ ଆମର ଯୋଦ୍ଧାମାନେ ! ତୁମ୍ଭେମାନେ ଶତ୍ରୁସୈନ୍ୟ ଆଡକୁ ଯାଅ ଏବଂ ବିଜୟଲାଭ କରି ଆସ । ଇନ୍ଦ୍ର ତୁମ୍ଭମାନଙ୍କୁ ବିଜୟଲାଭର ସୁଖ ପ୍ରଦାନ କରନ୍ତୁ । ଏହା ସହିତ ତୁମ୍ଭେମାନେ କାହାଦ୍ୱାରା ତିରସ୍କୃତ ନ ହୋଇ ନିଜର ବାହୁଦ୍ୱୟକୁ ଉଗ୍ର ରୂପରେ ଧାରଣ କର ।

ଅସୌ ଯା ସେନା ମରୁତଃ ପରେଷାମଭ୍ୟୈତି ନ ଓଜସା ସ୍ପର୍ଧମାନା । ତାଂ ଗୂହତ ତମସାପବ୍ରତେନ ଯଥାମୀ ଅନ୍ୟୋ ଅନ୍ୟଂ ନ ଜାନନ୍ ॥୧୫॥ ଯତ୍ର ବାଣାଃ ସମ୍ପତନ୍ତି କୁମାରା ବିଶିଖା ଇବ । ତନ୍ନ ଇନ୍ଦ୍ରୋ ବୃହସ୍ପତିରଦିତିଃ ଶର୍ମ ଯଚ୍ଛତୁ ବିଶ୍ୱାହା ଶର୍ମ ଯଚ୍ଛତୁ ॥୧୬॥ ମର୍ମାଣି ତେ ବର୍ମଣା ଛାଦୟାମି ସୋମସ୍ତ୍ୱା ରାଜାମୃତେନାନୁବସ୍ତାମ୍ । ଉରୋର୍ବରୀୟୋ ବରୁଣସ୍ତେ କୃଣୋତୁ ଜୟନ୍ତଂ ତ୍ୱାନୁ ଦେବା ମଦନ୍ତୁ ॥୧୭॥

---

**ମନ୍ତ୍ରସଂଖ୍ୟା (୧୫) :-** ଯଜୁର୍ବେଦ ଅ. ୧୭/୪୭ : ଅସୌ ଯା ସେନା - ହେ ମରୁତ୍ ଦେବତା ! ଯେଉଁ ପ୍ରସିଦ୍ଧ ଶତ୍ରୁଗଣଙ୍କ ସେନା ବଳ ଓ ସ୍ପର୍ଦ୍ଧା ସହିତ ଆମ ଆଡକୁ ମାଡ଼ି ଆସୁଅଛନ୍ତି ସେମାନଙ୍କୁ ଅନ୍ଧକାରାଚ୍ଛନ୍ନ (ମୋହଗ୍ରସ୍ତ) କରନ୍ତୁ, ଯାହ ଫଳରେ ସେମାନେ ପରସ୍ପରକୁ ନ ଜାଣିପାରି କର୍ମରୁ ବିରତ ହେବା ପାଇଁ ବାଧ ହେବେ ।

**ମନ୍ତ୍ରସଂଖ୍ୟା (୧୬) :-** ଯଜୁର୍ବେଦ ଅ. ୧୭/୪୮ : ଯତ୍ର ବାଣାଃ - ମୁଣ୍ଡିତ ମସ୍ତକରେ ଚପଳ ବାଳକମାନେ ଯେପରି ଇତସ୍ତତଃ ଭ୍ରମଣ କରନ୍ତି (ଅଥବା ବାଳକମାନଙ୍କ ମୁଣ୍ଡରେ ଯେପରି ଘନ କେଶଗୁଡ଼ିକ ବିକୀର୍ଣ୍ଣ ଭାବରେ ଇତସ୍ତତଃ ରହିଥାଆନ୍ତି), ଠିକ୍ ସେହିପରି ଯୁଦ୍ଧରେ ଶତ୍ରୁପକ୍ଷର ସୈନ୍ୟଗୁଡ଼ିକ ଇତସ୍ତତଃ ଭାବରେ (ଲକ୍ଷ୍ୟଭ୍ରଷ୍ଟ ହୋଇ) ପତିତ ହୁଅନ୍ତୁ, ଯାହା ଫଳରେ ଇନ୍ଦ୍ର, ବୃହସ୍ପତି ଓ ଇନ୍ଦ୍ରଙ୍କ ମାତା ଅଦିତି ସର୍ବଦା ଆମକୁ ସୁଖ ପ୍ରଦାନ କରିବେ ।

**ମନ୍ତ୍ରସଂଖ୍ୟା (୧୭) :-** ଯଜୁର୍ବେଦ ଅ. ୧୭/୪୯ : ମର୍ମାଣି ତେ - (ମହାବ୍ରତ ଯଜ୍ଞରେ ଅଧ୍ୱର୍ଯ୍ୟୁ କ୍ଷତ୍ରିୟ ଯଜମାନଙ୍କୁ ପରିଧାନ ନିମିତ୍ତ କବଚ ପ୍ରଦାନ ସମୟରେ କହୁଅଛନ୍ତି) ହେ ବୀର ଯଜମାନ ! ତୁମର ମର୍ମ (ଶରୀରର ପ୍ରମୁଖ ସ୍ଥାନ)ଗୁଡ଼ିକ ବର୍ମ (କବଚ) ଦ୍ୱାରା ଆଚ୍ଛାଦନ କରୁଅଛି । ରାଜା ସୋମ ମରଣ ନିବାରକ ଭାବରେ କବଚ ସ୍ୱରୂପ ହୁଅନ୍ତୁ । ବରୁଣ ତୁମର ଉରୁଦେଶକୁ (ଜଙ୍ଘକୁ) ଅଧିକ ଶକ୍ତିଶାଳୀ କରନ୍ତୁ । ଦେବତାମାନେ ବିଜୟପ୍ରାପ୍ତି ନିମିତ୍ତ ତୁମ୍ଭଙ୍କୁ ଅଧିକ ଉତ୍ସାହିତ କରନ୍ତୁ ।

—x—

# ଚତୁର୍ଥାଧ୍ୟାୟଃ

## (ବିଭ୍ରାଟ୍‌ସୂକ୍ତମ୍ / ସୌରସୂକ୍ତମ୍)

ହରିଃ ଓଁ ବିଭ୍ରାଡ୍ ବୃହତ୍‌ପିବତୁ ସୋମ୍ୟଂ ମଧ୍ୱାୟୁର୍ଦଧଦ୍‌ଯଜ୍ଞପତା ବବିହ୍ରୁତମ୍ । ବାତଜୂତୋ ଯୋ ଅଭିରକ୍ଷତି ତ୍ମନା ପ୍ରଜାଃ ପୁପୋଷ ପୁରୁଧା ବି ରାଜତି ॥୧॥ ଉଦୁ ତ୍ୟଂ ଜାତବେଦସଂ ଦେବଂ ବହନ୍ତି କେତବଃ । ଦୃଶେ ବିଶ୍ୱାୟ ସୂର୍ଯମ୍ ॥୨॥ ଯେନା ପାବକ ଚକ୍ଷସା ଭୁରଣ୍ୟନ୍ତଂ ଜନାଁ୨ ଅନୁ । ତ୍ୱଂ ବରୁଣ ପଶ୍ୟସି ॥୩॥ ଦୈବ୍ୟା ଅଧ୍ୱର୍ଯୂ ଆଗତଗୁଁ ରଥେନ ସୂର୍ଯ୍ୟତ୍ୱଚା । ମଧ୍ୱା ଯଜ୍ଞଗୁଁ ସମଞ୍ଜାଥେ । ତଂ ପ୍ରତ୍ନଥାୟଂ ବେନଶ୍ଚୋଦୟଚ୍ଚିତ୍ରଂ ଦେବାନାମ୍ ॥୪॥

---

# ଚତୁର୍ଥ ଅଧ୍ୟାୟ

## (ବିଭ୍ରାଡ୍ ସୂକ୍ତ / ସୌରସୂକ୍ତ)

**ମନ୍ତ୍ରସଂଖ୍ୟା (୧) :-** ଯଜୁର୍ବେଦ ଅ. ୩୩/୩୦ : ବିଭ୍ରାଡ୍ ବୃହତ୍ - ଦୀପ୍ତିମାନ୍ ସୂର୍ଯ୍ୟ ପ୍ରଜାମାନଙ୍କୁ ଅଖଣ୍ଡ ଆୟୁ ପ୍ରଦାନ କରି ରକ୍ଷା କରିବା ସହିତ ପାଳନ ଓ ପୋଷଣ ମଧ କରୁଅଛନ୍ତି । ସେ ମଧୁର ସ୍ୱାଦବିଶିଷ୍ଟ ସୋମରୂପକ ହବିଃ (ଯଜ୍ଞୀୟ ଦ୍ରବ୍ୟ)କୁ ପାନ କରନ୍ତୁ । ସେ ବାୟୁଯୁକ୍ତ ହୋଇ ସୂର୍ଯ୍ୟମଣ୍ଡଳରେ ଭ୍ରମଣ କରି ବିବିଧ ରୂପରେ ଶୋଭାପାଉଅଛନ୍ତି ।

**ମନ୍ତ୍ରସଂଖ୍ୟା (୨) :-** ଯଜୁର୍ବେଦ ଅ. ୩୩/୩୧ : ଉଦୁତ୍ୟଂ ଜାତବେଦସଂ- ପ୍ରଜାମାନଙ୍କ ବିଷୟରେ ସମସ୍ତ କଥାକୁ ଜାଣିପାରୁଥିବା ହେତୁ ଜାତପ୍ରଜ୍ଞ ସୂର୍ଯ୍ୟଦେବତା ଦୀପ୍ତିମାନ୍ କିରଣ ସ୍ୱରୂପ ସମସ୍ତ ଜ୍ଞାନର ଆକର ଓ ବିଶ୍ୱଦ୍ରଷ୍ଟା ଅଟନ୍ତି ।

**ମନ୍ତ୍ରସଂଖ୍ୟା (୩) :-** ଯଜୁର୍ବେଦ ଅ. ୩୩/୩୨ : ଯେନା ପାବକ - ହେ ପାଳନକର୍ତ୍ତା ବରୁଣସ୍ୱରୂପ ସୂର୍ଯ୍ୟଦେବ ! ତୁମେ ସ୍ୱର୍ଲୋକକୁ ଗମନ କଲାବେଳେ ଯଜମାନଙ୍କୁ ଭୁରଣ୍ୟୁ (କ୍ଷିପ୍ର ଗତିରେ ତଳକୁ ଆସିପାରୁଥିବା ପକ୍ଷୀବିଶେଷ) ପକ୍ଷୀଭଳି ଦେଖୁଅଛ ।

**ମନ୍ତ୍ରସଂଖ୍ୟା (୪) :-** ଯଜୁର୍ବେଦ ଅ. ୩୩/୩୩ : ଦୈବ୍ୟାବଧ୍ୱର୍ଯୂ - ହେ ଦୈବୀ ଓ ଅଧ୍ୱର୍ଯୁ ସଂଜ୍ଞକ ଅଶ୍ୱିନିଦ୍ୱୟ ! ତୁମ୍ଭେ ସୂର୍ଯ୍ୟଙ୍କ ଭଳି କାନ୍ତିଯୁକ୍ତ ରଥରେ ଆସି

ତଂ ପ୍ରତ୍ନଥା ପୂର୍ବଥା ବିଶ୍ୱଥେମଥା ଜ୍ୟେଷ୍ଠତାତିଂ ବର୍ହିଷଦଗୁଁ ସ୍ୱର୍ବିଦମ୍ ॥ ପ୍ରତୀଚୀନଂ ବୃଜନଂ ଦୋହସେ ଧୁନିମାଶୁଂ ଜୟନ୍ତମନୁ ଯାସୁ ବର୍ଦ୍ଧସେ ॥୫॥ ଅୟଂ ବେନଶ୍ଚୋଦୟତ୍ ପୃଶ୍ନିଗର୍ଭା ଜ୍ୟୋତିର୍ଜରାୟୂ ରଜସୋ ବିମାନେ ॥ ଇମମପାଗୁଁ ସଙ୍ଗମେ ସୂର୍ଯ୍ୟସ୍ୟ ଶିଶୁଂ ନ ବିପ୍ରା ମତିଭୀ ରିହନ୍ତି ॥୬॥ ଚିତ୍ରଂ ଦେବାନାମୁଦଗାଦନୀକଂ ଚକ୍ଷୁର୍ମିତ୍ରସ୍ୟ ବରୁଣସ୍ୟାଗ୍ନେଃ । ଆ ପ୍ରା ଦ୍ୟାବାପୃଥିବୀ ଅନ୍ତରିକ୍ଷଗୁଁ ସୂର୍ଯ୍ୟ ଆତ୍ମା ଜଗତସ୍ତସ୍ଥୁଷଶ୍ଚ ॥୭॥

---

ମଧୁରସ୍ୱଭାବ ବିଶିଷ୍ଟ ହବିଃ ଦ୍ୱାରା ସୋମ, ପୁରୋଡାଶ(ଯଜ୍ଞୀୟ ପିଠା), ଦଧି ଇତ୍ୟାଦିଦ୍ୱାରା ଯଜ୍ଞକୁ ସମ୍ପାଦନ କର ।

**ମନ୍ତ୍ରସଂଖ୍ୟା (୫) :-** ଯଜୁର୍ବେଦ ଅ. ୭/୧୨ : ତଂ ପ୍ରତ୍ନଥା - ହେ ଦେବଶ୍ରେଷ୍ଠ ଇନ୍ଦ୍ର **!** ତୁମେ ଯଜ୍ଞମାନଙ୍କରେ ବାରମ୍ବାର ସୋମପାନଦ୍ୱାରା ଅଭିବୃଦ୍ଧି ପ୍ରାପ୍ତ ହୋଇ ବଳବତ୍ ଯଜ୍ଞ ଫଳକୁ ପ୍ରଦାନ କରୁଅଛ । ଭୃଗୁ ଇତ୍ୟାଦି ଚିରନ୍ତନ ଋଷିମାନଙ୍କର ତଥା ସମସ୍ତ ଋଷିପୁତ୍ରମାନଙ୍କର ଏବଂ ଇଦାନୀନ୍ତନ ଯଜମାନଙ୍କର ଯଜ୍ଞଫଳ ପ୍ରଦାତା, ଏଣୁ ତୁମେ ଶ୍ରେଷ୍ଠ ଓ ସ୍ତୁତିଯୋଗ୍ୟ । ତୁମେ ଯଜ୍ଞମାନଙ୍କରେ ଅଧିଷ୍ଠାନ କରି ସ୍ୱର୍ଗଲୋକକୁ ଜାଣିବା ସହିତ ଜୟଶୀଳ ଶତ୍ରୁମାନଙ୍କର ହୃତ୍କମ୍ପନ ସୃଷ୍ଟି କରୁଅଛ ।

**ମନ୍ତ୍ରସଂଖ୍ୟା (୬) :-** ଯଜୁର୍ବେଦ ଅ. ୭/୧୬ : ଅୟଂ ବେନଶ୍ଚୋଦୟତ୍ - ଏହି କମନୀୟ ଚନ୍ଦ୍ରମା ଗ୍ରୀଷ୍ମକାଳର ଶେଷଭାଗରେ ସ୍ୱର୍ଗଲୋକସ୍ଥିତ ରବିଙ୍କ ସହାୟତାରେ ଜଳ ସୃଷ୍ଟି କରି ବର୍ଷା ପ୍ରଦାନ କରନ୍ତି । ସେହି ଚନ୍ଦ୍ର ସ୍ତୋତ୍ରାଦିଦ୍ୱାରା ସୋମଲତା ରୂପରେ ପୂଜିତ ହୁଅନ୍ତି ଓ ବ୍ରାହ୍ମଣମାନଙ୍କଦ୍ୱାରା ଶିଶୁ ଭଳି ପରିପାଳିତ ହୁଅନ୍ତି ।

**ମନ୍ତ୍ରସଂଖ୍ୟା (୭) :-** ଯଜୁର୍ବେଦ ଅ. ୭/୪୨ : ଚିତ୍ରଂ ଦେବାନାମୁଦଗାଦନିକଂ- ସୂର୍ଯ୍ୟ ଆଶ୍ଚର୍ଯ୍ୟ ଭାବରେ ନିଜ କିରଣସମୂହଦ୍ୱାରା ସ୍ୱର୍ଲୋକକୁ ଉଦ୍ଭାସିତ କରି ଉଦୟ ହେଉଅଛନ୍ତି । ମିତ୍ର, ବରୁଣ, ଅଗ୍ନିଙ୍କ ଚକ୍ଷୁ ସଦୃଶ ସେ ସମଗ୍ର ସ୍ୱର୍ଗଲୋକ, ଭୂଲୋକ ଓ ଆକାଶକୁ ନିଜ ତେଜଦ୍ୱାରା ପ୍ରକାଶ କରିବା ସହିତ ଜଗତର ଜଙ୍ଗମ ସ୍ଥାବରାଦି ସମସ୍ତଙ୍କ ପ୍ରାଣଦାତା ଓ ଆତ୍ମସ୍ୱରୂପ ଅଟନ୍ତି ।

ଆନ ଇଡ଼ାଭିର୍ବିଦଥେ ସୁଶସ୍ତି ବିଶ୍ୱାନରଃ ସବିତା ଦେବ ଏତୁ । ଅପି ଯଥା ଯୁବାନୋ ମତ୍ସଥା ନୋ ବିଶ୍ୱଂ ଜଗଦଭିପିତ୍ୱେ ମନୀଷା ॥୮॥ ଯଦଦ୍ୟ କଚ୍ଚ ବୃତ୍ରହନ୍ନୁଦଗା ଅଭି ସୂର୍ଯ ॥ ସର୍ବଂ ତଦିନ୍ଦ୍ର ତେ ବଶେ ॥୯॥ ତରଣିର୍ବିଶ୍ୱଦର୍ଶତୋ ଜ୍ୟୋତିଷ୍କୃଦସି ସୂର୍ଯ । ବିଶ୍ୱମା ଭାସି ରୋଚନମ୍ ॥୧୦॥ ତତ୍ସୂର୍ଯସ୍ୟ ଦେବତ୍ୱଂ ତନ୍ମହିତ୍ୱଂ ମଧ୍ୟା କର୍ତୋର୍ବିତତଗୁଁ ସଂଜଭାର । ଯଦେଦଯୁକ୍ତ ହରିତଃ ସଧସ୍ଥାଦାଦ୍ରାତ୍ରୀ ବାସସ୍ତନୁତେ ସିମସ୍ମୈ ॥୧୧॥

---

**ମନ୍ତ୍ରସଂଖ୍ୟା (୮) :-** ଯଜୁର୍ବେଦ ଅ. ୩୩/୩୪ : ଆ ନ ଇଡାଭିଃ - ବିଶ୍ୱର ସମସ୍ତ ପ୍ରାଣୀଙ୍କ ହିତକାରୀ ସବିତା (ସୂର୍ଯ୍ୟ) ଦେବତା ଆମ୍ଭର ସ୍ତୁତିଦ୍ୱାରା ସନ୍ତୁଷ୍ଟ ହୋଇ ଯଜ୍ଞଗୃହକୁ ଆସନ୍ତୁ । ସମସ୍ତେ ପ୍ରଶଂସନୀୟ ଇଡା (ଯଜ୍ଞୀୟ ଦ୍ରବ୍ୟବିଶେଷ) ଭକ୍ଷଣ କରନ୍ତୁ । ହେ ଜରାରହିତ ଅମର ଦେବତାମାନେ ! ଆସିବା ସମୟରେ ଯେଉଁଭଳି ତୁମ୍ଭେମାନେ ତୃପ୍ତ ଓ ଆନନ୍ଦିତ ଥିଲ, ଠିକ୍ ସେହିଭଳି ଆମ୍ଭର ପୁତ୍ର, ପଶୁ ଇତ୍ୟାଦିଙ୍କୁ ମନ ଓ ବୁଦ୍ଧିରେ ତୃପ୍ତି ପ୍ରଦାନ କର ।

**ମନ୍ତ୍ରସଂଖ୍ୟା (୯) :-** ଯଜୁର୍ବେଦ ଅ. ୩୩/୩୫ : ଯଦଦ୍ୟ କଚ୍ଚ - ହେ ବୃତ୍ରହା (ବୃତ୍ରମନ୍ଧକାରଂ ଶାର୍ବରଂ ହନ୍ତୀତି ବୃତ୍ରହା ରବିଃ ତମୋନାଶକଃ) ସୂର୍ଯ୍ୟଦେବ! ହେ ଐଶ୍ୱର୍ଯ୍ୟଯୁକ୍ତ ଇନ୍ଦ୍ର ! ତୁମେ ଆଜି ଯେଉଁ ଆଡ଼କୁ ଯାଉଅଛ ଅଥବା ଯେଉଁ ପ୍ରାଣୀସମୂହଙ୍କୁ ତୁମେ ପ୍ରକାଶ କରୁଅଛ, ତାହା ସବୁ ତୁମ୍ଭର ବଶ ଅଟନ୍ତି ।

**ମନ୍ତ୍ରସଂଖ୍ୟା (୧୦) :-** ଯଜୁର୍ବେଦ ଅ. ୩୩/୩୬ : ତରଣିର୍ବିଶ୍ୱଦର୍ଶତୋ - ହେ ସୂର୍ଯ୍ୟ ! ତୁମେ ସମସ୍ତ ତେଜର କର୍ତ୍ତା । ଅଗ୍ନି, ବିଦ୍ୟୁତ୍, ନକ୍ଷତ୍ର, ଚନ୍ଦ୍ର, ଗ୍ରହ, ତାରକା ସମସ୍ତେ ତୁମ ତେଜରେ ତେଜୀୟାନ୍ । ଆକାଶ ମାର୍ଗରେ ତୁମେ ଅତିକ୍ରମଣ କରୁଥିବାରୁ ତୁମର ଦୀପ୍ତିଦ୍ୱାରା ବିଶ୍ୱ ଦୀପ୍ତିମାନ୍ ରୂପରେ ଦର୍ଶନୀୟ ଅଟେ ।

**ମନ୍ତ୍ରସଂଖ୍ୟା (୧୧) :-** ଯଜୁର୍ବେଦ ଅ. ୩୩/୩୭ : ତତ୍ସୂର୍ଯ୍ୟସ୍ୟ ଦେବତ୍ୱଂ- ସୂର୍ଯ୍ୟଙ୍କର ଦେବତ୍ୱ ଓ ମହଦୈଶ୍ୱର୍ଯ୍ୟସମ୍ପନ୍ନତ୍ୱ ପ୍ରତିପାଦିତ ହୁଏ ଯେତେବେଳେ ସେ ସମଗ୍ର ଜଗତ୍ ଉପରେ ନିଜର କିରଣସମୂହକୁ ବିସ୍ତାର କରନ୍ତି ଓ ପୁଣି ଯେତେବେଳେ ଆକାଶ ମଣ୍ଡଳରେ ବ୍ୟାପୃତ ନିଜର ପୀତ (ହରିଦ୍ରା) ବର୍ଣ୍ଣର କିରଣକୁ ସଂହରଣ କରନ୍ତି, ଯାହା ଦ୍ୱାରା ରାତ୍ରିର ଅନ୍ଧକାର ସମଗ୍ର ଜଗତରେ ବିସ୍ତୃତିଲାଭ କରେ ।

ତନ୍ମିତ୍ରସ୍ୟ ବରୁଣସ୍ୟାଭିଚକ୍ଷେ ସୂର୍ଯୋ ରୂପଂ କୃଣୁତେ ଦ୍ୟୋରୁପସ୍ଥେ ।
ଅନନ୍ତମନ୍ୟଦ୍ରୁଶଦସ୍ୟ ପାଜଃ କୃଷ୍ଣମନ୍ୟଦ୍ଧରିତଃ ସଂ ଭରନ୍ତି ॥୧୨॥
ବଣ୍ମହାଁ୨ଅସି ସୂର୍ଯ ବଡ଼ାଦିତ୍ୟ ମହାଁ୨ଅସି । ମହସ୍ତେ ସତୋ ମହିମା
ପନସ୍ୟତେଽଦ୍ଧା ଦେବ ମହାଁ୨ଅସି ॥୧୩॥ ବଟ୍‌ସୂର୍ଯ ଶ୍ରବସା ମହାଁ୨ଅସି
ସତ୍ରା ଦେବ ମହାଁ୨ଅସି । ମହ୍ନା ଦେବାନାମସୁର୍ଯଃ ପୁରୋହିତୋ ବିଭୁ
ଜ୍ୟୋତିରଦାଭ୍ୟମ୍ ॥୧୪॥ ଶ୍ରାୟନ୍ତ ଇବ ସୂର୍ଯ୍ୟଂ ବିଶ୍ୱେଦିନ୍ଦ୍ରସ୍ୟ ଭକ୍ଷତ ।
ବସୂନି ଜାତେ ଜନମାନ ଓଜସା ପ୍ରତି ଭାଗଂ ନ ଦୀଧିମ ॥୧୫॥

---

**ମନ୍ତ୍ରସଂଖ୍ୟା (୧୨) :-** ଯଜୁର୍ବେଦ ଅ. ୩୩/୩୮ : ତନ୍ମିତ୍ରସ୍ୟ ବରୁଣସ୍ୟ- ଆକାଶସ୍ଥ ସୂର୍ଯ୍ୟ ବରୁଣଙ୍କ ରୂପ ଧାରଣ କରି ବିଶ୍ୱବାସୀଙ୍କୁ ଦେଖନ୍ତି । ସୂର୍ଯ୍ୟଙ୍କର ଦୁଇଗୋଟି ସ୍ୱରୂପ ଅଛି ଯଥା ଶୁକ୍ଳ ଓ କୃଷ୍ଣ । ମିତ୍ର (ସୁକୃତ) ଅର୍ଥାତ୍ ଶୁକ୍ଳ ରୂପରେ ସେ ଦେଦୀପ୍ୟମାନ (ଯାହାକି ବିଜ୍ଞାନଘନ ଆନନ୍ଦସ୍ୱରୂପ, ନିର୍ଗୁଣ, ଅଦ୍ୱିତୀୟ, ଇନ୍ଦ୍ରିୟାତୀତ, ଅଦ୍ୱୈତ ବ୍ରହ୍ମ) । ପୁଣି ବରୁଣ କୃଷ୍ଣ ରୂପରେ ଦୁଷ୍କୃତ, ଦ୍ୱୈତ, ସଗୁଣସ୍ୱରୂପ, ସମସ୍ତ ଇନ୍ଦ୍ରିୟ ବୃତ୍ତିକୁ ଧାରଣ କରିଥାଆନ୍ତି ।

**ମନ୍ତ୍ରସଂଖ୍ୟା (୧୩) :-** ଯଜୁର୍ବେଦ ଅ. ୩୩/୩୯ : ବଣ୍ମହାଁ୨ ଅସି - ହେ ଆଦିତ୍ୟ ! ତୁମେ ମହାନ୍ ଅଟ । ଦେବତାମାନଙ୍କ ମଧ୍ୟରେ ତୁମର ମହିମା ଅଧିକ, ଏଣୁ ସର୍ବପୂଜ୍ୟ । ହେ ଦେଦୀପ୍ୟମାନ ସୂର୍ଯ୍ୟ ! ତୁମେ ପ୍ରକୃତରେ ମହାନ୍ ।

**ମନ୍ତ୍ରସଂଖ୍ୟା (୧୪) :-** ଯଜୁର୍ବେଦ ଅ. ୩୩/୪୦ : ବଟ୍ ସୂର୍ଯ୍ୟଶ୍ରବସା - ହେ ସୂର୍ଯ୍ୟଦେବ ! ତୁମେ ଧନରେ ଏବଂ ଯଶରେ ମଧ୍ୟ ମହାନ୍ । ତୁମେ ବସ୍ତୁତଃ ମହାନ୍ । ପ୍ରାଣବାନ୍ ସୂର୍ଯ୍ୟ ସ୍ୱମହିମା ଦୃଷ୍ଟିରୁ ସମସ୍ତ କର୍ମର ପ୍ରାରମ୍ଭରେ ପୂଜ୍ୟ (ସୂର୍ଯ୍ୟଙ୍କୁ ଅର୍ଘ୍ୟ ଦେବା ପରେ ଅନ୍ୟ ଦେବତାଙ୍କୁ ପୂଜା କରାଯାଇଥାଏ) । ଜ୍ୟୋତିଃ ସ୍ୱରୂପରେ ତୁମେ ବ୍ୟାପକ ଓ ଅଦମନୀୟ ଅଟ ।

**ମନ୍ତ୍ରସଂଖ୍ୟା (୧୫) :-** ଯଜୁର୍ବେଦ ଅ. ୩୩/୪୧ : ଶ୍ରାୟନ୍ତ ଇବ ସୂର୍ଯ୍ୟ - ସୂର୍ଯ୍ୟଙ୍କ ରଶ୍ମି ସୂର୍ଯ୍ୟଙ୍କୁ ଆଶ୍ରୟ କରି ଇନ୍ଦ୍ରଙ୍କ ଧନବର୍ଷାକୁ ସମସ୍ତଙ୍କ ମଧ୍ୟରେ ବଣ୍ଟନ କରନ୍ତି, ଠିକ୍ ସେହି ପ୍ରକାର ଆମେ ମଧ୍ୟ ଆମ ବଂଶଜାତ ପୁତ୍ରାଦିଙ୍କ ମଧ୍ୟରେ ଉପାର୍ଜିତ ଧନକୁ ଦାୟଭାଗ ଦୃଷ୍ଟିରୁ ସମବଣ୍ଟନ କରୁଅଛୁ ।

ଅଦ୍ୟା ଦେବା ଉଦିତା ସୂର୍ଯସ୍ୟ ନିରଗୁଁହସଃ ପିପୃତା ନିରବଦ୍ୟାତ୍ । ତନ୍ନୋ ମିତ୍ରୋ ବରୁଣୋ ମାମହନ୍ତାମଦିତିଃ ସିନ୍ଧୁଃ ପୃଥିବୀ ଉତ ଦ୍ୟୌଃ ॥୧୬॥ ଆ କୃଷ୍ଣେନ ରଜସା ବର୍ତମାନୋ ନିବେଶୟନ୍ନମୃତଂ ମର୍ତ୍ୟଂ ଚ । ହିରଣ୍ୟୟେନ ସବିତା ରଥେନା ଦେବୋ ଯାତି ଭୁବନାନି ପଶ୍ୟନ୍ ॥୧୭॥

---

**ମନ୍ତ୍ରସଂଖ୍ୟା (୧୬) :-** ଯଜୁର୍ବେଦ ଅ. ୩୩/୪୨ : ଅଦ୍ୟା ଦେବା - ହେ ସୂର୍ଯ୍ୟଦେବ **!** ଆଜି ଉଦୟ ହେବାମାତ୍ରେ ଆମକୁ ପୀଡା ଓ ଅପଯଶରୁ ରକ୍ଷା କର । ମିତ୍ର, ବରୁଣ, ଅଦିତି, ସିନ୍ଧୁ, ପୃଥିବୀ ଏବଂ ସ୍ୱର୍ଗ ମଧ୍ୟ ଆମକୁ ନିଷ୍କାମ ଓ ଅନିନ୍ଦିତ ରୂପରେ ଗ୍ରହଣ କରନ୍ତୁ ।

**ମନ୍ତ୍ରସଂଖ୍ୟା (୧୭) :-** ଯଜୁର୍ବେଦ ଅ. ୩୩/ ୪୩ : ଆକୃଷ୍ଣେନ ରଜସା- ସବିତା (ସୂର୍ଯ୍ୟ) ଦେବତା ସ୍ୱର୍ଣ୍ଣନିର୍ମିତ ରଥରେ ଆସୁଅଛନ୍ତି । ରଥରେ କୃଷ୍ଣବର୍ଣ୍ଣଯୁକ୍ତ ରାତ୍ରି ସହିତ ଭ୍ରମଣ କଲାବେଳେ ଦେବତା ଓ ମନୁଷ୍ୟାଦି ପ୍ରାଣୀମାନଙ୍କୁ ନିଜ ନିଜ ସ୍ଥାନରେ ସନ୍ନିବେଶିତ କରି ଭୁବନ ସମୂହକୁ (କେଉଁ ଭୁବନରେ ସାଧୁକର୍ମ ଓ କେଉଁ ଭୁବନରେ ଅସାଧୁ କର୍ମ କରାଯାଉଅଛି) ଅବଲୋକନ କରି ଆସୁଅଛନ୍ତି ।

—x—

# ପଞ୍ଚମାଧ୍ୟାୟଃ

## (ନମକ୍ ଅଧ୍ୟାୟଃ / ରୁଦ୍ରସୂକ୍ତମ୍ / ଶତରୂଦ୍ରୀୟସୂକ୍ତମ୍)

ହରିଃ ଓଁ ନମସ୍ତେ ରୁଦ୍ର ମନ୍ୟବ ଉତୋ ତ ଇଷବେ ନମଃ । ବାହୁଭ୍ୟାମୁତ ତେ ନମଃ ॥୧॥ ଯା ତେ ରୁଦ୍ର ଶିବା ତନୂରଘୋରାପାପକାଶିନୀ । ତୟା ନସ୍ତନ୍ୱା ଶନ୍ତମୟା ଗିରିଶନ୍ତାଭିଚାକଶୀହି ॥୨॥ ଯାମିଷୁଂ ଗିରିଶନ୍ତ ହସ୍ତେ ବିଭର୍ଷ୍ୟସ୍ତବେ । ଶିବାଂ ଗିରିତ୍ର ତାଂ କୁରୁ ମା ହିଗୁଁସୀଃ ପୁରୁଷଂ ଜଗତ୍ ॥୩॥

---

# ପଞ୍ଚମ ଅଧ୍ୟାୟ

## (ନୀଳସୂକ୍ତ / ରୁଦ୍ରସ୍ତୋତ୍ର / ରୁଦ୍ରାଧ୍ୟାୟ)

**ମନ୍ତ୍ରସଂଖ୍ୟା (୧) :-** ଯଜୁର୍ବେଦ ଅ. ୧୬/୧ : ନମସ୍ତେ ରୁଦ୍ର - ହେ ରୁଦ୍ର ! (ରୁତ୍ = ଦୁଃଖ, ଦୁଃଖକୁ ଦ୍ରାବୟତି = ଦ୍ରବୀଭୂତ ବା ଯେ ବିନାଶ କରନ୍ତି ସେ ରୁଦ୍ର ଅଥବା ରତ୍ = ଜ୍ଞାନ, ରାତି = ଦଦାତି ଅର୍ଥାତ୍ ଯେ ଜ୍ଞାନପ୍ରଦ ଅଥବା ପାପିନଃ ନରାନ୍ ଦୁଃଖଭୋଗେନ ରୋଦୟତି ଅର୍ଥାତ୍ ପାପୀମାନଙ୍କୁ ଦୁଃଖଭୋଗଦ୍ୱାରା ଯେ ରୋଦନ କରାନ୍ତି ସେ ରୁଦ୍ର) ତୁମର କ୍ରୋଧକୁ ମୋର ପ୍ରଣାମ, ତୁମର ଶରକୁ ମୋର ପ୍ରଣାମ, ତୁମର କ୍ରୋଧ ସମ୍ବଳିତ ବାହୁଯୁଗଳକୁ ମଧ୍ୟ ମୋର ପ୍ରଣାମ ।

**ମନ୍ତ୍ରସଂଖ୍ୟା (୨) :-** ଯଜୁର୍ବେଦ ଅ. ୧୬/୨ : ଯା ତେ ରୁଦ୍ର - ହେ ରୁଦ୍ର ! ତୁମର ଶରୀର ସୌମ୍ୟ, ଏଣୁ ପୁଣ୍ୟଫଳପ୍ରଦ । ସେହି ପୁଣ୍ୟତମ ଶରୀରରେ କୈଳାସ ପର୍ବତରେ ରହି ତୁମେ ଆମକୁ କୃପାଦୃଷ୍ଟିରେ ଦେଖ ।

**ମନ୍ତ୍ରସଂଖ୍ୟା (୩) :-** ଯଜୁର୍ବେଦ ଅ. ୧୬/୩ : ଯାମିଷୁଂ ଗିରିଶନ୍ତ- ହେ ଗିରିଶନ୍ତ (ଗିରୌ = କୈଳାସେ, ସୁଖଂ ତନୋତୀତି) ! ଅର୍ଥାତ୍ ହେ କୈଳାସ ପର୍ବତବାସୀ ! ତୁମେ ଶତ୍ରୁକୁ ପ୍ରହାର ନିମିତ୍ତ ଯେଉଁ ବାଣ ଧାରଣ କରିଅଛ, ହେ ଗିରିତ୍ର ! (ଗିରୌ କୈଳାସପର୍ବତେ ସ୍ଥିତ୍ୱା ତ୍ରାୟତେ ଭକ୍ତାନ୍ = କୈଳାସ ପର୍ବତରେ ଥାଇ ଯେ ଭକ୍ତମାନଙ୍କୁ ରକ୍ଷା କରନ୍ତି) ହେ ଶିବ ! ତୁମର ସେହି ବାଣ କଲ୍ୟାଣକାରୀ ହେଉ । ପୁରୁଷ ଅର୍ଥାତ୍ ପୁତ୍ରପୌତ୍ରାଦି କ୍ରମରେ ଜଗତବାସୀଙ୍କୁ ତଥା ଗୋରୁ, ଅଶ୍ୱ ଇତ୍ୟାଦି ପ୍ରାଣୀମାନଙ୍କୁ ମଧ୍ୟ ବଧ କର ନାହିଁ ।

ଶିବେନ ବଚସା ତ୍ୱା ଗିରିଶାଚ୍ଛା ବଦାମସି । ଯଥା ନଃ ସର୍ବମିଜ୍ଜଗଦୟକ୍ଷ୍ମଗୁଁ ସୁମନା ଅସତ୍ ॥୪॥ ଅଧ୍ୟବୋଚଦଧିବକ୍ତା ପ୍ରଥମୋ ଦୈବ୍ୟୋ ଭିଷକ୍ ॥ ଅହୀଗୁଁଶ୍ଚ ସର୍ବାଞ୍ଜମ୍ଭୟନ୍ସର୍ବାଶ୍ଚ ଯାତୁଧାନ୍ୟୋଽଧରାଚୀଃ ପରାସୁବ ॥୫॥ ଅସୌ ଯସ୍ତାମ୍ରୋ ଅରୁଣ ଉତ ବଭ୍ରୁଃ ସୁମଙ୍ଗଳଃ । ଯେ ଚୈନଗୁଁ ରୁଦ୍ରା ଅଭିତୋ ଦିକ୍ଷୁ ଶ୍ରିତାଃ ସହସ୍ରଶୋଽବୈଷାଗୁଁ ହେଡ଼ ଈମହେ ॥୬॥ ଅସୌ ଯୋଽବସର୍ପତି ନୀଳଗ୍ରୀବୋ ବିଲୋହିତଃ । ଉତୈନଂ ଗୋପା ଅଦୃଶ୍ରନ୍ନଦୃଶ୍ରନ୍ନୁଦହାର୍ଯ୍ୟଃ ସ ଦୃଷ୍ଟୋ ମୃଡ଼ୟାତି ନଃ ॥୭॥

---

**ମନ୍ତ୍ରସଂଖ୍ୟା (୪) :-** ଯଜୁର୍ବେଦ ଅ. ୧୬/୪ : ଶିବେନ ବଚସା - ହେ ଗିରୀଶ ! (ଗିରୌ = କୈଳାସ ପର୍ବତରେ, ଶେତେ = ଶୟନ ବା ଅବସ୍ଥାନ) ତୁମକୁ ପ୍ରାପ୍ତ ହେବା ପାଇଁ ମଙ୍ଗଳପ୍ରଦାୟକ ସ୍ତୁତିଦ୍ୱାରା ଆମେ ପ୍ରାର୍ଥନା କରୁଅଛୁ ଯେ ଆମର ମନୁଷ୍ୟ ପଶୁ ଆଦି ସମସ୍ତ ପ୍ରାଣୀ ଯେପରି ନିରୋଗ ଓ ସୁସ୍ଥ ମାନସିକତାରେ ରହିବେ ତାହା ବିଧାନ କରନ୍ତୁ ।

**ମନ୍ତ୍ରସଂଖ୍ୟା (୫) :-** ଯଜୁର୍ବେଦ ଅ. ୧୬/୫ : ଅଧ୍ୟବୋଚଦଧିବକ୍ତା - ସର୍ବଶ୍ରେଷ୍ଠ ଓ ଦେବଲୋକଙ୍କ ଏକମାତ୍ର ବୈଦ୍ୟ ତଥା ପ୍ରଧାନ ବକ୍ତା ମହେଶ୍ୱର ମୋତେ ସବୁଠାରୁ ଅଧିକ କୁହନ୍ତୁ, ଯାହାଦ୍ୱାରା ମୁଁ ଅଧିକ ବଚନଶୀଳ ବା ବାକ୍‌ପଟୁତା ଅର୍ଜନ କରିପାରିବି । ଆପଣ ରୋଗନାଶକ ଏପରିକି ସ୍ମରଣମାତ୍ରକେ ଆପଣ ସବୁପ୍ରକାର ରୋଗକୁ ଦୂର କରନ୍ତି । ହେ ରୁଦ୍ର ! ସମସ୍ତ ନୀଚଗାମୀ ରାକ୍ଷସୀଙ୍କୁ ଏବଂ ରାକ୍ଷସୀ ଗୁଣକୁ ମଧ୍ୟ ନାଶ କରନ୍ତୁ । ଏହା ସହିତ ସର୍ପବ୍ୟାଘ୍ରାଦି ହିଂସ୍ର ଜନ୍ତୁଙ୍କଠାରୁ ମଧ୍ୟ ଆମକୁ ରକ୍ଷା କରନ୍ତୁ ।

**ମନ୍ତ୍ରସଂଖ୍ୟା (୬) :-** ଯଜୁର୍ବେଦ ଅ. ୧୬/୬ : ଅସୌ ଯସ୍ତାମ୍ରୋ - (ଆଦିତ୍ୟ ରୂପରେ ରୁଦ୍ରଙ୍କୁ ସ୍ତୁତି କରାଯାଇଅଛି) ଏହି ଯେଉଁ ଆକାଶରେ ତାମ୍ର, ରକ୍ତ ଓ ପିଙ୍ଗଳବର୍ଣ୍ଣ ବିଶିଷ୍ଟ ତଥା ମଙ୍ଗଳସ୍ୱରୂପ ରୁଦ୍ର ଏବଂ ଯାହାଙ୍କର ଅଂଶ (କିରଣ) ସହସ୍ର ରୁଦ୍ର ସଦୃଶ ଚାରିଦିଗକୁ ବିସ୍ତୃତ ସେ ତାଙ୍କ ସମସ୍ତ କ୍ରୋଧକୁ ପ୍ରଶମିତ କରନ୍ତୁ ।

**ମନ୍ତ୍ରସଂଖ୍ୟା (୭) :-** ଯଜୁର୍ବେଦ ଅ. ୧୬/୭ : ଅସୌ ଯୋଽବସର୍ପତି- ନୀଳଗ୍ରୀବ

ନମୋଽସ୍ତୁ ନୀଲଗ୍ରୀବାୟ ସହସ୍ରାକ୍ଷାୟ ମୀଢୁଷେ । ଅଥୋ ଯେ ଅସ୍ୟ ସତ୍ୱାନୋଽହଂ ତେଭ୍ୟୋଽକରଂ ନମଃ ॥୮॥ ପ୍ରମୁଞ୍ଚ ଧନ୍ୱନସ୍ତ୍ୱମୁଭୟୋ-ରାର୍ତ୍ନ୍ୟୋର୍ଜ୍ୟାମ୍ । ଯାଶ୍ଚ ତେ ହସ୍ତ ଇଷବଃ ପରା ତା ଭଗବୋ ବପ ॥୯॥ ବିଜ୍ୟଂ ଧନୁଃ କପର୍ଦିନୋ ବିଶଲ୍ୟୋ ବାଣବାଁ୩ ଉତ । ଅନେଶନ୍ନସ୍ୟ ଯା ଇଷବ ଆଭୁରସ୍ୟ ନିଷଙ୍ଗଧିଃ ॥୧୦॥

---

ଅର୍ଥାତ୍ ନୀଳକଣ୍ଠ ଏବଂ ବିଶେଷ ରୂପରେ ଉଦୟାସ୍ତ ସମୟରେ ଯେ ରକ୍ତବର୍ଣ୍ଣଯୁକ୍ତ ସେହି ଆଦିତ୍ୟ ରୂପରେ ରୁଦ୍ର ଧୀରେ ଧୀରେ ଆକାଶରେ ଉଦୟାସ୍ତ ମଧ୍ୟରେ ଗତି କରୁଅଛନ୍ତି । ଯାହାଙ୍କୁ ଗୋପାଳ ବାଳକ ଓ ଜଳ ଆହରଣରତ ସ୍ତ୍ରୀଲୋକମାନେ ମଧ୍ୟ ଦେଖୁଅଛନ୍ତି । (ଗ୍ରାମମାନଙ୍କରେ ସୂର୍ଯ୍ୟୋଦୟ ପରେ ଗୋରୁପଲଙ୍କୁ ଗୋପାଳକମାନେ ଚରିବାକୁ ଛାଡନ୍ତି ଓ ସୂର୍ଯ୍ୟାସ୍ତ ସମୟରେ ପୁଣି ଘରକୁ ବାହୁଡ଼ି ଆଣନ୍ତି । ଗ୍ରାମ୍ୟବଧୂମାନେ ମଧ୍ୟ ସେହିଭଳି ଉଦୟାସ୍ତ ସମୟକୁ ନେଇ ଜଳାଶୟ ବା ନଦୀମାନଙ୍କରୁ ଜଳ ସଂଗ୍ରହ କରିବାକୁ ଯିବା-ଆସିବା କରିଥାଆନ୍ତି) ସେହି ଆଦିତ୍ୟରୂପ ରୁଦ୍ର ଆମ୍ଭମାନଙ୍କୁ ସୁଖ ପ୍ରଦାନ କରନ୍ତୁ ।

**ମନ୍ତ୍ରସଂଖ୍ୟା (୮) :-** ଯଜୁର୍ବେଦ ଅ. ୧୬/୮ : ନମୋଽସ୍ତୁ ନୀଲଗ୍ରୀବାୟ- ନୀଳକଣ୍ଠ ସହସ୍ରଚକ୍ଷୁ ସମ୍ପନ୍ନ (ଇନ୍ଦ୍ରସ୍ୱରୂପ), ପର୍ଜନ୍ୟ (ବର୍ଷା) ରୂପ, ଅଥବା ତରୁଣ ରୂପବାନ୍ ଶିବଙ୍କୁ ପ୍ରଣାମ । ତା ସହିତ ତାଙ୍କର ରୁଦ୍ରଗଣଙ୍କୁ ମଧ୍ୟ ମୋର ପ୍ରଣାମ ।

**ମନ୍ତ୍ରସଂଖ୍ୟା (୯) :-** ଯଜୁର୍ବେଦ ଅ. ୧୬/୯ : ପ୍ରମୁଞ୍ଚ ଧନ୍ୱନଃ - ହେ ରୁଦ୍ର **!** ତୁମେ ଧନୁର କୋଟି ଦ୍ୱୟରୁ (ଉପର ତଳ) ପ୍ରତ୍ୟଞ୍ଚା ବା ଚାପକୁ ପୃଥକ୍ କର ଏବଂ ହେ ଭଗବାନ୍ ଶିବ **!** ତୁମ ହାତରେ ଥିବା ଶରକୁ ଅନ୍ୟ ଆଡକୁ ନିକ୍ଷେପ କର ।

**ମନ୍ତ୍ରସଂଖ୍ୟା (୧୦) :-** ଯଜୁର୍ବେଦ ଅ. ୧୬/୧୦ : ବିଜ୍ୟଂ ଧନୁଃ- ଏବେ କପର୍ଦୀ (ଜଟାଜୁଟଧାରୀ)ଙ୍କ ଧନୁ ଚାପ ରହିତ ଏଣୁ ଶର ନିକ୍ଷେପରେ ଅସମର୍ଥ ଏବଂ ତୂଣୀର (ଶରାସନ) ମଧ୍ୟ ଶରଶୂନ୍ୟ ହୋଇଅଛି ।

ଯା ତେ ହେତିର୍ମୀଢ଼୍‌ହୁଷ୍ଟମ ହସ୍ତେ ବଭୂବ ତେ ଧନୁଃ । ତୟାସ୍ମାନ୍ ବିଶ୍ୱତସ୍ତ୍ୱମୟକ୍ଷ୍ମୟା ପରିଭୁଜ ॥୧୧॥ ପରି ତେ ଧନ୍ୱନୋ ହେତିରସ୍ମାନ୍ ବୃଣକ୍ତୁ ବିଶ୍ୱତଃ । ଅଥୋ ଯ ଇଷୁଧିସ୍ତବାରେ ଅସ୍ମନ୍ନିଧେହି ତମ୍ ॥୧୨॥ ଅବତତ୍ୟ ଧନୁଷ୍ଟ୍ୱଗୁଁ ସହସ୍ରାକ୍ଷ ଶତେଷୁଧେ । ନିଶୀର୍ଯ୍ୟ ଶଲ୍ୟାନାଂ ମୁଖା ଶିବୋ ନଃ ସୁମନା ଭବ ॥୧୩॥ ନମସ୍ତ ଆୟୁଧାୟାନାତତାୟ ଧୃଷ୍ଣବେ । ଉଭାଭ୍ୟାମୁତ ତେ ନମୋ ବାହୁଭ୍ୟାଂ ତବ ଧନ୍ୱନେ ॥୧୪॥ ମା ନୋ ମହାନ୍ତମୁତ ମା ନୋ ଅର୍ଭକଂ ମା ନ ଉକ୍ଷନ୍ତମୁତ ମା ନ ଉକ୍ଷିତମ୍ । ମା ନୋ ବଧୀଃ ପିତରଂ ମୋତ ମାତରଂ ମା ନଃ ପ୍ରିୟାସ୍ତନ୍ୱୋ ରୁଦ୍ର ରୀରିଷଃ ॥୧୫॥

---

**ମନ୍ତ୍ରସଂଖ୍ୟା (୧୧) :-** ଯଜୁର୍ବେଦ ଅ. ୧୬/୧୧ : ଯାତେ ହେତିଃ - ହେ ସେଚନକ୍ଷମ ରୁଦ୍ର **!** ତୁମ ହାତରେ ଯେଉଁ ବାଣବର୍ଷଣକାରୀ ଆୟୁଧ ଅଛି, ତାହାଦ୍ୱାରା ସବୁ ପ୍ରକାର ବ୍ୟାଧିକୁ ନିବାରଣ କରି ଆମକୁ ପରିପାଳନ କର ।

**ମନ୍ତ୍ରସଂଖ୍ୟା (୧୨) :-** ଯଜୁର୍ବେଦ ଅ. ୧୬/୧୨ : ପରିତେ ଧନ୍ୱନୋ - ହେ ରୁଦ୍ର **!** ତୁମର ଧନୁର୍ବାଣ ଆମକୁ ସବୁ ଦିଗରୁ ରକ୍ଷା କରୁ ଏବଂ ତୁମେ ଶରପୂର୍ଣ୍ଣ ତୂଣୀର (ଶରାସନ) ଆମଠାରୁ ଦୂରେଇ ରଖ ।

**ମନ୍ତ୍ରସଂଖ୍ୟା (୧୩) :-** ଯଜୁର୍ବେଦ ଅ. ୧୬/୧୩ : ଅବତତ୍ୟଧନୁଷ୍ଟ୍ୱଗୁଁ - ହେ ସହସ୍ରାକ୍ଷ (ଅନେକ ଚକ୍ଷୁ ବା ଅନେକ ଇନ୍ଦ୍ରିୟଯୁକ୍ତ)**!** ହେ ଶତ ତୂଣୀରଯୁକ୍ତ ରୁଦ୍ର **!** ତୁମେ ଆମ ପ୍ରତି ଶିବ (ଶାନ୍ତ) ସୁମନା (ସୁମନସ୍କ) ହୁଅ । ଆୟୁଧ ଧନୁକୁ ଜ୍ୟାନିର୍ମୁକ୍ତ (ଚାପବିହୀନ) କରି ଏବଂ ବାଣକୁ ଆମ ପ୍ରତି ପରାଙ୍ମୁଖ ରଖି ଆମକୁ ଅନୁଗୃହୀତ କର ।

**ମନ୍ତ୍ରସଂଖ୍ୟା (୧୪) :-** ଯଜୁର୍ବେଦ ଅ. ୧୬/୧୪ : ନମସ୍ତ ଆୟୁଧାୟ - ହେ ରୁଦ୍ର **!** ତୁମର ଧନୁରେ ଆରୋପିତ ହୋଇଥିବା ସୁତୀକ୍ଷ୍ଣ ବାଣକୁ ପ୍ରଣାମ । ଆୟୁଧ ଶୋଭିତ ତୁମର ବାହୁଦ୍ୱୟକୁ ପ୍ରଣାମ ଏବଂ ତୁମର ଧନୁକୁ ମଧ୍ୟ ପ୍ରଣାମ ।

**ମନ୍ତ୍ରସଂଖ୍ୟା (୧୫) :-** ଯଜୁର୍ବେଦ ଅ. ୧୬/୧୫ : ମାନୋମହାନ୍ତଂ - ହେ ରୁଦ୍ର **!** ତୁମେ ଆମର କୌଣସି ମହାନ୍ ବ୍ୟକ୍ତିକୁ, ଶିଶୁକୁ, ତରୁଣକୁ, ଗର୍ଭସ୍ଥ ଶିଶୁକୁ ନ ମାରି ରକ୍ଷା କର । ଆମ ପିତାମାତାଙ୍କୁ ତଥା ଆମ ପ୍ରିୟ ପୁତ୍ରପୌତ୍ରାଦିଙ୍କୁ ମଧ୍ୟ ବିନାଶ କର ନାହିଁ ।

ମା ନସ୍ତୋକେ ତନୟେ ମା ନ ଆୟୁଷି ମା ନୋ ଗୋଷୁ ମା ନୋ ଅଶ୍ୱେଷୁ ରୀରିଷଃ । ମା ନୋ ବୀରାନ୍ ରୁଦ୍ର ଭାମିନୋ ବଧୀର୍ହବିଷ୍ମନ୍ତଃ ସଦମିତ୍ ତ୍ୱା ହବାମହେ ॥୧୬॥ ନମୋ ହିରଣ୍ୟବାହବେ ସେନାନ୍ୟେ ଦିଶାଂ ଚ ପତୟେ ନମୋ ନମୋ ବୃକ୍ଷେଭ୍ୟୋ ହରିକେଶେଭ୍ୟଃ ପଶୂନାଂ ପତୟେ ନମଃ । ନମଃ ଶଷ୍ପିଞ୍ଜରାୟ ତ୍ୱିଷୀମତେ ପଥୀନାଂ ପତୟେ ନମୋ ନମୋ ହରିକେଶାୟୋପବୀତିନେ ପୁଷ୍ଟାନାଂ ପତୟେ ନମଃ ॥୧୭॥ ନମୋ ବଭ୍ଳୁଶାୟ ବ୍ୟାଧିନେଽନ୍ନାନାଂ ପତୟେ ନମୋ ନମୋ ଭବସ୍ୟ ହେତ୍ୟୈ ଜଗତାଂ ପତୟେ ନମଃ । ନମୋ ରୁଦ୍ରାୟାତତାୟିନେ କ୍ଷେତ୍ରାଣାଂ ପତୟେ ନମୋ ନମଃ ସୂତାୟାହନ୍ତ୍ୟୈ ବନାନାଂ ପତୟେ ନମଃ ॥୧୮॥

---

**ମନ୍ତ୍ରସଂଖ୍ୟା (୧୬) :-** ଯଜୁର୍ବେଦ ଅ. ୧୬/୧୬ : ମାନସ୍ତୋକେ - ହେ ରୁଦ୍ର **!** ଆମର ପୁତ୍ର ଓ ପୌତ୍ରଙ୍କୁ ହତ୍ୟା କର ନାହିଁ କି ଆମର ଆୟୁଷ ପ୍ରତି ମଧ୍ୟ ଅନିଷ୍ଟ କର ନାହିଁ । ଆମର ଗୋ ସମ୍ପଦ ତଥା ଅଶ୍ୱାଦିଙ୍କୁ ମଧ୍ୟ ହତ୍ୟା କର ନାହିଁ । କ୍ରୋଧାନ୍ୱିତ ହୋଇ ଆମର ବୀରମାନଙ୍କୁ ଏବଂ ଭୃତ୍ୟମାନଙ୍କୁ ମଧ୍ୟ ହତ୍ୟା କର ନାହିଁ । ଆମେ ତୁମର ଶରଣାପନ୍ନ ହୋଇ ସର୍ବଦା ଯଜ୍ଞ ମାଧ୍ୟମରେ ହବିଃ (ଯଜ୍ଞୀୟ ଘୃତାଦି ଦ୍ରବ୍ୟ) ପ୍ରଦାନ କରୁଅଛୁ ।

**ମନ୍ତ୍ରସଂଖ୍ୟା (୧୭) :-** ଯଜୁର୍ବେଦ ଅ. ୧୬/୧୭ : ନମୋ ହିରଣ୍ୟବାହବେ- ସୁବର୍ଣ୍ଣ ଆଭରଣ ସ୍ୱରୂପ ଯାହାଙ୍କର ବାହୁଦ୍ୱୟ, ଯେ ସୈନ୍ୟମାନଙ୍କ ନାୟକ, ଯେ ଦିଗମାନଙ୍କର ପାଳକ, ଯାହାଙ୍କର ହରିତ୍‌ବର୍ଣ୍ଣଯୁକ୍ତ ପର୍ଣ୍ଣ (ପତ୍ର) ସଦୃଶ କେଶ ଏବଂ ଯେ ବୃକ୍ଷରୂପଧାରୀ, ଯେ ପଶୁ (ଜୀବ)ମାନଙ୍କ ପାଳକ ହେତୁ ପଶୁପତି, ଯେ ବାଳ (କୋମଳ) ତୃଣ ଭଳି ପୀତବର୍ଣ୍ଣଯୁକ୍ତ ତେଜସ୍ୱୀ, ଯେ ସମସ୍ତ ମାର୍ଗର ରକ୍ଷକ, ଯାହାଙ୍କର ନୀଳବର୍ଣ୍ଣ କେଶ, ଯେ ଜରା (ବାର୍ଦ୍ଧକ୍ୟ) ରହିତ, ମଙ୍ଗଳସ୍ୱରୂପ ଯଜ୍ଞୋପବୀତଧାରୀ, ଗୁଣବାନ୍ ଲୋକଙ୍କର ସ୍ୱାମୀ ସେହି ରୁଦ୍ରଙ୍କୁ ପ୍ରଣାମ ।

**ମନ୍ତ୍ରସଂଖ୍ୟା (୧୮) :-** ଯଜୁର୍ବେଦ ଅ. ୧୬/୧୮ : ନମୋ ବଭ୍ଳୁଶାୟ - ବଭ୍ଳୁଶ ଅର୍ଥାତ୍ କପିଳବର୍ଣ୍ଣ ବିଶିଷ୍ଟ ଅଥବା ବିଭର୍ତ୍ତି ରୁଦ୍ରମିତି ବଭ୍ଳୁ = ବୃଷଭଃ, ତସ୍ମିନ୍ ଶେତେ ଏଣୁ ବଭ୍ଳୁଶ = ବୃଷଭାସୀନ (ବ୍ୟାଧିନେ = ବିଧ୍ୟତି ଶତ୍ରୁନିତି) ଶତ୍ରୁବଧକାରୀ,

ନମୋ ରୋହିତାୟ ସ୍ଥପତୟେ ବୃକ୍ଷାଣାଂ ପତୟେ ନମୋ ନମୋ ଭୁବନ୍ତୟେ ବାରିବସ୍କୃତାୟୌଷଧୀନାଂ ପତୟେ ନମଃ । ନମୋ ମନ୍ତ୍ରିଣେ ବାଣିଜାୟ କକ୍ଷାଣାଂ ପତୟେ ନମୋ ନମ ଉଚ୍ଚୈର୍ଘୋଷାୟାକ୍ରନ୍ଦୟତେ ପତ୍ତୀନାଂ ପତୟେ ନମଃ ॥୧୯॥ ନମଃ କୃତ୍ସ୍ନାୟତୟା ଧାବତେ ସତ୍ୱନାଂ ପତୟେ ନମୋ ନମଃ । ସହମାନାୟ ନିବ୍ୟାଧିନ ଆବ୍ୟାଧିନୀନାଂ ପତୟେ ନମଃ । ନମଃ କକୁଭାୟ ନିଷଙ୍ଗିଣେ ସ୍ତେନାନାଂ ପତୟେ ନମୋ ନମୋ ନିଚେରବେ ପରିଚରାୟାରଣ୍ୟାନାଂ ପତୟେ ନମଃ ॥୨୦॥

---

ଅନ୍ନର ସ୍ୱାମୀ, ଆମ୍ଭମାନଙ୍କର ପାଳକ, ସଂସାର ନିବର୍ତ୍ତକ, ଜଗତର ରକ୍ଷକ, ଆତତଧନୁ ଅର୍ଥାତ୍ ବିସ୍ତୃତ ଧନୁ ଧାରଣ କରି ବିଚରଣଶୀଳ, ଆମ ଦେହରୂପକ କ୍ଷେତ୍ରର ପରିପାଳକ, ସୂତାୟ ଅହନ୍ତ୍ୟେ = ସାରଥି ସ୍ୱରୂପ, ଅହନ୍ତା = ନ ହନ୍ତୀତି ଅହନ୍ତା ଅର୍ଥାତ୍ ରୁଦ୍ର ସଂସାରରୂପକ ରଥର ସାରଥି ସ୍ୱରୂପ ଏବଂ ସାରଥି କେବେହେଲେ କାହାରି ହତ୍ୟାକାରୀ ହୁଅନ୍ତି ନାହିଁ ଏଣୁ ସେ ସ୍ୱରୂପତଃ ଅହନ୍ତା, ସେ ବନର ରକ୍ଷକସ୍ୱରୂପ ଏଣୁ ଏ ସମସ୍ତ ରୂପରେ ତାଙ୍କୁ ପ୍ରଣାମ ।

**ମନ୍ତ୍ରସଂଖ୍ୟା (୧୯) :-** ଯଜୁର୍ବେଦ ଅ. ୧୬/୧୯ : ନମୋ ରୋହିତାୟ - ରୁଦ୍ର ଲୋହିତବର୍ଣ୍ଣ ବିଶିଷ୍ଟ ବିଶ୍ୱକର୍ମା ସ୍ୱରୂପ, ବୃକ୍ଷମାନଙ୍କର ପାଳକ, ପୃଥିବୀର ବିସ୍ତାରକର୍ତ୍ତା, (ବରିବଃ = ଧନଂ, ତତ୍କୃତଃ ବାରିବସ୍କୃତଃ) ଧନକର୍ତ୍ତା, ସମସ୍ତ ଔଷଧି (ଗ୍ରାମ୍ୟ ଅରଣ୍ୟ = ବଗିଚା ବା ଉଦ୍ୟାନ)ର ପାଳକ, ମନ୍ତ୍ରଣା (ପରାମର୍ଶ) ଦାୟକ, ବ୍ୟାପାରକର୍ତ୍ତା, କକ୍ଷ (ବଣରେ ଥିବା ଲତାଗୁଳ୍ମାଦି)ର ପାଳକ, ଉଚ୍ଚଧ୍ୱନିକାରୀ, ଯୁଦ୍ଧରେ ଶତ୍ରୁଙ୍କ କ୍ରନ୍ଦନକାରକ, ପଦାତି ସୈନ୍ୟଙ୍କ ସ୍ୱାମୀ ସ୍ୱରୂପ ରୁଦ୍ରଙ୍କୁ ପ୍ରଣାମ ।

**ମନ୍ତ୍ରସଂଖ୍ୟା (୨୦) :-** ଯଜୁର୍ବେଦ ଅ. ୧୬/୨୦ : ନମଃ କୃତ୍ସ୍ନାୟତୟା - କୃତ୍ସ୍ନାୟତା ଅର୍ଥାତ୍ ଆକର୍ଣ୍ଣ ବିସ୍ତୃତ ଧନୁ ଧାରଣ କରି ଯୁଦ୍ଧରେ ଶୀଘ୍ରଗାମୀ (ଅଥବା କୃତ୍ସ୍ନ = ସମସ୍ତ ଆୟ ବା ଲାଭର ଯେ ପ୍ରାପକ), ସମସ୍ତ ସାତ୍ତ୍ୱିକ ଅଥବା ଶରଣାଗତ ପ୍ରାଣୀମାନଙ୍କର ପାଳକ, ଶତ୍ରୁଙ୍କ ପରାଭବ ପ୍ରତି ସହନଶୀଳ ଅଥଚ ଶୀଘ୍ର ଶତ୍ରୁଙ୍କ ହତ୍ୟାକାରୀ, ଦେବସେନାଙ୍କ ରକ୍ଷକ, ଖଡ୍‌ଗଧାରୀ, ମହାନ୍, ଗୁପ୍ତଚରଙ୍କର ପାଳକ, ନିଚେରବ ଅର୍ଥାତ୍ ନୀଚବୁଦ୍ଧି ସମ୍ପନ୍ନ (ଅପହରଣ ପାଇଁ ସର୍ବଦା ଚେଷ୍ଟିତ ବ୍ୟକ୍ତି)ଙ୍କ

ନମୋ ବଞ୍ଚତେ ପରିବଞ୍ଚତେ ସ୍ତାୟୂନାଂ ପତୟେ ନମୋ ନମୋ ନିଷଙ୍ଗିଣ ଇଷୁଧିମତେ ତସ୍କରାଣାଂ ପତୟେ ନମଃ ନମଃ ସୃକାୟିଭ୍ୟୋ ଜିଘାଗୁଁସଦ୍ଭ୍ୟୋ ମୁଷ୍ଣତାଂ ପତୟେ ନମୋ ନମୋଽସିମଦ୍ଭ୍ୟୋ ନକ୍ତଞ୍ଚରଦ୍ଭ୍ୟୋ ବିକୃନ୍ତାନାଂ ପତୟେ ନମଃ ॥୨୧॥

---

ରକ୍ଷକ, ପରିଚର (ଦୋକାନ-ବଜାରରୁ ଅପହରଣ କରିବା ଇଚ୍ଛାରେ ଘୂରି ବୁଲୁଥିବା ଲୋକ)ମାନଙ୍କ ପାଳକ, ଅରଣ୍ୟର ସ୍ୱାମୀ ସ୍ୱରୂପ ରୁଦ୍ରଙ୍କୁ ପ୍ରଣାମ[୧] ।

---

୧. ଉଲ୍ଲେଖଯୋଗ୍ୟ ଯେ, ମନ୍ତ୍ରମାନଙ୍କର ଭାଷ୍ୟକାର ମହୀଧରାଚାର୍ଯ୍ୟ ବେଦବାକ୍ୟରେ ପରମେଶ୍ୱରଙ୍କ ପ୍ରତି ଅପମାନସୂଚକ ଯଥା ଚୌର୍ଯ୍ୟାଦି ସ୍ୱରୂପ ବର୍ଣ୍ଣନାର ସମାଧାନ ପାଇଁ କହିଅଛନ୍ତି ଯେ- 'ରୁଦ୍ରୋ ଲୀଳୟା ଚୌରାଦିରୂପଂ ଧତ୍ତେ...' ଇତ୍ୟାଦି । ଯାହାର ରହସ୍ୟ ଯଥା- ଭଗବାନ୍ ରୁଦ୍ର ଲୀଳା ପ୍ରଦର୍ଶନ କରିବା ପ୍ରସଙ୍ଗରେ ଚୌରାଦି ରୂପକୁ ଧାରଣ କରିଥାଆନ୍ତି । ଅଥବା ରୁଦ୍ର ଜଗତ୍ ସ୍ୱରୂପ, ଚୌର ମଧ୍ୟ ଜଗତର ଅନ୍ତର୍ଗତ, ଏଣୁ ସେ ମଧ୍ୟ ରୁଦ୍ର ସ୍ୱରୂପ । ଅଥବା ପ୍ରତ୍ୟେକଙ୍କ ଶରୀରରେ ଜୀବ ଓ ଈଶ୍ୱର ରୂପରେ ଦୁଇ ଭାବରେ ରୁଦ୍ର ଅବସ୍ଥିତ । ଯେଉଁଠି ଚୌରାଦି ରୂପରେ ଜୀବ ଏବଂ ଈଶ୍ୱର ଭାବରେ ରୁଦ୍ର ଲକ୍ଷିତ । ଉଦାହରଣ ଯଥା ନିର୍ବୋଧ ବାଳକକୁ ଚନ୍ଦ୍ର ଦେଖାଇଲାବେଳେ ଆମେ ସମ୍ମୁଖରେ ଥିବା ବୃକ୍ଷର ଶାଖାକୁ ପ୍ରଥମେ ଦେଖାଇ ତା ମାଧ୍ୟମରେ ଯେପରି ଚନ୍ଦ୍ରଙ୍କୁ ଦେଖାଇଥାଉ, ଯାହା ଫଳରେ ସୁବିଧାରେ ବାଳକ ଚନ୍ଦ୍ର ଦର୍ଶନ କରିପାରେ, ଠିକ୍ ସେହିପରି ଗୂଢ଼ ବିଷୟ ଯାହା ଏକାନ୍ତ ଭାବରେ ଅଲୌକିକ ଓ ଅନିର୍ବଚନୀୟ ତାହାର ବିବକ୍ଷା ନିମିତ୍ତ ଲୌକିକ ଦୃଷ୍ଟାନ୍ତକୁ ମଧ୍ୟ ଆଶ୍ରୟ କରାଯାଇଥାଏ । ଏ ବିଷୟକୁ ପରମକାରୁଣିକ ଭଗବାନ୍ ବ୍ୟାସଦେବ ବେଦାନ୍ତଦର୍ଶନାନ୍ତର୍ଗତ ବ୍ରହ୍ମସୂତ୍ର ଗ୍ରନ୍ଥର - 'ଲୋକବତ୍ତୁ ଲୀଳାକୈବଲ୍ୟମ୍' (୨/୧/୩୩) - ଏହି ସୂତ୍ରରେ ନିର୍ଗୁଣ ନିରାକାର ନିର୍ବିକାର ନିରୀହ ନିଃସଙ୍ଗ ବ୍ରହ୍ମ ଜଗତର କଲ୍ୟାଣ ପାଇଁ ଲୀଳାବତାରସ୍ୱରୂପ ରାମ-କୃଷ୍ଣ ଇତ୍ୟାଦି ରୂପରେ ଧରାରେ ଅବତୀର୍ଣ୍ଣ ହୋଇ ମନୁଷ୍ୟ ଭଳି ଆଚରଣ କରିଥାଆନ୍ତି, ଏହା ସ୍ପଷ୍ଟ ପ୍ରତିପାଦନ କରିଅଛନ୍ତି । ପୁନଶ୍ଚ ଶ୍ରୀମଦ୍ଭାଗବତ ମହାପୁରାଣରେ ଲୀଳାବତାର ଭଗବାନ୍ କୃଷ୍ଣଙ୍କୁ ଚୌର ଓ ଚୌରାଗ୍ରଗଣ୍ୟ ରୂପରେ ମଧ୍ୟ ବର୍ଣ୍ଣନା କରାଯାଇଅଛି ।)

**ମନ୍ତ୍ରସଂଖ୍ୟା (୨୧) :-** ଯଜୁର୍ବେଦ ଅ. ୧୬/୨୧ : ନମୋ ବଞ୍ଚତେ - ବଞ୍ଚତେ ଅର୍ଥାତ୍ ପ୍ରବଞ୍ଚକ (ପ୍ରଭୁଙ୍କ ବିଶ୍ୱସ୍ତ ହୋଇ ଯିଏ ଚୋରି କରେ), ପରିବଞ୍ଚତେ ଅର୍ଥାତ୍ ନିଜ-ପର ବିଚାର ନ କରି ଯେ ସବୁ ସ୍ଥଳରେ ଚୋରି କରୁଥିବା ଚୋର,

ନମ ଉଷ୍ଣୀଷିଣେ ଗିରିଚରାୟ କୁଲୁଞ୍ଚାନାଂ ପତୟେ ନମୋ ନମ ଇଷୁମଦ୍‌ଭ୍ୟୋ ଧନ୍ୱାୟିଭ୍ୟଶ୍ଚ ବୋ ନମଃ । ନମ ଆତନ୍ୱାନେଭ୍ୟଃ ପ୍ରତିଦଧାନେଭ୍ୟଶ୍ଚ ବୋ ନମୋ ନମ ଆୟଚ୍ଛଦ୍‌ଭ୍ୟୋଽସ୍ୟଦ୍‌ଭ୍ୟଶ୍ଚ ବୋ ନମଃ ॥୨୨॥ ନମୋ ବିସୃଜଦ୍‌ଭ୍ୟୋ ବିଧ୍ୟଦ୍‌ଭ୍ୟଶ୍ଚ ବୋ ନମୋ ନମଃ ସ୍ୱପଦ୍‌ଭ୍ୟୋ ଜାଗ୍ରଦ୍‌ଭ୍ୟଶ୍ଚ ବୋ ନମଃ । ନମଃ ଶୟାନେଭ୍ୟ ଆସୀନେଭ୍ୟଶ୍ଚ ବୋ ନମୋ ନମସ୍ତିଷ୍ଠଦ୍‌ଭ୍ୟୋ ଧାବଦ୍‌ଭ୍ୟଶ୍ଚ ବୋ ନମଃ ॥୨୩॥ ନମଃ ସଭାଭ୍ୟଃ ସଭାପତିଭ୍ୟଶ୍ଚ ବୋ ନମୋ ନମୋଽଶ୍ୱେଭ୍ୟୋଽଶ୍ୱପତିଭ୍ୟଶ୍ଚ ବୋ ନମଃ । ନମ ଆବ୍ୟାଧିନୀଭ୍ୟୋ ବିବିଧ୍ୟନ୍ତୀଭ୍ୟଶ୍ଚ ବୋ ନମୋ ନମ ଉଗଣାଭ୍ୟ-ସ୍ତୃଗୁଁହତିଭ୍ୟଶ୍ଚ ବୋ ନମଃ ॥୨୪॥

---

ପୁଣି ଯେ ଦିବାରାତ୍ର ସବୁ ସମୟରେ ଚୌର୍ଯ୍ୟବୃତ୍ତିକୁ ଆଶ୍ରୟ କରେ ଏ ସମସ୍ତଙ୍କର ରକ୍ଷକ ରୂପରେ, ପ୍ରକଟ ଚୋର ଅର୍ଥାତ୍ ଡକାୟତମାନଙ୍କ ସ୍ୱାମୀ, ଖଡ୍‌ଗ ଓ ଧନୁର୍ଧାରୀ ହିଂସେଛୁଙ୍କ ପାଳକ, ଧାନ୍ୟାଦି ଶସ୍ୟ କ୍ଷେତ୍ରରୁ ଶସ୍ୟାପହରଣକାରୀଙ୍କ ପ୍ରଭୁ, ରାତ୍ରିରେ ପଥଚାରୀ ପ୍ରାଣୀମାନଙ୍କୁ ହତ୍ୟାକାରୀ ଓ ଧନ ଲୁଣ୍ଠନକାରୀଙ୍କ ସ୍ୱାମୀ ରୂପରେ ରୁଦ୍ରଙ୍କୁ ପ୍ରଣାମ ।

**ମନ୍ତ୍ରସଂଖ୍ୟା (୨୨) :-** ଯଜୁର୍ବେଦ ଅ. ୧୬/୨୨ : ନମ ଉଷ୍ଣୀଷିଣେ - ଉଷ୍ଣୀଷ (ପଗଡ଼ି)ଧାରୀ, ପର୍ବତରେ ବିଚରଣଶୀଳ, କ୍ଷେତ୍ରଗୃହାଦିର ଅପହରଣକାରୀଙ୍କ ପାଳକ ରୁଦ୍ରଙ୍କୁ ନମସ୍କାର । ଧନୁର୍ବାଣଧାରୀ, ଧନୁରେ ଚାପ ସଂଯୋଗକାରୀ ତଥା ପ୍ରତ୍ୟଞ୍ଚାରେ ବାଣ ଆରୋପଣକାରୀ ରୁଦ୍ରଙ୍କୁ ନମସ୍କାର । ଧନୁକୁ ଆକର୍ଷଣ କରୁଥିବା ତଥା ବାଣକୁ ଚତୁଃପାର୍ଶ୍ୱରେ ନିକ୍ଷେପ କରୁଥିବା ରୁଦ୍ରଙ୍କୁ ପ୍ରଣାମ ।

**ମନ୍ତ୍ରସଂଖ୍ୟା (୨୩) :-** ଯଜୁର୍ବେଦ ଅ. ୧୬/୨୩ : ନମୋ ବିସୃଜଦ୍‌ଭ୍ୟଃ- ବାଣକୁ ଆକର୍ଷଣ କରି ଶତ୍ରୁଙ୍କ ଉପରେ ନିକ୍ଷେପ କରୁଥିବା ରୁଦ୍ରଙ୍କୁ ନମସ୍କାର । ସୁପ୍ତ ଏବଂ ଜାଗରଣଶୀଳ ରୁଦ୍ରଙ୍କୁ ପ୍ରଣାମ । ଶୋଇଥିବା ଏବଂ ଉପବେଶନ କରିଥିବା ରୁଦ୍ରଙ୍କୁ ପ୍ରଣାମ । ଗତିନିବୃତ୍ତ ଓ ତୀବ୍ର ଗତିଶୀଳ ରୁଦ୍ରଙ୍କୁ ନମସ୍କାର ।

**ମନ୍ତ୍ରସଂଖ୍ୟା (୨୪) :-** ଯଜୁର୍ବେଦ ଅ. ୧୬/୨୪ : ନମଃ ସଭାଭ୍ୟଃ - ସଭା ରୂପରେ ଓ ସଭାପତି ରୂପରେ ରୁଦ୍ରଙ୍କୁ ପ୍ରଣାମ । ଅଶ୍ୱ ରୂପରେ ଓ ଅଶ୍ୱପତି

ନମୋ ଗଣେଭ୍ୟୋ ଗଣପତିଭ୍ୟଶ୍ଚ ବୋ ନମୋ ନମୋ ବ୍ରାତେଭ୍ୟୋ ବ୍ରାତପତିଭ୍ୟଶ୍ଚ ବୋ ନମଃ । ନମୋ ଗୃତ୍ସେଭ୍ୟୋ ଗୃତ୍ସପତିଭ୍ୟଶ୍ଚ ବୋ ନମୋ ନମୋ ବିରୂପେଭ୍ୟୋ ବିଶ୍ୱରୂପେଭ୍ୟଶ୍ଚ ବୋ ନମଃ ॥୨୫॥ ନମଃ ସେନାଭ୍ୟଃ ସେନାନିଭ୍ୟଶ୍ଚ ବୋ ନମୋ ନମୋ ରଥିଭ୍ୟୋ ଅରଥେଭ୍ୟଶ୍ଚ ବୋ ନମଃ ॥ ନମଃ କ୍ଷତ୍ତୃଭ୍ୟଃ ସଂଗ୍ରହୀତୃଭ୍ୟଶ୍ଚ ବୋ ନମୋ ନମୋ ମହଦ୍‌ଭ୍ୟୋ ଅର୍ଭକେଭ୍ୟଶ୍ଚ ବୋ ନମଃ ॥୨୬॥ ନମସ୍ତକ୍ଷଭ୍ୟୋ ରଥକାରେଭ୍ୟଶ୍ଚ ବୋ ନମୋ ନମଃ କୁଲାଲେଭ୍ୟଃ କର୍ମାରେଭ୍ୟଶ୍ଚ ବୋ ନମଃ । ନମୋ ନିଷାଦେଭ୍ୟଃ ପୁଞ୍ଜିଷ୍ଟେଭ୍ୟଶ୍ଚ ବୋ ନମୋ ନମଃ ଶ୍ୱନିଭ୍ୟୋ ମୃଗୟୁଭ୍ୟଶ୍ଚ ବୋ ନମଃ ॥୨୭॥

---

ରୂପରେ ତୁମ୍ଭଙ୍କୁ ପ୍ରଣାମ । ସବୁ ପ୍ରକାର ବାଣଦ୍ୱାରା ବଧ କରିପାରୁଥିବା ଯୋଦ୍ଧାରୂପକ ତଥା ବିବିଧ ପ୍ରକାରରେ ବିଦ୍ଧ କରୁଥିବା ସୈନ୍ୟରୂପକ ରୁଦ୍ରଙ୍କୁ ଏବଂ ଶତ୍ରୁଙ୍କୁ ହତ୍ୟା କର୍ମରେ ସାହାଯ୍ୟ କରୁଥିବା ଦୁର୍ଗାଦି ମାତୃକାଙ୍କୁ ମଧ୍ୟ ପ୍ରଣାମ ।

**ମନ୍ତ୍ରସଂଖ୍ୟା (୨୫) :-** ଯଜୁର୍ବେଦ ଅ. ୧୬/୨୫ : ନମୋ ଗଣେଭ୍ୟଃ - ହେ ରୁଦ୍ର **!** ତୁମ ଗଣଙ୍କୁ ତଥା ଗଣପତି ରୂପରେ ତୁମକୁ ପ୍ରଣାମ । ନାନା ଜାତିର ସଙ୍ଘକୁ ତଥା ସେହି ଜାତିମାନଙ୍କର ମୁଖ୍ୟ ରୂପରେ ତୁମକୁ ପ୍ରଣାମ । ଲମ୍ପଟକୁ ତଥା ଲମ୍ପଟଙ୍କ ସ୍ୱାମୀ ରୂପରେ ତୁମକୁ ନମସ୍କାର । ଜଟାଧାରୀ, ମୁଣ୍ଡିତ ମସ୍ତକ ରୂପକ କୁତ୍ସିତ ରୂପଧାରୀ, ଅଶ୍ୱବଦନ ତଥା ହୟଗ୍ରୀବାଦି ବିଶ୍ୱରୂପ ଗଣ ସ୍ୱରୂପରେ ମଧ୍ୟ ତୁମ୍ଭଙ୍କୁ ନମସ୍କାର ।

**ମନ୍ତ୍ରସଂଖ୍ୟା (୨୬) :-** ଯଜୁର୍ବେଦ ଅ. ୧୬/୨୬ : ନମଃ ସେନାଭ୍ୟଃ - ସେନା ଏବଂ ସେନାପତି ରୂପରେ ରୁଦ୍ରଙ୍କୁ ପ୍ରଣାମ । ରଥାରୂଢଙ୍କୁ ତଥା ରଥରହିତଙ୍କୁ, ରଥାଧିଷ୍ଠାତା ଓ ରଥଚାଳକ ସାରଥୀଙ୍କୁ, ମହାବୀରମାନଙ୍କୁ ଏବଂ ପରାକ୍ରମୀ ଶିଶୁମାନଙ୍କୁ ମଧ୍ୟ ରୁଦ୍ର ରୂପରେ ନମସ୍କାର ।

**ମନ୍ତ୍ରସଂଖ୍ୟା (୨୭) :-** ଯଜୁର୍ବେଦ ଅ. ୧୬/୨୭ : ନମସ୍ତକ୍ଷଭ୍ୟଃ - ରଥକାର (ବଢ଼େଇ), କୁମ୍ଭକାର, ଲୌହକାର (କମାର), ବ୍ୟାଧ, ମତ୍ସ୍ୟମାଂସ ଭକ୍ଷଣକାରୀ, ଶିକାରି କୁକୁର, ଲୁବ୍‌ଧକ ଅର୍ଥାତ୍ ଶିକାରି କୁକୁରମାନଙ୍କ ସ୍ୱାମୀ ଏ ସମସ୍ତ ରୂପରେ ତୁମକୁ ପ୍ରଣାମ ।

ନମଃ ଶ୍ୱଭ୍ୟଃ ଶ୍ୱପତିଭ୍ୟଶ୍ଚ ବୋ ନମୋ ନମୋ ଭବାୟ ଚ ରୁଦ୍ରାୟ ଚ । ନମଃ ଶର୍ବାୟ ଚ ପଶୁପତୟେ ଚ ନମୋ ନୀଳଗ୍ରୀବାୟ ଚ ଶିତିକଣ୍ଠାୟ ଚ ॥୨୮॥ ନମଃ କପର୍ଦ୍ଦିନେ ଚ ବ୍ୟୁପ୍ତକେଶାୟ ଚ ନମଃ ସହସ୍ରାକ୍ଷାୟ ଚ ଶତଧନ୍ୱନେ ଚ । ନମୋ ଗିରିଶୟାୟ ଚ ଶିପିବିଷ୍ଟାୟ ଚ ନମୋ ମୀଢୁଷ୍ଟମାୟ ଚେଷୁମତେ ଚ ॥୨୯॥ ନମୋ ହ୍ରସ୍ୱାୟ ଚ ବାମନାୟ ଚ ନମୋ ବୃହତେ ଚ ବର୍ଷୀୟସେ ଚ । ନମୋ ବୃଦ୍ଧାୟ ଚ ସବୃଧେ ଚ ନମୋଽଗ୍ର୍ୟାୟ ଚ ପ୍ରଥମାୟ ଚ ॥୩୦॥

---

**ମନ୍ତ୍ରସଂଖ୍ୟା (୨୮) :-** ଯଜୁର୍ବେଦ ଅ. ୧୬/୨୮ : ନମଃ ଶ୍ୱଭ୍ୟଃ - କୁକୁର ଏବଂ କୁକୁରଙ୍କ ସ୍ୱାମୀ କିରାତ ଇତ୍ୟାଦି ରୂପରେ ରୁଦ୍ରଙ୍କୁ ପ୍ରଣାମ । ଭବ (ଭବନ୍ତି ଉତ୍ପଦ୍ୟନ୍ତେ ଜନ୍ତବୋଽସ୍ମାଦିତି) ଅର୍ଥାତ୍ ଯାହାଙ୍କଠାରୁ ସମସ୍ତ ଜନ୍ତୁମାନେ ଉତ୍ପନ୍ନ ହୁଅନ୍ତି, ସେହି ଶିବଙ୍କୁ ନମସ୍କାର । ରୁଦ୍ର (ରୁତ୍ ଦୁଃଖଂ ଦ୍ରାବୟତି ନାଶୟତି ରୁଦ୍ରଃ)ଙ୍କୁ ନମସ୍କାର । ଶର୍ବ (ଶୃଣାତି ହିନସ୍ତି ପାପମିତି ଶର୍ବଃ)ଙ୍କୁ ନମସ୍କାର । ପଶୁପତି (ପଶୂନ୍ ଅଜ୍ଞାନ୍ ପାତି ରକ୍ଷୟତି ପଶୁପତିଃ)ଙ୍କୁ ନମସ୍କାର । ନୀଳଗ୍ରୀବ (ବିଷ ଭକ୍ଷଣଦ୍ୱାରା ଯାହାଙ୍କର କଣ୍ଠଦେଶ ନୀଳବର୍ଣ୍ଣ ହୋଇଅଛି ସେହି ନୀଳକଣ୍ଠ)ଙ୍କୁ ନମସ୍କାର । ଶିତିକଣ୍ଠ(ଶିତିଃ ଶ୍ୱେତଃ କଣ୍ଠଃ ନୀଳାତିରିକ୍ତଭାଗଃ ଯସ୍ୟ) ଅର୍ଥାତ୍ ନୀଳବର୍ଣ୍ଣ ବ୍ୟତିରିକ୍ତ ଯେଉଁ ଅବଶିଷ୍ଟ ଶ୍ୱେତବର୍ଣ୍ଣ ବିଶିଷ୍ଟ କଣ୍ଠଭାଗ ଯାହାଙ୍କର, ସେହି ଶିତିକଣ୍ଠଙ୍କୁ ନମସ୍କାର ।

**ମନ୍ତ୍ରସଂଖ୍ୟା (୨୯) :-** ଯଜୁର୍ବେଦ ଅ. ୧୬/୨୯ : ନମଃ କପର୍ଦ୍ଦିନେ- ଜଟାଜୁଟଧାରୀ, ମୁଣ୍ଡିତ ମସ୍ତକ, ସହସ୍ରାକ୍ଷ (ଅନେକ ଚକ୍ଷୁଧାରୀ), ବହୁଧନୁର୍ଦ୍ଧାରୀ, କୈଳାସ ପର୍ବତରେ ଶୟନ କରୁଥିବା, ବିଷ୍ଣୁ ଅଥବା ଆଦିତ୍ୟ (ଶିପିବିଷ୍ଟ ଶବ୍ଦରେ ବିଷ୍ଣୁ ଏବଂ ଆଦିତ୍ୟଙ୍କୁ ମଧ୍ୟ ବୁଝାଯାଏ) ରୂପରେ, ମୀଢୁଷ୍ଟମ (ସେକ୍ତା = ତେଜସ୍ୱୀ ଯୁବକ) ଉତ୍ତମ ସ୍ୱାମୀ ରୂପରେ (ମତାନ୍ତରରେ ବର୍ଷଣକାରୀ ମେଘ ରୂପରେ) ଏବଂ ବାଣଯୁକ୍ତ ରୁଦ୍ରଙ୍କୁ ନମସ୍କାର ।

**ମନ୍ତ୍ରସଂଖ୍ୟା (୩୦) :-** ଯଜୁର୍ବେଦ ଅ. ୧୬/୩୦ : ନମୋ ହ୍ରସ୍ୱାୟ - ହ୍ରସ୍ୱ ଅର୍ଥାତ୍ ଦୁର୍ବଳ ଶରୀର ବିଶିଷ୍ଟ, ବାମନ ବା ଖର୍ବକାୟ, ବୃହତ୍କାୟ, ବର୍ଷୀୟାନ୍, ବୃଦ୍ଧ, ସବୃଧେ = ଅନୁଭବୀ (ମତାନ୍ତରରେ ସବୃତ୍ = ବିଦ୍ୟାବିନୟାଦିଗୁଣୈର୍ବର୍ଧନ୍ତେ

ନମ ଆଶବେ ଚାଜିରାୟ ଚ ନମଃ ଶୀଘ୍ର୍ୟାୟ ଚ ଶୀଭ୍ୟାୟ ଚ । ନମ ଊର୍ମ୍ୟାୟ ଚାବସ୍ୱନ୍ୟାୟ ଚ ନମୋ ନାଦେୟାୟ ଚ ଦ୍ୱୀପ୍ୟାୟ ଚ ॥୩୧। ନମୋ ଜ୍ୟେଷ୍ଠାୟ ଚ କନିଷ୍ଠାୟ ଚ ନମଃ ପୂର୍ବଜାୟ ଚାପରଜାୟ ଚ । ନମୋ ମଧ୍ୟମାୟ ଚାପଗଲ୍‌ଭାୟ ଚ ନମୋ ଜଘନ୍ୟାୟ ଚ ବୁଧ୍ନ୍ୟାୟ ଚ ॥୩୨॥ ନମଃ ସୋଭ୍ୟାୟ ଚ ପ୍ରତିସର୍ଯାୟ ଚ ନମୋ ଯାମ୍ୟାୟ ଚ କ୍ଷେମ୍ୟାୟ ଚ । ନମଃ ଶ୍ଳୋକ୍ୟାୟ ଚାବସାନ୍ୟାୟ ଚ ନମ ଉର୍ବର୍ଯାୟ ଚ ଖଲ୍ୟାୟ ଚ ॥୩୩॥

---

ବୃଦ୍ଧାଃ ପଣ୍ଡିତାଃ ତୈଃ ସହ ବର୍ତ୍ତତେ ଇତି ସବୃତ୍ ତସ୍ମୈ ସବୃଧେ), ଜଗତର ସୃଷ୍ଟି ପୂର୍ବରୁ ଯାହାଙ୍କର (ରୁଦ୍ରଙ୍କର) ସ୍ଥିତି, ସବୁ କ୍ଷେତ୍ରରେ ପ୍ରଥମ - ଏ ସମସ୍ତ ରୂପରେ ରୁଦ୍ରଙ୍କୁ ନମସ୍କାର ।

**ମନ୍ତ୍ରସଂଖ୍ୟା (୩୧) :-** ଯଜୁର୍ବେଦ ଅ. ୧୬/୩୧ : ନମ ଆଶବେ - ସମଗ୍ର ଜଗତରେ ବ୍ୟାପ୍ତ, ସର୍ବଦା ଗତିଶୀଳ, କ୍ଷିପ୍ରକାରୀ, ଜଳପ୍ରବାହୀ (ମତାନ୍ତରରେ ଶୀଭଃ = ଆତ୍ମଶ୍ଳାଘୀ), ଲହରୀଯୁକ୍ତ ଜଳ , ସ୍ଥିର ଜଳ, ନଦୀଜ (ନଦୀରେ ଉତ୍ପନ୍ନ), ଦ୍ୱୀପୋତ୍ପନ୍ନ - ଏ ସମସ୍ତ ସ୍ୱରୂପରେ ରୁଦ୍ରଙ୍କୁ ନମସ୍କାର ।

**ମନ୍ତ୍ରସଂଖ୍ୟା (୩୨) :-** ଯଜୁର୍ବେଦ ଅ. ୧୬/୩୨ : ନମୋ ଜ୍ୟେଷ୍ଠାୟ- ଜ୍ୟେଷ୍ଠ, କନିଷ୍ଠ, ପୂର୍ବଜାତ, ପରବର୍ତ୍ତିଜାତ, ମଧ୍ୟମକାଳରେ ଜାତ ଅର୍ଥାତ୍ ସୃଷ୍ଟିର ପ୍ରାରମ୍ଭରେ ହିରଣ୍ୟଗର୍ଭ ରୂପରେ, ପରେ ପ୍ରଳୟ କାଳରେ କାଳାଗ୍ନି ରୂପରେ ଏବଂ ସୃଷ୍ଟି ପ୍ରଳୟର ମଧ୍ୟଭାଗରେ ଦେବମନୁଷ୍ୟପଶୁପକ୍ଷୀ ରୂପରେ ଜାତ ହେଲେ ଯେଉଁ ରୁଦ୍ର ତାଙ୍କୁ ନମସ୍କାର । ଅପଗଲ୍ଭ ବା ଅପ୍ରଗଲ୍ଭ ଅର୍ଥାତ୍ ଅବ୍ୟୁତ୍ପନ୍ନ ଇନ୍ଦ୍ରିୟ ସ୍ୱରୂପ, ଗୋମହିଷାଦିପଶୁମାନଙ୍କର ଜଙ୍ଘ ରୂପରେ, ବୃକ୍ଷାଦିର ମୂଳ ସ୍ୱରୂପରେ ସେହି ରୁଦ୍ରଙ୍କୁ ନମସ୍କାର ।

**ମନ୍ତ୍ରସଂଖ୍ୟା (୩୩) :-** ଯଜୁର୍ବେଦ ଅ. ୧୬/୩୩ : ନମଃ ସୋଭ୍ୟାୟ - ସୋଭ୍ୟ ଅର୍ଥାତ୍ ଗନ୍ଧର୍ବ ନଗରରେ ଉତ୍ପନ୍ନ ଅଥବା ପାପପୁଣ୍ୟଯୁକ୍ତ ମନୁଷ୍ୟ ଲୋକରେ ଜନ୍ମିତ, ବିବାହୋଚିତ ହସ୍ତଗ୍ରନ୍ଥିସୂତ୍ର ଅଥବା ଅଭିଚାରୋତ୍ପନ୍ନ, ପାପୀମାନଙ୍କୁ ନରକଯନ୍ତ୍ରଣା ପ୍ରଦାୟକ, ପୁଣି କୁଶଳପ୍ରଦାତା (ମଙ୍ଗଳବିଧାୟକ), ଶ୍ଳୋକ ଅର୍ଥାତ୍

ନମୋ ବନ୍ୟାୟ ଚ କକ୍ଷ୍ୟାୟ ଚ ନମଃ ଶ୍ରବାୟ ଚ ପ୍ରତିଶ୍ରବାୟ ଚ । ନମ ଆଶୁଷେଣାୟ ଚାଶୁରଥାୟ ଚ ନମଃ ଶୂରାୟ ଚାବଭେଦିନେ ଚ ॥୩୪॥ ନମୋ ବିଲ୍ମିନେ ଚ କବଚିନେ ଚ ନମୋ ବର୍ମିଣେ ଚ ବରୂଥିନେ ଚ । ନମଃ ଶ୍ରୁତାୟ ଚ ଶ୍ରୁତସେନାୟ ଚ ନମୋ ଦୁନ୍ଦୁଭ୍ୟାୟ ଚାହନନ୍ୟାୟ ଚ ॥୩୫॥ ନମୋ ଧୃଷ୍ଣବେ ଚ ପ୍ରମୃଶାୟ ଚ ନମୋ ନିଷଙ୍ଗିଣେ ଚେଷୁଧିମତେ ଚ । ନମସ୍ତୀକ୍ଷ୍ଣେଷବେ ଚାୟୁଧିନେ ଚ ନମଃ ସ୍ୱାୟୁଧାୟ ଚ ସୁଧନ୍ୱନେ ଚ ॥୩୬॥

---

ବୈଦିକ ମନ୍ତ୍ର ରୂପରେ ଅଥବା ଯଶପ୍ରଦାତା ଭାବରେ, ଅବସାନ୍ୟ ଅର୍ଥାତ୍ ସମାପ୍ତି ଅଥବା ବେଦାନ୍ତବେଦ୍ୟ ରୂପରେ, ଉର୍ବର ଭୂମିରେ ଜାତ ଧାନ୍ୟାଦି ଶସ୍ୟ ସ୍ୱରୂପରେ, ଧାନ୍ୟାଦିଶସ୍ୟଙ୍କୁ ସଂଗ୍ରହ କରିବା ସ୍ଥାନ ଖଳା ଏହିପରି ସମସ୍ତ ରୂପରେ ରୁଦ୍ରଙ୍କୁ ନମସ୍କାର ।

**ମନ୍ତ୍ରସଂଖ୍ୟା (୩୪) :-** ଯଜୁର୍ବେଦ ଅ.୧୬/୩୪ : ନମୋ ବନ୍ୟାୟ- ଅରଣ୍ୟୋଭବ, ତୃଣ ଓ ଲତା ରୂପରେ, ଶବ୍ଦ ଏବଂ ପ୍ରତିଶବ୍ଦ ଭାବରେ, ଶୀଘ୍ର ଗତିରେ ଗମନ କରିପାରୁଥିବା ସୈନ୍ୟ, ଶୀଘ୍ର ରଥ ଚାଳକ, ବୀର ଏବଂ ଶତ୍ରୁଙ୍କୁ ବିଦାରଣ କରୁଥିବା ଏ ସମସ୍ତ ରୂପରେ ରୁଦ୍ରଙ୍କୁ ପ୍ରଣାମ ।

**ମନ୍ତ୍ରସଂଖ୍ୟା (୩୫) :-** ଯଜୁର୍ବେଦ ଅ.୧୬/୩୫ : ନମୋ ବିଲ୍ମିନେ - ଶିରସ୍ତ୍ରାଣ (ମସ୍ତକ ରକ୍ଷାକାରୀ କବଚ), ଶରୀରରକ୍ଷକ କାର୍ପାସ ନିର୍ମିତ କବଚ, ଲୌହ ନିର୍ମିତ ବର୍ମ ବା କବଚ, ହାତୀ ଉପରେ ବସିବା ନିମିତ୍ତ ପ୍ରକୋଷ୍ଠ, ସର୍ବଲୋକ ପ୍ରସିଦ୍ଧ ସୈନ୍ୟ ସମେତ ବିଶିଷ୍ଟ ସେନାପତି, ଦୁନ୍ଦୁଭି (ଭେରୀ) ଶବ୍ଦ, ବାଦ୍ୟଯନ୍ତ୍ରଙ୍କୁ ବଜେଇବା ପାଇଁ ଯେଉଁ ଦଣ୍ଡାଦି - ଏ ସମସ୍ତ ସ୍ୱରୂପରେ ଭଗବାନ୍ ରୁଦ୍ରଙ୍କୁ ପ୍ରଣାମ ।

**ମନ୍ତ୍ରସଂଖ୍ୟା (୩୬) :-** ଯଜୁର୍ବେଦ ଅ.୧୬/୩୬ : ନମୋ ଧୃଷ୍ଣବେ - ପ୍ରଗଲ୍ଭ (ପ୍ରତ୍ୟୁତ୍ପନ୍ନମତି), ବିମର୍ଶକାରୀ ପଣ୍ଡିତ, ଖଡ୍‌ଗ ଏବଂ ବାଣଧାରୀ, ତୀକ୍ଷ୍ଣବାଣ ଓ ଆୟୁଧଧାରୀ, ଶୋଭନ ଆୟୁଧ (ତ୍ରିଶୂଳ) ଓ ଶୋଭନ ଧନୁ (ପିନାକ)କୁ ଧାରଣ କରୁଥିବା ରୁଦ୍ରଙ୍କୁ ନମସ୍କାର ।

ନମଃ ସ୍ରୁତ୍ୟାୟ ଚ ପଥ୍ୟାୟ ଚ ନମଃ କାଟ୍ୟାୟ ଚ ନୀପ୍ୟାୟ ଚ । ନମଃ କୁଲ୍ୟାୟ ଚ ସରସ୍ୟାୟ ଚ ନମୋ ନାଦେୟାୟ ଚ ବୈଶନ୍ତାୟ ଚ ॥୩୭॥ ନମଃ କୂପ୍ୟାୟ ଚାଽବଟ୍ୟାୟ ଚ ନମ ବୀଦ୍ଧ୍ୟାୟ ଚାତପ୍ୟାୟ ଚ । ନମୋ ମେଘ୍ୟାୟ ଚ ବିଦ୍ୟୁତ୍ୟାୟ ଚ ନମୋ ବର୍ଷ୍ୟାୟ ଚାବର୍ଷ୍ୟାୟ ଚ ॥୩୮॥ ନମୋ ବାତ୍ୟାୟ ଚ ରେଷ୍ମ୍ୟାୟ ଚ ନମୋ ବାସ୍ତବ୍ୟାୟ ଚ ବାସ୍ତୁପାୟ ଚ । ନମଃ ସୋମାୟ ଚ ରୁଦ୍ରାୟ ଚ ନମସ୍ତାମ୍ରାୟ ଚାରୁଣାୟ ଚ ॥୩୯॥ ନମଃ ଶଙ୍ଗବେ ଚ ପଶୁପତୟେ ଚ ନମ ଉଗ୍ରାୟ ଚ ଭୀମାୟ ଚ । ନମୋଽଗ୍ରେବଧାୟ ଚ ଦୂରେବଧାୟ ଚ ନମୋ ହନ୍ତ୍ରେ ଚ ହନୀୟସେ ଚ ନମୋ ବୃକ୍ଷେଭ୍ୟୋ ହରିକେଶେଭ୍ୟୋ ନମସ୍ତାରାୟ ॥୪୦॥

---

**ମନ୍ତ୍ରସଂଖ୍ୟା (୩୭) :-** ଯଜୁର୍ବେଦ ଅ.୧୬/୩୭ : ନମଃ ସ୍ରୁତ୍ୟାୟ - କ୍ଷୁଦ୍ରମାର୍ଗ, ବିସ୍ତୃତମାର୍ଗ, ବିଷମମାର୍ଗ, କୂଲ୍ୟ ଅର୍ଥାତ୍ ପ୍ରଣାଳୀ ବା କେନାଲ, ଜଳପ୍ରପାତ, ଜଳାଶୟରୁ ଜାତ, ନଦୀରୁ ଉତ୍ପନ୍ନ ତଥା ପୋଖରୀରୁ ଉଦ୍‌ଭବ - ଏ ସମସ୍ତ ରୂପରେ ରୁଦ୍ରଙ୍କୁ ପ୍ରଣାମ ।

**ମନ୍ତ୍ରସଂଖ୍ୟା (୩୮) :-** ଯଜୁର୍ବେଦ ଅ.୧୬/୩୮ : ନମଃ କୂପ୍ୟାୟ - କୂପରୁ ଜାତ, ଗର୍ତ୍ତରୁ ଉତ୍ପନ୍ନ, ଛାୟାରୁ ଜାତ, ଆତପ ଅର୍ଥାତ୍ ସୂର୍ଯ୍ୟକିରଣରୁ ଜାତ, ମେଘ ଓ ବିଦ୍ୟୁତ୍‌ରୁ ଉତ୍ପନ୍ନ, ବୃଷ୍ଟିରୁ ଉଦ୍‌ଭବ ତଥା ବୃଷ୍ଟିରହିତରୁ ଉଦ୍‌ଗମ- ଏ ସମସ୍ତ ସ୍ୱରୂପରେ ରୁଦ୍ରଙ୍କୁ ପ୍ରଣାମ ।

**ମନ୍ତ୍ରସଂଖ୍ୟା (୩୯) :-** ଯଜୁର୍ବେଦ ଅ.୧୬/୩୯ : ନମୋ ବାତ୍ୟାୟ- ବାତ୍ୟାସ୍ୱରୂପ, ପ୍ରଳୟକାଳରେ ମଧ୍ୟ ବିଦ୍ୟମାନ, ବାସ୍ତୁସ୍ୱରୂପ, ବାସ୍ତୁର ପାଳକ ଏପରି ସ୍ୱରୂପରେ ଏବଂ ଉମାସମନ୍ୱିତ ରୁଦ୍ରଙ୍କୁ ପ୍ରଣାମ । ତାମ୍ରବର୍ଣ୍ଣ ଓ ଅରୁଣବର୍ଣ୍ଣ ବିଶିଷ୍ଟ ଶଙ୍କରଙ୍କୁ ପ୍ରଣାମ ।

**ମନ୍ତ୍ରସଂଖ୍ୟା (୪୦) :-** ଯଜୁର୍ବେଦ ଅ.୧୬/୪୦ : ନମଃ ଶଙ୍ଗବେ- ସୁଖପ୍ରଦାୟକ, ପଶୁପତି, ଉଗ୍ରସ୍ୱଭାବ, ଭୟଙ୍କର ସ୍ୱରୂପ, ସମ୍ମୁଖରେ ଶତ୍ରୁଙ୍କୁ ବଧକାରୀ, ଦୂରରୁ ମଧ୍ୟ ଶତ୍ରୁର ସଂହାରକର୍ତ୍ତା, ଶତ୍ରୁ ହତ୍ୟାକାରୀ ଏବଂ ଅତ୍ୟନ୍ତ ହତ୍ୟାକାରୀ, ହରିତ୍‌ବର୍ଣ୍ଣ ପତ୍ର ସଦୃଶ କେଶଯୁକ୍ତ ବୃକ୍ଷସ୍ୱରୂପଧାରୀ, ସଂସାରର ଏକମାତ୍ର ତ୍ରାଣକର୍ତ୍ତା ରୁଦ୍ରଙ୍କୁ ପ୍ରଣାମ ।

ନମଃ ଶମ୍ଭବାୟ ଚ ମୟୋଭବାୟ ଚ ନମଃ ଶଙ୍କରାୟ ଚ । ମୟସ୍କରାୟ ଚ ନମଃ ଶିବାୟ ଚ ଶିବତରାୟ ଚ ॥୪୧॥ ନମଃ ପାର୍ଯ୍ୟାୟ ଚାବାର୍ଯ୍ୟାୟ ଚ ନମଃ ପ୍ରତରଣାୟ ଚୋତ୍ତରଣାୟ ଚ । ନମସ୍ତୀର୍ଥ୍ୟାୟ ଚ କୂଲ୍ୟାୟ ଚ ନମଃ ଶଷ୍ପ୍ୟାୟ ଚ ଫେନ୍ୟାୟ ଚ ॥୪୨॥ ନମଃ ସିକତ୍ୟାୟ ଚ ପ୍ରବାହ୍ୟାୟ ଚ ନମଃ କିଗୁଁଶିଲାୟ ଚ କ୍ଷୟଣାୟ ଚ । ନମଃ କପର୍ଦ୍ଦିନେ ଚ ପୁଲସ୍ତିନେ ଚ ନମ ଇରିଣ୍ୟାୟ ଚ ପ୍ରପଥ୍ୟାୟ ଚ ॥୪୩॥ ନମୋ ବ୍ରଜ୍ୟାୟ ଚ ଗୋଷ୍ଠ୍ୟାୟ ଚ ନମସ୍ତଲ୍ପ୍ୟାୟ ଚ ଗେହ୍ୟାୟ ଚ । ନମୋ ହୃଦୟ୍ୟାୟ ଚ ନିବେଷ୍ପ୍ୟାୟ ଚ ନମଃ କାଟ୍ୟାୟ ଚ ଗହ୍ୱରେଷ୍ଠାୟ ଚ ॥୪୪॥

---

**ମନ୍ତ୍ରସଂଖ୍ୟା (୪୧) :-** ଯଜୁର୍ବେଦ ଅ.୧୬/୪୧ : ନମଃ ଶମ୍ଭବାୟ ଚ - ସୁଖସ୍ୱରୂପ ଓ ସୁଖକାରୀ, କଲ୍ୟାଣମୟ ଓ କଲ୍ୟାଣକାରୀ, ଶିବସ୍ୱରୂପ ଏବଂ ଅତ୍ୟନ୍ତ ଶୁଭସ୍ୱରୂପ ରୁଦ୍ରଙ୍କୁ ନମସ୍କାର ।

**ମନ୍ତ୍ରସଂଖ୍ୟା (୪୨) :-** ଯଜୁର୍ବେଦ ଅ.୧୬/୪୨ : ନମଃ ପାର୍ଯ୍ୟାୟ - ସଂସାର ସାଗରରୁ ପାର କରି ଜୀବନ୍ମୁକ୍ତି ପ୍ରଦାତା, ସଂସାରାବସ୍ଥାରେ ଯୋଗ୍ୟ ସଂସାରୀତ୍ୱକୁ ପ୍ରାପ୍ତ କରାଉଥିବା, ମନ୍ତ୍ର-ଜପ-ପୂଜା-ଧ୍ୟାନଦ୍ୱାରା ପାପରୁ ତ୍ରାଣକର୍ତ୍ତା, ଶ୍ରେଷ୍ଠ ତତ୍ତ୍ୱଜ୍ଞାନଦ୍ୱାରା ସଂସାରରୁ ଉଦ୍ଧାରକର୍ତ୍ତା, ତୀର୍ଥସ୍ୱରୂପ, ପାପପ୍ରକ୍ଷାଳନ ପାଇଁ ଗଙ୍ଗାଦି ପବିତ୍ର ନଦୀର କୂଳସ୍ୱରୂପ, କୁଶାଦି ପବିତ୍ର ତୃଣରୂପ ଏବଂ ପବିତ୍ର ଜଳର ଫେଣସ୍ୱରୂପ ରୁଦ୍ରଙ୍କୁ ନମସ୍କାର ।

**ମନ୍ତ୍ରସଂଖ୍ୟା (୪୩) :-** ଯଜୁର୍ବେଦ ଅ.୧୬/୪୩ : ନମଃ ସିକତ୍ୟାୟ - ବାଲିରୁ ଜାତ, ଜଳସ୍ରୋତରୁ ଜାତ, କ୍ଷୁଦ୍ର ଶିଳାଖଣ୍ଡରୁ ଉତ୍ପନ୍ନ, ସ୍ଥିର ଜଳାଶୟ ସ୍ୱରୂପ, ଜଟାଜୁଟଧାରୀ, ସର୍ବାନ୍ତର୍ଯ୍ୟାମୀ, ତୃଣରହିତ ସ୍ଥାନରୁ ଜାତ, ଉତ୍କୃଷ୍ଟ ମାର୍ଗ ସମ୍ଭୂତ ଯେଉଁ ଭଗବାନ୍ ରୁଦ୍ର ତାଙ୍କୁ ପ୍ରଣାମ ।

**ମନ୍ତ୍ରସଂଖ୍ୟା (୪୪) :-** ଯଜୁର୍ବେଦ ଅ.୧୬/୪୪ : ନମୋ ବ୍ରଜ୍ୟାୟ - ଗୋଷ୍ଠରୁ ଉତ୍ପନ୍ନ, ଗୋରୁ ବସତିସ୍ଥାନ (ଗୁହାଳ)ରୁ ଉତ୍ପନ୍ନ, ଗୃହରୁ ଜାତ, ହୃଦୟରୁ ସମ୍ଭୂତ, ଜଳର ଆବର୍ତ୍ତ (ଭଉଁରୀ)ରୁ ଅଥବା କୂପରୁ ଜାତ, ଗିରି ଗୁମ୍ଫାନିବାସୀ - ଏହି ସମସ୍ତ ସ୍ୱରୂପରେ ରୁଦ୍ରଙ୍କୁ ପ୍ରଣାମ ।

ନମଃ ଶୁଷ୍କ୍ୟାୟ ଚ ହରିତ୍ୟାୟ ଚ ନମଃ ପାଗୁଁସବ୍ୟାୟ ଚ ରଜସ୍ୟାୟ ଚ ।
ନମୋ ଲୋପ୍ୟାୟ ଚୋଲପ୍ୟାୟ ଚ ନମ ଊର୍ବ୍ୟାୟ ଚ ସୂର୍ବ୍ୟାୟ ଚ ॥୪୫॥
ନମଃ ପର୍ଣ୍ଣାୟ ଚ ପର୍ଣ୍ଣଶଦାୟ ଚ ନମ ଉଦ୍‌ଗୁରମାଣାୟ ଚାଭିଘ୍ନତେ ଚ ।
ନମ ଆଖିଦତେ ଚ ପ୍ରଖିଦତେ ଚ ନମ ଇଷୁକୃଦ୍‌ଭ୍ୟୋ ଧନୁଷ୍କୃଦ୍‌ଭ୍ୟଶ୍ଚ
ବୋ ନମଃ । ନମୋ ବଃ କିରିକେଭ୍ୟୋ ଦେବାନାଗୁଁ ହୃଦୟେଭ୍ୟୋ ନମୋ
ବିଚିନ୍ୱକେଭ୍ୟୋ ନମୋ ବିକ୍ଷିଣକେଭ୍ୟୋ ନମ ଆନିର୍ହତେଭ୍ୟଃ ॥୪୬॥
ଦ୍ରାପେ ଅନ୍ଧସସ୍ପତେ ଦରିଦ୍ର ନୀଲଲୋହିତ । ଆସାଂ ପ୍ରଜାନାମେଷାଂ
ପଶୂନାଂ ମା ଭେର୍ମା ରୋଙ୍‌ମୋ ଚ ନଃ କିଞ୍ଚନାମମତ୍ ॥୪୭॥

---

**ମନ୍ତ୍ରସଂଖ୍ୟା (୪୫) :-** ଯଜୁର୍ବେଦ ଅ.୧୬/୪୫ : ନମଃ ଶୁଷ୍କ୍ୟାୟ - ଶୁଷ୍କ କାଷ୍ଠାଦିରୁ ଉଦ୍‌ଭବ, ହରିତ୍‌ବର୍ଣ୍ଣ ବିଶିଷ୍ଟ ପତର ଇତ୍ୟାଦିରୁ ଉଦ୍‌ଗମ, ଧୂଳିରୁ ଉତ୍ପନ୍ନ, ରଜଃକଣା (କ୍ଷୁଦ୍ର ଧୂଳିକଣା)ରୁ ସମ୍ଭୂତ, ଅଗମ୍ୟ ପ୍ରଦେଶୋଭବ, ଉଲପ୍ୟନାମକ ତୃଣ ବିଶେଷରୁ ଜାତ, ଭୂମିରୁ ଜାତ, କଷ୍ଟାନଳରୁ ଉଦ୍‌ଗତ - ଏହିପରି ସ୍ୱଭାବ ବିଶିଷ୍ଟ ରୁଦ୍ରଙ୍କୁ ପ୍ରଣାମ ।

**ମନ୍ତ୍ରସଂଖ୍ୟା (୪୬) :-** ଯଜୁର୍ବେଦ ଅ.୧୬/୪୬ : ନମଃ ପର୍ଣ୍ଣାୟ - ପତ୍ରରୂପୀ, ପତିତ ପକ୍ୱପତ୍ର ସ୍ୱରୂପ, ଉଦ୍ୟମୀ, ଶତ୍ରୁଙ୍କୁ ସମ୍ମୁଖ ଯୁଦ୍ଧରେ ହତ୍ୟାକାରୀ, ନାସ୍ତିକ ବା ଅଭକ୍ତମାନଙ୍କର ଦୈନ୍ୟ ବା ଦାରିଦ୍ର୍ୟପ୍ରଦ, ପାପୀମାନଙ୍କ ଦୁଃଖଜନକ, ବାଣନିର୍ମାଣକାରୀ ଏବଂ ଧନୁକୁ ମଧ ପ୍ରସ୍ତୁତକାରୀ, ବର୍ଷା ଆଦିଦ୍ୱାରା ଜଗତର ଉତ୍ପତ୍ତିକର୍ତ୍ତା ତଥା ଦେବତାମାନଙ୍କ ହୃଦୟ ସଦୃଶ (ଅଗ୍ନି-ବାୟୁ-ଆଦିତ୍ୟ ସ୍ୱରୂପୀ) ରୁଦ୍ର, ପାପୀ ଏବଂ ପୁଣ୍ୟବାନ୍‌ଙ୍କୁ ପୃଥକ୍ କରୁଥିବା ଓ ପାପକୁ ବିଭିନ୍ନ ରୂପରେ ବିନାଶ କରିପାରୁଥିବା ଅଗ୍ନ୍ୟାଦି ଦେବତାମ୍ୱାଙ୍କୁ ନମସ୍କାର । ସୃଷ୍ଟ୍ୟାଦିରେ ଲୋକରୁ ବହିର୍ଭୂତ ସେହି ଅଗ୍ନି-ବାୟୁ-ସୂର୍ଯ୍ୟରୂପକ ରୁଦ୍ରଙ୍କୁ ନମସ୍କାର ।

**ମନ୍ତ୍ରସଂଖ୍ୟା (୪୭) :-** ଯଜୁର୍ବେଦ ଅ.୧୬/୪୭ : ଦ୍ରାପେ ଅନ୍ଧସସ୍ପତେ- ପାପୀମାନଙ୍କୁ ଦୁର୍ଗତି ପ୍ରାପ୍ତିକାରକ ! ହେ ସୋମର ପାଳକ ! ହେ ଦରିଦ୍ର (ନିଷ୍ପରିଗ୍ରହ) ! ହେ ନୀଳଲୋହିତ (କଣ୍ଠ ନୀଳ ମାତ୍ର ଶରୀରର ଅନ୍ୟତ୍ର ଲୋହିତବର୍ଣ୍ଣ ବିଶିଷ୍ଟ)! ହେ ରୁଦ୍ର ! ତୁମେ ଏହି ପ୍ରଜାମାନଙ୍କୁ (ପୁତ୍ର-ପୌତ୍ରାଦିଙ୍କୁ) ତଥା ଏହି ଗବାଦି ପଶୁମାନଙ୍କୁ (ଯେଉଁମାନେ ତୁମଠାରେ ଆଶ୍ରିତ) ଭୟଭୀତ କରାଅ ନାହିଁ ଏବଂ କାହାକୁ ବି ରୁଗ୍ଣ କର ନାହିଁ ।

ଇମା ରୁଦ୍ରାୟ ତବସେ କପର୍ଦ୍ଦିନେ କ୍ଷୟଦ୍‌ବୀରାୟ ପ୍ରଭରାମହେ ମତୀଃ । ଯଥା ଶମସଦ୍ ଦ୍ୱିପଦେ ଚତୁଷ୍ପଦେ ବିଶ୍ୱଂ ପୁଷ୍ଟଂ ଗ୍ରାମେଽଅସ୍ମିନ୍ନ-ନାତୁରମ୍ ॥୪୮॥ ଯା ତେ ରୁଦ୍ର ଶିବା ତନୂଃ ଶିବା ବିଶ୍ୱାହା ଭେଷଜୀ । ଶିବା ରୁତସ୍ୟ ଭେଷଜୀ ତୟା ନୋ ମୃଡ଼ ଜୀବସେ ॥୪୯॥ ପରି ନୋ ରୁଦ୍ରସ୍ୟ ହେତିର୍ବୃଣକ୍ତୁପରିତ୍ୱେଷସ୍ୟ ଦୁର୍ମତିରଘାୟୋଃ । ଅବ ସ୍ଥିରା ମଘବଦ୍‌ଭ୍ୟସ୍ତନୁଷ୍ୱମୀଢ୍ୱସ୍ତୋକାୟ ତନୟାୟ ମୃଡ଼ ॥୫୦॥ ମୀଢୁଷ୍ଟମ ଶିବତମ ଶିବୋ ନଃ ସୁମନା ଭବ । ପରମେ ବୃକ୍ଷ ଆୟୁଧଂ ନିଧାୟ କୃତ୍ତିଂ ବସାନ ଆଚର ପିନାକଂ ବିଭ୍ରଦାଗହି ॥୫୧॥

---

**ମନ୍ତ୍ରସଂଖ୍ୟା (୪୮) :-** ଯଜୁର୍ବେଦ ଅ.୧୬/୪୮ : ଇମା ରୁଦ୍ରାୟ - ଆମ୍ଭମାନଙ୍କ ଏହି ସ୍ତୁତି ବଳବାନ୍ ତେଜସ୍ୱୀ ଜଟାଜୁଟଧାରୀ ଶତ୍ରୁ ବିନାଶକାରୀ ଶଙ୍କରଙ୍କ ପାଇଁ ସମର୍ପିତ ହେଉ । ଯାହା ଫଳରେ (ତୁମର ସନ୍ତୋଷଲାଭ ଦ୍ୱାରା) ଆମ ଗ୍ରାମର ସମସ୍ତ ଦ୍ୱିପଦ (ପୁତ୍ରପୌତ୍ରାଦି) ଓ ଚତୁଷ୍ପଦ (ପଶୁ ଇତ୍ୟାଦି) ପ୍ରାଣୀମାନେ ସର୍ବବିଧ ସୁଖସମୃଦ୍ଧି ସହିତ ନିରୁପଦ୍ରବ ଜୀବନଯାପନ କରିପାରିବେ ।

**ମନ୍ତ୍ରସଂଖ୍ୟା (୪୯) :-** ଯଜୁର୍ବେଦ ଅ.୧୬/୪୯ : ଯା ତେ ରୁଦ୍ର ଶିବା - ହେ ରୁଦ୍ର ! ତୁମର ଯେଉଁ ମଙ୍ଗଳମୟ ଶାନ୍ତ ସ୍ୱରୂପ ଶରୀର, ତାହା ଆମପାଇଁ ସର୍ବଦା ମଙ୍ଗଳପ୍ରଦ ତଥା ସାଂସାରିକ ଆଧିବ୍ୟାଧି ନିବର୍ତ୍ତନ ପାଇଁ ଔଷଧସ୍ୱରୂପ ଅଟେ ।

**ମନ୍ତ୍ରସଂଖ୍ୟା (୫୦) :-** ଯଜୁର୍ବେଦ ଅ.୧୬/୫୦ : ପରିନୋ ରୁଦ୍ରସ୍ୟ - ରୁଦ୍ରଙ୍କର କ୍ରୋଧିତ ଦୁର୍ମତି ସମ୍ପନ୍ନ ଆୟୁଧସମୂହ ଆମକୁ ବର୍ଜନ କରନ୍ତୁ ଅର୍ଥାତ୍ ଆମ ପାଇଁ ସେମାନେ ବିନାଶକାରୀ ହୁଅନ୍ତୁ ନାହିଁ । ହେ କାମଦ ! ଯଜମାନଙ୍କ ଭୟ ନିବୃତ୍ତି ନିମିତ୍ତ ଧନୁକୁ ଚାପ ରହିତ କରନ୍ତୁ ଏବଂ ପୁତ୍ର ପୌତ୍ରାଦିଙ୍କ ପ୍ରତି ଦୟା ପ୍ରଦର୍ଶନ ପୂର୍ବକ ସୁଖ ପ୍ରଦାନ କରନ୍ତୁ ।

**ମନ୍ତ୍ରସଂଖ୍ୟା (୫୧) :-** ଯଜୁର୍ବେଦ ଅ.୧୬/୫୧ : ମୀଢୁଷ୍ଟମ ଶିବତମ - ହେ ଅତିଶୟ କାମସେକ୍ତ (କାମଦକ୍ଷ) ରୁଦ୍ର ! ହେ ଅତ୍ୟନ୍ତ କଲ୍ୟାଣକାରୀ ଶଙ୍କର ! ତୁମେ କଲ୍ୟାଣସ୍ୱରୂପ ଆମ ପ୍ରତି ସର୍ବଦା ଶାନ୍ତ ଓ ହୃଷ୍ଟଚିତ୍ତ ସମ୍ପନ୍ନ ହୁଅ । ତୁମେ ଦୂରସ୍ଥ ଉନ୍ନତ ବୃକ୍ଷ (ବଟବୃକ୍ଷ ଇତ୍ୟାଦି)ରେ ତ୍ରିଶୂଳାଦି ଅସ୍ତ୍ରମାନଙ୍କୁ ରଖି ଚର୍ମବସନ ପରିଧାନ କରି ଆସ ବା ତପଶ୍ଚର୍ଯ୍ୟା କର । ଆସୁଥିବା ସମୟରେ ପ୍ରତ୍ୟଞ୍ଚାରହିତ କେବଳ ପିନାକ ଧନୁକୁ ଧାରଣ କରି ଆସ ।

ବିକିରିଦ୍ର ବିଲୋହିତ ନମସ୍ତେ ଅସ୍ତୁ ଭଗବଃ । ଯାସ୍ତେ ସହସ୍ରଗୁଁ ହେତୟୋଽନ୍ୟମସ୍ମନ୍ନିବପନ୍ତୁ ତାଃ ॥୫୨॥ ସହସ୍ରାଣି ସହସ୍ରଶୋ ବାହ୍ୱୋସ୍ତବ ହେତୟଃ । ତାସାମୀଶାନୋ ଭଗବଃ ପରାଚୀନା ମୁଖା କୃଧି ॥୫୩॥ ଅସଂଖ୍ୟାତା ସହସ୍ରାଣି ଯେ ରୁଦ୍ରା ଅଧିଭୂମ୍ୟାମ୍ । ତେଷାଗୁଁ ସହସ୍ରଯୋଜନେଽବ ଧନ୍ୱାନି ତନ୍ମସି ॥୫୪॥ ଅସ୍ମିନ୍ମହତ୍ୟର୍ଣ୍ଣବେଽନ୍ତରିକ୍ଷେ ଭବା ଅଧି । ତେଷାଗୁଁ ସହସ୍ରଯୋଜନେଽବଧନ୍ୱାନି ତନ୍ମସି ॥୫୫॥

---

**ମନ୍ତ୍ରସଂଖ୍ୟା (୫୨) :-** ଯଜୁର୍ବେଦ ଅ.୧୬/୫୨ : ବିକିରିଦ୍ର ବିଲୋହିତ-ବିକିରିଦ୍ର (ବିବିଧଂ କିରିଂ = ଘାତାଦି ଉପଦ୍ରବଂ ଦ୍ରାବୟତି) ଅର୍ଥାତ୍ ବାଣବିଘାତାଦି ଉପଦ୍ରବର ବିନାଶକ, ବିଗତ ଲୋହିତ (କଲ୍ମଷ) ଶୁଦ୍ଧସ୍ୱରୂପ ହେ ଭଗବାନ୍ ରୁଦ୍ର ! ତୁମ୍ଭଙ୍କୁ ପ୍ରଣାମ । ତୁମର ଯେଉଁ ଅସଂଖ୍ୟ ଆୟୁଧ ସେ ସମସ୍ତ ଆମ ବ୍ୟତିରେକେ ଶତ୍ରୁମାନଙ୍କୁ ହତ୍ୟା କରୁ ।

**ମନ୍ତ୍ରସଂଖ୍ୟା (୫୩) :-** ଯଜୁର୍ବେଦ ଅ.୧୬/୫୩ : ସହସ୍ରାଣି ସହସ୍ରଶୋ- ସମସ୍ତ ଐଶ୍ୱର୍ଯ୍ୟ ଯୁକ୍ତ ହେ ଭଗବାନ୍ ରୁଦ୍ର ! ତୁମର ବାହୁଦ୍ୱୟରେ ସହସ୍ର (ଅସଂଖ୍ୟେୟ) ଆୟୁଧ ରହିଛନ୍ତି । ସେଗୁଡ଼ିକର ସ୍ୱାମୀ ତୁମେ, ତେଣୁ ସେଗୁଡ଼ିକୁ ଆମ ପାଇଁ ପରାଙ୍ମୁଖ କର ।

**ମନ୍ତ୍ରସଂଖ୍ୟା (୫୪) :-** ଯଜୁର୍ବେଦ ଅ.୧୬/୫୪ : ଅସଂଖ୍ୟାତା - ଭୂଲୋକରେ ଯେଉଁ ଅସଂଖ୍ୟ ରୁଦ୍ର ଅବସ୍ଥିତ ସେମାନଙ୍କର ଧନୁଗୁଡ଼ିକ ଆମଠାରୁ ହଜାରେ ଯୋଜନ (ଚାରି କୋଶରେ ଏକ ଯୋଜନ) ବ୍ୟବଧାନରେ ଅବତାରିତ କରିବାକୁ ଆମେ ନିବେଦନ କରୁଅଛୁ ।

**ମନ୍ତ୍ରସଂଖ୍ୟା (୫୫) :-** ଯଜୁର୍ବେଦ ଅ.୧୬/୫୫ : ଅସ୍ମିନ୍ ମହତ୍ୟର୍ଣ୍ଣବେ - ଏହି ମେଘର ଆଶ୍ରୟସ୍ଥଳସ୍ୱରୂପ ବିଶାଳ ଆକାଶରେ ଯେଉଁ ରୁଦ୍ରମାନେ ଅବସ୍ଥିତ ସେମାନଙ୍କ ଧନୁଗୁଡ଼ିକ ହଜାରେ ଯୋଜନ ବ୍ୟବଧାନରେ ଅବତାରିତ କରିବାକୁ ଆମେ ନିବେଦନ କରୁଅଛୁ ।

ନୀଲଗ୍ରୀବାଃ ଶିତିକଣ୍ଠା ଦିବଗୁଁ ରୁଦ୍ରା ଉପଶ୍ରିତାଃ । ତେଷାଗୁଁ ସହସ୍ରଯୋଜନେଽବଧନ୍ୱାନି ତନ୍ମସି ॥୫୬॥ ନୀଲଗ୍ରୀବାଃ ଶିତିକଣ୍ଠାଃ ଶର୍ବା ଅଧଃ କ୍ଷମାଚରାଃ । ତେଷାଗୁଁ ସହସ୍ରଯୋଜନେଽବ ଧନ୍ୱାନି ତନ୍ମସି ॥୫୭॥ ଯେ ବୃକ୍ଷେଷୁ ଶଷ୍ପିଞ୍ଜରା ନୀଲଗ୍ରୀବା ବିଲୋହିତାଃ । ତେଷାଗୁଁ ସହସ୍ରଯୋଜନେଽବ ଧନ୍ୱାନି ତନ୍ମସି ॥୫୮॥ ଯେ ଭୂତାନାମଧିପତୟୋ ବିଶିଖାସଃ କପର୍ଦିନଃ । ତେଷାଗୁଁ ସହସ୍ରଯୋଜନେଽବ ଧନ୍ୱାନି ତନ୍ମସି ॥୫୯॥

---

**ମନ୍ତ୍ରସଂଖ୍ୟା (୫୬) :-** ଯଜୁର୍ବେଦ ଅ.୧୬/୫୬ : ନୀଳଗ୍ରୀବାଃ ଶିତିକଣ୍ଠାଃ - ସ୍ୱର୍ଗସ୍ଥ ରୁଦ୍ରମାନେ କେତେକାଂଶରେ ନୀଳକଣ୍ଠ (ନୀଳଗ୍ରୀବ) ଓ ତଦତିରିକ୍ତ ଅଂଶରେ ଶ୍ୱେତକଣ୍ଠ । ସେମାନଙ୍କର ଧନୁଗୁଡ଼ିକ ହଜାରେ ଯୋଜନ ଦୂରରେ ଅବତାରଣ କରିବାକୁ ଆମ୍ଭେମାନେ ନିବେଦନ କରୁଅଛୁ ।

**ମନ୍ତ୍ରସଂଖ୍ୟା (୫୭) :-** ଯଜୁର୍ବେଦ ଅ.୧୬/୫୭ : ନୀଳଗ୍ରୀବାଃ ଶିତିକଣ୍ଠାଃ - ଭୂମିର ଅଧୋଭାଗରେ (ପାତାଳରେ) ଯେଉଁ ଶିବମାନେ ବିଚରଣ କରୁଅଛନ୍ତି, ସେହି ନୀଳଗ୍ରୀବ ଓ ଶ୍ୱେତକଣ୍ଠ ରୁଦ୍ରମାନଙ୍କ ଧନୁଗୁଡ଼ିକ ହଜାରେ ଯୋଜନ ଦୂରରେ ଅବତାରିତ କରିବାକୁ ଆମ୍ଭେ ନିବେଦନ କରୁଅଛୁ ।

**ମନ୍ତ୍ରସଂଖ୍ୟା (୫୮) :-** ଯଜୁର୍ବେଦ ଅ.୧୬/୫୮ : ଯେ ବୃକ୍ଷେଷୁ - ନବୀନ ତୃଣ ସଦୃଶ ହରିତ୍‌ବର୍ଣ୍ଣ ବିଶିଷ୍ଟ ବୃକ୍ଷମାନଙ୍କରେ ଯେଉଁ ରୁଦ୍ରମାନେ ତଥା ନୀଳକଣ୍ଠ ଏବଂ ଲୋହିତାଦି ଧାତୁଗତ ବର୍ଣ୍ଣବିଶିଷ୍ଟ (ତେଜୋମୟ ଶରୀର)ଅଥବା ଲୋହିତବର୍ଣ୍ଣ ବିଶିଷ୍ଟ ରୁଧିର ରହିତ (କେବଳ ମାଂସାଦିଯୁକ୍ତ ଶରୀରଧାରୀ) ରୁଦ୍ରମାନଙ୍କର ଧନୁଗୁଡ଼ିକ ହଜାରେ ଯୋଜନ ଦୂରରେ ଅବତାରଣ କରିବାକୁ ଆମ୍ଭେ ନିବେଦନ କରୁଅଛୁ ।

**ମନ୍ତ୍ରସଂଖ୍ୟା (୫୯) :-** ଯଜୁର୍ବେଦ ଅ.୧୬/୫୯ : ଯେ ଭୂତାନାଂ - ଯେଉଁ ରୁଦ୍ରମାନେ ପ୍ରାଣୀମାନଙ୍କର ଅଧିପତି ତଥା ଯେଉଁମାନେ ମୁଣ୍ଡିତମସ୍ତକ (ବିଶିଖ = ବିଗତ ଶିଖା ମାତ୍ର ଏଠାରେ ଶିଖା ଶବ୍ଦରେ କେଶକୁ ଲକ୍ଷ୍ୟ କରାଯାଇଅଛି), ଯେଉଁମାନେ ଜଟାଜୁଟଧାରୀ ସେମାନଙ୍କର ଧନୁଗୁଡ଼ିକ ହଜାରେ ଯୋଜନ ବ୍ୟବଧାନରେ ଅବତାରିତ କରିବାକୁ ଆମେ ନିବେଦନ କରୁଅଛୁ ।

ଯେ ପଥାଂ ପଥିରକ୍ଷୟ ଐଳବୃଦା ଆୟୁର୍ୟୁଧଃ । ତେଷାଗୁଁ ସହସ୍ର-ଯୋଜନେଽବ ଧନ୍ୱାନି ତନ୍ମସି ॥୬୦॥ ଯେ ତୀର୍ଥାନି ପ୍ରଚରନ୍ତି ସୃକାହସ୍ତା ନିଷଙ୍ଗିଣଃ । ତେଷାଗୁଁ ସହସ୍ରଯୋଜନେଽବ ଧନ୍ୱାନି ତନ୍ମସି ॥୬୧॥ ଯେଽନ୍ନେଷୁ ବିବିଧ୍ୟନ୍ତି ପାତ୍ରେଷୁ ପିବତୋ ଜନାନ୍ । ତେଷାଗୁଁ ସହସ୍ରଯୋଜନେଽବ ଧନ୍ୱାନି ତନ୍ମସି ॥୬୨॥ ଯ ଏତାବନ୍ତଶ୍ଚ ଭୂୟାଗୁଁ ସଶ୍ଚ ଦିଶୋ ରୁଦ୍ରା ବିତସ୍ଥିରେ । ତେଷାଗୁଁ ସହସ୍ରଯୋଜନେଽବ ଧନ୍ୱାନି ତନ୍ମସି ॥୬୩॥

---

**ମନ୍ତ୍ରସଂଖ୍ୟା (୬୦) :-** ଯଜୁର୍ବେଦ ଅ.୧୬/୬୦ : ଯେ ପଥାଂ ପଥି ରକ୍ଷୟ - ଯେଉଁ ରୁଦ୍ରମାନେ ଲୌକିକ ଏବଂ ବୈଦିକ ମାର୍ଗର ଅଧିପତି ତଥା ଅନ୍ନ ଧାରକ (ଅଥବା ଇଳା = ପୃଥିବୀ ତତ୍ସମ୍ପର୍କୀୟ ପାର୍ଥିବ, ପାର୍ଥିବ ବସ୍ତୁର ଧାରଣକର୍ତ୍ତା), ଜୀବଜଗତର ସ୍ଥିତିକାଳ ପର୍ଯ୍ୟନ୍ତ ଯେତେ ସଂଖ୍ୟକ ରୁଦ୍ରମାନେ ଯୁଦ୍ଧ କର୍ତ୍ତା, ସେ ସମସ୍ତଙ୍କର ଧନୁକୁ ସହସ୍ର ଯୋଜନ ଦୂରରେ ଅବନତ କରିବା ପାଇଁ ଆମେ ପ୍ରାର୍ଥନା କରୁଅଛୁ ।

**ମନ୍ତ୍ରସଂଖ୍ୟା (୬୧) :-** ଯଜୁର୍ବେଦ ଅ.୧୬/୬୧ : ଯେ ତୀର୍ଥାନି - ପ୍ରୟାଗ, କାଶୀ ଆଦି ତୀର୍ଥମାନଙ୍କରେ ସୃକା ନାମକ ଆୟୁଧ (ମତାନ୍ତରରେ ଫାସୀର ଦଉଡ଼ି) ଏବଂ ଖଡ଼୍ଗ ଧାରଣ କରି ଯେଉଁ ରୁଦ୍ରଗଣ ବିଚରଣ କରନ୍ତି, ସେମାନଙ୍କ ଧନୁ ସମୂହକୁ ହଜାରେ (ଅସଂଖ୍ୟ) ଯୋଜନ ଦୂରରେ ଅବତାରିତ କରିବାକୁ ଆମେ ନିବେଦନ କରୁଅଛୁ ।

**ମନ୍ତ୍ରସଂଖ୍ୟା (୬୨) :-** ଯଜୁର୍ବେଦ ଅ.୧୬/୬୨ : ଯେଽନ୍ନେଷୁ - ଯେଉଁ ରୁଦ୍ରଗଣ ପ୍ରାଣୀମାନଙ୍କର ଭୋଜ୍ୟ ପଦାର୍ଥରେ ରହି ଧାତୁ ବୈଷମ୍ୟଦ୍ୱାରା ବ୍ୟାଧିକାରକ ତଥା ପାନପାତ୍ରସ୍ଥ କ୍ଷୀର ଓ ଉଦକାଦିରେ ରହି ବିବିଧ ରୋଗର କାରଣ ହୁଅନ୍ତି ସେମାନଙ୍କର ଧନୁ ଗୁଡ଼ିକୁ ହଜାରେ (ଅସଂଖ୍ୟେୟ) ଯୋଜନ ଦୂରରେ ଅବତାରିତ କରିବାକୁ ଆମେ ନିବେଦନ କରୁଅଛୁ ।

**ମନ୍ତ୍ରସଂଖ୍ୟା (୬୩) :-** ଯଜୁର୍ବେଦ ଅ.୧୬/୬୩ : ଯ ଏତାବନ୍ତଶ୍ଚ - ଯେଉଁ ରୁଦ୍ରମାନଙ୍କ ମହିମା ଏ ପର୍ଯ୍ୟନ୍ତ ବର୍ଣ୍ଣନା କରାଗଲା ସେମାନେ ଦଶଦିଗକୁ ବ୍ୟାପୀ ରହିଛନ୍ତି । ସେମାନଙ୍କ ଧନୁ ସବୁକୁ ହଜାରେ (ଅସଂଖ୍ୟ) ଯୋଜନ ବ୍ୟବଧାନରେ ଅବନତ କରିବାକୁ ପ୍ରାର୍ଥନା କରୁଅଛୁ ।

ନମୋଽସ୍ତୁ ରୁଦ୍ରେଭ୍ୟୋ ଯେ ଦିବି ଯେଷାଂ ବର୍ଷମିଷବଃ । ତେଭ୍ୟୋ ଦଶ ପ୍ରାଚୀର୍ଦଶ ଦକ୍ଷିଣା ଦଶ ପ୍ରତୀଚୀର୍ଦଶୋଦୀଚୀର୍ଦଶୋର୍ଧ୍ୱାଃ । ତେଭ୍ୟୋ ନମୋଽସ୍ତୁ ତେ ନୋଽବନ୍ତୁ ତେ ନୋ ମୃଡ଼ୟନ୍ତୁ ତେ ଯଂ ଦ୍ୱିଷ୍ମୋ ଯଶ୍ଚ ନୋ ଦ୍ୱେଷ୍ଟି ତମେଷାଂ ଜମ୍ଭେ ଦଧ୍ମଃ ॥୬୪॥ ନମୋଽସ୍ତୁ ରୁଦ୍ରେଭ୍ୟୋ ଯେଽନ୍ତରିକ୍ଷେ ଯେଷାଂ ବାତ ଇଷବଃ । ତେଭ୍ୟୋ ଦଶ ପ୍ରାଚୀର୍ଦଶ ଦକ୍ଷିଣା ଦଶ ପ୍ରତୀଚୀର୍ଦଶୋଦୀଚୀର୍ଦଶୋର୍ଧ୍ୱାଃ । ତେଭ୍ୟୋ ନମୋଽସ୍ତୁ ତେ ନୋଽବନ୍ତୁ ତେ ନୋ ମୃଡ଼ୟନ୍ତୁ ତେ ଯଂ ଦ୍ୱିଷ୍ମୋ ଯଶ୍ଚ ନୋ ଦ୍ୱେଷ୍ଟି ତମେଷାଂ ଜମ୍ଭେ ଦଧ୍ମଃ ॥୬୫॥

---

**ମନ୍ତ୍ରସଂଖ୍ୟା (୬୪) :-** ଯଜୁର୍ବେଦ ଅ.୧୬/୬୪ : ନମୋଽସ୍ତୁ ରୁଦ୍ରେଭ୍ୟଃ - ଯେଉଁ ରୁଦ୍ରମାନେ ସ୍ୱର୍ଗଲୋକରେ ଥାଇ ବାଣ ରୂପରେ ବର୍ଷାର କାରକ ଅଟନ୍ତି ଅର୍ଥାତ୍ ଅତିବୃଷ୍ଟି ଇତ୍ୟାଦି ଯେଉଁ ଛଅଗୋଟି 'ଇତି' (ମହାବିପତ୍ତି) ଯଥା-

ଅତିବୃଷ୍ଟିରନାବୃଷ୍ଟିଃ ଶଲଭା ମୂଷିକାଃ ଖଗାଃ ।
ପ୍ରତ୍ୟାସନ୍ନାଶ୍ଚ ରାଜାନଃ ଷଡେତା ଇତୟଃ ସ୍ମୃତାଃ ॥

ଯାହାଦ୍ୱାରା ରୁଦ୍ର ପ୍ରାଣୀମାନଙ୍କୁ ବିନାଶ କରନ୍ତି । ପୂର୍ବ-ପଶ୍ଚିମ-ଦକ୍ଷିଣ-ଉତ୍ତର-ଦିଗସ୍ଥିତ ତଥା ଊର୍ଦ୍ଧ୍ୱସ୍ଥ ସେହି (ଦଶ ଦିଗସ୍ଥିତ) ରୁଦ୍ରଗଣଙ୍କୁ ଆମ୍ଭେ ଦଶ ଅଙ୍ଗୁଳିଦ୍ୱାରା ଅର୍ଥାତ୍ ଯୋଡ଼ହସ୍ତ ହୋଇ ପ୍ରଣାମ କରୁଅଛୁ । ସେମାନେ ଆମକୁ ରକ୍ଷା କରନ୍ତୁ, ସୁଖ ପ୍ରଦାନ କରନ୍ତୁ । ଅଧିକନ୍ତୁ ସେହି ରୁଦ୍ରମାନେ ଯାହାଙ୍କୁ ଦ୍ୱେଷ କରୁଅଛନ୍ତି ଆମେ ମଧ ତାଙ୍କୁ ଦ୍ୱେଷ କରୁଅଛୁ । ପୁନଶ୍ଚ ଯେଉଁ ନର ଆମମାନଙ୍କ ଦ୍ୱେଷକାରକ ତାକୁ ପୂର୍ବୋକ୍ତ ରୁଦ୍ରମାନଙ୍କ କରାଳ ମୁଖରେ ନିକ୍ଷେପ କରୁଅଛୁ । ହେ ମହେଶ୍ୱର ! ଆମ ପ୍ରତି ଦ୍ୱେଷ ଭାବାପନ୍ନକୁ ଆପଣ ଭକ୍ଷଣ କରନ୍ତୁ ଓ ଆମ୍ଭମାନଙ୍କୁ ରକ୍ଷା କରନ୍ତୁ ।

**ମନ୍ତ୍ରସଂଖ୍ୟା (୬୫) :-** ଯଜୁର୍ବେଦ ଅ.୧୬/୬୫ : ନମୋଽସ୍ତୁ ରୁଦ୍ରେଭ୍ୟଃ- ଅନ୍ତରିକ୍ଷ ଅର୍ଥାତ୍ ଆକାଶରେ ଯେଉଁ ରୁଦ୍ରମାନେ ଅଛନ୍ତି ସେମାନଙ୍କୁ ପ୍ରଣାମ । ସେମାନେ କୁବାୟୁରୂପ ଆୟୁଧଦ୍ୱାରା ଅନ୍ନକୁ ଅଥବା ପୂର୍ବମନ୍ତ୍ରୋକ୍ତ ଇତି ଜନିତ ବିପତ୍ତି ଉତ୍ପନ୍ନ କରି ଲୋକଙ୍କୁ ବିନାଶ କରନ୍ତି । ସେହି ପୂର୍ବ-ପଶ୍ଚିମ-ଉତ୍ତର-

ନମୋଽସ୍ତୁ ରୁଦ୍ରେଭ୍ୟୋ ଯେ ପୃଥିବ୍ୟାଂ ଯେଷାମନ୍ନମିଷବଃ । ତେଭ୍ୟୋ ଦଶ ପ୍ରାଚୀର୍ଦଶଦକ୍ଷିଣା ଦଶ ପ୍ରତୀଚୀର୍ଦଶୋଦୀଚୀର୍ଦଶୋର୍ଧ୍ୱାଃ । ତେଭ୍ୟୋ ନମୋଽସ୍ତୁ ତେ ନୋଽବନ୍ତୁ ତେ ନୋ ମୃଡ଼ୟନ୍ତୁ ତେ ଯଂ ଦ୍ୱିଷ୍ମୋ ଯଶ୍ଚ ନୋ ଦ୍ୱେଷ୍ଟି ତମେଷାଂ ଜମ୍ଭେ ଦଧ୍ମଃ ॥୬୬॥

---

ଦକ୍ଷିଣ ଦିଗସ୍ଥିତ ତଥା ଊର୍ଦ୍ଧ୍ୱସ୍ଥ (ଦଶଦିଗ ସ୍ଥିତ) ରୁଦ୍ରଗଣଙ୍କୁ ଆମ୍ଭେ ଦଶାଙ୍ଗୁଳିଦ୍ୱାରା ଅର୍ଥାତ୍ ହାତଯୋଡ଼ି ପ୍ରଣାମ କରୁଅଛୁ ।

**ମନ୍ତ୍ରସଂଖ୍ୟା (୬୬) :-** ଯଜୁର୍ବେଦ *ଅ.୧୬।୬୬* : ନମୋଽସ୍ତୁ ରୁଦ୍ରେଭ୍ୟଃ - ପୃଥିବୀସ୍ଥ ରୁଦ୍ରମାନଙ୍କୁ ପ୍ରଣାମ । ଯେଉଁ ରୁଦ୍ରଗଣ ଅନ୍ନକୁ ଆୟୁଧ କରି କଦନ୍ନ ଇତ୍ୟାଦି ମାଧ୍ୟମରେ ଚୌର୍ଯ୍ୟାଦି ପ୍ରବୃତ୍ତିକୁ ସୃଷ୍ଟି କରନ୍ତି ଏବଂ ନାନାବିଧ ରୋଗର ମଧ୍ୟ କାରଣ ହୋଇ ମୃତ୍ୟୁମୁଖରେ ପକାଇଥାଆନ୍ତି ସେହି ଅନ୍ନାୟୁଧଧାରୀ ପୂର୍ବ-ପଶ୍ଚିମ-ଦକ୍ଷିଣ-ଉତ୍ତର ଦିଗସ୍ଥିତ ତଥା ଊର୍ଦ୍ଧ୍ୱସ୍ଥ (ଏହିପରି ଦଶ ଦିଗ ସ୍ଥିତ) ରୁଦ୍ରଗଣଙ୍କୁ ଆମ୍ଭେ ଦଶାଙ୍ଗୁଳିଦ୍ୱାରା ଅର୍ଥାତ୍ ହାତଯୋଡ଼ି ପ୍ରଣାମ କରୁଅଛୁ ।

—×—

# ଷଷ୍ଠାଧ୍ୟାୟଃ

## (ନୀଳସୂକ୍ତମ୍)

ହରିଃ ଓଁ ବୟଗୁଁ ସୋମ ବ୍ରତେ ତବ ମନସ୍ତନୂଷୁ ବିଭ୍ରତଃ । ପ୍ରଜାବନ୍ତଃ ସଚେମହି ॥୧॥ ଏଷ ତେ ରୁଦ୍ର ଭାଗଃ ସହ ସ୍ୱସ୍ରାମ୍ବିକୟା ତଂ ଜୁଷସ୍ୱ ସ୍ୱାହା । ଏଷ ତେ ରୁଦ୍ର ଭାଗ ଆଖୁସ୍ତେ ପଶୁଃ ॥୨॥

---

## ଷଷ୍ଠ ଅଧ୍ୟାୟ

(ମହାମୃତ୍ୟୁଞ୍ଜୟସୂକ୍ତ)

**ମନ୍ତ୍ରସଂଖ୍ୟା (୧) :-** ଯଜୁର୍ବେଦ ଅ.୩/୫୬ : ବୟଗୁଁ ସୋମବ୍ରତେ - ପିତୃଯଜ୍ଞ (ଶ୍ରାଦ୍ଧ)ରେ ସୋମ ନାମକ ଦେବତାଙ୍କ ଆରାଧନା ପ୍ରସଙ୍ଗରେ (ସୋମାୟ ପିତୃମତେ ସ୍ୱାହା) ଏହି ମନ୍ତ୍ରକୁ ଉଲ୍ଲେଖ କରାଯାଇଛି । ହେ ସୋମ ! ଆମେ (ଯଜମାନମାନେ) ତୁମ ବ୍ରତ କର୍ମରେ ନିରତ ଥାଇ ତୁମ ଶରୀରଠାରେ ଆମ ମନ ନିବେଶ କରୁଅଛୁ । ତୁମର କରୁଣାରୁ ଆମେ ପୁତ୍ର-ପୌତ୍ରାଦିଙ୍କୁ ପ୍ରାପ୍ତ ହୋଇ ତୁମ ସେବାରେ ତତ୍ପର ରହିବୁ ।

**ମନ୍ତ୍ରସଂଖ୍ୟା (୨) :-** ଯଜୁର୍ବେଦ ଅ.୩/୫୭ : ଏଷ ତେ ରୁଦ୍ର - ହେ ରୁଦ୍ର ! (ରୋଦୟତି ବିରୋଧିନାଂ ଶତମିତି ରୁଦ୍ରଃ) ତୁମେ ତୁମ ଭଗିନୀ ଅମ୍ବିକାଙ୍କ ସହିତ ଆମ୍ଭଦ୍ୱାରା ପ୍ରଦତ୍ତ ପୁରୋଡାଶକୁ (ଯଜ୍ଞରେ ପ୍ରଦେୟ ପିଠା ବିଶେଷ, ଯାହା ଯଜ୍ଞରେ ହବି ଅର୍ଥାତ୍ ଆହୁତିଦ୍ୱାରା ଦେବତାଙ୍କୁ ପ୍ରଦାନ କରାଯାଏ) ଗ୍ରହଣ କରି ଏହି ହବନକୁ ସଫଳ କର । ସେହିପରି ଅଧିକ ଏକ ପୁରୋଡାଶର ଅଂଶକୁ ତୁମର ପଶୁ ରୂପରେ ମୂଷିକକୁ ସମର୍ପିତ ହେଉ, ଯାହାଦ୍ୱାରା ଅତ୍ୟନ୍ତ କ୍ରୋଧୀ ରୁଦ୍ର ସନ୍ତୁଷ୍ଟ ହୋଇ ଭଗିନୀ ଅମ୍ବିକାଙ୍କ ସହିତ ଯଜମାନଙ୍କ ପଶୁକୁ ହତ୍ୟା କରିବେ ନାହିଁ[1] ।

---

୧. ଏଠାରେ ଉଲ୍ଲେଖଯୋଗ୍ୟ ଯେ ଶ୍ରୁତିରେ ରୁଦ୍ରଙ୍କ ଭଗିନୀ ରୂପରେ 'ଅମ୍ବିକା'ଙ୍କୁ ବର୍ଣ୍ଣନା କରାଯାଇଅଛି ଯଥା- 'ଅମ୍ବିକା ହ ବୈ ନାମାସ୍ୟ ସ୍ୱସା ତୟାସ୍ୟୈଷ ସହ ଭାଗଃ' । ପ୍ରକରଣ ଅନୁସାରେ ରୁଦ୍ର ନାମକ ଯେଉଁ କ୍ରୂର ଦେବତା ଯେତେବେଳେ ବିରୋଧୀକୁ ମାରିବା ପାଇଁ ଇଚ୍ଛା କରନ୍ତି, ସେତେବେଳେ ସେ ଭଗିନୀ ଅମ୍ବିକାଙ୍କ ସାହାଯ୍ୟ ନେଇଥାଆନ୍ତି । ସେ ଅମ୍ବିକା ଶରତ୍କାଳୀନ ରୂପ ଗ୍ରହଣ କରି ଜରା (ବାର୍ଦ୍ଧକ୍ୟ)ଆଦିକୁ ଉତ୍ପନ୍ନ କରି ବିରୋଧୀକୁ ହତ୍ୟା କରନ୍ତି । (ଶୁ.ଯ.ବେ.ସଂହିତା, ମହୀଧରଭାଷ୍ୟ) ।

ଅବ ରୁଦ୍ରମଦୀମହ୍ୟବ ଦେବଂ ତ୍ର୍ୟମ୍ବକମ୍ । ଯଥା ନୋ ବସ୍ୟସସ୍କରଦ୍ ଯଥା ନଃ ଶ୍ରେୟସସ୍କରଦ୍ ଯଥା ନୋ ବ୍ୟବସାୟୟାତ୍ ॥୩॥ ଭେଷଜମସି ଭେଷଜଂ ଗବେଽଶ୍ୱାୟ ପୁରୁଷାୟ ଭେଷଜମ୍ । ସୁଖଂ ମେଷାୟ ମେଷ୍ୟୈ ॥୪॥ ତ୍ର୍ୟମ୍ବକଂ ଯଜାମହେ ସୁଗନ୍ଧିଂ ପୁଷ୍ଟିବର୍ଧନମ୍ । ଉର୍ବାରୁକମିବ ବନ୍ଧନାନ୍ମୃତ୍ୟୋର୍ମୁକ୍ଷୀୟ ମାମୃତାତ୍ ॥ ତ୍ର୍ୟମ୍ବକଂ ଯଜାମହେ ସୁଗନ୍ଧିଂ ପତିବେଦନମ୍ । ଉର୍ବାରୁକମିବ ବନ୍ଧନାଦିତୋ ମୁକ୍ଷୀୟ ମାମୁତଃ ॥୫॥

---

**ମନ୍ତ୍ରସଂଖ୍ୟା (୩) :-** ଯଜୁର୍ବେଦ ଅ.୩/୫୮ : ଅବ ରୁଦ୍ରମଦୀମହ୍ୟବ - ତିନିଗୋଟି ଅମ୍ବକ ଅର୍ଥାତ୍ ତିନି ନେତ୍ରବିଶିଷ୍ଟ ଦେବ ତ୍ର୍ୟମ୍ବକଙ୍କୁ ମନରେ ଚିନ୍ତା କରୁଅଛୁ । ଅନ୍ୟ ଦେବତାଙ୍କଠାରୁ ପୃଥକ୍ ଭାବରେ ତାଙ୍କୁ ଭୋଜନ ପ୍ରଦାନ କରୁଅଛୁ । ଯାହାଦ୍ୱାରା ସେ ଆମ ଉପରେ ପ୍ରସନ୍ନ ହୋଇ ଆମକୁ ନିବାସପ୍ରାପ୍ତ କରାଇବା ସହିତ ଆମର ମଙ୍ଗଳ ସାଧକ ଓ ସମସ୍ତ କାର୍ଯ୍ୟରେ ସଫଳତା ପ୍ରାପ୍ତିକାରକ ହେବେ ।

**ମନ୍ତ୍ରସଂଖ୍ୟା (୪) :-** ଯଜୁର୍ବେଦ ଅ.୩/୫୯ : ଭେଷଜମସି - ହେ ରୁଦ୍ର ! ତୁମେ ସାକ୍ଷାତ୍ ରୋଗର ଔଷଧ ଭଳି ସର୍ବବିଧ ଉପଦ୍ରବ ନିବାରକ ଅଟ । ଏଣୁ ଆମର ସମସ୍ତ ଗୋରୁ, ଘୋଡା ଓ ପୁରୁଷଙ୍କ ସର୍ବବ୍ୟାଧି ନିବାରକ ଔଷଧ ସ୍ୱରୂପ ସହିତ ମେଷମାନଙ୍କୁ ମଧ୍ୟ ସୁଖ ପ୍ରଦାନ କର ।

**ମନ୍ତ୍ରସଂଖ୍ୟା (୫) :-** ଯଜୁର୍ବେଦ ଅ.୩/୬୦ : ତ୍ର୍ୟମ୍ବକଂ - ଦିବ୍ୟ ଗନ୍ଧଯୁକ୍ତ, ଧନ-ଧାନ୍ୟାଦି ସମସ୍ତ ସମୃଦ୍ଧିର ଅଭିବର୍ଦ୍ଧକ, ନେତ୍ରତ୍ରୟ ବିଶିଷ୍ଟ ରୁଦ୍ରଙ୍କୁ ପୂଜା କରୁଅଛୁ । ହେ ତ୍ର୍ୟମ୍ବକ ! ଫୁଟି (ଫଳବିଶେଷ) ଯେପରି ପାଚିଗଲେ ଆପେ ଆପେ ବୃନ୍ତଚ୍ୟୁତ ହୁଏ, ଠିକ୍ ସେହିପରି ତୁମେ ଆମକୁ ମୃତ୍ୟୁରୁ (ମୃତ୍ୟୁ ଶବ୍ଦରେ ଜନ୍ମ ଓ ମୃତ୍ୟୁରୂପକ ସଂସାରଚକ୍ରକୁ ନିଆଯାଇଅଛି) ମୁକ୍ତ କର । ସ୍ୱର୍ଗ ଓ ମୋକ୍ଷ ପ୍ରାପ୍ତି ରୂପକ ଅମୃତତ୍ୱରୁ ଆମକୁ ବଞ୍ଚିତ କର ନାହିଁ । ଅର୍ଥାତ୍ ତୁମେ ଆମକୁ ସଂସାରାବସ୍ଥାରେ ଅଭ୍ୟୁଦୟ ତଥା ଅନ୍ତିମାବସ୍ଥାରେ ନିଃଶ୍ରେୟସ ବା ମୁକ୍ତି ପ୍ରଦାନ କର । ଏହିପରି ଆମ୍ଭେ (କୁମାରୀମାନେ) ତିନି ନେତ୍ରଧାରୀଙ୍କ ପୂଜା କରୁଅଛୁ । ଯେ କି ପୂର୍ବୋକ୍ତି ଅନୁସାରେ ସ୍ୱର୍ଗୀୟ ଗନ୍ଧଯୁକ୍ତ ଓ ଧନଧାନ୍ୟାଦି ସମୃଦ୍ଧି ପ୍ରଦାନ ଓ ଆମ୍ଭ (କୁମାରୀ କନ୍ୟା)ମାନଙ୍କ ପାଇଁ ଉତ୍ତମ ପତିପ୍ରାପକ । ବିବାହ ପରେ ପିତୃବଂଶୀୟ (ବାପା, ମା, ଭାଇ, ଭଗିନୀ ଇତ୍ୟାଦି) ସମସ୍ତ ସମ୍ପର୍କରୁ ପାଚିଲା

ଏତତ୍ତେ ରୁଦ୍ରାଽବସଂ ତେନ ପରୋ ମୂଜବତୋଽତୀ ହି । ଅବତତଧନ୍ୱା ପିନାକାବସଃ କୃତ୍ତିବାସା ଅହିଗୁଁସନ୍ନଃ ଶିବୋଽତୀହି॥୬॥ ତ୍ର୍ୟାୟୁଷଂ ଜମଦଗ୍ନେଃ କଶ୍ୟପସ୍ୟ ତ୍ର୍ୟାୟୁଷମ୍ । ଯଦ୍ଦେବେଷୁ ତ୍ର୍ୟାୟୁଷଂ ତନ୍ନୋ ଅସ୍ତୁ ତ୍ର୍ୟାୟୁଷମ୍ ॥୭॥ ଶିବୋ ନାମାସି ସ୍ୱଧିତିସ୍ତେ ପିତା ନମସ୍ତେ ଅସ୍ତୁ ମା ମା ହିଗୁଁସୀଃ । ନିବର୍ତ୍ତୟାମ୍ୟାୟୁଷେଽନ୍ନାଦ୍ୟାୟ ପ୍ରଜନନାୟ ରାୟସ୍ପୋଷାୟ ସୁପ୍ରଜାସ୍ତ୍ୱାୟ ସୁବୀର୍ଯାୟ ॥୮॥

---

ଫୁଟି ବୃନ୍ତଚ୍ୟୁତ ହେଲା ପରି ଆମେ ମଧ୍ୟ ମୁକ୍ତ ହେବୁ । ମାତ୍ର ବିବାହ ପରବର୍ତ୍ତି ସମୟରେ ଆମେ କେବେ ବି ପତିଙ୍କଠାରୁ ମୁକ୍ତ ଅର୍ଥାତ୍ ଅଲଗା ହେବୁ ନାହିଁ । ଅର୍ଥାତ୍ ପିତୃଗୋତ୍ର (ବଂଶ) ଏବଂ ପିତ୍ରାଳୟ ଇତ୍ୟାଦିକୁ ସବୁଦିନ ପାଇଁ ଛାଡ଼ି ସ୍ୱାମୀଙ୍କ ଗୋତ୍ର (ବଂଶ) ଓ ଗୃହକୁ ତ୍ର୍ୟମ୍ବକଙ୍କ ପ୍ରସାଦରୁ ପ୍ରାପ୍ତ ହେବୁ ।

**ମନ୍ତ୍ରସଂଖ୍ୟା (୬) :-** ଯଜୁର୍ବେଦ ଅ.୩/୬୧ : ଏତତ୍ତେ ରୁଦ୍ରାଽବସଂ- ହେ ରୁଦ୍ର ! ତୁମେ ଏହି ଅବଶିଷ୍ଟ ପୁରୋଡାଶକୁ (ଯଜ୍ଞୀୟ ପିଠା) ସାଥୀରେ ନେଇ ପିନାକ ଧନୁକୁ ଜ୍ୟା (ଚାପ) ମୁକ୍ତ ତଥା ବସ୍ତ୍ରାବୃତ କରି, ଚର୍ମାମ୍ବର (ମହିଷାସୁର ପୁତ୍ର ଗଜାସୁରର ଚର୍ମ) ପରିଧାନ ପୂର୍ବକ ଆମ ପ୍ରତି ହିଂସୁକ ନ ହୋଇ କଲ୍ୟାଣକାରକ ହୋଇ ମୁଜବାନ୍ ପର୍ବତକୁ ଅତିକ୍ରମଣ କରି ଆଗକୁ ଚାଲିଯାଅ ।

**ମନ୍ତ୍ରସଂଖ୍ୟା (୭) :-** ଯଜୁର୍ବେଦ ଅ.୩/୬୨ : ତ୍ର୍ୟାୟୁଷଂ ଜମଦଗ୍ନେ- ଜମଦଗ୍ନି ମୁନିଙ୍କର ତ୍ରି ଆୟୁଷ ଅର୍ଥାତ୍ ବାଲ୍ୟ, ଯୌବନ ଓ ବୃଦ୍ଧ - ତିନିଗୋଟି ଅବସ୍ଥାର ଯେଉଁ ସବୁ ଆୟୁଷ, ସେହିପରି କଶ୍ୟପ ଋଷିଙ୍କର ଯେଉଁ ତ୍ରି ଆୟୁଃକାଳ ତଥା ଇନ୍ଦ୍ରାଦି ଦେବତାଙ୍କ ଯେଉଁ ତ୍ରି ଆୟୁଷ, ହେ ରୁଦ୍ର ! ସେହିପରି ତ୍ରି ଆୟୁଷ ଆମ୍ଭମାନଙ୍କର ମଧ୍ୟ ହେଉ । (ମତାନ୍ତରରେ ଜମଦଗ୍ନି ଇତ୍ୟାଦି ମହର୍ଷିମାନଙ୍କର ବାଲ୍ୟାଦି ଅବସ୍ଥାରେ ଯେଉଁଭଳି ଆଚରଣ ଥିଲା ସେହିଭଳି ଆମର ମଧ୍ୟ ସ୍ୱଭାବ ହେଉ ।)

**ମନ୍ତ୍ରସଂଖ୍ୟା (୮) :-** ଯଜୁର୍ବେଦ ଅ.୩/୬୩ : ଶିବୋ ନାମାସି - (ପୂର୍ବୋକ୍ତ ତ୍ର୍ୟାୟୁଷମିତ୍ୟାଦି ଓ ଏହି ଶିବୋନାମାସି ମନ୍ତ୍ରଦ୍ୱୟ କେଶମୁଣ୍ଡନ ପ୍ରକରଣାନ୍ତର୍ଗତ) ହେ କେଶମୁଣ୍ଡନକାରୀ କ୍ଷୁର ! ତୁମେ ଶିବ ଅର୍ଥାତ୍ ଶାନ୍ତ ସ୍ୱରୂପ ଅଟ । ବଜ୍ରାୟୁଧ ତୁମର ପିତା ଅଟନ୍ତି । ତୁମକୁ ପ୍ରଣାମ । ତୁମେ ଆମର ଅନିଷ୍ଟ କର ନାହିଁ । ତୁମଦ୍ୱାରା ଯଜମାନର ପରମାୟୁ, ଅନ୍ନ, ବଂଶ ଓ ଧନ ବୃଦ୍ଧି, ସୁସନ୍ତାନ ପ୍ରାପ୍ତି ତଥା ସୁସାମର୍ଥ୍ୟଲାଭ ନିମିତ୍ତ କେଶମୁଣ୍ଡନ କରୁଅଛି ।

—x—

# ସପ୍ତମାଧ୍ୟାୟଃ

## (ଜଟାସୂକ୍ତମ୍)

ହରିଃ ଓଁ ଉଗ୍ରଶ୍ଚ ଭୀମଶ୍ଚ ଧ୍ୱାନ୍ତଶ୍ଚ ଧୁନିଶ୍ଚ । ସାସହ୍ୱାଗୁଁଶ୍ଚାଭିଯୁଗ୍ୱା ଚ ବିକ୍ଷିପଃ ସ୍ୱାହା ॥୧॥ ଅଗ୍ନିଗୁଁ ହୃଦୟେନାଶନିଗୁଁ ହୃଦୟାଗ୍ରେଣ ପଶୁପତିଂ କୃତ୍ସ୍ନହୃଦୟେନ ଭବଂ ଯକ୍ନା । ଶର୍ବଂ ମତସ୍ନାଭ୍ୟାମୀଶାନଂ ମନ୍ୟୁନା ମହାଦେବମନ୍ତଃ ପର୍ଶବ୍ୟେନୋଗ୍ରଂ ଦେବଂ ବନିଷ୍ଠୁନା ବସିଷ୍ଠହନୁଃ ଶିଙ୍ଗୀନି କୋଶ୍ୟାଭ୍ୟାମ୍ ॥୨॥

---

## ସପ୍ତମ ଅଧ୍ୟାୟ

(ଜଟାଧ୍ୟାୟ)

**ମନ୍ତ୍ରସଂଖ୍ୟା (୧) :-** ଯଜୁର୍ବେଦ ଅ.୩୯/୭ : ଓଁ ଉଗ୍ରଶ୍ଚ ଭୀମଶ୍ଚ - (ଏହି ମନ୍ତ୍ରଦ୍ୱାରା ଉଗ୍ରାଦି ସାତ ମରୁଦ୍‌ଗଣଙ୍କ ରୂପରେ ଶିବଙ୍କୁ ଆହୁତି ପ୍ରଦାନ କରାଯାଇଅଛି ।) ଉଗ୍ର ଅର୍ଥାତ୍ ଉତ୍କୃଷ୍ଟ, ଭୀମ ଭୀତିକାରକ, ଧ୍ୱାନ୍ତ (ଧ୍ୱନତି ଶବ୍ଦଂ କରୋତି) ଶବ୍ଦଜନକ, ଧ୍ୱନି (ଧ୍ୱନୟତି = କମ୍ପୟତି) ଅର୍ଥାତ୍ ଶତ୍ରୁଙ୍କ ହୃଦୟରେ କମ୍ପନ ସୃଷ୍ଟିକାରୀ ଶବ୍ଦ, ସାସହ୍ୱାନ୍ (ସହତେ = ଶତ୍ରୂନ୍ ଅଭିଭବତି) ଶତ୍ରୁଙ୍କ ଗର୍ବନାଶକାରୀ, ଅଭିଯୁଗ୍‌ବା (ଅଭିଯୁନକ୍ତି ଅସ୍ମତ୍ ସମ୍ମୁଖଂ ଯୋଗଂ ପ୍ରାପ୍ନୋତି) ସମ୍ମୁଖୀକରଣ, ବିକ୍ଷିପ = ଶତ୍ରୁଙ୍କୁ ବିକ୍ଷେପଣକାରୀ - ଏହିପରି ସାତ ମରୁଦ୍‌ଗଣଙ୍କ ନିମିତ୍ତ ସ୍ୱାହା (ଆହୁତି) ପ୍ରଦାନ କରୁଅଛୁ ।

**ମନ୍ତ୍ରସଂଖ୍ୟା (୨) :-** ଯଜୁର୍ବେଦ ଅ.୩୯/୮ : ଅଗ୍ନିଗୁଁ ହୃଦୟେନ - (ଅଶ୍ୱମେଧ ଯଜ୍ଞ ପ୍ରକରଣରେ ଏହି ତିନିଗୋଟି-୨ୟ, ୩ୟ ଓ ୪ର୍ଥ ମନ୍ତ୍ର ଉଲ୍ଲିଖିତ ଅଛି) ଅଶ୍ୱର ହୃଦୟରୂପକ ଅଙ୍ଗ ପ୍ରଦାନ କରି ଅଗ୍ନିଦେବତାଙ୍କୁ ମୁଁ ସନ୍ତୁଷ୍ଟ କରୁଅଛି, ସେହିପରି ହୃଦୟର ଅଗ୍ରଭାଗଦ୍ୱାରା ଅଶନି ଅର୍ଥାତ୍ ବଜ୍ର ବା ବିଦ୍ୟୁତ୍ ଦେବତାଙ୍କୁ, ସମଗ୍ର ହୃଦୟକୁ ପଶୁପତି ଦେବତାଙ୍କୁ, ଯକୃତ୍ ଭବଙ୍କୁ, ମତସ୍ନା ନାମକ ହୃଦୟାସ୍ଥି ବିଶେଷ ଦ୍ୱୟ ଶର୍ବ ଦେବଙ୍କୁ, ମନ୍ୟୁ ଅର୍ଥାତ୍ ଅଶ୍ୱସମ୍ବନ୍ଧି କ୍ରୋଧଦ୍ୱାରା ଈଶାନ ଦେବଙ୍କୁ, ଅନ୍ତଃସ୍ଥିତ ପାର୍ଶ୍ୱ ଅସ୍ଥି ସମ୍ବନ୍ଧୀ ମାଂସଦ୍ୱାରା ମହାଦେବଙ୍କୁ, ପାର୍ଶ୍ୱସ୍ଥ ଅସ୍ଥି ଏବଂ ସ୍ଥୁଳ ଅନ୍ତ୍ରଦ୍ୱାରା ଉଗ୍ରଦେବଙ୍କୁ, କପାଳର ଅଧୋଭାଗରେ ଥିବା ହନୁ ଓ ହୃଦୟ କୋଶାନ୍ତର୍ଗତ ମାଂସପିଣ୍ଡଦ୍ୱାରା ଶିଙ୍ଗି ନାମକ ଦେବତାଙ୍କୁ ସନ୍ତୁଷ୍ଟ କରୁଅଛି ।

ଉଗ୍ରଁ ଲୋହିତେନ ମିତ୍ରଗୁଁ ସୌବ୍ରତ୍ୟେନ ରୁଦ୍ରଂ ଦୌର୍ବ୍ରତ୍ୟେନେନ୍ଦ୍ରଂ ପ୍ରକ୍ରୀଡ଼େନ ମରୁତୋ ବଲେନ ସାଧ୍ୟାନ୍ପ୍ରମୁଦା । ଭବସ୍ୟ କଣ୍ଠ୍ୟଗୁଁ ରୁଦ୍ରସ୍ୟାନ୍ତଃ ପାର୍ଶ୍ୱ୍ୟଂ ମହାଦେବସ୍ୟ ଯକୃଚ୍ଛର୍ବସ୍ୟ ବନିଷ୍ଠୁଃ ପଶୁପତେଃ ପୁରୀତତ୍ ।।୩।। ଲୋମଭ୍ୟଃ ସ୍ୱାହା ଲୋମଭ୍ୟଃ ସ୍ୱାହା ତ୍ୱଚେ ସ୍ୱାହା ତ୍ୱଚେ ସ୍ୱାହା ଲୋହିତାୟ ସ୍ୱାହା ଲୋହିତାୟ ସ୍ୱାହା ମେଦୋଭ୍ୟଃ ସ୍ୱାହା ମେଦୋଭ୍ୟଃ ସ୍ୱାହା । ମାଗୁଁସେଭ୍ୟଃ ସ୍ୱାହା ମାଗୁଁସେଭ୍ୟଃ ସ୍ୱାହା ସ୍ନାବଭ୍ୟଃ ସ୍ୱାହା ସ୍ନାବଭ୍ୟଃ ସ୍ୱାହା ସ୍ଥଭ୍ୟଃ ସ୍ୱାହା ସ୍ଥଭ୍ୟଃ ସ୍ୱାହା ମଜ୍ଜଭ୍ୟଃ ସ୍ୱାହା ମଜ୍ଜଭ୍ୟଃ ସ୍ୱାହା । ରେତସେ ସ୍ୱାହା ପାୟବେ ସ୍ୱାହା ।।୪।। ଆୟାସାୟ ସ୍ୱାହା ପ୍ରାୟାସାୟ ସ୍ୱାହା ସଁଯାସାୟ ସ୍ୱାହା ବିୟାସାୟ ସ୍ୱାହୋଦ୍ୟାସାୟ ସ୍ୱାହା । ଶୁଚେ ସ୍ୱାହା ଶୋଚତେ ସ୍ୱାହା ଶୋଚମାନାୟ ସ୍ୱାହା ଶୋକାୟ ସ୍ୱାହା ।।୫।।

---

**ମନ୍ତ୍ରସଂଖ୍ୟା (୩) :-** ଯଜୁର୍ବେଦ ଅ.୩୯/୯ : ଉଗ୍ରଂ ଲୋହିତେନ - ଅଶ୍ୱର ରୁଧିର ପ୍ରଦାନ କରି ଉଗ୍ରଦେବତାଙ୍କୁ ପ୍ରୀତ କରୁଅଛି । ଶୋଭନ କର୍ମଦ୍ୱାରା ସୂର୍ଯ୍ୟଦେବଙ୍କୁ, ଦୌର୍ବତ୍ୟ ଅର୍ଥାତ୍ ସ୍ଖଳନାଦି ଦୁଷ୍କର୍ମଦ୍ୱାରା ରୁଦ୍ରଦେବଙ୍କୁ, ଉତ୍ତମ କ୍ରୀଡାଦ୍ୱାରା ଇନ୍ଦ୍ରଦେବଙ୍କୁ, ସାମର୍ଥ୍ୟଦ୍ୱାରା ମରୁତ୍ ଦେବଙ୍କୁ, ପ୍ରମୋଦଦ୍ୱାରା ସାଧ୍ୟଗଣ ଦେବତା ବିଶେଷଙ୍କୁ, କଣ୍ଠସ୍ଥାନୀୟ ମାଂସଦ୍ୱାରା ଭବ ଦେବଙ୍କୁ, ପାର୍ଶ୍ୱ ମଧ୍ୟଭାଗସ୍ଥ ମାଂସ ରୁଦ୍ର ଦେବଙ୍କୁ, ଯକୃତ୍ ମହାଦେବଙ୍କୁ, ସ୍ଥୁଳ ଅନ୍ତ୍ରଭାଗ ଶର୍ବଙ୍କୁ, ହୃଦୟକୁ ଆଚ୍ଛାଦନ କରୁଥିବା ଅନ୍ତ୍ର ପଶୁପତିଙ୍କୁ ଅର୍ପଣ କରୁଅଛି ।

**ମନ୍ତ୍ରସଂଖ୍ୟା (୪) :-** ଯଜୁର୍ବେଦ ଅ.୩୯/୧୦ : ଲୋମଭ୍ୟ ସ୍ୱାହା - (ଏହି ମନ୍ତ୍ରଠାରୁ କ୍ରମଶଃ ୪ ଗୋଟି ମନ୍ତ୍ରରେ ଅଶ୍ୱମେଧ ଯଜ୍ଞାନ୍ତର୍ଗତ ପ୍ରାୟଶ୍ଚିତ୍ତ ଆହୁତି ପ୍ରଦାନ କରାଯାଇଅଛି । ଏହି ମନ୍ତ୍ରରେ ମଧ୍ୟ ପୂର୍ବବତ୍ ଅଶ୍ୱର ଅଙ୍ଗବିଶେଷକୁ ଆହୁତିଦ୍ୱାରା ଅର୍ପଣ କରାଯାଇଅଛି ।) ଅଶ୍ୱର ଲୋମ, ତ୍ୱକ୍ ଅର୍ଥାତ୍ ଚର୍ମ, ରକ୍ତ, ମେଦ (ଚର୍ବି), ମାଂସ, ସ୍ନାୟୁ (ନାଡ଼ୀ), ଅସ୍ଥି, ମଜ୍ଜା, ବୀର୍ଯ୍ୟ, ଗୁହ୍ୟଦ୍ୱାର - ଏ ସମସ୍ତ ଶରୀରର ଅଂଶବିଶେଷକୁ ଆହୁତିଦ୍ୱାରା ପ୍ରଦାନ କରୁଅଛି ।

**ମନ୍ତ୍ରସଂଖ୍ୟା (୫) :-** ଯଜୁର୍ବେଦ ଅ.୩୯/୧୧ : ଆୟାସାୟ ସ୍ୱାହା - ଆୟାସ, ପ୍ରାୟାସ, ସଂଯାସ, ବିୟାସ, ଉଦ୍ୟାସ, ଶୁଚ୍ (ଶୋକ), ଶୋଚତ, ଶୋଚମାନ, ଶୋକ - ଏହି ଦେବତାବିଶେଷଙ୍କ ନିମିତ୍ତ ଆହୁତି ପ୍ରଦାନ କରୁଅଛି ।

ତପସେ ସ୍ୱାହା ତପ୍ୟମାନାୟ ସ୍ୱାହା ତପ୍ତାୟ ସ୍ୱାହା ଘର୍ମାୟ ସ୍ୱାହା । ନିଷ୍କୃତ୍ୟୈ ସ୍ୱାହା ପ୍ରାୟଶ୍ଚିତ୍ୟୈ ସ୍ୱାହା ଭେଷଜାୟ ସ୍ୱାହା ॥୬॥ ଯମାୟ ସ୍ୱାହାନ୍ତକାୟ ସ୍ୱାହା ମୃତ୍ୟବେ ସ୍ୱାହା ବ୍ରହ୍ମଣେ ସ୍ୱାହା ବ୍ରହ୍ମହତ୍ୟାୟୈ ସ୍ୱାହା ବିଶ୍ୱେଭ୍ୟୋ ଦେବେଭ୍ୟଃ ସ୍ୱାହା ଦ୍ୟାବାପୃଥିବୀଭ୍ୟାଗୁଁ ସ୍ୱାହା ॥୭॥

---

**ମନ୍ତ୍ରସଂଖ୍ୟା (୬) :-** ଯଜୁର୍ବେଦ ଅ.୩୯/୧୨ : ତପସେ ସ୍ୱାହା - (ପୂର୍ବ ମନ୍ତ୍ର ଭଳି ଏହି ମନ୍ତ୍ରରେ ମଧ୍ୟ ତତ୍ ତନ୍ନାମଧାରୀ ଦେବତା ବିଶେଷଙ୍କ ଉଦ୍ଦେଶ୍ୟରେ ଆହୁତି ପ୍ରଦାନ କରାଯାଇଅଛି ।) ତପସ୍ (ତପଃ), ତପ୍ୟତ୍, ତପ୍ୟମାନ, ତପ୍ତ, ଘର୍ମ, ନିଷ୍କୃତି, ପ୍ରାୟଶ୍ଚିତ୍ତି, ଭେଷଜ - ଏ ସମସ୍ତ ଦେବତା ବିଶେଷଙ୍କୁ ଆହୁତି ପ୍ରଦାନ କରୁଅଛି ।

**ମନ୍ତ୍ରସଂଖ୍ୟା (୭) :-** ଯଜୁର୍ବେଦ ଅ.୩୯/୧୩ : ଯମାୟ ସ୍ୱାହା - ଯମ, ଅନ୍ତକ, ମୃତ୍ୟୁ, ବ୍ରହ୍ମ, ବ୍ରହ୍ମହତ୍ୟା, ବିଶ୍ୱେଦେବ, ଦ୍ୟାବାପୃଥିବୀ - ଏ ସମସ୍ତ ଦେବତାଙ୍କୁ ଆହୁତି ପ୍ରଦାନ କରୁଅଛି ।

—×—

## ଅଷ୍ଟମାଧ୍ୟାୟଃ

## (ଚମକ୍ ଅଧ୍ୟାୟଃ)

ହରିଃ ଓଁ ବାଜଶ୍ଚ ମେ ପ୍ରସବଶ୍ଚ ମେ ପ୍ରୟତିଶ୍ଚ ମେ ପ୍ରସିତିଶ୍ଚ ମେ । ଧୀତିଶ୍ଚ ମେ କ୍ରତୁଶ୍ଚ ମେ ସ୍ୱରଶ୍ଚ ମେ ଶ୍ଳୋକଶ୍ଚ ମେ । ଶ୍ରବଶ୍ଚ ମେ ଶ୍ରୁତିଶ୍ଚ ମେ ଜ୍ୟୋତିଶ୍ଚ ମେ ସ୍ୱଶ୍ଚ ମେ ଯଜ୍ଞେନ କଳ୍ପନ୍ତାମ୍ ॥୧॥ ପ୍ରାଣଶ୍ଚ ମେଽପାନଶ୍ଚ ମେ ବ୍ୟାନଶ୍ଚ ମେଽସୁ ଚ ମେ । ଚିତ୍ତଂ ଚ ମ ଆଧୀତଂ ଚ ମେ ବାକ୍ ଚ ମେ ମନଶ୍ଚ ମେ । ଚକ୍ଷୁଶ୍ଚ ମେ ଶ୍ରୋତ୍ରଂ ଚ ମେ ଦକ୍ଷଶ୍ଚ ମେ ବଳଂ ଚ ମେ ଯଜ୍ଞେନ କଳ୍ପନ୍ତାମ୍ ॥୨॥ ଓଜଶ୍ଚ ମେ ସହଶ୍ଚ ମ ଆତ୍ମା ଚ ମେ ତନୂଶ୍ଚ ମେ । ଶର୍ମ ଚ ମେ ବର୍ମ ଚ ମେଽଙ୍ଗାନି ଚ ମେଽସ୍ଥୀନି ଚ ମେ । ପରୂଁଷି ଚ ମେ ଶରୀରାଣି ଚ ମ ଆୟୁଶ୍ଚ ମେ ଜରା ଚ ମେ ଯଜ୍ଞେନ କଳ୍ପନ୍ତାମ୍ ॥୩॥

---

## ଅଷ୍ଟମାଧ୍ୟାୟ

(ଚମକ୍ ଅଧ୍ୟାୟ)

**ମନ୍ତ୍ରସଂଖ୍ୟା (୧) :-** ଯଜୁର୍ବେଦ ଅ.୧୮/୧ : ବାଜଶ୍ଚ ମେ - ବାଜ ଅର୍ଥାତ୍ ଅନ୍ନ, ଅନ୍ନଦାନ ବିଷୟକ ଅଭ୍ୟନୁଜ୍ଞା, ଶୁଦ୍ଧି, ଅନ୍ନ ବିଷୟକ ଉତ୍ସୁକତା, ଧ୍ୟାନ, ସଙ୍କଳ୍ପ, ସାଧୁଶବ୍ଦ ବା ସୁସ୍ୱର, ଶ୍ଳୋକ, ବେଦମନ୍ତ୍ର ପଠନ ଓ ଶ୍ରବଣ ସାମର୍ଥ୍ୟ, ଜ୍ୟୋତି, ସ୍ୱର୍ଗ - ଏ ସମସ୍ତ ମୋତେ ଯଜ୍ଞଦ୍ୱାରା ପ୍ରାପ୍ତ ହୁଅନ୍ତୁ (ଏ ଅଧ୍ୟାୟରେ ସର୍ବତ୍ର 'ଚ' ଶବ୍ଦଦ୍ୱାରା ସମୂହ ଅର୍ଥାତ୍ ଯେମିତି ବାଜଶ୍ଚ = ଅନ୍ନସମୂହ ଏହିପରି ବୁଝାଯିବ ।)

**ମନ୍ତ୍ରସଂଖ୍ୟା (୨) :-** ଯଜୁର୍ବେଦ ଅ.୧୮/୨ : ପ୍ରାଣଶ୍ଚ ମେ - ଶରୀରାନ୍ତର୍ଗତ ଊର୍ଦ୍ଧ୍ୱ ସଞ୍ଚାରୀ ବାୟୁ, ଅଧଃସଞ୍ଚାରୀ ବାୟୁ, ସର୍ବ ଶରୀର ସଞ୍ଚାରୀ ବାୟୁ, ପ୍ରବୃତ୍ତି ପ୍ରଦାୟକ ବାୟୁ, ଚିତ୍ତ, ବାହ୍ୟବିଷୟ ସମ୍ବନ୍ଧୀ ଜ୍ଞାନ, ବାକ୍ୟ, ମନ, ଚକ୍ଷୁ, କର୍ଣ୍ଣ, ଜ୍ଞାନେନ୍ଦ୍ରିୟଗତ କୁଶଳତା, ଶରୀର ଓ କର୍ମେନ୍ଦ୍ରିୟଗତ କୁଶଳତା - ଏ ସମସ୍ତ ମୋତେ ଯଜ୍ଞଦ୍ୱାରା ପ୍ରାପ୍ତ ହୁଅନ୍ତୁ ।

ଜ୍ୟୈଷ୍ଠ୍ୟଂ ଚ ମ ଆଧିପତ୍ୟଂ ଚ ମେ ମନ୍ୟୁଶ୍ଚ ମେ ଭାମଶ୍ଚ ମେ । ଅମଶ୍ଚ ମେଽମ୍ଭଶ୍ଚ ମେ ଜେମା ଚ ମେ ମହିମା ଚ ମେ ବରିମା ଚ ମେ । ପ୍ରଥିମା ଚମେ ବର୍ଷିମା ଚ ମେ ଦ୍ରାଘିମା ଚ ମେ । ବୃଦ୍ଧଂ ଚ ମେ ବୃଦ୍ଧିଶ୍ଚ ମେ ଯଜ୍ଞେନ କଳ୍ପନ୍ତାମ୍ ॥୪॥ ସତ୍ୟଂ ଚ ମେ ଶ୍ରଦ୍ଧା ଚ ମେ ଜଗଚ୍ଚ ମେ ଧନଂ ଚ ମେ ବିଶ୍ୱଂ ଚ ମେ ମହଶ୍ଚ ମେ କ୍ରୀଡ଼ା ଚ ମେ ମୋଦଶ୍ଚ ମେ । ଜାତଂ ଚ ମେ ଜନିଷ୍ୟମାଣଞ୍ଚ ମେ ସୂକ୍ତଂ ଚ ମେ ସୁକୃତଂ ଚ ମେ ଯଜ୍ଞେନ କଳ୍ପନ୍ତାମ୍ ॥୫॥ ଋତଂ ଚ ମେଽମୃତଂ ଚ ମେଽଯକ୍ଷ୍ମଂ ଚ ମେଽନାମୟଚ୍ଚ ମେ । ଜୀବାତୁଶ୍ଚ ମେ ଦୀର୍ଘାୟୁତ୍ୱଂ ଚ ମେଽନମିତ୍ରଂ ଚ ମେଽଭୟଂ ଚ ମେ । ସୁଗଂ ଚ ମେ ଶୟନଂ ଚ ମେ ସୂଷାଶ୍ଚ ମେ ସୁଦିନଂ ଚ ମେ ଯଜ୍ଞେନ କଳ୍ପନ୍ତାମ୍ ॥୬॥

---

**ମନ୍ତ୍ରସଂଖ୍ୟା (୩) :-** ଯଜୁର୍ବେଦ ଅ.୧୮/୩ : ଓଜଶ୍ଚ ମେ - ଶାରୀରିକ ବଳ, ଶତ୍ରୁଙ୍କୁ ପରାଭବ ଦେଇପାରୁଥିବା ଶକ୍ତି, ପରମାତ୍ମା, ସୁନ୍ଦର ଶରୀର, ସର୍ବବିଧ ସୁଖ, ସୁରକ୍ଷାକବଚ, ହସ୍ତାଦି ସମସ୍ତ ଅବୟବ, ଶରୀରାନ୍ତର୍ଗତ ଅସ୍ଥି ସମୂହ, ଅଙ୍ଗୁଳି ପର୍ବ ସମୂହ, ସମସ୍ତ ଶରୀରର ଅବୟବ ସମୂହ, ପରମାୟୁ, ବାର୍ଦ୍ଧକ୍ୟ ପର୍ଯ୍ୟନ୍ତ ନିରାମୟ ଦୀର୍ଘଜୀବନ- ଏ ସମସ୍ତ ମୋତେ ଯଜ୍ଞଦ୍ୱାରା ପ୍ରାପ୍ତ ହୁଅନ୍ତୁ ।

**ମନ୍ତ୍ରସଂଖ୍ୟା (୪) :-** ଯଜୁର୍ବେଦ ଅ.୧୮/୪ : ଜୈଷ୍ଠ୍ୟଂ ଚ ମେ- ଜ୍ୟେଷ୍ଠତ୍ୱ, ସ୍ୱାମୀତ୍ୱ, କ୍ରୋଧ, ତେଜ, ଅପରିମିତବଳ, ଥଣ୍ଡା ମଧୁର ଜଳ, ବିଜୟ ସାମର୍ଥ୍ୟ, ସମ୍ପତ୍ତ୍ୟାଦିରେ ମହତ୍ତ୍ୱ, ପ୍ରଜାଦିରେ ସଂଖ୍ୟାଧିକ୍ୟ, ଗୃହକ୍ଷେତ୍ରାଦି ବିଷୟରେ ବିସ୍ତୃତି, ଦୀର୍ଘଜୀବୀତ୍ୱ, ଅବିଚ୍ଛିନ୍ନ ବଂଶ ପରମ୍ପରା, ଅନ୍ନ ଧନାଦିରେ ପ୍ରାଚୁର୍ଯ୍ୟ, ବିଦ୍ୟାଦି ରୁଚିରେ ଉତ୍କୃଷ୍ଟତା - ଏ ସମସ୍ତ ଯଜ୍ଞଦ୍ୱାରା ପ୍ରାପ୍ତ ହେଉ ।

**ମନ୍ତ୍ରସଂଖ୍ୟା (୫) :-** ଯଜୁର୍ବେଦ ଅ.୧୮/୫ : ସତ୍ୟଂ ଚ ମେ - ଯଥାର୍ଥଭାଷୀ, ପରଲୋକରେ ଶ୍ରଦ୍ଧା ଓ ବିଶ୍ୱାସ, ଜଙ୍ଗମ (ଗୋମହିଷାଦି ପଶୁ), ସୁବର୍ଣ୍ଣାଦି ଧନ, ସ୍ଥାବର ସମ୍ପତ୍ତି, ଦୀପ୍ତି, କ୍ରୀଡ଼ା, ହର୍ଷ, ପୁତ୍ରୋତ୍ପତ୍ତି ସୁଖ, ଭବିଷ୍ୟତ ବଂଶ ପରମ୍ପରା, ଦେବସ୍ତୁତି, ଅଦୃଷ୍ଟ (ପୁଣ୍ୟ) - ଏ ସମସ୍ତ ମୋତେ ଯଜ୍ଞଦ୍ୱାରା ସୁଲଭ୍ୟ ହେଉ ।

**ମନ୍ତ୍ରସଂଖ୍ୟା (୬) :-** ଯଜୁର୍ବେଦ ଅ.୧୮/୬ : ଋତଂ ଚ ମେ - ଯଜ୍ଞାଦି ପୁଣ୍ୟକର୍ମ ଓ ତଜ୍ଜନିତ ସ୍ୱର୍ଗାଦିଫଳ, ଧାତୁକ୍ଷୟାଦି ରୋଗାଭାବ, ପୀଡ଼ାଭାବ, ବ୍ୟାଧିନାଶକ ଔଷଧ, ଦୀର୍ଘ ପରମାୟୁ, ଶତ୍ରୁବିହୀନତ୍ୱ, ଭୀତିଶୂନ୍ୟତ୍ୱ, ସୁଖ, ସୁଖପ୍ରଦ ଶଯ୍ୟା, ସୁଖପ୍ରଦାୟକ

ଯନ୍ତା ଚ ମେ ଧର୍ତା ଚ ମେ କ୍ଷେମଶ୍ଚ ମେ ଧୃତିଶ୍ଚ ମେ । ବିଶ୍ୱଂ ଚ ମେ ମହଶ୍ଚ ମେ ସଁବିଚ୍ଚ ମେ ଜ୍ଞାତ୍ରଂ ଚ ମେ । ସୀରଂ ଚ ମେ ଲୟଶ୍ଚ ମେ ସୂଷ୍ଟ ମେ ପ୍ରସୂଷ୍ଟ ମେ ଯଜ୍ଞେନ କଳ୍ପନ୍ତାମ୍ ॥୭॥ ଶଂ ଚ ମେ ମୟଶ୍ଚ ମେ ପ୍ରିୟଂ ଚ ମେଽନୁକାମଶ୍ଚ ମେ । କାମଶ୍ଚ ମେ ସୌମନସଶ୍ଚ ମେ ଭଗଶ୍ଚ ମେ ଦ୍ରବିଣଂ ଚ ମେ । ଭଦ୍ରଂ ଚ ମେ ଶ୍ରେୟଶ୍ଚ ମେ ବସୀୟଶ୍ଚ ମେ ଯଶଶ୍ଚ ମେ ଯଜ୍ଞେନ କଳ୍ପନ୍ତାମ୍ ॥୮॥ ଊର୍କ୍ଚ ମେ ସୂନୃତା ଚ ମେ ପୟଶ୍ଚ ମେ ରସଶ୍ଚ ମେ । ଘୃତଂ ଚ ମେ ମଧୁ ଚ ମେ ସଗ୍ଧିଶ୍ଚ ମେ ସପୀତିଶ୍ଚ ମେ । କୃଷିଶ୍ଚ ମେ ବୃଷ୍ଟିଶ୍ଚ ମେ ଜୈତ୍ରଂ ଚ ମ ଔଭିଦ୍ୟଂ ଚ ମେ ଯଜ୍ଞେନ କଳ୍ପନ୍ତାମ୍ ॥୯॥

---

ପ୍ରାତଃକାଳ, ଯଜ୍ଞ-ଦାନ-ଅଧ୍ୟୟନାଦି ସମନ୍ୱିତ ସୁଦିନ- ଏ ସମସ୍ତ ମୋତେ ଯଜ୍ଞଦ୍ୱାରା ପ୍ରାପ୍ତ ହେଉ ।

**ମନ୍ତ୍ରସଂଖ୍ୟା (୭) :-** ଯଜୁର୍ବେଦ ଅ.୧୮/୭ : **ଯନ୍ତା** ଚ ମେ- ଅଶ୍ୱାଦି ବାହାନର ନିୟନ୍ତୃତ୍ୱ, ପିତ୍ରାଦି ରୂପରେ ପରିପାଳକତ୍ୱ, ପ୍ରାପ୍ତ ଧନାଦିର ପରିରକ୍ଷଣ କ୍ଷମତା, ଆପତ୍କାଳରେ ଧୈର୍ଯ୍ୟ, ସର୍ବବିଧ ଅନୁକୂଳତା, ଦେବାଦି ଅର୍ଚ୍ଚନ କ୍ଷମତା, ବେଦାଦିଶାସ୍ତ୍ରଜ୍ଞାନ, ଜ୍ଞାନବିଜ୍ଞାନାହରଣ ସାମର୍ଥ୍ୟ, ଅନୁଗତଙ୍କ ପ୍ରତି ପ୍ରେରଣା ପ୍ରଦାନ କ୍ଷମତା, ସୁସନ୍ତାନୋତ୍ପତ୍ତିକର୍ତ୍ତା, କୃଷିକର୍ମ ପ୍ରତିବନ୍ଧକ ନିବାରଣ କ୍ଷମତା - ଏ ସମସ୍ତ ଯଜ୍ଞଦ୍ୱାରା ମୋ ପାଇଁ ସୁଲଭ ହେଉ ।

**ମନ୍ତ୍ରସଂଖ୍ୟା (୮) :-** ଯଜୁର୍ବେଦ ଅ.୧୮/୮ : ଶଂ ଚ ମେ ମୟଶ୍ଚ - ଐହିକ ସୁଖ, ପାରଲୌକିକ ସୁଖ, ପ୍ରୀତିଦାୟକ ବସ୍ତୁ, ମନର ଅନୁକୂଳ ପଦାର୍ଥ, ବିଷୟଭୋଗ ଜନିତ ସୁଖ, ମାନସିକ ସୁଖ ଓ ଶାନ୍ତି, ସୌଭାଗ୍ୟ, ଧନସମ୍ପତ୍ତି, ସର୍ବବିଧ ସାଂସାରିକ କଲ୍ୟାଣ, ପାରଲୌକିକ ମଙ୍ଗଳପ୍ରାପ୍ତି, ସର୍ବବିଧ ସୁଖ ପ୍ରଦାୟକ ବାସସ୍ଥାନ (ଗୃହ) ଓ ଯଶ - ଏ ସମସ୍ତ ଯଜ୍ଞଦ୍ୱାରା ପ୍ରାପ୍ତ ହେଉ ।

**ମନ୍ତ୍ରସଂଖ୍ୟା (୯) :-** ଯଜୁର୍ବେଦ ଅ.୧୮/୯ : ଊର୍କ ଚ ମେ - ଅନ୍ନ, ପ୍ରିୟବାକ୍ୟ, ଦୁଗ୍ଧ, ସର୍ବବିଧ ରସ, ଘୃତ, ମଧୁ, ବନ୍ଧୁଙ୍କ ସହିତ ଭୋଜନ ଓ ପାନ, କୃଷିଲବ୍ଧ ଶସ୍ୟ, ସମୟାନୁସାର ବୃଷ୍ଟି, ଜୟଲାଭର ସାମର୍ଥ୍ୟ, ସର୍ବବିଧ ବୃକ୍ଷ ଇତ୍ୟାଦି ଯଜ୍ଞଦ୍ୱାରା ପ୍ରାପ୍ତ ହେଉ ।

ରୟିଶ୍ଚ ମେ ରାୟଶ୍ଚ ମେ ପୁଷ୍ଟଂ ଚ ମେ ପୁଷ୍ଟିଶ୍ଚ ମେ । ବିଭୁ ଚ ମେ ପ୍ରଭୁ ଚ ମେ ପୂର୍ଣ୍ଣଂ ଚ ମେ ପୂର୍ଣ୍ଣତରଂ ଚ ମେ । କୁୟବଂ ଚ ମେଽକ୍ଷିତଂ ଚ ମେଽନ୍ନଂ ଚ ମେଽକ୍ଷୁଚ୍ଚମେ ଯଜ୍ଞେନ କଳ୍ପନ୍ତାମ୍ ॥୧୦॥ ବିତ୍ତଂ ଚ ମେ ବେଦ୍ୟଂ ଚ ମେ ଭୂତଂ ଚ ମେ ଭବିଷ୍ୟଚ୍ଚ ମେ । ସୁଗଂ ଚ ମେ ସୁପଥ୍ୟଂ ଚ ମ ଋଦ୍ଧଂ ଚ ମ ଋଦ୍ଧିଶ୍ଚ ମେ । କ୍ଳୃପ୍ତଂ ଚ ମେ କ୍ଳୃପ୍ତିଶ୍ଚ ମେ ମତିଶ୍ଚ ମେ ସୁମତିଶ୍ଚ ମେ ଯଜ୍ଞେନ କଳ୍ପନ୍ତାମ୍ ॥୧୧॥ ବ୍ରୀହୟଶ୍ଚ ମେ ଯବାଶ୍ଚ ମେ ମାଷାଶ୍ଚ ମେ ତିଳାଶ୍ଚ ମେ । ମୁଦ୍‌ଗାଶ୍ଚ ମେ ଖଲ୍ୱାଶ୍ଚ ମେ ପ୍ରିୟଙ୍ଗବଶ୍ଚ ମେଽଣବଶ୍ଚ ମେ । ଶ୍ୟାମାକାଶ୍ଚ ମେ ନୀବାରାଶ୍ଚ ମେ ଗୋଧୂମାଶ୍ଚ ମେ ମସୂରାଶ୍ଚ ମେ ଯଜ୍ଞେନ କଳ୍ପନ୍ତାମ୍ ॥୧୨॥ ଅଶ୍ମା ଚ ମେ ମୃତ୍ତିକା ଚ ମେ ଗିରୟଶ୍ଚ ମେ ପର୍ବତାଶ୍ଚ ମେ । ସିକତାଶ୍ଚ ମେ ବନସ୍ପତୟଶ୍ଚ ମେ ହିରଣ୍ୟଂ ଚ ମେଽୟଶ୍ଚ ମେ । ସୀସଂ ଚ ମେ ତ୍ରପୁ ଚ ମେ ଶ୍ୟାମଂ ଚ ମେ ଲୋହଂ ଚ ମେ ଯଜ୍ଞେନ କଳ୍ପନ୍ତାମ୍ ॥୧୩॥

---

**ମନ୍ତ୍ରସଂଖ୍ୟା (୧୦) :-** ଯଜୁର୍ବେଦ ଅ.୧୮/୧୦ : ରୟିଶ୍ଚ ମେ - ସୁବର୍ଣ୍ଣ, ମୁକ୍ତାଦିମଣି, ଶରୀରପୁଷ୍ଟିକାରକ ବସ୍ତୁ, ଧନର ପ୍ରାଚୁର୍ଯ୍ୟ, ଅନେକାନେକ ହସ୍ତ୍ୟଶ୍ୱାଦି ସମୃଦ୍ଧି, କ୍ଷୁଦ୍ର ଧାନ୍ୟର ପ୍ରାପ୍ତି, ଭୁକ୍ତାନ୍ନର ସୁପରିପାକ - ଏ ସମସ୍ତ ମୋତେ ଯଜ୍ଞଦ୍ୱାରା ସୁଲଭ ହେଉ ।

**ମନ୍ତ୍ରସଂଖ୍ୟା (୧୧) :-** ଯଜୁର୍ବେଦ ଅ.୧୮/୧୧ : ବିତ୍ତଂ ଚ ମେ - ବିତ୍ତ, ଲବ୍ଧବ୍ୟ ବସ୍ତୁ, ପୂର୍ବପ୍ରାପ୍ତ କ୍ଷେତ୍ରାଦି ସୁରକ୍ଷା, ଭାବି ପ୍ରାପ୍ତବ୍ୟ କ୍ଷେତ୍ରାଦି, ସୁଗମ୍ୟ ଦେଶ, ହିତକାରକ ବସ୍ତୁ, ସମୃଦ୍ଧ ଯଜ୍ଞଫଳ ପ୍ରାପ୍ତି, କାର୍ଯ୍ୟସମ୍ପାଦକ ଦ୍ରବ୍ୟାଦି, ସ୍ୱକାର୍ଯ୍ୟସିଦ୍ଧି ସାମର୍ଥ୍ୟ, ଦୁର୍ଘଟ କାର୍ଯ୍ୟ ସାଧନରେ ନିଶ୍ଚୟାତ୍ମିକା ବୁଦ୍ଧି - ଏ ସମସ୍ତ ମୋତେ ଯଜ୍ଞଦ୍ୱାରା ହିଁ ପ୍ରାପ୍ତ ହେଉ ।

**ମନ୍ତ୍ରସଂଖ୍ୟା (୧୨) :-** ଯଜୁର୍ବେଦ ଅ.୧୮/୧୨ : ବ୍ରୀହୟଶ୍ଚ ମେ - ଧାନ, ଯବ, ବିରି, ତିଳ, ମୁଗ, ଚଣା, ପ୍ରିୟଙ୍ଗୁ (ପିପ୍ପଳୀ), ଅଣୁ (ଚୀନା ଧାନ୍ୟ ନାମକ ଏକ ପ୍ରକାର ଶସ୍ୟ), ଶ୍ୟାମାକ (ଶୁଆଁ), ନୀବାର (ତୃଣଧାନ୍ୟ), ଗହମ, ମସୂର- ଏସବୁ ଯଜ୍ଞ ମାଧ୍ୟମରେ ମୋତେ ପ୍ରାପ୍ତ ହେଉ ।

**ମନ୍ତ୍ରସଂଖ୍ୟା (୧୩) :-** ଯଜୁର୍ବେଦ ଅ.୧୮/୧୩ : ଅଶ୍ମା ଚ ମେ - ପଥର,

ଅଗ୍ନିଶ୍ଚ ମ ଆପଶ୍ଚ ମେ ବୀରୁଧଶ୍ଚ ମ ଓଷଧୟଶ୍ଚ ମେ । କୃଷ୍ଟପଚ୍ୟାଶ୍ଚ ମେଽକୃଷ୍ଟପଚ୍ୟାଶ୍ଚ ମେ ଗ୍ରାମ୍ୟାଶ୍ଚ ମେ ପଶବ ଆରଣ୍ୟାଶ୍ଚ ମେ । ବିତ୍ତଂ ଚ ମେ ବିତ୍ତିଶ୍ଚ ମେ ଭୂତଂ ଚ ମେ ଭୂତିଶ୍ଚ ମେ ଯଜ୍ଞେନ କଳ୍ପନ୍ତାମ୍ ॥୧୪॥ ବସୁ ଚ ମେ ବସତିଶ୍ଚ ମେ କର୍ମ ଚ ମେ ଶକ୍ତିଶ୍ଚ ମେ ॥ ଅର୍ଥଶ୍ଚ ମେ ଏମଶ୍ଚ ମ ଇତ୍ୟା ଚ ମେ ଗତିଶ୍ଚ ମେ ଯଜ୍ଞେନ କଳ୍ପନ୍ତାମ୍ ॥୧୫॥ ଅଗ୍ନିଶ୍ଚ ମ ଇନ୍ଦ୍ରଶ୍ଚ ମେ ସୋମଶ୍ଚ ମ ଇନ୍ଦ୍ରଶ୍ଚ ମେ । ସବିତା ଚ ମ ଇନ୍ଦ୍ରଶ୍ଚ ମେ ସରସ୍ୱତୀ ଚ ମ ଇନ୍ଦ୍ରଶ୍ଚ ମେ । ପୂଷା ଚ ମ ଇନ୍ଦ୍ରଶ୍ଚ ମେ ବୃହସ୍ପତିଶ୍ଚ ମ ଇନ୍ଦ୍ରଶ୍ଚ ମେ ଯଜ୍ଞେନ କଳ୍ପନ୍ତାମ୍ ॥୧୬॥

---

ମୃତ୍ତିକା, କ୍ଷୁଦ୍ର ପାହାଡ଼, ବୃହତ୍ ପର୍ବତ, ବାଲୁକା, ବନସ୍ପତି (ପୁଷ୍ପବିନା ଫଳବାନ୍ ବୃକ୍ଷ ଯଥା- ପଣସ, ଉଦୁମ୍ବର) ସୁବର୍ଣ୍ଣ, ଲୁହା, ତମ୍ବା, ସୀସା (ଧାତୁବିଶେଷ), ତ୍ରପୁ=ରଙ୍ଗ (ଝାଳେଇବା କାମରେ ଲାଗୁଥିବା ରାଙ୍ଗା)- ଏ ସମସ୍ତ ଯଜ୍ଞଦ୍ୱାରା ମୋତେ ସୁଲଭ୍ୟ ହେଉ ।

**ମନ୍ତ୍ରସଂଖ୍ୟା (୧୪) :-** ଯଜୁର୍ବେଦ ଅ.୧୮/୧୪ : ଅଗ୍ନିଶ୍ଚ ମେ ଆପଶ୍ଚ ମେ - ପାର୍ଥିବ ଅଗ୍ନି, ଅନ୍ତରିକ୍ଷସ୍ଥ ଜଳ, ଗୁଳ୍ମ (ବିସ୍ତୃତ ଲତା), ବିଭିନ୍ନ ଔଷଧୀୟ ଗୁଣଯୁକ୍ତ ତୃଣ, କୃଷି ଓ ବୀଜ ବପନରୁ ଲଭ୍ୟ ଔଷଧୀୟ ବୃକ୍ଷ, କୃଷି ଓ ବୀଜ ବପନ ବିନା ଲଭ୍ୟ ଔଷଧୀୟ ବୃକ୍ଷ, ଗୋ-ମହିଷାଦି ଗୃହପାଳିତ ପଶୁ, ହସ୍ତୀ ଆଦି ବନ୍ୟଜନ୍ତୁ । ପୂର୍ବ ପ୍ରାପ୍ତ ଧନ, ଭବିଷ୍ୟତରେ ପ୍ରାପ୍ତବ୍ୟଧନ, ଜନ୍ମିତ ପୁତ୍ରାଦି, ସ୍ୱ ଉପାର୍ଜିତ ଐଶ୍ୱର୍ଯ୍ୟ - ଏ ସମସ୍ତ ଯଜ୍ଞଦ୍ୱାରା ମୋତେ ପ୍ରାପ୍ତ ହେଉ ।

**ମନ୍ତ୍ରସଂଖ୍ୟା (୧୫) :-** ଯଜୁର୍ବେଦ ଅ.୧୮/୧୫ : ବସୁ ଚ ମେ - ଗୋଧନ, ଗୃହ, ଅଗ୍ନିହୋତ୍ରାଦି କର୍ମ ଏବଂ ସେହି କର୍ମ ସାଧନ କରିବାର ସାମର୍ଥ୍ୟ, ଅଭିଳଷିତ ପଦାର୍ଥ, ପ୍ରାପ୍ତବ୍ୟ ଅର୍ଥ, ଇଷ୍ଟପ୍ରାପ୍ତିର ଉପାୟ, ଇଷ୍ଟପ୍ରାପ୍ତି - ଏ ସମସ୍ତ ମୋତେ ଯଜ୍ଞମାଧ୍ୟମରେ ପ୍ରାପ୍ତ ହେଉ ।

**ମନ୍ତ୍ରସଂଖ୍ୟା (୧୬) :-** ଯଜୁର୍ବେଦ ଅ.୧୮/୧୬ : ଅଗ୍ନିଶ୍ଚ ମ ଇନ୍ଦ୍ରଶ୍ଚ - ଇନ୍ଦ୍ରଙ୍କ ସହିତ ଅଗ୍ନି, ସୋମ, ସାବିତ୍ରୀ, ସରସ୍ୱତୀ, ସୂର୍ଯ୍ୟ, ବୃହସ୍ପତି - ଏ ସମସ୍ତ ଦେବତା ଯଜ୍ଞଦ୍ୱାରା ମୋ ପ୍ରତି ପ୍ରସନ୍ନ ହୁଅନ୍ତୁ ।

ମିତ୍ରଶ୍ଚ ମ ଇନ୍ଦ୍ରଶ୍ଚ ମେ ବରୁଣଶ୍ଚ ମ ଇନ୍ଦ୍ରଶ୍ଚ ମେ । ଧାତା ଚ ମ ଇନ୍ଦ୍ରଶ୍ଚ ମେ ତ୍ୱଷ୍ଟା ଚ ମ ଇନ୍ଦ୍ରଶ୍ଚ ମେ । ମରୁତଶ୍ଚ ମ ଇନ୍ଦ୍ରଶ୍ଚ ମେ ବିଶ୍ୱେ ଚ ମେ ଦେବା ଇନ୍ଦ୍ରଶ୍ଚ ମେ ଯଜ୍ଞେନ କଳ୍ପନ୍ତାମ୍ ॥୧୭॥ ପୃଥିବୀ ଚ ମ ଇନ୍ଦ୍ରଶ୍ଚ ମେଽନ୍ତରିକ୍ଷଂ ଚ ମ ଇନ୍ଦ୍ରଶ୍ଚ ମେ । ଦ୍ୟୌଶ୍ଚ ମ ଇନ୍ଦ୍ରଶ୍ଚ ମେ ସମାଶ୍ଚ ମ ଇନ୍ଦ୍ରଶ୍ଚ ମେ । ନକ୍ଷତ୍ରାଣି ଚ ମ ଇନ୍ଦ୍ରଶ୍ଚ ମେ ଦିଶଶ୍ଚ ମ ଇନ୍ଦ୍ରଶ୍ଚ ମେ ଯଜ୍ଞେନ କଳ୍ପନ୍ତାମ୍ ॥୧୮॥ ଅଗୁଁଶୁଶ୍ଚ ମେ ରଶ୍ମିଶ୍ଚ ମେଽଦାଭ୍ୟଶ୍ଚ ମେଽଧିପତିଶ୍ଚ ମେ । ଉପାଗୁଁଶୁଶ୍ଚ ମେଽନ୍ତର୍ଯାମଶ୍ଚ ମ ଐନ୍ଦ୍ରବାୟବଶ୍ଚ ମେ ମୈତ୍ରାବରୁଣଶ୍ଚ ମେ । ଆଶ୍ୱିନଶ୍ଚ ମେ ପ୍ରତିପ୍ରସ୍ଥାନଶ୍ଚ ମେ ଶୁକ୍ରଶ୍ଚ ମେ ମନ୍ଥୀ ଚ ମେ ଯଜ୍ଞେନ କଳ୍ପନ୍ତାମ୍ ॥୧୯॥ ଆଗ୍ରୟଣଶ୍ଚ ମେ ବୈଶ୍ୱଦେବଶ୍ଚ ମେ ଧ୍ରୁବଶ୍ଚ ମେ ବୈଶ୍ୱାନରଶ୍ଚ ମେ ।ଐନ୍ଦ୍ରାଗ୍ନଶ୍ଚ ମେ ମହାବୈଶ୍ୱଦେବଶ୍ଚ ମେ ମରୁତ୍ୱତୀୟାଶ୍ଚ ମେ ନିଷ୍କେବଲ୍ୟଶ୍ଚ ମେ ।

---

**ମନ୍ତ୍ରସଂଖ୍ୟା (୧୭) :-** ଯଜୁର୍ବେଦ ଅ.୧୮/୧୭ : ମିତ୍ରଶ୍ଚ ମ ଇନ୍ଦ୍ରଶ୍ଚ ମେ - ମିତ୍ର (ସୂର୍ଯ୍ୟ / ବରୁଣ), ଧାତା (ବ୍ରହ୍ମା) ତ୍ୱଷ୍ଟା (ଦ୍ୱାଦଶ ଆଦିତ୍ୟଗଣ), ବାୟୁ, ବିଶ୍ୱେଦେବା - ଏ ସମସ୍ତ ଦେବତା ଇନ୍ଦ୍ରଙ୍କ ସହିତ ଯଜ୍ଞ ମାଧ୍ୟମରେ ମୋ ପ୍ରତି ପ୍ରସନ୍ନ ହୁଅନ୍ତୁ ।

**ମନ୍ତ୍ରସଂଖ୍ୟା (୧୮) :-** ଯଜୁର୍ବେଦ ଅ.୧୮/୧୮ : ପୃଥିବୀ ଚ ମେ- ପୃଥିବୀ, ଅନ୍ତରିକ୍ଷ (ଆକାଶ), ସ୍ୱର୍ଗ, ସଂବତ୍ସର, ଅଶ୍ୱିନୀ ଆଦି ନକ୍ଷତ୍ରଗଣ, ପୂର୍ବାଦି ଦିଗ ସମୂହ - ଇନ୍ଦ୍ରଙ୍କ ସମେତ ଏ ସମସ୍ତଙ୍କ ଅଧିଷ୍ଠାତା ଦେବତା ଯଜ୍ଞରେ ମୋ ପ୍ରତି ସନ୍ତୁଷ୍ଟ ହୁଅନ୍ତୁ ।

**ମନ୍ତ୍ରସଂଖ୍ୟା (୧୯) :-** ଯଜୁର୍ବେଦ ଅ.୧୮/୧୯ : ଅଗୁଁଶୁଶ୍ଚ ମେ- (ଏଠାରେ ଯଜ୍ଞମାନଙ୍କରେ ବ୍ୟବହୃତ ବିଭିନ୍ନ ପାତ୍ର ଯାହାକି ଗ୍ରହରୂପକ ପାରିଭାଷିକ ଶବ୍ଦଦ୍ୱାରା କୁହାଯାଇଅଛି) ଅଂଶୁଗ୍ରହ, ରଶ୍ମି, ଅଦାଭ୍ୟ, ଅଧିପତି, ଉପାଂଶୁ, ଅନ୍ତର୍ଯ୍ୟାମ, ଐନ୍ଦ୍ରବାୟବ, ମୈତ୍ରାବରୁଣ, ଆଶ୍ୱିନ, ପ୍ରତିପ୍ରସ୍ଥାନ, ଶୁକ୍ର ଏବଂ ମନ୍ଥୀ - ଏ ସମସ୍ତ ଗ୍ରହ (ପାତ୍ର) ମାନେ ଯଜ୍ଞଦ୍ୱାରା ପ୍ରାପ୍ତ ହୁଅନ୍ତୁ ।

**ମନ୍ତ୍ରସଂଖ୍ୟା (୨୦) :-** ଯଜୁର୍ବେଦ ଅ.୧୮/୨୦ : ଆଗ୍ରୟଣଶ୍ଚ ମେ- ପୂର୍ବ ମନ୍ତ୍ରଭଳି ଯଜ୍ଞୀୟ ପାତ୍ର ବା ଅଧିଦେବତା ଓ ପ୍ରତ୍ୟଧିଦେବତା ସହିତ ଏଥିରେ ମଧ

ସାବିତ୍ରଶ୍ଚ ମେ ସାରସ୍ୱତଶ୍ଚ ମେ ପାତ୍ନୀବତଶ୍ଚ ମେ ହାରିଯୋଜନଶ୍ଚ ମେ ଯଜ୍ଞେନ କଳ୍ପନ୍ତାମ୍ ॥୨୦॥ ସ୍ରୁଚଶ୍ଚ ମେ ଚମସାଶ୍ଚ ମେ ବାୟବ୍ୟାନି ଚ ମେ ଦ୍ରୋଣକଳଶଶ୍ଚ ମେ । ଗ୍ରାବାଣଶ୍ଚ ମେଽଧିଷବଣେ ଚ ମେ ପୂତଭୃଚ୍ଚ ମ ଆଧବନୀୟଶ୍ଚ ମେ । ବେଦିଶ୍ଚ ମେ ବର୍ହିଶ୍ଚ ମେ ସ୍ୱଗାକାରଶ୍ଚ ମେଽବଭୃଥଶ୍ଚ ମେ ଯଜ୍ଞେନ କଳ୍ପନ୍ତାମ୍ ॥୨୧॥ ଅଗ୍ନିଶ୍ଚ ମେ ଘର୍ମଶ୍ଚ ମେଽର୍କଶ୍ଚ ମେ ସୂର୍ଯଶ୍ଚ ମେ । ପ୍ରାଣଶ୍ଚ ମେଽଶ୍ୱମେଧଶ୍ଚ ମେ ପୃଥିବୀ ଚ ମେଽଦିତିଶ୍ଚ ମେ । ଦିତିଶ୍ଚ ମେ ଦ୍ୟୌଶ୍ଚ ମେଽଙ୍ଗୁଳୟଃ ଶକ୍ୱରୟୋ ଦିଶଶ୍ଚ ମେ ଯଜ୍ଞେନ କଳ୍ପନ୍ତାମ୍ ॥୨୨॥

---

ଗ୍ରହ ବିଷୟରେ କୁହାଯାଇଅଛି । ଆଗ୍ରୟଣ, ବୈଶ୍ୱଦେବ, ଧ୍ରୁବ, ବୈଶ୍ୱାନର, ଐନ୍ଦ୍ରାଗ୍ନ, ମହାବୈଶ୍ୱଦେବ, ମରୁତ୍ୱତୀୟ, ନିଷ୍କୈବଲ୍ୟ, ସାବିତ୍ର, ସାରସ୍ୱତ, ପାତ୍ନୀବ୍ରତ ଏବଂ ହାରିଯୋଜନ ନାମକ ଗ୍ରହ(ପାତ୍ର)ମାନେ ମୋପାଇଁ ଯଜ୍ଞଦ୍ୱାରା ସନ୍ତୋଷଲାଭ କରନ୍ତୁ ।

**ମନ୍ତ୍ରସଂଖ୍ୟା (୨୧) :-** ଯଜୁର୍ବେଦ ଅ.୧୮/୨୧ : ସ୍ରୁଚଶ୍ଚ ମେ - (ଯଜ୍ଞୀୟ ପାତ୍ର ବିଷୟକ) - ଜୁହୂ, ସ୍ରୁବ, ସ୍ରୁକ୍ (ସ୍ରୁଚ), ଚମସ, ବାୟବ୍ୟ, କାଷ୍ଠନିର୍ମିତ କଳଶ, ପ୍ରସ୍ତରସମୂହ, କାଷ୍ଠଫଳକ, ପୁତଭୃତ୍ ଓ ଆହବନୀୟ ନାମକ ଦୁଇଟି ସୋମପାତ୍ର, ବେଦ (ଯଜ୍ଞନିମିତ୍ତ ପରିଷ୍କୃତଭୂମି), କୁଶ, ଅବଭୃଥ (ଦୀକ୍ଷାନ୍ତ ଯଜ୍ଞ ବିଶେଷ ସ୍ନାନ) ସ୍ୱଗାକାର (ଶମ୍ଯୁବାକ) - ଏ ସମସ୍ତ ମୋତେ ଯଜ୍ଞ ନିମିତ୍ତ ପ୍ରାପ୍ତ ହୁଅନ୍ତୁ ।

**ମନ୍ତ୍ରସଂଖ୍ୟା (୨୨) :-** ଯଜୁର୍ବେଦ ଅ.୧୮/୨୨ : ଅଗ୍ନିଶ୍ଚ ମେ - ଅଗ୍ନି (ଅଗ୍ନି ପଦରେ ଏଠାରେ ସାମାନ୍ୟ ଅଗ୍ନି ବଦଳରେ ଅଗ୍ନିଷ୍ଟୋମ ଯଜ୍ଞନିମିତ୍ତ ଆହିତାଗ୍ନିକୁ ଅଭିହିତ କରାଯାଇଅଛି), ଘର୍ମ (ପ୍ରବର୍ଗ୍ୟ ନାମକ ଯଜ୍ଞବିଶେଷ), ଅର୍କ ଅର୍ଥାତ୍ ସୂର୍ଯ୍ୟ ସ୍ୱରୂପ ଇନ୍ଦ୍ରଙ୍କ ନିମିତ୍ତ ପୁରୋଡାଶ (ଯଜ୍ଞୀୟ ପିଠା) ପ୍ରଦାନ ପରକ ଯାଗ ବିଶେଷର ନାମ (ଇନ୍ଦ୍ରାୟ ଅର୍କବତେ ପୁରୋଡାଶଂ), ସୂର୍ଯ୍ୟ (ସୌର୍ଯ୍ୟଂ ଚରୁମ୍) ସୂର୍ଯ୍ୟ ସମ୍ବନ୍ଧୀୟ ଚରୁ ପ୍ରଦାନ ନିମିତ୍ତ ଯଜ୍ଞ । ପ୍ରାଣ (ଗବାମୟନ ନାମକ ଯଜ୍ଞ), ଅଶ୍ୱମେଧ ଯଜ୍ଞ, ପୃଥିବୀ, ଅଦିତି, ଦିତି, ସ୍ୱର୍ଗ, ଅଙ୍ଗୁଳି (ବିରାଟ ପୁରୁଷର ଅବୟବ), ସମସ୍ତ ଶକ୍ତି, ପୂର୍ବାଦି ଦିଗମାନେ ମୋର ଯଜ୍ଞଦ୍ୱାରା ସିଦ୍ଧ ହୁଅନ୍ତୁ ।

ବ୍ରତଞ୍ଚ ମ ଋତବଶ୍ଚ ମେ ସଂବତ୍ସରଶ୍ଚ ମେ ତପଶ୍ଚ ମେ । ଅହୋରାତ୍ରେ ଊର୍ବଷ୍ଠୀବେ ବୃହଦ୍ରଥନ୍ତରେ ଚ ମେ ଯଜ୍ଞେନ କଳ୍ପନ୍ତାମ୍ ॥୨୩॥ ଏକା ଚ ମେ ତିସ୍ରଶ୍ଚ ମେ ତିସ୍ରଶ୍ଚ ମେ ପଞ୍ଚ ଚ ମେ ପଞ୍ଚ ଚ ମେ ସପ୍ତ ଚ ମେ ସପ୍ତ ଚ ମେ ନବ ଚ ମେ ନବ ଚ ମ ଏକାଦଶ ଚ ମ ଏକାଦଶ ଚ ମେ ତ୍ରୟୋଦଶ ଚ ମେ ତ୍ରୟୋଦଶ ଚ ମେ । ପଞ୍ଚଦଶ ଚ ମେ ପଞ୍ଚଦଶ ଚ ମେ ସପ୍ତଦଶ ଚ ମେ ସପ୍ତଦଶ ଚ ମେ ନବଦଶ ଚ ମେ ନବଦଶ ଚ ମ ଏକବିଗୁଁଶତିଶ୍ଚ ମ ଏକବିଗୁଁଶତିଶ୍ଚ ମେ ତ୍ରୟୋବିଗୁଁଶତିଶ୍ଚ ମେ ତୟୋବିଗୁଁଶତିଶ୍ଚ ମେ ପଞ୍ଚବିଗୁଁଶତିଶ୍ଚ ମେ ପଞ୍ଚବିଗୁଁଶତିଶ୍ଚ ମେ ସପ୍ତବିଗୁଁଶତିଶ୍ଚ ମେ ସପ୍ତବିଗୁଁଶତିଶ୍ଚ ମେ ନବବିଗୁଁଶତିଶ୍ଚ ମେ ନବବିଗୁଁଶତିଶ୍ଚ ମେ । ଏକତ୍ରିଗୁଁଶଚ୍ଚ ମ ଏକତ୍ରିଗୁଁଶଚ୍ଚ ମେ ତ୍ରୟସ୍ତ୍ରିଗୁଁଶଚ୍ଚ ମେ ଯଜ୍ଞେନ କଳ୍ପନ୍ତାମ୍ ॥୨୪॥

---

**ମନ୍ତ୍ରସଂଖ୍ୟା (୨୩) :-** ଯଜୁର୍ବେଦ ଅ.୧୮/୨୩ : ବ୍ରତଂ ଚ ମେ - ନିୟମ, ବସନ୍ତ ପ୍ରଭୃତି ଋତୁ ସମୂହ, ତପସ୍ୟା (କୃଚ୍ଛ ଚାନ୍ଦ୍ରାୟଣାଦି), ପ୍ରଭବ ପ୍ରଭୃତି ସଂବତ୍ସର, ଦିନରାତ୍ରି, ଜଂଘ ଓ ଆଣ୍ଠୁ, ବୃହତ୍ ଏବଂ ରଥନ୍ତର ନାମକ ସାମମନ୍ତ୍ରଦ୍ୱୟ- ଏ ସମସ୍ତ ଯଜ୍ଞଦ୍ୱାରା ମୋର ସିଦ୍ଧିଲାଭ ହେଉ ।

**ମନ୍ତ୍ରସଂଖ୍ୟା (୨୪) :-** ଯଜୁର୍ବେଦ ଅ.୧୮/୨୪ : ଏକା ଚ ମେ - (ବେଦରେ କୁହାଯାଇଅଛି- 'ଏତଦ୍ ବୈ ଦେବାଃ ସର୍ବାନ୍ କାମାନ୍ ଆପ୍ତ୍ୱା ଅୟୁଗ୍ମଭିଃ ସ୍ତୋମୈଃ ସ୍ୱର୍ଗଂ ଲୋକମାୟଂସ୍ତଥୈବୈତଦ୍ ଯଜମାନଃ ସର୍ବାନ୍ କାମାନ୍ ଆପ୍ତ୍ୱା ଅୟୁଗ୍ମଭିଃ ସ୍ତୋମୈଃ ସ୍ୱର୍ଗଂ ଲୋକମେତି'- (୯.୩.୩.୨) ଅର୍ଥାତ୍ ଦେବତାମାନେ ଯେପରି ଅୟୁଗ୍ମ ଅର୍ଥାତ୍ ବେଯୋଡ଼ ସାମମନ୍ତ୍ରଦ୍ୱାରା ସମସ୍ତ କାମନା ପୂରଣ କରି ସ୍ୱର୍ଗଲୋକକୁ ଆସିଥିଲେ ଠିକ୍ ସେହିପରି ଯଜମାନ ଅୟୁଗ୍ମ ସାମମନ୍ତ୍ରଦ୍ୱାରା ସମସ୍ତ କାମନା ପୂରଣ କରି ସ୍ୱର୍ଗଲୋକ ପ୍ରାପ୍ତ ହୁଅନ୍ତି) । ମନ୍ତ୍ରରେ ସମସ୍ତ ଅୟୁଗ୍ମ ଅର୍ଥାତ୍ ବେଯୋଡ଼ ସଂଖ୍ୟାର ଅତିଶୟ ଆଦର ହେତୁ ପ୍ରତ୍ୟେକଙ୍କୁ ଦୁଇଥର କରି କୁହାଯାଇଅଛି, ଯଥା- ଏକ, ତିନି-ତିନି, ପାଞ୍ଚ-ପାଞ୍ଚ, ସାତ-ସାତ, ନଅ-ନଅ, ଏଗାର-ଏଗାର, ପନ୍ଦର-ପନ୍ଦର, ସତର-ସତର, ଉଣେଇଶ-ଉଣେଇଶ, ଏକୋଇଶ-ଏକୋଇଶ, ତେଇଶ-ତେଇଶ, ପଚିଶ-ପଚିଶ, ସତେଇଶ-ସତେଇଶ, ଅଣତିରିଶ-ଅଣତିରିଶ, ଏକତିରିଶ-ଏକତିରିଶ, ତେତ୍ରିଶ-ତେତ୍ରିଶ - ଏ ସମସ୍ତ ଯଜ୍ଞଦ୍ୱାରା ମୋତେ ପ୍ରାପ୍ତ ହୁଅନ୍ତୁ ।

ଚତସ୍ରଶ୍ଚ ମେଽଷ୍ଟୌ ଚ ମେଽଷ୍ଟୌ ଚ ମେ ଦ୍ୱାଦଶ ଚ ମେ ଦ୍ୱାଦଶ ଚ ମେ । ଷୋଡ଼ଶ ଚ ମେ ଷୋଡ଼ଶ ଚ ମେ ବିଗୁଁଶତିଶ୍ଚ ମେ ବିଗୁଁଶତିଶ୍ଚ ମେ । ଚତୁର୍ବିଗୁଁଶତିଶ୍ଚ ମେ ଚତୁର୍ବିଗୁଁଶତିଶ୍ଚ ମେଽଷ୍ଟାବିଗୁଁଶତିଶ୍ଚ ମେଽଷ୍ଟାବିଗୁଁଶତିଶ୍ଚ ମେ । ଦ୍ୱାତ୍ରିଗୁଁଶଚ୍ଚ ମେ ଦ୍ୱାତ୍ରିଗୁଁଶଚ୍ଚ ମେ ଷଟ୍ତ୍ରିଗୁଁଶଚ୍ଚ ମେ ଷଟ୍ତ୍ରିଗୁଁଶଚ୍ଚ ମେ । ଚତ୍ୱାରିଗୁଁଶଚ୍ଚ ମେ ଚତ୍ୱାରିଗୁଁଶଚ୍ଚ ମେ ଚତୁଶ୍ଚତ୍ୱାରିଗୁଁଶଚ୍ଚ ମେ ଚତୁଶ୍ଚତ୍ୱାରିଗୁଁଶଚ୍ଚ ମେଽଷ୍ଟାଚତ୍ୱାରିଗୁଁଶଚ୍ଚ ମେ ଯଜ୍ଞେନ କଳ୍ପନ୍ତାମ୍ ॥୨୫॥ ତ୍ର୍ୟବିଶ୍ଚ ମେ ତ୍ର୍ୟବୀ ଚ ମେ ଦିତ୍ୟବାଟ୍ ଚ ମେ ଦିତ୍ୟୌ ହୀ ଚ ମେ । ପଞ୍ଚାବିଶ୍ଚ ମେ ପଞ୍ଚାବୀ ଚ ମେ ତ୍ରିବସ୍ସଶ୍ଚ ମେ ତ୍ରିବସ୍ସା ଚ ମେ । ତୁର୍ଯବାଟ୍ ଚ ମେ ତୁର୍ଯୌ ହୀ ଚ ମେ ଯଜ୍ଞେନ କଳ୍ପନ୍ତାମ୍ ॥୨୬॥ ପଷ୍ଠବାଟ୍ ଚ ମେ ପଷ୍ଠୌ ହୀ ଚ ମ ଉକ୍ଷା ଚ ମେ ବଶା ଚ ମେ ଋଷଭଶ୍ଚ ମେ ବେହଚ୍ଚ ମେଽନଡ୍ୱାଂଶ୍ଚ ମେ ଧେନୁଶ୍ଚ ମେ ଯଜ୍ଞେନ କଳ୍ପନ୍ତାମ୍ ॥୨୭॥

---

**ମନ୍ତ୍ରସଂଖ୍ୟା (୨୫) :-** ଯଜୁର୍ବେଦ ଅ.୧୮/୨୫ : ଚତସ୍ରଶ୍ଚ ମେ - (ପୂର୍ବୋକ୍ତ ଅଯୁଗ୍ମ ସଂଖ୍ୟା ପରି ଯୁଗ୍ମ ସଂଖ୍ୟାଦ୍ୱାରା ସ୍ତୁତି କରି ଦେବତାମାନଙ୍କ ଭଳି ଯଜମାନ ସ୍ୱର୍ଗପ୍ରାପ୍ତ ହୁଅନ୍ତି ।) ଚାରି, ଆଠ-ଆଠ, ବାର-ବାର, ଷୋହଳ-ଷୋହଳ, କୋଡ଼ିଏ-କୋଡ଼ିଏ, ଚବିଶ-ଚବିଶ, ଅଠେଇଶ-ଅଠେଇଶ, ବତିଶ-ବତିଶ, ଛତିଶ-ଛତିଶ, ଚୌରାଳିଶ-ଚୌରାଳିଶ, ଅଠଚାଳିଶ-ଅଠଚାଳିଶ ଯଜ୍ଞଦ୍ୱାରା ପ୍ରାପ୍ତ ହୁଅନ୍ତୁ ।

**ମନ୍ତ୍ରସଂଖ୍ୟା (୨୬) :-** ଯଜୁର୍ବେଦ ଅ.୧୮/୨୬ : ତ୍ର୍ୟବିଶ୍ଚ ମେ ତ୍ର୍ୟବି ଚ ମେ- ତ୍ର୍ୟବୀ (ଅବି ଅର୍ଥାତ୍ ଷଣ୍ମାସ, ତ୍ରି ଅବି ଅର୍ଥାତ୍ ତିନୋଟି ଷଣ୍ମାସ ଯାହାକି ଦେଢ଼ ବର୍ଷକୁ ବୁଝାଏ) ଦେଢ଼ବର୍ଷର ବୃଷ ଏବଂ ଛଡ଼ା, ଦୁଇବର୍ଷର ବୃଷ ଓ ଗାଈ (ଛଡା), ସାର୍ଦ୍ଧ ଦୁଇବର୍ଷର ବୃଷଭ ଓ ଛଡ଼ା, ତିନି ବର୍ଷର ଗାଈ ଓ ବଳଦ, ସାର୍ଦ୍ଧ ତିନି ବର୍ଷର ଧେନୁ ଓ ବୃଷଭ - ଏ ସମସ୍ତ ଯଜ୍ଞାନୁଷ୍ଠାନ ଦ୍ୱାରା ମୋତେ ପ୍ରାପ୍ତ ହୁଅନ୍ତୁ ।

**ମନ୍ତ୍ରସଂଖ୍ୟା (୨୭) :-** ଯଜୁର୍ବେଦ ଅ.୧୮/୨୭ : ପଷ୍ଠ୍ୱାଟ୍ ଚ ମେ - ଚାରି ବର୍ଷର ବୃଷଭ, ସେଚନକ୍ଷମ ବୃଷଭ, ବନ୍ଧ୍ୟା ଗାଈ, ଅତି ଯୁବ ବୃଷଭ, ଗର୍ଭୋପଘାତିନୀ ଧେନୁ, ଶଗଡ଼ବାହକ ବୃଷଭ, ନବପ୍ରସୂତା ଧେନୁ ମୋତେ ଯଜ୍ଞଦ୍ୱାରା ସଂପ୍ରାପ୍ତ ହୁଅନ୍ତୁ ।

ବାଜାୟ ସ୍ୱାହା ପ୍ରସବାୟ ସ୍ୱାହା ପିଜାୟ ସ୍ୱାହା କ୍ରତବେ ସ୍ୱାହା । ବସବେ ସ୍ୱାହା ହର୍ପତୟେ ସ୍ୱାହା । ଅହ୍ନେ ମୁଗ୍ଧାୟ ସ୍ୱାହା ମୁଗ୍ଧାୟ ବୈନଗୁଁଶିନାୟ ସ୍ୱାହା ବିନଗୁଁଶିନ ଆନ୍ତ୍ୟାୟନାୟ ସ୍ୱାହାନ୍ତ୍ୟାୟ ଭୌବନାୟ ସ୍ୱାହା । ଭୁବନସ୍ୟ ପତୟେ ସ୍ୱାହାଧିପତୟେ ସ୍ୱାହା ପ୍ରଜାପତୟେ ସ୍ୱାହା ॥ ଇୟଂ ତେ ରାଣ୍ମିତ୍ରାୟ

---

**ମନ୍ତ୍ରସଂଖ୍ୟା (୨୮) :-** ଯଜୁର୍ବେଦ ଅ.୧୮/୨୮ : ବାଜାୟ ସ୍ୱାହା - ବାଜ ଅର୍ଥାତ୍ ଅନ୍ନ, ତନ୍ନିମିତ୍ତ ସ୍ୱାହା (ବାଜ ଇତ୍ୟାଦି ଚୈତ୍ର ପ୍ରଭୃତି ମାସଗୁଡ଼ିକର ନାମ, ଅନ୍ନ ପ୍ରାଚୁର୍ଯ୍ୟ ପ୍ରଦାୟକ ହେତୁ ଚୈତ୍ର ଅନ୍ନ ସ୍ୱରୂପ, ଏଣୁ ଅନ୍ନସ୍ୱରୂପ ଚୈତ୍ର ମାସକୁ ଆହୁତି ପ୍ରଦାନ), ପ୍ରସବାୟ = ଜଳକ୍ରୀଡା ନିମିତ୍ତ ଅନୁଜ୍ଞା ପ୍ରଦାନକାରୀ ହେତୁ ପ୍ରସବ ଅର୍ଥାତ୍ ବୈଶାଖ ମାସଙ୍କ ପାଇଁ ସ୍ୱାହା, ଅପିଜ = ଅପ୍ସୁ (ଜଳରେ) ଜାୟତେ ଇତି ଅପିଜ ଅର୍ଥାତ୍ ଜଳକ୍ରୀଡାରତ ହେତୁ ଜ୍ୟେଷ୍ଠମାସ, ତାଙ୍କ ପାଇଁ ସ୍ୱାହା, ଚାତୁର୍ମାସ୍ୟାଦି କ୍ରତୁ(ଯାଗ) ପ୍ରାଚୁର୍ଯ୍ୟ ହେତୁ କ୍ରତୁ ଶବ୍ଦ ଆଷାଢ଼ ମାସପରକ, ସେହି ଆଷାଢ଼ ମାସଙ୍କ ପାଇଁ ସ୍ୱାହା, ବସୁ = ଚାତୁର୍ମାସ୍ୟ ସମୟରେ ବହିର୍ଗମନ ନିଷିଦ୍ଧ ହେତୁ ଶ୍ରାବଣ ମାସକୁ ବସୁ କୁହାଯାଇଅଛି । ଏଣୁ ସେହି ବସୁ ଅର୍ଥାତ୍ ଶ୍ରାବଣ ମାସଙ୍କ ପାଇଁ ସ୍ୱାହା । ଦିନ ସ୍ୱାମୀ ସୂର୍ଯ୍ୟ ସେ ତାପ ପ୍ରଦାନ କରୁଥିବା ହେତୁ ଭାଦ୍ରପଦ ମାସ ଅଭିଧେୟ ଅହର୍ପତି ତାଙ୍କ ପାଇଁ ସ୍ୱାହା, ଶୈତ୍ୟ ଓ ଗାଢ଼ ତୁଷାରରୂପକ ମୋହଦ୍ୱାରା ପରିବ୍ୟାପ୍ତ ଆଶ୍ୱିନମାସଙ୍କ ନିମିତ୍ତ ସ୍ୱାହା, ସ୍ନାନାଚମନାଦି ନିୟମଦ୍ୱାରା ପାପନାଶକ ଓ ମୋହ ନିବର୍ତ୍ତକ ରୂପକ କାର୍ତ୍ତିକ ମାସଙ୍କ ପାଇଁ ସ୍ୱାହା, ସୃଷ୍ଟିର ବିନାଶ ପରେ ମଧ୍ୟ ଅବଶେଷ ରୂପରେ ତିଷ୍ଠି ରହୁଥିବା ହେତୁ ଅବିନାଶୀ ଭଗବାନ୍ ବିଷ୍ଣୁସ୍ୱରୂପ ମାର୍ଗଶୀର୍ଷ ମାସ (ମାସାନାଂ ମାର୍ଗଶୀର୍ଷୋଽହଂ) ତାଙ୍କ ନିମିତ୍ତ ସ୍ୱାହା, ଭୁବନମଣ୍ଡଳର ଅନ୍ତରେ ଯେ ଲୋକହିତ ପାଇଁ ଜଠରାଗ୍ନିକୁ ଦୀପ୍ତି ପ୍ରଦାନ କରି ଶରୀରର ପୁଷ୍ଟିସାଧନ କରୁଥିବା ପୌଷମାସ ତାଙ୍କ ନିମିତ୍ତ ସ୍ୱାହା, ପ୍ରାତଃସ୍ନାନ ପୂର୍ବକ ଦାନାଦି ପୁଣ୍ୟକର୍ମଦ୍ୱାରା ଲୋକପାଳକ ରୂପରେ ମାଘମାସଙ୍କ ପାଇଁ ସ୍ୱାହା, ଲୋକଙ୍କୁ ଅଧିକ ପାଳନ ଓ ପୋଷଣଦ୍ୱାରା ଉପକାର ସାଧନ କରୁଥିବା ଫାଲ୍‌ଗୁନ ମାସଙ୍କ ନିମିତ୍ତ ସ୍ୱାହା । ଏହିପରି ଦ୍ୱାଦଶ ମାସର ଅଧିଷ୍ଠାତା ପ୍ରଜାପତି ଦେବତାଙ୍କ ସନ୍ତୋଷ ନିମିତ୍ତ ସ୍ୱାହା । ହେ ଅଗ୍ନିଦେବତା ! ଯେଉଁ ଯେଉଁ ସ୍ଥାନରେ ଯାଗ ଅନୁଷ୍ଠିତ ହୁଏ ସେ ସମସ୍ତ ତୁମର ରାଜ୍ୟ, ତୁମେ ମଧ୍ୟ ମିତ୍ର ଅର୍ଥାତ୍ ବନ୍ଧୁଭାବାପନ୍ନ

ଯନ୍ତାସି ଯମନଃ ଊର୍ଜେ ତ୍ୱା ବୃଷ୍ଟ୍ୟୈ ତ୍ୱା ପ୍ରଜାନାଂ ତ୍ୱାଧିପତ୍ୟାୟ ॥୨୮॥
ଆୟୁର୍ଯଜ୍ଞେନ କଳ୍ପତାଂ ପ୍ରାଣୋ ଯଜ୍ଞେନ କଳ୍ପତାଂ ଚକ୍ଷୁର୍ଯଜ୍ଞେନ କଳ୍ପତାଗୁଁ ଶ୍ରୋତ୍ରଂ ଯଜ୍ଞେନ କଳ୍ପତାମ୍ । ବାଗ୍‌ଯଜ୍ଞେନ କଳ୍ପତାଂ ମନୋ ଯଜ୍ଞେନ କଳ୍ପତାମାତ୍ମା ଯଜ୍ଞେନ କଳ୍ପତାଂ ପୃଷ୍ଠଂ ଯଜ୍ଞେନ କଳ୍ପତାମ୍ । ବ୍ରହ୍ମ ଯଜ୍ଞେନ କଳ୍ପତାଂ ଯଜ୍ଞୋ ଯଜ୍ଞେନ କଳ୍ପତାଂ ଜ୍ୟୋତିର୍ଯଜ୍ଞେନ କଳ୍ପତାଗୁଁ ସ୍ୱର୍ଯଜ୍ଞେନ କଳ୍ପତାମ୍ ॥ ସ୍ତୋମଶ୍ଚ ଯଜୁଶ୍ଚ ଋକ୍‌ଚ ସାମ ଚ ବୃହଚ୍ଚ ରଥନ୍ତରଂ ଚ । ସ୍ୱର୍ଦେବା ଅଗନ୍ମାମୃତା ଅଭୂମ ପ୍ରଜାପତେଃ ପ୍ରଜା ଅଭୂମ ବେଟ୍ ସ୍ୱାହା ॥୨୯॥

---

ଯଜମାନର ଅଗ୍ନିଷ୍ଟୋମାଦି ଯାଗାନୁଷ୍ଠାନ ମାଧ୍ୟମରେ ନିୟାମକ ଅଟ । ଏଣୁ ବର୍ଷା ମାଧ୍ୟମରେ ବିଶିଷ୍ଟ ଅନ୍ନରସ ପ୍ରଦାତା, ପ୍ରଜାଙ୍କ ଅଧିପତି ସ୍ୱରୂପ ତୁମକୁ ବସୋର୍ଧାରାଦ୍ୱାରା (ଘୃତଧାରାଦ୍ୱାରା) ଅଭିଷେଚନ କରୁଅଛି ।

**ମନ୍ତ୍ରସଂଖ୍ୟା (୨୯) :-** ଯଜୁର୍ବେଦ ଅ.୧୮/୨୯ : ଆୟୁର୍ଯଜ୍ଞେନ - ଯଜ୍ଞଦ୍ୱାରା ପରମାୟୁ, ପ୍ରାଣ, ଚକ୍ଷୁ, କର୍ଣ୍ଣ, ବାକ୍, ମନ, ଆତ୍ମା, ବେଦ ଓ ଜ୍ୟୋତିଃସ୍ୱରୂପ ସ୍ୱୟଂ ପ୍ରକାଶ ପରମାତ୍ମା ବିଷୟକଜ୍ଞାନ, ସ୍ୱର୍ଗସ୍ଥାନ, ସ୍ତବ ଓ ମନ୍ତ୍ରସ୍ୱରୂପ ଋଗ୍-ଯଜୁ-ସାମବେଦ ଅନ୍ତର୍ଗତ ବୃହତ୍ ଓ ରଥନ୍ତର ମନ୍ତ୍ର-ବିଷୟକ ଜ୍ଞାନବିଶେଷ ଯଜ୍ଞଦ୍ୱାରା ସମସ୍ତେ ପ୍ରାପ୍ତ ହୁଅନ୍ତୁ । ଯାହା ଫଳରେ ଯଜମାନ ଦେବତ୍ୱ ପ୍ରାପ୍ତ ହୋଇ ସ୍ୱର୍ଗଲୋକକୁ ଯାଇଅଛନ୍ତି । ଏଣୁ ଏ ସମସ୍ତ ପ୍ରାପ୍ତି ପାଇଁ ଆମେ ବସୋର୍ଧାରା ଦ୍ୱାରା ବଷଟ୍‌କାର ମାଧ୍ୟମରେ ତୁମ୍ଭଙ୍କୁ (ଦେବତାମାନଙ୍କୁ) ପ୍ରୀତ କରୁଅଛୁ ।

ସ୍ତୋମ (ଯଜୁର୍ବେଦର ମନ୍ତ୍ରବିଶେଷ), ଯଜୁର୍ବେଦ, ଋଗ୍‌ବେଦ, ସାମ (ଗାନ), ବୃହତ୍ (ଛନ୍ଦବିଶେଷ), ରଥନ୍ତର ନାମକ ସାମମନ୍ତ୍ର - ଏଭଳି ମନ୍ତ୍ରମାନଙ୍କ ମାଧ୍ୟମରେ ଯଜମାନମାନେ ସ୍ୱର୍ଗକୁ ଗମନ କରିଅଛନ୍ତି । ଆମେ ମଧ୍ୟ ତାହାଦ୍ୱାରା ପ୍ରଜାପତିଙ୍କ ପ୍ରଜା ହୋଇଅଛୁ । ଏଣୁ ଆମର ମଧ୍ୟ ସ୍ୱର୍ଗପ୍ରାପ୍ତି ହେବ ।

—x—

# ନବମାଧ୍ୟାୟଃ

## (ଶାନ୍ତିସୂକ୍ତମ୍ / ଶାନ୍ତ୍ୟଧ୍ୟାୟଃ)

ହରିଃ ଓଁ ଋଚଂ ବାଚଂ ପ୍ରପଦ୍ୟେ ମନୋ ଯଜୁଃ ପ୍ରପଦ୍ୟେ ସାମ ପ୍ରାଣଂ ପ୍ରପଦ୍ୟେ ଚକ୍ଷୁଃ ଶ୍ରୋତ୍ରଂ ପ୍ରପଦ୍ୟେ । ବାଗୋଜଃ ସହୌଜୋ ମୟି ପ୍ରାଣାପାନୌ ॥୧॥ ଯନ୍ମେ ଛିଦ୍ରଂ ଚକ୍ଷୁଷୋ ହୃଦୟସ୍ୟ ମନସୋ ବାତିତୃଣ୍ଣଂ ବୃହସ୍ପତିର୍ମେ ତଦ୍ଦଧାତୁ । ଶଂ ନୋ ଭବତୁ ଭୁବନସ୍ୟ ଯସ୍ପତିଃ ॥୨॥ ଭୂର୍ଭୁବଃ ସ୍ୱଃ । ତତ୍ସବିତୁର୍ବରେଣ୍ୟଂ ଭର୍ଗୋ ଦେବସ୍ୟ ଧୀମହି । ଧିୟୋ ୟୋ ନଃ ପ୍ରଚୋଦୟାତ୍ ॥୩॥

---

# ନବମ ଅଧ୍ୟାୟ

(ଶାନ୍ତ୍ୟଧ୍ୟାୟ)

**ମନ୍ତ୍ରସଂଖ୍ୟା (୧) :-** ଯଜୁର୍ବେଦ ଅ.୩୬/୧ : ଋଚଂ ବାଚଂ - ଋଗ୍‌ବେଦ ସ୍ୱରୂପ ବାଣୀର, ଯଜୁର୍ବେଦ ସ୍ୱରୂପ ମନର, ସାମବେଦସ୍ୱରୂପ ପ୍ରାଣର, ଚକ୍ଷୁ ଇନ୍ଦ୍ରିୟର ଓ କର୍ଣ୍ଣେନ୍ଦ୍ରିୟର ମୁଁ ଶରଣ ଯାଉଅଛି । ବାକ୍ ଓ ଓଜ (ବଳ) ପ୍ରାଣାପାନ ସହିତ ଏକତ୍ରିତ ହୋଇ ମୋଠାରେ ନିବାସ କରନ୍ତୁ ।

**ମନ୍ତ୍ରସଂଖ୍ୟା (୨) :-** ଯଜୁର୍ବେଦ ଅ.୩୬/୨ : ଯନ୍ମେ ଛିଦ୍ରଂ ଚକ୍ଷୁଷା- ପ୍ରବର୍ଗ୍ୟ(ଯଜ୍ଞବିଶେଷ)ର ଆଚରଣଦ୍ୱାରା ଚକ୍ଷୁରେ ଓ ହୃଦୟରେ ଯେଉଁ ଛିଦ୍ର (ଦୋଷ) ତଥା ଅତି ହିଂସାଦ୍ୱାରା ମନରେ ଯେତେ ଅବଖଣ୍ଡନ (ବ୍ୟାକୁଳତା) ଜାତ ହୋଇଅଛି, ସେ ସବୁକୁ ଦେବଗୁରୁ ବୃହସ୍ପତି ନିବର୍ତ୍ତନ (ଉପଚାର) କରନ୍ତୁ । ସମଗ୍ର ଭୁବନ ମଣ୍ଡଳର ଅଧିପତି ଯେଉଁ ପ୍ରବର୍ଗ୍ୟ ରୂପକ ଯଜ୍ଞବିଶେଷ ତାହା ଆମ ପାଇଁ ସୁଖପ୍ରଦାୟକ ହୁଅନ୍ତୁ । ଅର୍ଥାତ୍ ବୃହସ୍ପତିଙ୍କ ଦ୍ୱାରା ଛିଦ୍ର ବା ଦୋଷ ଦୂରୀକରଣ ହେତୁ ପ୍ରବର୍ଗ୍ୟ ଅନିଷ୍ଟକାରୀ ନ ହୋଇ ଆମ ପାଇଁ କଲ୍ୟାଣ ପ୍ରଦାତା ହୁଅନ୍ତୁ ।

**ମନ୍ତ୍ରସଂଖ୍ୟା (୩) :-** ଯଜୁର୍ବେଦ ଅ.୩୬/୩ : ଭୂର୍ଭୁବଃ ସ୍ୱଃ - ଭୂଲୋକ (ପୃଥିବୀ), ଭୁବଲୋକ (ଆକାଶ), ସ୍ୱର୍ଲୋକ (ସ୍ୱର୍ଗ) - ଏ ସମସ୍ତ ଲୋକକୁ ପ୍ରକାଶିତ କରୁଥିବା ପ୍ରେରଣାଦାୟକ ଅନ୍ତର୍ଯ୍ୟାମୀ ରୂପରେ ସମସ୍ତଙ୍କଦ୍ୱାରା ବନ୍ଦନୀୟ ସବିତା ଦେବତା ଆମର ବୁଦ୍ଧିକୁ ସତ୍କର୍ମ ଅନୁଷ୍ଠାନ କରିବା ପାଇଁ ପ୍ରଚୋଦିତ କରନ୍ତୁ ।

କୟା ନଶ୍ଚିତ୍ର ଆଭୁବଦୂତୀ ସଦାବୃଧଃ ସଖା । କୟା ଶଚିଷ୍ଠୟା ବୃତା ॥୪॥ କସ୍ତ୍ୱା ସତ୍ୟୋ ମଦାନାଂ ମଗୁଁହିଷ୍ଠୋ ମତ୍ସଦନ୍ଧସଃ । ଦୃଢ଼ା ଚିଦାରୁଜେ ବସୁ॥୫॥ ଅଭୀ ଷୁ ଣଃ ସଖୀନାମବିତା ଜରିତୃଣାମ୍ । ଶତଂ ଭବାସ୍ୟୂତିଭିଃ ॥୬॥ କୟା ତ୍ୱଂ ନ ଊତ୍ୟାଭି ପ୍ରମନ୍ଦସେ ବୃଷନ୍ । କୟା ସ୍ତୋତୃଭ୍ୟ ଆ ଭର ॥୭॥ ଇନ୍ଦ୍ରୋ ବିଶ୍ୱସ୍ୟ ରାଜତି । ଶଂ ନୋ ଅସ୍ତୁ ଦ୍ୱିପଦେ ଶଂ ଚତୁଷ୍ପଦେ ॥୮॥

---

**ମନ୍ତ୍ରସଂଖ୍ୟା (୪) :-** ଯଜୁର୍ବେଦ ଅ.୩୬/୪ : କୟା ନଶ୍ଚିତ୍ର - ଆମର କେଉଁ ତର୍ପଣ (ସ୍ତୁତି)ଦ୍ୱାରା ବିଚିତ୍ର ବା ପୂଜ୍ୟ ଇନ୍ଦ୍ରଦେବତା ସଖା ଅର୍ଥାତ୍ ଅନୁକୂଳ ସହାୟକ ହେବେ । ଆମର କେଉଁ କେଉଁ କର୍ମଦ୍ୱାରା (ଯାଗଦ୍ୱାରା) ସେ ଅତିଶୟ ହିତସାଧକ ବା ରକ୍ଷକ ହେବେ ।

**ମନ୍ତ୍ରସଂଖ୍ୟା (୫) :-** ଯଜୁର୍ବେଦ ଅ.୩୬/୫ : କସ୍ତ୍ୱା ସତ୍ୟୋ ମଦାନାଂ - ହେ ଇନ୍ଦ୍ର ! ସମସ୍ତ ମାଦକ ପେୟ ମଧ୍ୟରୁ କେଉଁ ସୋମରୂପକ ମାଦକର ଅଂଶ ତୁମକୁ ଅଧିକ ମାଦକତା ପ୍ରଦାନ କରିବ ? ମଦଜନକ ହବି (ଆହୁତି)ଗୁଡ଼ିକ ମଧ୍ୟରୁ ତୁମପାଇଁ କେଉଁ ହବି ଅଧିକ ମାଦକତା ପ୍ରଦାୟକ ହେବ ? ଯାହାଦ୍ୱାରା ତୁମେ ମଦମତ୍ତ ହୋଇ ଆମକୁ ଶତ୍ରୁଙ୍କ ଅଧିକୃତ ସମସ୍ତ ବସ୍ତୁକୁ ଅର୍ଥାତ୍ ଧନସମ୍ପତ୍ତିକୁ ପ୍ରଦାନ କରିବ ।

**ମନ୍ତ୍ରସଂଖ୍ୟା (୬) :-** ଯଜୁର୍ବେଦ ଅ.୩୬/୬ : ଅଭି ଷୁ ଣଃ ସଖୀନାମ୍ - ହେ ଇନ୍ଦ୍ର ଦେବତା ! ତୁମେ ଆମ ମିତ୍ରମାନଙ୍କର ବିଶେଷତଃ ତୁମକୁ ସ୍ତୁତି କରୁଥିବା ବ୍ୟକ୍ତିଙ୍କର ଓ ଋତ୍ୱିକ୍‌ମାନଙ୍କ ପାଇଁ ନାନା ରୂପ ଧାରଣ କରି ଲାଳନପାଳନ କରୁଅଛ ।

**ମନ୍ତ୍ରସଂଖ୍ୟା (୭) :-** ଯଜୁର୍ବେଦ ଅ.୩୬/୭ : କୟା ତ୍ୱଂ ନ - ହେ ବୃଷନ୍ ! (ବୃଷ୍ଟିକର୍ତା ଇନ୍ଦ୍ର !) କେଉଁ ସ୍ତୁତିଦ୍ୱାରା ବା ଆହୁତି ପ୍ରଦାନଦ୍ୱାରା ତୁମେ ଆନନ୍ଦିତ ହୋଇ ଯଜମାନଙ୍କୁ ଧନ ପ୍ରଦାନ କରୁଅଛ ? ଯାହାକୁ ଆମେ ମଧ୍ୟ ଆଚରଣ କରିବୁ ।

**ମନ୍ତ୍ରସଂଖ୍ୟା (୮) :-** ଯଜୁର୍ବେଦ ଅ.୩୬/୮ : ଇନ୍ଦ୍ରୋ ବିଶ୍ୱସ୍ୟ - ବିଶ୍ୱବ୍ରହ୍ମାଣ୍ଡର ପ୍ରକାଶକ ଆଦିତ୍ୟ ଅଥବା ମହାକାୟ ଓ ପରମୈଶ୍ୱର୍ଯ୍ୟ ସମ୍ପନ୍ନ ଇନ୍ଦ୍ର ଆମ ଦ୍ୱିପଦ ଅର୍ଥାତ୍ ଆମର ପୁତ୍ରପୌତ୍ରାଦିଙ୍କର ଓ ଚତୁଷ୍ପଦ ଅର୍ଥାତ୍ ପଶୁ ସମ୍ପତ୍ତିର ସୁଖପ୍ରଦାୟକ ହୁଅନ୍ତୁ ।

ଶଂ ନୋ ମିତ୍ରଃ ଶଂ ବରୁଣଃ ଶଂ ନୋ ଭବତ୍ୱର୍ଯମା । ଶଂ ନ ଇନ୍ଦ୍ରୋ ବୃହସ୍ପତିଃ ଶଂ ନୋ ବିଷ୍ଣୁରୁରୁକ୍ରମଃ ॥୯॥ ଶଂ ନୋ ବାତଃ ପବତାଗୁଁ ଶଂ ନସ୍ତପତୁ ସୂର୍ଯଃ । ଶଂ ନଃ କନିକ୍ରଦଦ୍ଦେବଃ ପର୍ଜନ୍ୟୋ ଅଭି ବର୍ଷତୁ ॥୧୦॥ ଅହାନି ଶଂ ଭବନ୍ତୁ ନଃ ଶଗୁଁ ରାତ୍ରୀଃ ପ୍ରତିଧୀୟତାମ୍ । ଶଂ ନ ଇନ୍ଦ୍ରାଗ୍ନୀ ଭବତାମବୋଭିଃ ଶଂ ନ ଇନ୍ଦ୍ରାବରୁଣା ରାତହବ୍ୟା । ଶଂ ନ ଇନ୍ଦ୍ରାପୂଷଣା ବାଜସାତୌ ଶମିନ୍ଦ୍ରାସୋମା ସୁବିତାୟ ଶଂ ଯୋଃ ॥୧୧॥ ଶଂ ନୋ ଦେବୀରଭିଷ୍ଟୟ ଆପୋ ଭବନ୍ତୁ ପୀତୟେ । ଶଂ ଯୋରଭି ସ୍ରବନ୍ତୁ ନଃ ॥୧୨॥

---

**ମନ୍ତ୍ରସଂଖ୍ୟା (୯) :-** ଯଜୁର୍ବେଦ ଅ.୩୬/୯ : ଶଂ ନୋ ମିତ୍ରଃ - ସୂର୍ଯ୍ୟ, ବରୁଣ, ଅର୍ଯ୍ୟମା, ଦେବେଶ ଇନ୍ଦ୍ର, ଦେବଗୁରୁ ବୃହସ୍ପତି ଏବଂ ବ୍ୟାପକ ପଦନ୍ୟାସଦ୍ୱାରା ସର୍ବତ୍ର ବ୍ୟାପ୍ତ ବିଷ୍ଣୁ ଆମର ମଙ୍ଗଳବିଧାନ କରନ୍ତୁ ।

**ମନ୍ତ୍ରସଂଖ୍ୟା (୧୦) :-** ଯଜୁର୍ବେଦ ଅ.୩୬/୧୦ : ଶଂ ନୋ ବାତଃ - ଆମ ପାଇଁ ସୁଖପ୍ରଦାୟକ ବାୟୁ ପ୍ରବହମାନ ହୁଅନ୍ତୁ । ପ୍ରାଣୀମାନଙ୍କୁ ସ୍ୱ ସ୍ୱ କର୍ମରେ ପ୍ରେରଣାଦାୟକ ସୂର୍ଯ୍ୟ ନିଜର ଆରୋଗ୍ୟପ୍ରଦ କିରଣ ସହିତ ଆମକୁ ଉତ୍ତାପ ପ୍ରଦାନ କରି ସମସ୍ତ ହିତସାଧନ କରନ୍ତୁ । ପ୍ରଚଣ୍ଡ ମେଘନାଦ ସହିତ ବୃଷ୍ଟିଦେବ ଆମକୁ ଜଳ ପ୍ରଦାନ ମାଧ୍ୟମରେ ସୁଖ ବିଧାନ କରନ୍ତୁ ।

**ମନ୍ତ୍ରସଂଖ୍ୟା (୧୧) :-** ଯଜୁର୍ବେଦ ଅ.୩୬/୧୧ : ଅହାନି ଶଂ - ଆମ ପାଇଁ ସମସ୍ତ ରାତ୍ରି ସହିତ ଦିବସଗୁଡ଼ିକ ସୁଖପ୍ରଦ ହୁଅନ୍ତୁ । ଇନ୍ଦ୍ରଦେବ ଓ ଅଗ୍ନି ଦେବତା ଆମକୁ ସୁଖରେ ପାଳନ କରନ୍ତୁ । ହବି (ଆହୁତି)ଦ୍ୱାରା ତୃପ୍ତ ଇନ୍ଦ୍ର ଏବଂ ବରୁଣ ଦେବତା ଆମର କଲ୍ୟାଣ ସାଧନ କରନ୍ତୁ । ଇନ୍ଦ୍ର ଏବଂ ପୁଷନ୍ (ଆଦିତ୍ୟ) ଅନ୍ନପ୍ରଦାନକରି ଆମର ମଙ୍ଗଳକାରକ ହୁଅନ୍ତୁ । ଇନ୍ଦ୍ର ଏବଂ ସୋମ (ଚନ୍ଦ୍ର) ସୁଖ ବିଧାନ ତଥା ସମସ୍ତ ରୋଗ ପ୍ରଶମନ ଏବଂ ସର୍ବବିଧ ଭୟ ନିବାରଣ ଦ୍ୱାରା ଆମର ହିତକାରକ ହୁଅନ୍ତୁ ।

**ମନ୍ତ୍ରସଂଖ୍ୟା (୧୨) :-** ଯଜୁର୍ବେଦ ଅ.୩୬/୧୨ : ଶଂ ନୋ ଦେବୀରଭିଷ୍ଟୟ- ସ୍ନାନପାନାଦି ଅଭୀଷ୍ଟ ସାଧନଦ୍ୱାରା ଜଳଦେବୀ ଆମର ସୁଖ ପ୍ରଦାୟିକା ହୁଅନ୍ତୁ ତଥା ସମସ୍ତ ରୋଗର ଉପଶମନ ଓ ଭୟ ନିବାରଣ ପାଇଁ ମଧ୍ୟ ଅନୁକୂଳ ହୁଅନ୍ତୁ ।

ସ୍ୟୋନା ପୃଥିବୀ ନୋ ଭବାନୃକ୍ଷରା ନିବେଶନୀ । ଯଚ୍ଛା ନଃ ଶର୍ମ ସପ୍ରଥାଃ ॥୧୩॥ ଆପୋ ହି ଷ୍ଠା ମୟୋଭୁବସ୍ତା ନ ଊର୍ଜେ ଦଧାତନ । ମହେ ରଣାୟ ଚକ୍ଷସେ ॥୧୪॥ ଯୋ ବଃ ଶିବତମୋ ରସସ୍ତସ୍ୟ ଭାଜୟତେହ ନଃ । ଉଶତୀରିବ ମାତରଃ ॥୧୫॥ ତସ୍ମା ଅରଂ ଗମାମ ବୋ ଯସ୍ୟ କ୍ଷୟାୟ ଜିନ୍ୱଥ । ଆପୋ ଜନୟଥା ଚ ନଃ ॥୧୬॥ ଦ୍ୟୌଃ ଶାନ୍ତିରନ୍ତରିକ୍ଷଗୁଁ ଶାନ୍ତିଃ ପୃଥିବୀ ଶାନ୍ତିରାପଃ ଶାନ୍ତିରୋଷଧୟଃ ଶାନ୍ତିଃ । ବନସ୍ପତୟଃ ଶାନ୍ତି ର୍ବିଶ୍ୱେଦେବାଃ ଶାନ୍ତିର୍ବ୍ରହ୍ମ ଶାନ୍ତିଃ ସର୍ବଗୁଁଶାନ୍ତିଃ ଶାନ୍ତିରେବ ଶାନ୍ତିଃ ସା ମା ଶାନ୍ତିରେଧି ॥୧୭॥

---

**ମନ୍ତ୍ରସଂଖ୍ୟା (୧୩) :-** ଯଜୁର୍ବେଦ ଅ.୩୬/୧୩ : ସ୍ୟୋନା ପୃଥିବୀ - ହେ ପୃଥିବୀ ! ତୁମେ ଆମ ପାଇଁ ସୁଖପ୍ରଦାୟିନୀ ହୁଅ, ଯେପରି ଆମେ ଚୋର ଓ ଦାୟାଦ ଆଦିଙ୍କଦ୍ୱାରା ପ୍ରଦତ୍ତ ଦୁଃଖରୁ ରକ୍ଷା ପାଇ ନିଷ୍କଣ୍ଟକ ଭାବରେ ବସବାସ କରିପାରିବୁ ।

**ମନ୍ତ୍ରସଂଖ୍ୟା (୧୪) :-** ଯଜୁର୍ବେଦ ଅ.୩୬/୧୪ : ଆପୋହିଷ୍ଠା - ହେ ଜଳ ! ତୁମେ ଯେପରି ସ୍ନାନପାନାଦି କାର୍ଯ୍ୟ ସାଧନଦ୍ୱାରା ଆମର ସର୍ବବିଧ ସୁଖପ୍ରଦାୟକ, ଠିକ୍ ସେହିପରି ସମସ୍ତ ପ୍ରକାର ଭୋଗ୍ୟ ରସଗୁଡ଼ିକର ଭୋକ୍ତୃତ୍ୱ-ଯୋଗ୍ୟତା ଆମକୁ ପ୍ରଦାନକର ଓ ତତ୍ ସହିତ ସର୍ବତ୍ର ରମଣୀୟ ଦୃଷ୍ଟି ନିମିତ୍ତ ମଧ୍ୟ ଯୋଗ୍ୟ କର, ଅର୍ଥାତ୍ ଐହିକ ସୁଖ ଭୋଗ ସହିତ ଆମ୍ଭଙ୍କୁ ବ୍ରହ୍ମସାକ୍ଷାତ୍କାରକ୍ଷମ ମଧ୍ୟ କର ।

**ମନ୍ତ୍ରସଂଖ୍ୟା (୧୫) :-** ଯଜୁର୍ବେଦ ଅ.୩୬/୧୫ : ଯୋ ବଃ ଶିବତମ - ହେ ଜଳ ! ମା'ମାନେ ଯେପରି ଶିଶୁଙ୍କୁ ନିଜର ସ୍ତନ୍ୟପାନ କରାନ୍ତି, ଠିକ୍ ସେହିପରି ତୁମର ଐହିକ ସୁଖପ୍ରଦାୟକ ଯେଉଁ ସର୍ବବିଧ ରସ ତତ୍‌ପ୍ରାପ୍ତି ନିମିତ୍ତ ଆମ୍ଭଙ୍କୁ ପ୍ରତିଭାଗୀ କର ।

**ମନ୍ତ୍ରସଂଖ୍ୟା (୧୬) :-** ଯଜୁର୍ବେଦ ଅ.୩୬/୧୬ : ତସ୍ମା ଅରଂ ଗମାମ - ହେ ଜଳ ! ତୁମେ ଜଗତର ଆଧାରରୂପ, ଆମ ପ୍ରଦତ୍ତ ଆହୁତିଦ୍ୱାରା ତୁମେ ପ୍ରୀତ ହୋଇ ବ୍ରହ୍ମାଦିସ୍ତମ୍ଭପର୍ଯ୍ୟନ୍ତ ସମସ୍ତ ଜଗତକୁ ତୃପ୍ତି ପ୍ରଦାନ କରୁଅଛ । ଆମକୁ ଭୋକ୍ତା ରୂପରେ ଜାତ କରିଅଛ ତଥା ପୁତ୍ରପୌତ୍ରାଦିଙ୍କ ଉତ୍ପତ୍ତି ପାଇଁ ମଧ୍ୟ ଆମକୁ ସମର୍ଥ କରୁଅଛ ।

**ମନ୍ତ୍ରସଂଖ୍ୟା (୧୭) :-** ଯଜୁର୍ବେଦ ଅ.୩୬/୧୭ : ଦ୍ୟୌଃ ଶାନ୍ତିରନ୍ତରିକ୍ଷଗୁଁ-

ଦୃତେ ଦୃଗୁଁହ ମା ମିତ୍ରସ୍ୟ ମା ଚକ୍ଷୁଷା ସର୍ବାଣି ଭୂତାନି ସମୀକ୍ଷନ୍ତାମ୍ ମିତ୍ରସ୍ୟାହଂ ଚକ୍ଷୁଷା ସର୍ବାଣି ଭୂତାନି ସମୀକ୍ଷେ । ମିତ୍ରସ୍ୟ ଚକ୍ଷୁଷା ସମୀକ୍ଷାମହେ ॥୧୮॥ ଦୃତେ ଦୃଗୁଁହ ମା । ଜ୍ୟୋକ୍ତେ ସଂଦୃଶି ଜୀବ୍ୟାସଂ ଜ୍ୟୋକ୍ତେ ସଂଦୃଶି ଜୀବ୍ୟାସମ୍ ॥୧୯॥ ନମସ୍ତେ ହରସେ ଶୋଚିସେ ନମସ୍ତେ ଅସ୍ତ୍ୱର୍ଚିଷେ । ଅନ୍ୟାଁସ୍ତେ ଅସ୍ମତ୍ତପନ୍ତୁ ହେତୟଃ ପାବକୋ ଅସ୍ମଭ୍ୟଗୁଁ ଶିବୋ ଭବ ॥୨୦॥

---

ଦ୍ୟୁଲୋକ (ସ୍ୱର୍ଗ), ଆକାଶ, ପୃଥିବୀ, ଜଳ, ଔଷଧି (ଲତା, ଗୁଳ୍ମ) ବୃକ୍ଷ, ବିଶ୍ୱେଦେବା, ବ୍ରହ୍ମ (ବେଦତ୍ରୟ) ସର୍ବ ଅର୍ଥାତ୍ ସମଗ୍ର ଜଗତ୍ ମୋ ପାଇଁ ଶାନ୍ତିପ୍ରଦ ହୁଅନ୍ତୁ । ଏପରିକି ସର୍ବବିଧ ଶାନ୍ତି ମଧ୍ଯ ସ୍ୱରୂପରେ ମୋ ପ୍ରତି ଶାନ୍ତିପ୍ରଦାୟକ ହୁଅନ୍ତୁ ।

**ମନ୍ତ୍ରସଂଖ୍ୟା (୧୮) :-** ଯଜୁର୍ବେଦ ଅ.୩୬/୧୮ : ଦୃତେ ଦୃଗୁଁ ହ - ହେ ମହାବୀର ଇନ୍ଦ୍ର **!** ଜରା (ବାର୍ଦ୍ଧକ୍ୟ) ଜର୍ଜରିତ ଏହି ଶରୀରରେ ମୋତେ ତୁମେ ଦୃଢ କର । ଯାହା ଫଳରେ ସମସ୍ତ ପ୍ରାଣୀମାନେ ମୋତେ ମିତ୍ର ଦୃଷ୍ଟିରେ ଦେଖିବେ ଓ ମୁଁ ସମସ୍ତଙ୍କର ପ୍ରିୟପାତ୍ର ହୋଇପାରିବି । ପୁନଶ୍ଚ ମୁଁ ମଧ୍ଯ ଯେପରି ସମସ୍ତ ପ୍ରାଣୀଙ୍କୁ ମିତ୍ର ଦୃଷ୍ଟିରେ ଦେଖିବି ଯାହାଦ୍ୱାରା ସମସ୍ତେ ମୋର ପ୍ରିୟ ହେବେ। ଏହିପରି ଆମେ ସମସ୍ତେ ପରସ୍ପର ମଧ୍ୟରେ ହିଂସା ବା ଦ୍ରୋହ ରହିତ ହୋଇ ମିତ୍ରତ୍ୱର ବନ୍ଧନରେ ବାନ୍ଧିହୋଇ ଶାନ୍ତିରେ ରହିପାରିବୁ ।

**ମନ୍ତ୍ରସଂଖ୍ୟା (୧୯) :-** ଯଜୁର୍ବେଦ ଅ.୩୬/୧୯ : ଦୃତେ ଦୃଗୁଁ ହ ମା - ହେ ସୁରଶ୍ରେଷ୍ଠ ସୂର୍ଯ୍ୟଦେବ **!** ତୁମେ ମୋର ସ୍ଥିତିକୁ ଦୃଢ କର । ତୁମ କୃପାଦୃଷ୍ଟିରେ ମୁଁ ଚିରକାଳ ବଞ୍ଚି ରହିବି । ତୁମ କୃପା ଦୃଷ୍ଟିରେ ମୁଁ ଚିରକାଳ ବଞ୍ଚି ରହିପାରିବି । (ଅଧିକ ଆଦର ନିମିତ୍ତ ପୁନରୁକ୍ତି) ।

**ମନ୍ତ୍ରସଂଖ୍ୟା (୨୦) :-** ଯଜୁର୍ବେଦ ଅ.୩୬/୨୦ : ନମସ୍ତେ ହରସେ - ହେ ଅଗ୍ନିଦେବ **!** ସମସ୍ତ ପ୍ରକାର ରସକୁ ହରଣ କରୁଥିବା ତଥା ସମସ୍ତ ପଦାର୍ଥକୁ ପ୍ରକାଶ କରୁଥିବା ତୁମର ତେଜସ୍ୱରୂପକୁ ପ୍ରଣାମ । ସେହିପରି ହେ ପାବକ (ଅଗ୍ନିଦେବ) **!** ତାପପ୍ରଦାନକାରୀ ତୁମର ସମସ୍ତ ଆୟୁଧ ମଧ୍ଯ ଆମ୍ଭମାନଙ୍କ ପାଇଁ ମଙ୍ଗଳପ୍ରଦ ହେଉ ।

ନମସ୍ତେ ଅସ୍ତୁ ବିଦ୍ୟୁତେ ନମସ୍ତେ ସ୍ତନୟିତ୍ନବେ । ନମସ୍ତେ ଭଗବନ୍ନସ୍ତୁ ଯତଃ ସ୍ୱଃ ସମୀହସେ ।।୨୧।। ଯତୋଯତଃ ସମୀହସେ ତତୋ ନୋ ଅଭୟଂ କୁରୁ । ଶଂ ନଃ କୁରୁ ପ୍ରଜାଭ୍ୟୋଽଭୟଂ ନଃ ପଶୁଭ୍ୟଃ ।।୨୨।। ସୁମିତ୍ରିୟା ନ ଆପ ଓଷଧୟଃ ସନ୍ତୁ ଦୁର୍ମିତ୍ରିୟାସ୍ତସ୍ମୈ ସନ୍ତୁ । ଯୋଽସ୍ମାନ୍‌ଦ୍ୱେଷ୍ଟି ଯଂ ଚ ବୟଂ ଦ୍ୱିଷ୍ମଃ ।।୨୩।। ତଚ୍ଚକ୍ଷୁର୍ଦେବହିତଂ ପୁରସ୍ତାଚ୍ଛୁକ୍ରମୁଚ୍ଚରତ୍ । ପଶ୍ୟେମ ଶରଦଃ ଶତଂ ଜୀବେମ ଶରଦଃ ଶତଗୁଁ ଶୃଣୁୟାମ ଶରଦଃ ଶତଂ ପ୍ରବ୍ରବାମ ଶରଦଃ ଶତମଦୀନାଃ ସ୍ୟାମ ଶରଦଃ ଶତଂ ଭୂୟଶ୍ଚ ଶରଦଃ ଶତାତ୍ ।।୨୪।।

---

**ମନ୍ତ୍ରସଂଖ୍ୟା (୨୧) :-** ଯଜୁର୍ବେଦ ଅ.୩୬/୨୧ : ନମସ୍ତେ ଅସ୍ତୁ - ହେ ସୁରଶ୍ରେଷ୍ଠ ଅଗ୍ନିଦେବ ! ବିଦ୍ୟୁତ୍ ରୂପରେ ତୁମକୁ ପ୍ରଣାମ । ଭୀଷଣ ଗର୍ଜନକାରୀ ମେଘ ରୂପରେ ତୁମକୁ ପ୍ରଣାମ । ଯେଉଁସବୁ କାରଣ ପାଇଁ ତୁମେ ସ୍ୱର୍ଗକୁ ଯିବା ଲାଗି ଚେଷ୍ଟାରତ, ଏଣୁ ତୁମକୁ ପ୍ରଣାମ ।

**ମନ୍ତ୍ରସଂଖ୍ୟା (୨୨) :-** ଯଜୁର୍ବେଦ ଅ.୩୬/୨୨ : ଯତୋ ଯତଃ - ହେ ଭଗବନ୍ ! ଯେତେ ଯେତେ ଦୁଷ୍କର୍ମରୁ ତୁମେ ଆମକୁ ନିବୃତ୍ତ ରହିବାକୁ ଚେଷ୍ଟା କରୁଅଛ, ସେତେ ସେତେ ଆମକୁ ଭୟରହିତ ମଧ୍ୟ କର । ସେହିପରି ଆମ୍ଭର ପୁତ୍ର ପୌତ୍ରାଦିଙ୍କୁ ସୁଖୀ କର ଓ ଆମକୁ ପଶୁମାନଙ୍କଠାରୁ ମଧ୍ୟ ନିର୍ଭୟତା ପ୍ରଦାନ କର ।

**ମନ୍ତ୍ରସଂଖ୍ୟା (୨୩) :-** ଯଜୁର୍ବେଦ ଅ.୩୬/୨୩ : ସୁମିତ୍ରିୟା ନ - ସମସ୍ତ ଜଳ ଓ ଔଷଧି (ପକ୍ୱଫଳ ପ୍ରଦାନକାରୀ ବୃକ୍ଷଲତା) ଆମର ସୁମିତ୍ର ରୂପରେ ଅବସ୍ଥାନ କରନ୍ତୁ । ଯେଉଁ ଶତ୍ରୁମାନେ ଆମ୍ଭଙ୍କୁ ଦ୍ୱେଷ କରୁଅଛନ୍ତି ତଥା ଆମେ ମଧ୍ୟ ଯାହାଙ୍କୁ ଦ୍ୱେଷ କରୁଅଛୁ ଏହି ଉଭୟ ପ୍ରକାର ଶତ୍ରୁଙ୍କ ପାଇଁ ତୁମ୍ଭେ ଜଳ ଓ ଔଷଧି ବୃକ୍ଷଲତାକୁ ଅମିତ୍ର ଅର୍ଥାତ୍ ଶତ୍ରୁ ରୂପରେ ପରିଣତ କର ।

**ମନ୍ତ୍ରସଂଖ୍ୟା (୨୪) :-** ଯଜୁର୍ବେଦ ଅ.୩୬/୨୪ : ତଚ୍ଚକ୍ଷୁର୍ଦେବହିତଂ - ପୂର୍ବୋକ୍ତ ମନ୍ତ୍ରମାନଙ୍କରେ ଯାହାଙ୍କୁ ଆମେ ସୁରଶ୍ରେଷ୍ଠ ବା ମହାବୀର ରୂପରେ ସ୍ତୁତି କରିଅଛୁ ସେ ସମଗ୍ର ଜଗତର ନେତ୍ରସ୍ୱରୂପ, ସମସ୍ତ ଦେବତାଙ୍କ ହିତ ବା ପ୍ରିୟ ଏବଂ ଶୁଦ୍ଧ ସ୍ୱରୂପ ଅର୍ଥାତ୍ ସର୍ବବିଧ ପାପରହିତ, ସେ ଆଦିତ୍ୟଦେବ ପୂର୍ବ ଦିଗରୁ ଉଦୟ ହେଉଅଛନ୍ତି । ଯାହାଙ୍କ ପ୍ରସାଦରୁ ଆମେ ଶହେବର୍ଷ ପର୍ଯ୍ୟନ୍ତ ଚକ୍ଷୁ ଇନ୍ଦ୍ରିୟଦ୍ୱାରା

# ଦଶମାଧ୍ୟାୟଃ

## (ସ୍ୱସ୍ତିପ୍ରାର୍ଥନାଧ୍ୟାୟଃ)

ହରିଃ ଓଁ ସ୍ୱସ୍ତି ନ ଇନ୍ଦ୍ରୋ ବୃଦ୍ଧଶ୍ରବାଃ ସ୍ୱସ୍ତି ନଃ ପୂଷା ବିଶ୍ୱବେଦାଃ । ସ୍ୱସ୍ତି ନସ୍ତାର୍କ୍ଷ୍ୟୋ ଅରିଷ୍ଟନେମିଃ ସ୍ୱସ୍ତି ନୋ ବୃହସ୍ପତିର୍ଦଧାତୁ ॥୧॥ ପୟଃ ପୃଥିବ୍ୟାଂ ପୟ ଓଷଧୀଷୁ ପୟୋ ଦିବ୍ୟନ୍ତରିକ୍ଷେ ପୟୋଧାଃ । ପୟସ୍ୱତୀଃ ପ୍ରଦିଶଃ ସନ୍ତୁ ମହ୍ୟମ୍ ॥୨॥ ବିଷ୍ଣୋ ରରାଟମସି ବିଷ୍ଣୋଃ ଶ୍ନପ୍ତ୍ରେ ସ୍ଥୋ ବିଷ୍ଣୋଃ ସ୍ୟୂରସି ବିଷ୍ଣୋର୍ଧ୍ରୁବୋଽସି । ବୈଷ୍ଣବମସି ବିଷ୍ଣବେ ତ୍ୱା ॥୩॥

---

ନିର୍ବିଘ୍ନରେ ସବୁ ଦେଖିପାରିବୁ । ସ୍ୱାଧୀନ ଭାବରେ ଶହେବର୍ଷ ପର୍ଯ୍ୟନ୍ତ ବଞ୍ଚି ରହିପାରିବୁ, ଶହେବର୍ଷ ପର୍ଯ୍ୟନ୍ତ ସବୁ ସ୍ପଷ୍ଟ ଶୁଣିପାରିବୁ, ଅସ୍ଖଳିତ ବାଗିନ୍ଦ୍ରିୟ ସମ୍ପନ୍ନ ହୋଇ ରହିପାରିବୁ, ଶହେ ବର୍ଷ ପର୍ଯ୍ୟନ୍ତ ଆମକୁ କାହା ପାଖରେ ଦୈନ୍ୟଭାବ ପ୍ରକାଶ କରିବାକୁ ନ ପଡୁ । (ଏ ମନ୍ତ୍ରରେ ସମସ୍ତ 'ଶହେବର୍ଷ ପଦ' ସାଙ୍କେତିକ ଅର୍ଥ ବହନ କରନ୍ତି ଅର୍ଥାତ୍ ଶତବର୍ଷ ପଦରେ ବହୁକାଳ ରୂପକ ଅର୍ଥ ଅଭିପ୍ରେତ) ।

—×—

# ଦଶମ ଅଧ୍ୟାୟ

## (ସ୍ୱସ୍ତିପ୍ରାର୍ଥନାଧ୍ୟାୟ)

**ମନ୍ତ୍ରସଂଖ୍ୟା (୧) :-** ଯଜୁର୍ବେଦ ଅ.୨୫/୧୯ : ସ୍ୱସ୍ତିନ ଇନ୍ଦ୍ରୋ – ହେ ଦେବଶ୍ରେଷ୍ଠ ଇନ୍ଦ୍ର ! ହେ ସର୍ବଜ୍ଞ ସୂର୍ଯ୍ୟଦେବ ! ହେ ବିନତାନନ୍ଦନ ଗରୁଡ ! ହେ ଦେବଗୁରୁ ବୃହସ୍ପତି ! ଆପଣମାନେ ସମସ୍ତେ ଆମର ସର୍ବବିଧ ମଙ୍ଗଳ ସାଧନ କରନ୍ତୁ ।

**ମନ୍ତ୍ରସଂଖ୍ୟା (୨) :-** ଯଜୁର୍ବେଦ ଅ.୧୮/୩୬ : ପୟଃ ପୃଥିବ୍ୟାଂ – ହେ ଅଗ୍ନିଦେବ ! ତୁମେ ପୃଥିବୀକୁ ରସାନ୍ୱିତ କର । ଔଷଧି ! (ଫୁଲଫଳଯୁକ୍ତ ବୃକ୍ଷଲତାରେ) ତୁମେ ରସକୁ ସଞ୍ଚରିତ କର । ସ୍ୱର୍ଗରେ ଓ ଆକାଶରେ ମଧ୍ୟ ରସକୁ ଧାରଣ କରିଥାଅ । ତୁମ କୃପାବଳରେ ମୋ ନିମିତ୍ତ ଦିଗବିଦିଗ ସବୁ ରସଯୁକ୍ତ ହୁଅନ୍ତୁ ।

**ମନ୍ତ୍ରସଂଖ୍ୟା (୩) :-** ଯଜୁର୍ବେଦ ଅ.୫/୨୧ : ବିଷ୍ଣୋରରାଟମସି – (ହବିର୍ଧାନ ନାମଧେୟ ଯଜ୍ଞ ନିମିତ୍ତ ମଣ୍ଡପ ନିର୍ମାଣ ପ୍ରସଙ୍ଗ କ୍ରମରେ ଏହି ମନ୍ତ୍ର ଉଲ୍ଲିଖିତ ।

ଅଗ୍ନିର୍ଦ୍ଦେବତା ବାତୋ ଦେବତା ସୂର୍ଯୋ ଦେବତା ଚନ୍ଦ୍ରମା ଦେବତା । ବସବୋ ଦେବତା ରୁଦ୍ରା ଦେବତା । ଆଦିତ୍ୟା ଦେବତା ମରୁତୋ ଦେବତା ବିଶ୍ୱେ ଦେବା ଦେବତା ବୃହସ୍ପତିର୍ଦ୍ଦେବତା । ଇନ୍ଦ୍ରୋଦେବତା ବରୁଣୋ ଦେବତା ॥୪॥ ଓଁ ସଦ୍ୟୋଜାତଂ ପ୍ରପଦ୍ୟାମି ସଦ୍ୟୋଜାତାୟ ବୈ ନମୋ ନମଃ । ଭବେଭବେ ନାତି ଭବେ ଭବସ୍ୱ ମାଂ ଭବୋଭବାୟ ନମଃ ॥୫॥ ବାମଦେବାୟ ନମୋ ଜ୍ୟେଷ୍ଠାୟ ନମଃ ଶ୍ରେଷ୍ଠାୟ ନମୋ ରୁଦ୍ରାୟ ନମଃ । କାଳାୟ ନମଃ କଳବିକରଣାୟ ନମୋ ବଳବିକରଣାୟ ନମଃ ॥ ବଳାୟ ନମୋ ବଳପ୍ରମଥନାୟ ନମଃ । ସର୍ବଭୂତଦମନାୟ ନମୋ ମନୋନ୍ମନାୟ ନମଃ ॥୬॥

---

ହବିର୍ଧାନ ଯଜ୍ଞମଣ୍ଡପ ସାବୟବ ବିଷ୍ଣୁ ଦେବତା ସମ୍ବନ୍ଧୀୟ ହେତୁ ଏହା ବିଷ୍ଣୁ ନାମରେ ନାମିତ । ମଣ୍ଡପର ପୂର୍ବଦ୍ୱାର ସ୍ଥିତ ସ୍ତମ୍ଭଦ୍ୱୟର ମଧ୍ୟଭାଗରେ କୁଶ ନିର୍ମିତ ମାଳା ଯଜ୍ଞପୁରୁଷର ଲଲାଟ ରୂପରେ ପରିକଳ୍ପିତ, ଯାହାଙ୍କୁ ଏଠାରେ ପ୍ରାର୍ଥନା କରାଯାଇଅଛି) । ତୁମେ (କୁଶ ନିର୍ମିତ ମାଳା) ବିଷ୍ଣୁମୂର୍ତ୍ତି ରୂପରେ ହବିର୍ଧାନ ମଣ୍ଡପର ଲଲାଟସ୍ଥାନୀୟ ଅଟ । ହେ ଲଲାଟର ଉଭୟପାର୍ଶ୍ୱ ! ତୁମ୍ଭେ ବିଷ୍ଣୁ ନାମଧେୟ ହବିର୍ଧାନ ମଣ୍ଡପର ଓଷ୍ଠଦ୍ୱୟର ସନ୍ଧି ସ୍ୱରୂପ ଅଟ । (ଗ୍ରନ୍ଥିଦ୍ୱୟ ନିର୍ମାଣ ପ୍ରସଙ୍ଗରେ) ହେ ରଜ୍ଜୁଗ୍ରନ୍ଥିଦ୍ୱୟ ! ତୁମେ ହବିର୍ଧାନ ମଣ୍ଡପର ଗ୍ରନ୍ଥି । ହେ ହବିର୍ଧାନ ମଣ୍ଡପ ! ତୁମେ ବିଷ୍ଣୁଦେବତା ସମ୍ବନ୍ଧୀୟ, ଏଣୁ ବିଷ୍ଣୁଦେବତାଙ୍କ ପ୍ରୀତି ନିମିତ୍ତ ତୁମକୁ ସ୍ପର୍ଶ କରୁଅଛି ।

**ମନ୍ତ୍ରସଂଖ୍ୟା (୪) :-** ଯଜୁର୍ବେଦ ଅ.୧୪/୨୦ : ଅଗ୍ନିର୍ଦ୍ଦେବତା - (ଯଜ୍ଞବେଦୀ ନିର୍ମାଣ ପାଇଁ ଇଷ୍ଟକା ଅର୍ଥାତ୍ ଇଟା ଚୟନ ପ୍ରକରଣରେ ପ୍ରାର୍ଥନା ସ୍ୱରୂପ ଏହି ମନ୍ତ୍ର ଆସିଅଛି) ହେ ଇଷ୍ଟକା ! ତୁମେ ଅଗ୍ନି, ବାୟୁ, ସୂର୍ଯ୍ୟ, ଚନ୍ଦ୍ରମା, ବସୁ, ରୁଦ୍ର, ଆଦିତ୍ୟ, ମରୁଦ୍‌ଗଣ, ବିଶ୍ୱେଦେବା, ବୃହସ୍ପତି, ଇନ୍ଦ୍ର, ବରୁଣ ଏ ସମସ୍ତ ଦେବତାସ୍ୱରୂପ ଅଟ ।

**ମନ୍ତ୍ରସଂଖ୍ୟା (୫ ଓ ୬) :-** ତୈତ୍ତିରୀୟାରଣ୍ୟକ ୧୦/୪୩/୧ : ସଦ୍ୟୋ ଜାତଂ- ମୁଁ ସଦ୍ୟୋଜାତ ଶିବଙ୍କ ଶରଣାପନ୍ନ ହେଉଅଛି । ସେହି ସଦ୍ୟୋଜାତ ସ୍ୱରୂପ ଶିବଙ୍କୁ ପ୍ରଣାମ । ସଂସାରର ଉତ୍ପତ୍ତି କର୍ତ୍ତା, ସଂସାରର ଯୋଗକ୍ଷେମ ପ୍ରଦାତା

ଅଘୋରେଭ୍ୟୋଽଥ ଘୋରେଭ୍ୟୋ ଘୋର ଘୋରତରେଭ୍ୟଃ । ସର୍ବେଭ୍ୟଃ ସର୍ବଶର୍ବେଭ୍ୟୋ ନମସ୍ତେଽଅସ୍ତୁ ରୁଦ୍ରରୂପେଭ୍ୟଃ ॥୭॥

---

ତଥା ସଂସାରାତୀତ (ମୋକ୍ଷ) ଅବସ୍ଥାର ମଧ୍ୟ ପ୍ରାପକ ଶିବଙ୍କୁ ପ୍ରଣାମ । (ବ୍ରହ୍ମାଙ୍କ ସୃଷ୍ଟିରେ ଶିବଙ୍କ ପାଞ୍ଚଗୋଟି ମୁଖର ବର୍ଣ୍ଣନା କରାଯାଇଅଛି ଯଥା- ସଦ୍ୟୋଜାତ, ତତ୍‌ପୁରୁଷ, ବାମଦେବ, ଈଶାନ ଓ ଅଘୋର ।) ଉଲ୍ଲେଖଯୋଗ୍ୟ ଯେ ଶିବ ହେଉଛନ୍ତି ସର୍ବବିଧ ଜ୍ଞାନର ଭଣ୍ଡାର । ସେ ଜ୍ଞାନସ୍ୱରୂପ ଅଟନ୍ତି । ଏଣୁ ଜ୍ଞାନପ୍ରାପ୍ତି ପାଇଁ ଜିଜ୍ଞାସୁ ଦେବ, ଦାନବ, ମାନବ - ଏପରିକି ସମସ୍ତ ଜ୍ଞାନାର୍ଥୀ ପ୍ରାଣୀମାନେ ପରମେଶ୍ୱର ଶିବଙ୍କୁ ଆରାଧନା ଓ ଉପାସନା କରନ୍ତି । ବିଶେଷ କରି ଶିବଙ୍କର ସଦ୍ୟୋଜାତ ଇତ୍ୟାଦି ପଞ୍ଚବକ୍ତ୍ର ଉପାସନା ସେଥିପାଇଁ ଉଦ୍ଦିଷ୍ଟ । ସେହି ପାଞ୍ଚଗୋଟି ମୁଖଦ୍ୱାରା ଶିବ ସମସ୍ତ ବ୍ରହ୍ମାଣ୍ଡର ଜୀବମାନଙ୍କ ପ୍ରତି କଲ୍ୟାଣକାରୀ ଦୃଷ୍ଟି ନିକ୍ଷେପ କରି ଧର୍ମାର୍ଥକାମମୋକ୍ଷରୂପକ ପୁରୁଷାର୍ଥ ଚତୁଷ୍ଟୟ ପ୍ରଦାନ କରିଥାଆନ୍ତି । ସେଥିପାଇଁ ପଶ୍ଚିମ ଦିଗକୁ ତାଙ୍କର ଯେଉଁ ମୁଖ ତାହା ସଦ୍ୟୋଜାତ ନାମରେ ନାମିତ ଯାହା ପରମେଶ୍ୱରତ୍ୱ ବୋଧପରକ । ସେହିପରି ଉତ୍ତର ଦିଗକୁ ଯେଉଁ ମୁଖ ତାହା ବାମଦେବ ରୂପରେ ବର୍ଣ୍ଣିତ । ବାମଦେବ ଶବ୍ଦର ପ୍ରମୁଖ ଅର୍ଥ କ୍ରିୟାଶୀଳ ଓ ଦୀପ୍ତିମାନ୍ । ଏହି ବାମଦେବ ଶବ୍ଦରେ ନଅଗୋଟି ତତ୍ତ୍ୱର ସମାହାର ଯଥା- ଜ୍ୟେଷ୍ଠ, ଶ୍ରେଷ୍ଠ, ରୁଦ୍ର, କାଳ, କଳ ବିକରଣ (କାଳର ବିନ୍ୟାସ), ବଳବିକରଣ (ଆତ୍ମଶକ୍ତିର ପରିପ୍ରକାଶ), ବଳପ୍ରମଥନ (ଆତ୍ମଶକ୍ତିର ବିଲୋଡ଼ନ) ସର୍ବଭୂତ ଦମନ ଓ ମନୋନ୍ମନ (ଉତ୍‌କଣ୍ଠିତ ମନ) । ଏଣୁ ଏହି ନଅଗୋଟି ତତ୍ତ୍ୱ ସମନ୍ୱିତ ବାମଦେବଙ୍କୁ ପ୍ରଣାମ ।

**ମନ୍ତ୍ରସଂଖ୍ୟା (୭) :-** ତୈ.ଆ. ୧୦/୪୫/୧ : ଅଘୋରେଭ୍ୟୋଽଥ - ପୂର୍ବୋକ୍ତ ଶିବଙ୍କ ପଞ୍ଚମୁଖରୁ ଅନ୍ୟତମ ମୁଖ ଅଘୋର ସଂଜ୍ଞକ । ଯାହା ଦକ୍ଷିଣଦିଗ ଅଭିମୁଖୀ । ଘୋର ଅର୍ଥାତ୍ ଉଗ୍ର ବା ଭୟଙ୍କର ଏଣୁ ରୁଦ୍ର ଅଘୋର ଅର୍ଥାତ୍ ଶାନ୍ତସ୍ୱରୂପ ଓ ସାତ୍ତ୍ୱିକ ଭାବ ବିଶିଷ୍ଟ । ଅନ୍ୟ ଚାରିଗୋଟି ମୁଖ ରାଜସ ଓ ତାମସ ସ୍ୱଭାବ ହେତୁ ଘୋର ଓ ଘୋରତର ଅର୍ଥାତ୍ ଉଗ୍ର ଏବଂ ଉଗ୍ରତର । ଶର୍ବ ଅର୍ଥାତ୍ ସଂହାରକ (ଶୃଣାତି = ସଂହରତୀତି) ସେ ପୁଣି ସଂହାରର ମଧ୍ୟ ସଂହାରକର୍ତ୍ତା ଅର୍ଥାତ୍ ମହାକାଳ ସ୍ୱରୂପ । ଏଣୁ ଏହି ତ୍ରିବିଧ (ସଦ୍ୟୋଜାତ, ବାମଦେବ ଓ ଅଘୋର) ରୁଦ୍ର ରୂପଙ୍କୁ ମୁଁ ସର୍ବତଃ ପ୍ରଣାମ କରୁଅଛି ।

ତତ୍ପୁରୁଷାୟ ବିଦ୍ମହେ ମହାଦେବାୟ ଧୀମହି । ତନ୍ନୋ ରୁଦ୍ରଃ ପ୍ରଚୋଦୟାତ୍ ॥୮॥ ଈଶାନଃ ସର୍ବବିଦ୍ୟାନାମୀଶ୍ୱରଃ ସର୍ବଭୂତାନାମ୍ । ବ୍ରହ୍ମାଧିପତିର୍ବ୍ରହ୍ମଣୋଽଧିପତିର୍ବ୍ରହ୍ମା ଶିବୋ ମେଽଅସ୍ତୁ ସଦା ଶିବୋମ୍ ॥୯॥ ଶିବୋ ନାମାସି ସ୍ୱଧିତିସ୍ତେ ପିତା ନମସ୍ତେ ଅସ୍ତୁ ମା ମା ହିଂସୀଃ । ନିବର୍ତ୍ତୟାମ୍ୟାୟୁଷେଽନ୍ନାଦ୍ୟାୟ ପ୍ରଜନନାୟ ରାୟସ୍ପୋଷାୟ ସୁପ୍ରଜାସ୍ତ୍ୱାୟ ସୁବୀର୍ଯ୍ୟାୟ ॥୧୦॥ ବିଶ୍ୱାନି ଦେବ ସବିତର୍ଦୁରିତାନି ପରା ସୁବ । ଯଦ୍ଭଦ୍ରଂ ତନ୍ନ ଆ ସୁବ ॥୧୧॥

---

**ମନ୍ତ୍ରସଂଖ୍ୟା (୮) :-** ତୈ.ଆ.-୧୦/୪୬/୧ : ତତ୍ପୁରୁଷାୟ - ଶିବଙ୍କ ପୂର୍ବଦିଗର ମୁଖ ତତ୍ପୁରୁଷ ସଂଜ୍ଞକ ସେହି ପ୍ରସିଦ୍ଧ ପୁରୁଷ ସ୍ୱରୂପ ଦେବଦେବ ମହାଦେବଙ୍କୁ ଆମେ ଧ୍ୟାନ କରୁଅଛୁ । ଯାହାଙ୍କ ବିଷୟରେ ସମସ୍ତ ନିଗମ ଓ ଆଗମଶାସ୍ତ୍ରମାନେ ବହୁଧା ବର୍ଣ୍ଣନା କରିଅଛନ୍ତି । ସେହି ରୁଦ୍ର ଆମ୍ଭମାନଙ୍କ ମନରେ ଆହୁରି ଅଧିକ ଜାଣିବାପାଇଁ ପ୍ରେରଣା ପ୍ରଦାନ କରନ୍ତୁ ।

**ମନ୍ତ୍ରସଂଖ୍ୟା (୯) :-** ତୈ.ଆ.-୧୦/୪୭/୧ : ଈଶାନଃ ସର୍ବବିଦ୍ୟାନାଂ - ସର୍ବବିଧ ବିଦ୍ୟାର ଈଶାନ ସଂଜ୍ଞକ ଊର୍ଦ୍ଧ୍ୱମୁଖରୁଦ୍ର ହେଉଛନ୍ତି ଶ୍ରେଷ୍ଠ ଭଣ୍ଡାର । ତାଙ୍କଠାରେ ଈଶିତୃତ୍ୱ (ପ୍ରଭୁତ୍ୱ) ଥିବା ହେତୁ ସେ ସମସ୍ତଙ୍କ ପାଇଁ ଈଶ୍ୱରପଦବାଚ୍ୟ । ସେ ବ୍ରହ୍ମ ଅର୍ଥାତ୍ ବେଦର ଅଧିପତି ପୁଣି ବ୍ରହ୍ମା ଅର୍ଥାତ୍ ହିରଣ୍ୟଗର୍ଭଙ୍କର ମଧ୍ୟ ପ୍ରଭୁ । ଏଣୁ ଏହିଭଳି ବିଶିଷ୍ଟ ଗୁଣ ସମ୍ପନ୍ନ ପରମାତ୍ମା ଶିବ ମୋ ପ୍ରତି କୃପାପରବଶ ହୋଇ ମୋର ସର୍ବଦା ମଙ୍ଗଳ ବିଧାନ କରନ୍ତୁ ।

**ମନ୍ତ୍ରସଂଖ୍ୟା (୧୦) :-** ଯଜୁର୍ବେଦ - ଅ.୩/ମନ୍ତ୍ର-୬୩ - ଶିବୋ ନାମାସି - (ଏହି ମନ୍ତ୍ର କେଶମୁଣ୍ଡନ ପ୍ରକରଣ ପରକ) ହେ କେଶମୁଣ୍ଡଳକାରୀ କ୍ଷୁର ! ତୁମେ ଶିବ ଅର୍ଥାତ୍ ଶାନ୍ତସ୍ୱରୂପ ଅଟ । ବଜ୍ର ତୁମର ପିତା । ତୁମକୁ ପ୍ରଣାମ, ତୁମେ ଆମର ଅନିଷ୍ଟ କର ନାହିଁ । ଯଜମାନର ଦୀର୍ଘପରମାୟୁ, ଅନ୍ନର ପ୍ରାଚୁର୍ଯ୍ୟ, ବଂଶବୃଦ୍ଧି, ଧନବୃଦ୍ଧି, ସୁସନ୍ତାନ ପ୍ରାପ୍ତି ଏବଂ ସୁସାମର୍ଥ୍ୟ ଲାଭ ନିମିତ୍ତ ତୁମଦ୍ୱାରା କେଶମୁଣ୍ଡନ କରୁଅଛି ।

**ମନ୍ତ୍ରସଂଖ୍ୟା (୧୧) :-** ଯଜୁର୍ବେଦ-ଅ.୩୦/ମନ୍ତ୍ର-୩-ବିଶ୍ୱାନି ଦେବ-ହେ ସବିତାଦେବ ! ତୁମେ ଆମର ସମସ୍ତ ପାପ ଗୁଡ଼ିକୁ ଦୂର କର । ଯାହା ଆମପାଇଁ କଲ୍ୟାଣପ୍ରଦ ସେଗୁଡ଼ିକୁ ଆମକୁ ପ୍ରାପ୍ତ କରାଅ ।

ଓଁ ଦ୍ୟୌଃ ଶାନ୍ତିରନ୍ତରିକ୍ଷଗୁଁ ଶାନ୍ତିଃ ପୃଥିବୀ ଶାନ୍ତିରାପଃ ଶାନ୍ତିରୋଷଧୟଃ ଶାନ୍ତିଃ ବନସ୍ପତୟଃ ଶାନ୍ତିର୍ବିଶ୍ୱେଦେବାଃ ଶାନ୍ତିର୍ବ୍ରହ୍ମ ଶାନ୍ତିଃ ସର୍ବଗୁଁ ଶାନ୍ତିଃ ଶାନ୍ତିରେବ ଶାନ୍ତିଃ ସା ମା ଶାନ୍ତିରେଧି ॥୧୨॥ ଓଁ ସର୍ବେଷାଂ ବା ଏଷ ବେଦାନାଗୁଁ ରସୋ ଯତ୍ସାମ । ସର୍ବେଷାମେବୈନମେତଦ୍ବେଦାନାଗୁଁ ରସେନାଭିଷିଞ୍ଚତି ॥୧୩॥ ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ ସୁଶାନ୍ତିର୍ଭବତୁ । ସର୍ବାରିଷ୍ଟଶାନ୍ତିର୍ଭବତୁ । ଅନେନ ରୁଦ୍ରାଭିଷେକକର୍ମଣା କୃତେନ ଶ୍ରୀଭବାନୀଶଙ୍କରମହାରୁଦ୍ରଃ ପ୍ରୀୟତାମ୍ । ଓଁ ସର୍ବଂ ସଦାଶିବାର୍ପଣମସ୍ତୁ । ଓଁ ।

---

**ମନ୍ତ୍ରସଂଖ୍ୟା (୧୨) :-** ଯଜୁର୍ବେଦ-ଅ.୩୬/୧୭ - ଦ୍ୟୌଃ ଶାନ୍ତିଃ - ଦ୍ୟୁଲୋକ (ସ୍ୱର୍ଗ), ଆକାଶ, ପୃଥିବୀ, ଜଳ, ଔଷଧି (ଲତା-ଗୁଳ୍ମ) ବୃକ୍ଷ, ବିଶ୍ୱେଦେବା, ବ୍ରହ୍ମ (ବେଦତ୍ରୟ) ଏପରିକି ସମଗ୍ର ଜଗତ୍ ମୋ ପାଇଁ ଶାନ୍ତିପ୍ରଦ ହେଉ । ସର୍ବବିଧ ଶାନ୍ତି ମଧ୍ୟ ସ୍ୱରୂପରେ ମୋ ପ୍ରତି ଶାନ୍ତିପ୍ରଦାୟକ ହୁଅନ୍ତୁ ।

**ମନ୍ତ୍ରସଂଖ୍ୟା (୧୩) :-** ସମସ୍ତ ବେଦମାନଙ୍କର ସନ୍ନିବିଷ୍ଟ ଗୂଢ଼ତତ୍ତ୍ୱର ନିର୍ଯାସରସସ୍ୱରୂପ ସାମବେଦ ଅଥବା ଭଗବାନ୍ ବିଷ୍ଣୁ ସାମବେଦ ସ୍ୱରୂପ (ବେଦାନାଂ ସାମବେଦୋଽସ୍ମି-ଗୀତା) ଅଟନ୍ତି । ସେ ସାମବେଦ ବିଷ୍ଣୁ ସାମରସଦ୍ୱାରା ସମସ୍ତ ବେଦମାନଙ୍କୁ ଅଭିସିଞ୍ଚନ କରୁଅଛନ୍ତି ।

—×—

## ପରିଶିଷ୍ଟ

**ଅଥ ଶ୍ରୀକଣ୍ଠାଦିକଳାନ୍ୟାସଃ**

ଆଦୌ ଆଚମ୍ୟ ପ୍ରାଣାନାୟମ୍ୟ ଦେଶକାଳୌ ସଂକୀର୍ତ୍ୟ ମମ ସର୍ବବିଧପାପନିବୃତ୍ତିପୂର୍ବକମ୍ – ଅମୁକ କାମନାସିଦ୍ଧୟେ ଶ୍ରୀସଦାଶିବ ପ୍ରୀତୟେ ବା ଶିବସ୍ୟ ଅମୁକମନ୍ତ୍ରଜପପୁରଶ୍ଚରଣଂ କରିଷ୍ୟେ ତଦଙ୍ଗତ୍ୱେନ ଭୂତଶୁଦ୍ଧିଂ ପ୍ରାଣପ୍ରତିଷ୍ଠାଂ ମାତୃକାନ୍ୟାସଂ ଶ୍ରୀକଣ୍ଠାଦିକଳାନ୍ୟାସଂ ଚ କରିଷ୍ୟେ ଇତି ସଂକଳ୍ପ୍ୟ ବହିର୍ମାତୃକାନ୍ୟାସଂ କୃତ୍ୱା ଶ୍ରୀକଣ୍ଠାଦିକଳାମାତୃକାନ୍ୟାସଂ କୁର୍ଯାତ୍ । ତଦ୍ ଯଥା–

ଓଁ ଅସ୍ୟ ଶ୍ରୀକଣ୍ଠାଦିକଳାନ୍ୟାସସ୍ୟ ଦକ୍ଷିଣାମୂର୍ତ୍ତିଋଷିଃ ଗାୟତ୍ରୀଛନ୍ଦଃ ଅର୍ଧନାରୀଶ୍ୱରୋ ଦେବତା ହଳୋବୀଜାନି ସ୍ୱରାଃ ଶକ୍ତୟଶ୍ଚତୁର୍ବିଧ ପୁରୁଷାର୍ଥସିଦ୍ଧ୍ୟର୍ଥେ ନ୍ୟାସେ ବିନିଯୋଗଃ । ଓଁ ଦକ୍ଷିଣାମୂର୍ତ୍ତିଋଷୟେ ନମଃ ଶିରସି । ଓଁ ଗାୟତ୍ରୀଛନ୍ଦସେ ନମଃ ମୁଖେ । ଓଁ ଅର୍ଧନାରୀଶ୍ୱରଦେବତାୟୈନମଃ ହୃଦୟେ । ଓଁ ହଲବୀଜାୟ ନମୋ ଗୁହ୍ୟେ । ଓଁ ସ୍ୱରଶକ୍ତୟେ ନମଃ ପାଦୟୋଃ । – ଇତି ଋଷ୍ୟାଦିନ୍ୟାସଃ ।

ଓଁ ହ୍‌ସାଂ ଅଙ୍ଗୁଷ୍ଠାଭ୍ୟାଂ ନମଃ ।୧ । ଓଁ ହ୍ସ୍ୱୀଂ ତର୍ଜନୀଭ୍ୟାଂ ନମଃ । ଓଁ ହ୍ସୂଂ ମଧ୍ୟମାଭ୍ୟାଂ ନମଃ । ଓଁ ହ୍ସ୍ୱୈଂ ଅନାମିକାଭ୍ୟାଂ ନମଃ । ଓଁ ହ୍ସ୍ୱୌଂ କନିଷ୍ଠିକାଭ୍ୟାଂ ନମଃ । ଓଁ ହ୍ସ୍ୱଃ କରତଳକରପୃଷ୍ଠାଭ୍ୟାଂ ନମଃ – ଇତି କରନ୍ୟାସଃ । ଓଁ ହ୍ସ୍ୱାଂ ହୃଦୟାୟ ନମଃ । ଓଁ ହ୍ସ୍ୱୀଂ ଶିରସେ ସ୍ୱାହା । ଓଁ ହ୍ସୂଂ ଶିଖାୟୈ ବଷଟ୍ । ଓଁ ହ୍ସ୍ୱୈଂ କବଚାୟ ହୁଂ । ଓଁ ହ୍ସ୍ୱୌଂ ନେତ୍ରତ୍ରୟାୟ ବୌଷଟ୍ । ଓଁ ହ୍ସ୍ୱଃ ଅସ୍ତ୍ରାୟ ଫଟ୍ । ଇତି ଷଡ଼ଙ୍ଗନ୍ୟାସଃ । ଅଥ ଧ୍ୟାନମ୍–

ଓଁ ପାଶାଙ୍କୁଶବରାକ୍ଷସ୍ରକ୍‌ପାଣିଶୀତାଂଶୁଶେଖରମ୍ ।
ତ୍ର୍ୟକ୍ଷଂ ରକ୍ତସୁବର୍ଣ୍ଣାଭମର୍ଦ୍ଧନାରୀଶ୍ୱରଂ ଭଜେ ॥
ଓଁ ବନ୍ଧୁକକାଞ୍ଚନନିଭଂ ରୁଚିରାକ୍ଷମାଳାଂ
ପାଶାଙ୍କୁଶୌ ଚ ବରଦଂ ନିଜବାହୁଦଣ୍ଡୈଃ ।
ବିଭ୍ରାଣମିନ୍ଦୁଶକଳାଭରଣଂ ତ୍ରିନେତ୍ରମ୍
ଅର୍ଧାମ୍ବିକେଶମନିଶଂ ବପୁରାଶ୍ରୟାମଃ ॥୧॥

ଇତି ଧ୍ୟାତ୍ୱା ଶ୍ରୀକଣ୍ଠାଦ୍ୟାନ୍ ନ୍ୟସେତ୍ ।-

ଓଁ ହ୍ସୌଂ ଅଂ ଶ୍ରୀକଣ୍ଠେଶପୂର୍ଣ୍ଣୋଦରୀଭ୍ୟାଂ ନମୋ ମସ୍ତକେ ।୧।

ଓଁ ହ୍ସୌଂ ଆଂ ଅନନ୍ତେଶବିରଜାଭ୍ୟାଂ ନମ ଆନନବୃତ୍ତେ ।୨।

ଓଁ ହ୍ସୌଂ ଇଂ ସୂକ୍ଷ୍ମେଶଶାଲ୍ମଲୀଭ୍ୟାଂ ନମଃ ଦକ୍ଷିଣନେତ୍ରେ ।୩।

ଓଁ ହ୍ସୌଂ ଈଂ ତ୍ରିମୂର୍ତ୍ତିଲୋଲାକ୍ଷିଭ୍ୟାଂ ନମୋ ବାମନେତ୍ରେ ।୪।

ଓଁ ହ୍ସୌଂ ଉଂ ଅମରେଶବର୍ତ୍ତୁଲାକ୍ଷିଭ୍ୟାଂ ନମୋ ଦକ୍ଷକର୍ଣ୍ଣେ ।୫।

ଓଁ ହ୍ସୌଂ ଊଂ ଅର୍ଘୀଶଦୀର୍ଘଘୋଣାଭ୍ୟାଂ ନମୋ ବାମକର୍ଣ୍ଣେ ।୬।

ଓଁ ହ୍ସୌଂ ଋଂ ଭାରଭୂତୀଶଦୀର୍ଘମୁଖୀଭ୍ୟାଂ ନମୋ ଦକ୍ଷନାସାପୁଟେ ।୭।

ଓଁ ହ୍ସୌଂ ୠଂ ତିଥୀଶଗୋମୁଖୀଭ୍ୟାଂ ନମୋ ବାମନାସାପୁଟେ ।୮।

ଓଁ ହ୍ସୌଂ ଌଂ ସ୍ଥାଣ୍ୱୀଶଦୀର୍ଘଜିହ୍ୱାଭ୍ୟାଂ ନମୋ ଦକ୍ଷଗଣ୍ଡେ ।୯।

ଓଁ ହ୍ସୌଂ ୡଂ ହରେଶକୁଣ୍ଡୋଦରୀଭ୍ୟାଂ ନମୋ ବାମଗଣ୍ଡେ ।୧୦।

ଓଁ ହ୍ସୌଂ ଏଂ ଝିଣ୍ଟୀଶୋର୍ଦ୍ଧ୍ୱକେଶୀଭ୍ୟାଂ ନମ ଊର୍ଦ୍ଧ୍ୱୋଷ୍ଠେ ।୧୧।

ଓଁ ହ୍ସୌଂ ଐଂ ଭୌତିକେଶବିକୃତମୁଖୀଭ୍ୟାଂ ନମୋଽଧରୋଷ୍ଠେ ।୧୨।

ଓଁ ହ୍ସୌଂ ଓଂ ସଦ୍ୟୋଜାତେଶଜ୍ୱାଲାମୁଖୀଭ୍ୟାଂ ନମ ଊର୍ଦ୍ଧ୍ୱଦନ୍ତପଙ୍କ୍ତୌ ।୧୩।

ଓଁ ହ୍ସୌଂ ଔଂ ଅନୁଗ୍ରାହେଶୋଲ୍କାମୁଖୀଭ୍ୟାଂ ନମୋଽଧୋଦନ୍ତପଙ୍କ୍ତୌ ।୧୪।

ଓଁ ହ୍ସୌଂ ଅଂ ଅକ୍ରୂରେଶଶ୍ରୀମୁଖୀଭ୍ୟାଂ ନମଃ ଶିରସି ।୧୫।

ଓଁ ହ୍ସୌଂ ଅଃ ମହାସେନେଶବିଦ୍ୟାମୁଖୀଭ୍ୟାଂ ନମୋ ମୁଖମଧ୍ୟେ ।୧୬।

ଓଁ ହ୍ସୌଂ କଂ କ୍ରୋଧୀଶମହାକାଲୀଭ୍ୟାଂ ନମୋ ଦକ୍ଷସ୍କନ୍ଧେ ।୧୭।

ଓଁ ହ୍ସୌଂ ଖଂ ଚଣ୍ଡେଶସରସ୍ୱତୀଭ୍ୟାଂ ନମୋ ଦକ୍ଷକୂର୍ପରେ (କହୁଣୀ) ।୧୮।

ଓଁ ହ୍ସୌଂ ଗଂ ପଞ୍ଚାନ୍ତକେଶସର୍ବସିଦ୍ଧିଗୌରୀଭ୍ୟାଂ ନମୋ ଦକ୍ଷମଣିବନ୍ଧେ ।୧୯।

ଓଁ ହ୍ସୌଂ ଘଂ ଶିବୋତ୍ତମେଶତ୍ରୈଲୋକ୍ୟବିଦ୍ୟାଭ୍ୟାଂ ନମୋ ଦକ୍ଷାଙ୍ଗୁଳିମୂଳେ ।୨୦।

ଓଁ ହ୍ସୌଂ ଙଂ ଏକରୁଦ୍ରେଶମନ୍ତ୍ରଶକ୍ତିଭ୍ୟାଂ ନମୋ ଦକ୍ଷାଙ୍ଗୁଲ୍ୟଗ୍ରେଷୁ ।୨୧।

ଓଁ ହ୍ସୌଂ ଚଂ କୂର୍ମେଶାତ୍ମଶକ୍ତିଭ୍ୟାଂ ନମୋ ବାମସ୍କନ୍ଧେ ।୨୨।

ଓଁ ହ୍ସୌଂ ଛଂ ଏକନେତ୍ରେଶମୂଳମାତୃକାଭ୍ୟାଂ ନମୋ ବାମକୂର୍ପରେ (କହୁଣୀ)।୨୩।

ଓଁ ହ୍ସୌଂ ଜଂ ଚତୁରାନନେଶଲମ୍ବୋଦରୀଭ୍ୟାଂ ନମୋ ବାମମଣିବନ୍ଧେ ।୨୪।

ଓଁ ହ୍ସୌଂ ଝଂ ଅଜେଶଦ୍ରବିଣୀଭ୍ୟାଂ ନମୋ ବାମାଙ୍ଗୁଳିମୂଳେ ।୨୫।

ଓଁ ହ୍ସୌଂ ଞଂ ସର୍ବେଶନାଗରୀଭ୍ୟାଂ ନମୋ ବାମାଙ୍ଗୁଲ୍ୟଗ୍ରେଷୁ ।୨୬।

ଓଁ ହ୍ସୌଂ ଟଂ ସୋମେଶଖେଚାରୀଭ୍ୟାଂ ନମୋ ଦକ୍ଷପାଦମୂଳେ ।୨୭।

ଓଁ ହ୍ସୌଂ ଠଂ ଲାଙ୍ଗଳୀଶମଞ୍ଜରୀଭ୍ୟାଂ ନମୋ ଦକ୍ଷଜାନୁନି (ଜଙ୍ଘ) ।୨୮।

ଓଁ ହ୍ସୌଂ ଡଂ ଦାରୁକେଶରୂପିଣୀଭ୍ୟାଂ ନମୋ ଦକ୍ଷଗୁଳ୍ଫେ (ପାଦଗଣ୍ଠି) ।୨୯।

ଓଁ ହ୍ସୌଂ ଢଂ ଅର୍ଦ୍ଧନାରୀଶବିରିଣୀଭ୍ୟାଂ ନମୋ ଦକ୍ଷପାଦାଙ୍ଗୁଳିମୂଳେ ।୩୦।

ଓଁ ହ୍ସୌଂ ଣଂ ଉମାକାନ୍ତେଶ କାକୋଦରୀଭ୍ୟାଂ ନମୋ ଦକ୍ଷପାଦାଙ୍ଗୁଲ୍ୟଗ୍ରେଷୁ ।୩୧।

ଓଁ ହ୍ସୌଂ ତଂ ଆଷାଢ଼ୀଶପୂତନାଭ୍ୟାଂ ନମୋ ବାମପାଦମୂଳେ ।୩୨।

ଓଁ ହ୍ସୌଂ ଥଂ ଦଣ୍ଡୀଶଭଦ୍ରକାଳୀଭ୍ୟାଂ ନମୋ ବାମଜାନୁନି ।୩୩।

ଓଁ ହ୍ସୌଂ ଦଂ ଅତ୍ରୀଶଯୋଗିନୀଭ୍ୟାଂ ନମୋ ବାମଗୁଳ୍ଫେ ।୩୪।

ଓଁ ହ୍ସୌଂ ଧଂ ମୀନେଶଶଙ୍ଖିନୀଭ୍ୟାଂ ନମୋ ବାମପାଦାଙ୍ଗୁଳିମୂଳେ ।୩୫।

ଓଁ ହ୍ସୌଂ ନଂ ମେଷେଶଗର୍ଜନୀଭ୍ୟାଂ ନମୋ ବାମପାଦାଙ୍ଗୁଲ୍ୟଗ୍ରେଷୁ ।୩୬।

ଓଁ ହ୍ସୌଂ ପଂ ଲୋହିତେଶକାଳରାତ୍ରିଭ୍ୟାଂ ନମୋ ଦକ୍ଷକୁକ୍ଷୌ ।୩୭।

ଓଁ ହ୍ସୌଂ ଫଂ ଶିଖୀଶକୁବ୍‌ଜିନୀଭ୍ୟାଂ ନମୋ ବାମକୁକ୍ଷୌ ।୩୮।

ଓଁ ହ୍ସୌଂ ବଂ ଛଗଳାଣ୍ଡେଶକପର୍ଦ୍ଦିନୀଭ୍ୟାଂ ନମଃ ପୃଷ୍ଠେ ।୩୯।

ଓଁ ହ୍ସୌଂ ଭଂ ଦ୍ୱିରଣ୍ଡେଶବଜ୍ରାଭ୍ୟାଂ ନମୋ ନାଭୌ ।୪୦।

ଓଁ ହ୍ସୌଂ ମଂ ମହାକାଳେଶଜୟାଭ୍ୟାଂ ନମ ଉଦରେ ।୪୧।

ଓଁ ହ୍ସୌଂ ଯଂ ତ୍ୱଗାତ୍ମଭ୍ୟାଂ ବାଳୀଶସୁମୁଖେଶ୍ୱରୀଭ୍ୟାଂ ନମୋ ହୃଦୟେ ।୪୨।

ଓଁ ହ୍ସୌଂ ରଂ ଅସୃଗାତ୍ମଭ୍ୟାଂ ଭୁଜଙ୍ଗେଶରେବତୀଭ୍ୟାଂ ନମୋ ଦକ୍ଷାଂଶେ (ସ୍କନ୍ଧେ)।୪୩।

ଓଁ ହ୍ସୌଂ ଳଂ ମାଂସାତ୍ମଭ୍ୟାଂ ପିନାକୀଶମାଧବୀଭ୍ୟାଂ ନମଃ କକୁଦି (ଗଳାର ପଛପଟ) ।୪୪।

ଓଁ ହ୍ସୌଂ ବଂ ମେଦସାତ୍ମଭ୍ୟାଂ ଖଡ୍ଗୀଶବାରୁଣୀଭ୍ୟାଂ ନମୋ ହୃଦୟାଦି ବାମାଂଶେ (ସ୍କନ୍ଧେ) ।୪୫।

ଓଁ ହ୍ସୌଂ ଶଂ ଅସ୍ଥ୍ୟାତ୍ମଭ୍ୟାଂ କେଶବାୟବୀଭ୍ୟାଂ ନମୋ ହୃଦୟାଦିଦକ୍ଷକରାଗ୍ରାନ୍ତମ୍ ।୪୬।

ଓଁ ହ୍ସୌଂ ଷଂ ମଜ୍ଜାତ୍ମଭ୍ୟାଂ ଶ୍ୱେତେଶରକ୍ଷୋବିଦାରିଣୀଭ୍ୟାଂ ନମୋ ହୃଦୟାଦିବାମକରାଗ୍ରାନ୍ତମ୍ ।୪୭।

ଓଁ ହ୍ସୌଂ ସଂ ଶୁକ୍ରାତ୍ମଭ୍ୟାଂ ଭୃଗ୍ୱୀଶସହଜାଭ୍ୟାଂ ନମୋ ହୃଦୟାଦିବାମପାଦାଗ୍ରାନ୍ତମ୍।୪୮।

ଓଁ ହ୍ସୌଂ ହଂ ପ୍ରାଣାତ୍ମଭ୍ୟାଂ ନକୁଳୀଶଲକ୍ଷ୍ମୀଭ୍ୟାଂ ନମୋ ହୃଦୟାଦି ଦକ୍ଷପାଦାଗ୍ରାନ୍ତମ୍।୪୯।

ଓଁ ହ୍ସୌଂ ଳଂ ଶକ୍ତ୍ୟାତ୍ମଭ୍ୟାଂ ଶିବେଶବ୍ୟାପିନୀଭ୍ୟାଂ ନମୋ ହୃଦୟାଦିନାଭ୍ୟନ୍ତମ୍।୫୦।
ଓଁ ହ୍ସୌଂ କ୍ଷଂ ପରମାତ୍ମଭ୍ୟାଂ ସଂବର୍ତକେଶମାୟାଭ୍ୟାଂ ନମୋ ହୃଦୟାଦିଶିରୋଽନ୍ତମ୍।୫୧।
ଧ୍ୟାନ – ଅତ୍ର ରୁଦ୍ରାଃ ସ୍ମୃତା ରକ୍ତା ଧୃତଶୂଳକପାଳକାଃ ।
ଶକ୍ତୟୋ ରୁଦ୍ରପୀଠସ୍ଥାଃ ସିନ୍ଦୁରାରୁଣବିଗ୍ରହାଃ ।
ରକ୍ତୋତ୍ପଳକପାଲାଭ୍ୟାମଲଂକୃତକରାମ୍ବୁଜାଃ ॥
ଇତି ଶ୍ରୀକଣ୍ଠାଦିକଳାନ୍ୟାସ ସମାପ୍ତ

—×—

## କାଣ୍ୱଶାଖାର 'ଶତରୁଦ୍ରୀ' ଓ ରୁଦ୍ରାଭିଷେକ ମଧ୍ୟରେ ଭିନ୍ନ ମନ୍ତ୍ର

ଶୁ.ଯ.ର୍ବେ.କା:ଶା:- ଅ.୧୧/୧ : ଏଷ ତେ ନିର୍ଋତେ ଭାଗସ୍ତଂ ଜୁଷସ୍ୱ ସ୍ୱାହାଽଗ୍ନିନେତ୍ରେଭ୍ୟୋ ଦେବେଭ୍ୟଃ ପୁରଃ ସଦ୍ଭ୍ୟଃ ସ୍ୱାହା ଯମନେତ୍ରେଭ୍ୟୋ ଦେବେଭ୍ୟୋ ଦକ୍ଷିଣସଦ୍ଭ୍ୟଃ ସ୍ୱାହା । ବିଶ୍ୱଦେବନେତ୍ରେଭ୍ୟୋ ଦେବେଭ୍ୟଃ ପଶ୍ଚାତ୍‌ସଦ୍ଭ୍ୟଃ ସ୍ୱାହା ମିତ୍ରାବରୁଣନେତ୍ରେଭ୍ୟୋ ବା ମରୁନ୍ନେତ୍ରେଭ୍ୟୋ ବା ଦେବେଭ୍ୟଃ ଉତ୍ତରସଦ୍ଭ୍ୟଃ ସ୍ୱାହା । ସୋମନେତ୍ରେଭ୍ୟୋ ଦେବେଭ୍ୟ ଉପରିସଦ୍ଭ୍ୟୋ ଦୁବସ୍ୱଦ୍ଭ୍ୟଃ ସ୍ୱାହା ।

ଶୁ.ଯ.ର୍ବେ.କା.ଶା.–୧୧/୨ – ଯେ ଦେବା ଅଗ୍ନିନେତ୍ରାଃ ପୁରଃସଦସ୍ତେଭ୍ୟଃ ସ୍ୱାହା ଯେ ଦେବା ଯମନେତ୍ରା ଦକ୍ଷିଣସଦସ୍ତେଭ୍ୟଃ ସ୍ୱାହା । ଯେ ଦେବା ବିଶ୍ୱଦେବନେତ୍ରାଃ ପଶ୍ଚାତ୍ ସଦସ୍ତେଭ୍ୟଃ ସ୍ୱାହା ଯେ ଦେବା ମିତ୍ରାବରୁଣନେତ୍ରା ବା ମରୁନ୍ନେତ୍ରା ବୋତ୍ତରସଦସ୍ତେଭ୍ୟଃ ସ୍ୱାହା । ଯେ ଦେବାଃ ସୋମନେତ୍ରା ଉପରିସଦୋ ଦୁବସ୍ୱନ୍ତସ୍ତେଭ୍ୟଃ ସ୍ୱାହା ।

ଶୁ.ଯ.ର୍ବେ.କା.ଶା.–୧୮/୩୧ ନ ତଂ ବିଦାଥ ଯ ଇମା ଜଜାନାନ୍ୟଦ୍ୟୁସ୍ମାକମନ୍ତରଂ ବଭୂବ । ନୀହାରେଣ ପ୍ରାବୃତା ଜଳ୍ପ୍ୟା ଚାସୁତୃପ ଉକ୍ଥଶାସଶ୍ଚରନ୍ତି ।

ଶୁ.ଯ.ର୍ବେ.କା.ଶା.–୧୮/୩୨ : ବିଶ୍ୱକର୍ମା ହ୍ୟଜନିଷ୍ଟ ଦେବ ଆଦିଦ୍‌ଗନ୍ଧର୍ବୋ ଅଭବଦ୍ ଦ୍ୱିତୀୟଃ । ତୃତୀୟଃ ପିତା ଜନିତୌଷଧୀନାମପାଂ ଗର୍ଭଂ ବ୍ୟଦଧାତ୍ ପୁରୁତ୍ରା ।

ଶୁ.ଯ.ର୍ବେ.କା.ଶା.–୩/୭୧–ବାଜିନାଂ ବାଜୋବତୁ ଭକ୍ଷୋ ଅସ୍ମାନ୍ ରେତଃ ସିକ୍ତମମୃତଂ ବଳାୟ । ବିଶ୍ୱେ ଦେବା ଅଭିଯତ୍ ସଂବଭୂବୁସ୍ତନ୍ନା ଧ୍ୱନୋତୁ ପ୍ରଜୟା ଧନେନ ।

ଶୁ.ଯ.ର୍ବେ.କା.ଶା.–୩/୭୨ – ବାଜ୍ୟହଂ ବାଜିନସ୍ୟୋପହୂତ ଉପହୂତସ୍ୟ ଭକ୍ଷୟାମି । ବାଜେ ବାଜୀ ଭୂୟାସମ୍ ।

ଶୁ.ଯ.ର୍ବେ.କା.ଶା.–୩/୭୩ ସବିତ୍ରା ପ୍ରସୂତା ଦୈବ୍ୟ ଆପ ଉଦନ୍ତୁ ତେ ତନୂମ୍ । ଦୀର୍ଘାୟୁତ୍ୱାୟ ବର୍ଚସେ ।

## ଉପରୋକ୍ତ ମନ୍ତ୍ରମାନଙ୍କର ଭାବାନୁବାଦ

ଶୁ.ଯ.ର୍ବେ.କା.ଶା.–୧୧/୧ – ଏଷତେ ନିର୍ଋତେ : (ରାଜସୂୟଯଜ୍ଞର ପ୍ରାରମ୍ଭରେ ଅଗ୍ନିଦେବତା ଓ ଯଜ୍ଞର ପ୍ରାସଙ୍ଗିକ ପୃଥିବୀ ଇତ୍ୟାଦି ଦେବତାମାନଙ୍କ ନିମିତ୍ତ ଆହୁତିପ୍ରଦାନ ସମୟରେ ଏହି ମନ୍ତ୍ର ଆସିଅଛି ।) ହେ ପୃଥିବୀ ! ଏହି ପିଷ୍ଟ ଚରୁ ତୁମର ଭାଗଧେୟ ଅଟେ । ପୂର୍ବ ଦିଗରେ ଉପବିଷ୍ଟ ଅଗ୍ନିନେତୃକ ଦେବତାଙ୍କ ପାଇଁ ଏହି ଆହୁତି ଉଦ୍ଦିଷ୍ଟ । ଦକ୍ଷିଣ ଦିଗରେ ଉପବିଷ୍ଟ ଯମନେତୃକ ଦେବତାଙ୍କ ପାଇଁ ଏହି ଆହୁତି ପ୍ରଦାନ କରୁଅଛି । ପଶ୍ଚିମ ଦିଗରେ ଉପବିଷ୍ଟ ବିଶ୍ୱଦେବ– ନେତୃକ ଦେବତାଙ୍କ ପାଇଁ ଏହି ଆହୁତି ପ୍ରଦତ୍ତ ହେଲା । ଉତ୍ତର ଦିଗରେ ଉପବିଷ୍ଟ ମିତ୍ରବରୁଣନେତୃକ ଅଥବା ମରୁତ୍‌ଗଣନେତୃକ ଦେବତାମାନଙ୍କୁ ଏହି ଆହୁତି ପ୍ରଦାନ କଲି । ଉପରସ୍ଥିତ ପରିଚର୍ଯ୍ୟାତ୍ମକ ସୋମନେତୃକ ଦେବତାଙ୍କ ନିମିତ୍ତ ଏହି ଆହୁତି ପ୍ରଦତ୍ତ ହେଲା ।

ଶୁ.ଯ.ର୍ବେ.କା.ଶା.–୧୧/୨ – ଯେ ଦେବା ଅଗ୍ନିନେତ୍ରାଃ : (ଆହବନୀୟାଗ୍ନିଙ୍କୁ ପାଞ୍ଚ ଆହୁତି ପ୍ରଦାନ ମନ୍ତ୍ର) ଯେଉଁ ଦେବତା ପୂର୍ବଦିଗରେ ଅଗ୍ନିନେତୃକ ତାଙ୍କ ନିମିତ୍ତ ଏହି ଆହୁତି ପ୍ରଦତ୍ତ ହେଲା । ଯେଉଁ ଦେବତା ଦକ୍ଷିଣ ଦିଗରେ ଯମନେତୃକ ତାଙ୍କ ନିମିତ୍ତ ଏହି ଆହୁତି ଉଦ୍ଦିଷ୍ଟ । ଯେଉଁ ଦେବତା ପଶ୍ଚିମ ଦିଗରେ ବିଶ୍ୱଦେବ ନେତୃକ ଏହି ଆହୁତି ତାଙ୍କ ନିମିତ୍ତ ପ୍ରଦତ୍ତ । ଯେଉଁ ଦେବତା ଉତ୍ତରଦିଗରେ ମିତ୍ରବରୁଣ ବା ମରୁତ୍ ନେତୃକ ଏହି ପ୍ରଦତ୍ତ ଆହୁତି ତାଙ୍କ ପାଇଁ ଉଦ୍ଦିଷ୍ଟ । ଯେଉଁ ଦେବତା ଊର୍ଦ୍ଧ୍ୱରେ ସ୍ଥିତ ପୂଜ୍ୟ ଓ ସୋମନେତୃକ ତାଙ୍କ ନିମିତ୍ତ ଏହି ଆହୁତି ପ୍ରଦାନ କରୁଅଛି ।

ଶୁ.ଯ.ର୍ବେ.କା.ଶା.-୧୮/୩୧ - ନ ତଂ ବିଦାଥ : ତୁମ୍ଭେମାନେ ସେ ପରମପୁରୁଷଙ୍କୁ ଜାଣିନାହଁ । ସେ ସମସ୍ତ ପ୍ରାଣୀମାନଙ୍କୁ ଉତ୍ପନ୍ନ କରିଅଛନ୍ତି ଓ ତୁମ ଭିତରେ ମଧ୍ୟ ସେ ନିବାସ କରିଅଛନ୍ତି । ଯେପରି ଶୀତରାତ୍ରିରେ ସ୍ୱତନ୍ତ୍ର ସତ୍ତା ବିହୀନ ନିହାର ଅର୍ଥାତ୍ କାକରବିନ୍ଦୁ ବାସ୍ତବିକ ବସ୍ତୁକୁ କିଛିକ୍ଷଣ ପାଇଁ ଆଚ୍ଛାଦିତ କରିଥାଏ, ଠିକ୍ ସେହିପରି ତୁଚ୍ଛ ଅଜ୍ଞାନଦ୍ୱାରା ଆବୃତ ତୁମେ ଜୀବାତ୍ମାମାନେ ନିଜପର ଭଳି ଭେଦ ଦେଖିବା ସହିତ କ୍ଷଣିକ ଐହିକ ସୁଖ ତଥା ନଶ୍ୱର ସ୍ୱର୍ଗାଦିପରଲୋକଲଭ୍ୟ ସୁଖପ୍ରାପ୍ତି ପାଇଁ ଅତ୍ୟନ୍ତ ଲାଳାୟିତ ହେଉଅଛ । ଅର୍ଥାତ୍ ଜୀବ ନିଜର ପ୍ରକୃତ ଆନନ୍ଦମୟ ସ୍ୱରୂପକୁ ବିସ୍ମୃତ ହୋଇ ଅନିତ୍ୟ ଓ ପରିଣାମରେ ଦୁଃଖର କାରଣ ରୂପକ ଐହିକ ଓ ପାରଲୌକିକ ସୁଖ ସମ୍ଭୋଗ ପାଇଁ ସର୍ବଦା ତତ୍ପର, ଯାହାର ଏକମାତ୍ର କାରଣ ଅବାସ୍ତବ ଓ ଅସ୍ତିତ୍ୱବିହୀନ ଅଜ୍ଞାନଜନ୍ୟ ମୋହ ।

ଶୁ.ଯ.ର୍ବେ.କା.ଶା.-୧୮/୩୨- ବିଶ୍ୱକର୍ମା ହ୍ୟଜନିଷ୍ଟ : ବିଶ୍ୱରେ ପ୍ରଥମ ବିଶ୍ୱକର୍ମା ହିଁ ଜାତ ହେଲେ । ଏହାପରେ ସମସ୍ତ ଔଷଧୀ ଅର୍ଥାତ୍ ବୃକ୍ଷଲତା ଇତ୍ୟାଦିକୁ ଧାରଣ ଓ ପୋଷଣ କରିବା ନିମିତ୍ତ ପର୍ଜନ୍ୟ (ବର୍ଷା) ଉତ୍ପନ୍ନ ହେଲେ ଯେ ବିବିଧ ଜଳ(ରସ)ଙ୍କୁ ଗର୍ଭରେ ଧାରଣ କଲେ ।

ଶୁ.ଯ.ର୍ବେ.କା.ଶା.-୩/୭୧ - ବାଜିନାଂ ବାଜଃ - ହେ ବାଜୀ ! ଅର୍ଥାତ୍ ହେ ଅନ୍ନର ଦେବତା ! ଆମେ ଭକ୍ଷଣଯୋଗ୍ୟ ଅନ୍ନଦ୍ୱାରା ପରିପୂର୍ଣ୍ଣ ହେଉ, ଯେଉଁ ଅନ୍ନଭକ୍ଷଣଦ୍ୱାରା ଆମକୁ ବଳବାନ୍ ଓ ପରାକ୍ରମୀ ସନ୍ତାନ ଜାତ କରିବାର ସାମର୍ଥ୍ୟ ପ୍ରାପ୍ତ ହେବ ଓ ଏହିପରି ପ୍ରଜାରୂପକ ସମ୍ପତ୍ତିର ଅଭିବୃଦ୍ଧି ଘଟିବ ।

ଶୁ.ଯ.ର୍ବେ.କା.ଶା.-୩/୭୨ - ବାଜ୍ୟହଂ ବାଜିନସ୍ୟ - ହେ ବାଜୀ ! (ହେ ଅନ୍ନଦେବ !) ଆପଣଙ୍କୁ ଆହୁତି ପ୍ରଦାନପରେ ଅବଶିଷ୍ଟ ହବିରୂପକ ଅନ୍ନକୁ ମୁଁ ଭକ୍ଷଣ କରୁଅଛି । ଯାହାଦ୍ୱାରା ମୁଁ ପ୍ରଚୁର ଅନ୍ନବାନ୍ ହୋଇପାରିବି ।

ଶୁ.ଯ.ର୍ବେ.କା.ଶା.-୩/୭୩ - ସବିତ୍ରା ପ୍ରସୂତା : ହେ ସବିତା ଦେବ (ସମସ୍ତଙ୍କ ସୃଷ୍ଟିକର୍ତ୍ତା) ! ହେ ସ୍ୱର୍ଗଲୋକ ଓ ଅନ୍ତରିକ୍ଷସ୍ଥିତ ଜଳଦେବତାମାନେ ! ଆପଣମାନେ ଯଜମାନର ଶରୀର ବପନପାଇଁ ଆସନ୍ତୁ, ଯାହାଦ୍ୱାରା ଯଜମାନର ପରମାୟୁ ବୃଦ୍ଧି ହେବା ସହିତ ସେ ବ୍ରହ୍ମବର୍ଚ୍ଚସ୍ୱୀ ମଧ୍ୟ ହୋଇପାରିବ ।

—x—

ପ୍ରସ୍ତୁତ ଗ୍ରନ୍ଥରେ ଶୁକ୍ଳଯଜୁର୍ବେଦର ବାଜସନେୟୀ ସଂହିତା ସମ୍ମତ ମାଧ୍ୟନ୍ଦିନ ଶାଖାର ରୁଦ୍ରାଷ୍ଟାଧ୍ୟାୟୀ ଏବଂ କାଣ୍ୱଶାଖା ସମ୍ମତ ରୁଦ୍ରାଷ୍ଟାଧ୍ୟାୟୀ ସହିତ କାଣ୍ୱଶାଖା ଅନୁସାରେ 'ଶତରୁଦ୍ରୀ' ପଦ୍ଧତି ମଧ୍ୟ ଓଡ଼ିଆ ଭାବାନୁବାଦ ସହିତ ଉପନିବଦ୍ଧ କରାଯାଇଅଛି । ଏହି ପ୍ରସଙ୍ଗରେ ଦୁଇପ୍ରକାର ରୁଦ୍ରାଷ୍ଟାଧ୍ୟାୟୀ ମଧ୍ୟରେ ଥିବା କେତେକ ମନ୍ତ୍ରାନ୍ତର୍ଗତ ପାର୍ଥକ୍ୟ ନିମ୍ନରେ ପ୍ରଦତ୍ତ ହେଲା ।

## ଶାଖା ଭେଦରେ ମନ୍ତ୍ର ଓ ମନ୍ତ୍ରାଂଶରେ ଭିନ୍ନତା

| ମାଧ୍ୟନ୍ଦିନ ଶାଖା | କାଣ୍ୱ ଶାଖା | ବିଶେଷ ସୂଚନା |
|---|---|---|
| ଅ. - ମନ୍ତ୍ର | | ୧-କାଣ୍ୱଶାଖାନ୍ତର୍ଗତ ମନ୍ତ୍ର |
| ୨।୩-ମନୋଜୁତିର୍ଜୁଷତାମ୍ | ମନୋଜ୍ୟୋତିର୍ଜୁଷତାମ୍ | ମାନଙ୍କରେ ଯେଉଁଠି |
| (ଷଡ଼ଙ୍ଗନ୍ୟାସସ୍ଥିତ) | (ଷଡ଼ଙ୍ଗନ୍ୟାସସ୍ଥିତ) | 'ଳ'କାର ତାହା ଡ଼ ବା ଢ଼ |
| ୨।୫-ତତୋ ବିରାଡ଼ଜାୟତ | ତତୋ ବିରାଳଜାୟତ | କାର ରୂପରେ ମାଧ୍ୟନ୍ଦିନ |
| ୪।୧-ଯଜ୍ଞପତାବବିହ୍ରୁତମ୍ | ଯଜ୍ଞପତ ଅବିହ୍ରୁତମ୍ | ଶାଖାରେ ପଢ଼ାଯାଏ । |
| ୪।୨-ଦୃଶେ ବିଶ୍ୱାୟ ସୂର୍ଯ୍ୟମ୍ | ଦୃଶେ ବିଶ୍ୱାୟ ସୂର୍ଯ୍ୟଂସ୍ୱାହା | ୨-ମାଧ୍ୟନ୍ଦିନ ଶାଖାର |
| ୪।୪-ଦୈବ୍ୟାବଧ୍ୱର୍ଯୂ | ଦୈବ୍ୟା ଅଧ୍ୱର୍ଯୂ | ରୁଦ୍ରାଷ୍ଟାଧ୍ୟାୟୀର ସଂକଳ୍ପସୂକ୍ତ |
| ୪।୪-ବେନସ୍ତୋଦୟଚ୍ଛିତ୍ରଂ | ବେନଶ୍ଚିତ୍ରଂ ଦେବାନାମ୍ | (୧ମାଧ୍ୟାୟ)ର ୧୦ଗୋଟି |
| ୫।୬-ହେଡ଼ଇମହେ | ହେଳଇମହେ | ମନ୍ତ୍ର ମଧ୍ୟରୁ କାଣ୍ୱଶାଖୀୟ |
| ୫।୭-ମୃଡ଼ୟାତି | ମୃଳୟାତି | ରୁଦ୍ରାଷ୍ଟାଧ୍ୟାୟୀରେ ସଂକଳ୍ପ |
| ୫।୮-ମୀଢୁଷେ | ମୀଳ୍ହୁଷେ | ସୂକ୍ତରେ ପ୍ରଥମ ପାଞ୍ଚଗୋଟି |
| ୫।୧୨-ମୀଢୁଷ୍ଟମ | ମୀଳୁଷ୍ଟମ | ମନ୍ତ୍ର ଗୃହୀତ । |
| ୫।୧୮-ବଭ୍ଲୁଶାୟବ୍ୟାଧିନେ | ବଭ୍ଳୁଶାୟାବ୍ୟାଧିନେ | ୩-ଶତରୁଦ୍ରୀରେ ଏହି |
| ୫।୩୮-ନମୋବୀଦ୍ଧ୍ରାୟ | ନମଇଧ୍ରାୟ | ସଂକଳ୍ପସୂକ୍ତ ନାହିଁ । |
| ୫।୪୧-ନମଃଶମ୍ଭବାୟ ଚ | ଶମ୍ଭବେଚ | |
| ମୟୋଭବାୟ | ମୟୋଭବେ ଚ | ୪-କାଣ୍ୱଶାଖା ସମ୍ମତ |
| ୫।୪୪-ହୃଦଯ୍ୟାୟଚ | ହୃଦ୍ୟାୟଚ | ଶତରୁଦ୍ରୀରେ ଥିବା |
| ୫।୪୭-ମାଭେର୍ମାରୋଙ୍ | ମାଭେର୍ମୋରୋଙ୍ | ସଂହିତାର |
| ୫।୫୦-ପରିନୋରୁଦ୍ରସ୍ୟ | ପରିଣୋହେତୀ ରୁଦ୍ରସ୍ୟ | ଅ.୩।୭୧-ବାଜିନାଂ |
| ହେତିର୍ବୃଣକ୍ତୁ | ବୃଜ୍ୟାତ୍ | ବାଜୋଽବତୁ... (୧) |

| ମାଧ୍ୟନ୍ଦିନ ଶାଖା | କାଣ୍ୱ ଶାଖା | ବିଶେଷ ସୂଚନା |
|---|---|---|
| ଦୁର୍ମତି ରଘାୟୋଃ | ଦୁର୍ମତିର୍ମହୀଗାତ୍ | ୩।୭୨-ବାଜ୍ୟହଂ |
| ୫।୬୦-ପଥିରକ୍ଷୟ | ପଥିରକ୍ଷିଣ | ବାଜିନ... (୨) |
| ୫।୬୪, ୬୫, ୬୬- | | ୩।୭୩-ସବିତ୍ରା |
| ନମୋଽସ୍ତୁ ରୁଦ୍ରେଭ୍ୟଃ ଏହା | ଏହା ଗୋଟିଏ | ପ୍ରସୂତା... (୩) |
| ତିନିଗୋଟି ମନ୍ତ୍ର | ମନ୍ତ୍ର-୬୪ | ୧୧।୧-ଏଷତେ ନିର୍ଋତେ |
| ୬।୪-ସୁଖଂମେଷାୟ | ସୁଗଂମେଷାୟ | ଭାଗଃ... (୪) |
| ୬।୫-ତ୍ର୍ୟମ୍ବକଂ- | | ୧୧।୨-ଯେ ଦେବା |
| ପୁଷ୍ଟିବର୍ଦ୍ଧନମ୍ ଓ ତ୍ର୍ୟମ୍ବକଂ... | ଏହା ଦୁଇଗୋଟି ମନ୍ତ୍ର | ଅଗ୍ନିନେତ୍ରାଃ... (୫) |
| ପତିବେଦନମ୍ ଉଭୟ | | ୧୮।୩୧-ନ ତଂ ବିଦାଥ |
| ଗୋଟିଏ ମନ୍ତ୍ର | | ଯଇମା... (୬) |
| ୬।୬-ଏତତ୍ତେରୁଦ୍ରାବସନ୍ତେନ | ଏତେନ ରୁଦ୍ରାବସେନ | ୧୮।୩୨-ବିଶ୍ୱକର୍ମା |
| ୬।୬-ଶିବୋତୀହି | | ହ୍ୟଜନିଷ୍ଟ... (୭) |
| ୬।୭-କଶ୍ୟପସ୍ୟ ତ୍ର୍ୟାୟୁଷମ୍ | ଶିବଃଶାନ୍ତୋଽତୀହି | - ଏହି ସାତଗୋଟି ମନ୍ତ୍ର |
| | ଏଥିରେ ୭ମ ଓ ୮ମ | କୌଣସି ଶାଖାର |
| ୭।୩-ପ୍ରକ୍ରୀଡ଼େନ | ମନ୍ତ୍ରଦ୍ୱୟ ନାହିଁ । | ରୁଦ୍ରାଷ୍ଟାଧ୍ୟାୟୀରେ ନାହିଁ । |
| ୭।୪-ମେଦୋଭ୍ୟ | ପ୍ରକ୍ରୀଳେନ | କେବଳ ଶତରୁଦ୍ରୀରେ ଅଛି । |
| ୭।୫-ଶୋଚମାନାୟ | ମେଦସେ | ୫-ମାଧ୍ୟନ୍ଦିନ ଶାଖା ସମ୍ମତ |
| ୭।୬-ଘର୍ମାୟ ସ୍ୱାହା | ଏହି ପଦନାହିଁ | ରୁଦ୍ରାଷ୍ଟାଧ୍ୟାୟୀର ୮ମ |
| ୭।୭-ବ୍ରହ୍ମଣେ ସ୍ୱାହା | ଏହି ପଦନାହିଁ | ଅଧ୍ୟାୟରେ ଥିବା |
| ୮।୧-ଶ୍ରବଶ୍ଚ | ଏହି ପଦନାହିଁ | ମନ୍ତ୍ରମାନଙ୍କର ଆନୁକ୍ରମିକତା |
| ୮।୧୫-ଏମଶ୍ଚ | ଶ୍ରାବଶ୍ଚ | କାଣ୍ୱଶାଖାରେ କେତେକ |
| ୯।୧୭-ବିଶ୍ୱେଦେବାଃ | ଯାମଶ୍ଚ | ସ୍ଥଳରେ ପରିବର୍ତ୍ତିତ |
| ସାମାଶାନ୍ତିରେଧି | ପଦଟି ନାହିଁ | ହୋଇଅଛି । |
| ୯।୨୪-ପ୍ରବ୍ରବାମ ଶରଦଃ | ଏହା ନାହିଁ | ୬-କେତେକ ମାଧ୍ୟନ୍ଦିନ |
| ଶତମ୍ | ଏହା ନାହିଁ | ଶାଖାଧ୍ୟାୟୀ 'ଷ'କୁ 'ଖ' |
| ୧୦।୭-ସାମାଶାନ୍ତିରେଧି | | ରୂପରେ ଉଚ୍ଚାରଣ କରନ୍ତି, |
| ୧୦।୧୦-ଶିବୋ ନାମାସି | ଏହା ନାହିଁ | ଯଥା-ସହସ୍ରଶୀର୍ଷାକୁ ସହସ୍ର |
| ୧୦।୧୨-ବିଶ୍ୱେଦେବାଃ | ଏହି ମନ୍ତ୍ର ନାହିଁ | 'ଶୀର୍ଖା', ପୁରୁଷ କୁ |

| ମାଧ୍ୟନ୍ଦିନ ଶାଖା | କାଣ୍ୱ ଶାଖା | ବିଶେଷ ସୂଚନା |
| --- | --- | --- |
| ଶାନ୍ତିର୍ବ୍ରହ୍ମଶାନ୍ତିଃ<br>ସର୍ବଗୁଁ ଶାନ୍ତିଃ... ସାମା<br>ଶାନ୍ତିରେଧି | ଏହା ନାହିଁ | 'ପୁରୁଖ' ଇତ୍ୟାଦି ।<br>ଏପରିକି ଯଜ୍ଞକୁ ମଧ୍ୟ<br>କେତେକ 'ଯଖ୍ୟ'- ଏହି<br>ରୂପରେ ମଧ୍ୟ ଉଚ୍ଚାରଣ<br>କରିଥାଆନ୍ତି ।<br>୭-ମାଧ୍ୟନ୍ଦିନ ଶାଖୀୟ<br>ରୁଦ୍ରାଷ୍ଟାଧ୍ୟାୟୀରେ ମୋଟ<br>ମନ୍ତ୍ର ସଂଖ୍ୟା-୨୧୩<br>କାଣ୍ୱଶାଖୀୟ<br>ରୁଦ୍ରାଷ୍ଟାଧ୍ୟାୟୀରେ ମୋଟ<br>ମନ୍ତ୍ର ସଂଖ୍ୟା-୨୦୬<br>ଏହା ଅଧ୍ୟାୟ ଅନୁସାରେ<br>ଯଥା:- |

| ମାଧ୍ୟନ୍ଦିନ ଶାଖା | | କାଣ୍ୱ ଶାଖା | |
| --- | --- | --- | --- |
| ଅଧ୍ୟାୟ | ମନ୍ତ୍ରସଂଖ୍ୟା | ଅଧ୍ୟାୟ | ମନ୍ତ୍ରସଂଖ୍ୟା |
| ୧ମ | ୨୨ | ୧ମ | ୫ |
| ୨ୟ | ୨୨ | ୨ୟ | ୨୨ |
| ୩ୟ | ୧୭ | ୩ୟ | ୧୭ |
| ୪ର୍ଥ | ୧୭ | ୪ର୍ଥ | ୧୭ |
| ୫ମ | ୬୬ | ୫ମ | ୬୪ |
| ୬ଷ୍ଠ | ୮ | ୬ଷ୍ଠ | ୭ |
| ୭ମ | ୭ | ୭ମ | ୭ |
| ୮ମ | ୨୯ | ୮ମ | ୩୧ |
| ୯ମ | ୨୪ | ୯ମ | ୨୪ |
| ୧୦ମ | ୧୩ | ୧୦ମ | ୧୨ |
| | ମୋଟ–୨୧୩ | | ମୋଟ–୨୦୬ |

## ମାଧ୍ୟନ୍ଦିନ ରୁଦ୍ରାଷ୍ଟାଧ୍ୟାୟୀ ଅନ୍ତର୍ଗତ ମନ୍ତ୍ରମାନଙ୍କର କାଣ୍ୱ ସଂହିତାରେ ଅବସ୍ଥିତି

| ରୁଦ୍ରାଷ୍ଟାଧ୍ୟାୟୀ | କାଣ୍ୱ ସଂହିତା |
|---|---|
| ଅଧ୍ୟାୟ/ମନ୍ତ୍ର | ଅଧ୍ୟାୟ/ମନ୍ତ୍ର |
| ୧।୧ | ୨୫।୨୧ |
| ୧।୨ | ୨୫।୩୫ |
| ୧।୩ | ୨୫।୩୬ |
| ୧।୪ | ୩୩।୩୭ |
| ୧।୫ | ୩୩।୧ |

କାଣ୍ୱରୁଦ୍ରୀର ୧ମ ଅଧ୍ୟାୟରେ ଏହି ୫ ଗୋଟି ମନ୍ତ୍ର ରହିଅଛି ।

| ଅଧ୍ୟାୟ/ମନ୍ତ୍ର | ଅଧ୍ୟାୟ/ମନ୍ତ୍ର |
|---|---|
| ୨।୧ ରୁ ୨୨ | ୩୫।୧ ରୁ ୨୨ |

ଏହି ଅଧ୍ୟାୟର ସମସ୍ତ ୨୨ ଗୋଟି ମନ୍ତ୍ର କାଣ୍ୱ ସଂହିତାର ୩୫ ଅଧ୍ୟାୟର ୧ମରୁ ୨୨ତମ ମନ୍ତ୍ର ପର୍ଯ୍ୟନ୍ତ ।

| ଅଧ୍ୟାୟ/ମନ୍ତ୍ର | ଅଧ୍ୟାୟ/ମନ୍ତ୍ର |
|---|---|
| ୩।୧ ରୁ ୧୭ | ୧୮।୩୩ ରୁ ୪୯ |

୩ୟ ଅଧ୍ୟାୟର ମଧ୍ୟ ସମସ୍ତ ୧୭ ଗୋଟି ମନ୍ତ୍ର କାଣ୍ୱ ସଂହିତାର ୧୮ ଅଧ୍ୟାୟର ୩୩ ରୁ ୪୯ତମ ମନ୍ତ୍ର ପର୍ଯ୍ୟନ୍ତ ।

| ଅଧ୍ୟାୟ/ମନ୍ତ୍ର | ଅଧ୍ୟାୟ/ମନ୍ତ୍ର |
|---|---|
| ୪।୧ ରୁ ୪ | ୩୨।୩୦ରୁ ୩୩ |
| ୪।୫ | ୭।୧୧ |
| ୪।୬ | ୭।୧୫ |
| ୪।୭ | ୮।୨୪ |
| ୪।୮ ରୁ ୧୭ | ୩୨।୩୪ରୁ୪୩ |

| ଅଧ୍ୟାୟ/ମନ୍ତ୍ର | ଅଧ୍ୟାୟ/ମନ୍ତ୍ର |
|---|---|
| ୫।୧୦ରୁ ୬୬ | ୧୭।୧ରୁ୬୪ |

ଏହି ଅଧ୍ୟାୟର ସମସ୍ତ ମନ୍ତ୍ର କାଣ୍ୱ ସଂହିତାର ୧୭ତମ ଅଧ୍ୟାୟରେ ଉପଲବ୍ଧ, ମାତ୍ର ଅନ୍ତିମ ତିନିଗୋଟି ମନ୍ତ୍ର କାଣ୍ୱସଂହିତା ଅନୁସାରେ ଗୋଟିଏ ମନ୍ତ୍ର ରୂପରେ ଗୃହୀତ ।

| ଅଧ୍ୟାୟ/ମନ୍ତ୍ର | ଅଧ୍ୟାୟ/ମନ୍ତ୍ର |
|---|---|
| ୬।୧ ରୁ ୮ | ୩।୬୪ରୁ୭୦ |

ଏହି ଅଧ୍ୟାୟର ୫ମ ମନ୍ତ୍ରଟିକୁ କାଣ୍ୱସଂହିତା ୨ଟି ମନ୍ତ୍ର ରୂପରେ ପରିଗଣିତ, ଅନ୍ତିମ ମନ୍ତ୍ରଟି ମଧ୍ୟ କାଣ୍ୱ ସଂହିତାରେ ନାହିଁ ।

| ଅଧ୍ୟାୟ/ମନ୍ତ୍ର | ଅଧ୍ୟାୟ/ମନ୍ତ୍ର |
|---|---|
| ୭।୧ ରୁ ୭ | ୩୯।୬ ରୁ ୧୨ |

ଏ ଅଧ୍ୟାୟର ସମସ୍ତ ମନ୍ତ୍ର କାଣ୍ୱ ସଂହିତାର ୩୯ ଅଧ୍ୟାୟର ୬ ରୁ ୧୨ତମ ମନ୍ତ୍ର ପର୍ଯ୍ୟନ୍ତ ।

| ଅଧ୍ୟାୟ/ମନ୍ତ୍ର | ଅଧ୍ୟାୟ/ମନ୍ତ୍ର |
|---|---|
| ୮।୧ ରୁ ୨୯ | ୧୯।୧୩ ରୁ୪୩ |

ଏ ଅଧ୍ୟାୟରେ ରୁଦ୍ରୀରେ ସମସ୍ତ ମନ୍ତ୍ର କାଣ୍ୱ ସଂହିତାର ଊନବିଂଶ ଅଧ୍ୟାୟର ୧୩ତମ ମନ୍ତ୍ରରୁ ଶେଷ (୪୩ତମ) ମନ୍ତ୍ର ପର୍ଯ୍ୟନ୍ତ ମାତ୍ର ରୁଦ୍ରୀ ୨୯ ସଂଖ୍ୟକ ମନ୍ତ୍ରକୁ ଏଠାରେ ୩୧ସଂଖ୍ୟକ ଅର୍ଥାତ୍ ୨ ଗୋଟି ମନ୍ତ୍ର ଅଧିକ ରୂପରେ ପରିଗଣିତ ।

| ଅଧ୍ୟାୟ/ମନ୍ତ୍ର | ଅଧ୍ୟାୟ/ମନ୍ତ୍ର |
|---|---|
| ୯।୧ ରୁ ୨୪ | ୩୬।୧ ରୁ ୨୪ |

ଏ ଅଧ୍ୟାୟରେ ସମସ୍ତ ମନ୍ତ୍ର କାଣ୍ୱ ସଂହିତାର ୩୬ ତମ ଅଧ୍ୟାୟର ୧ ରୁ ୨୪ ତମ ମନ୍ତ୍ର ପର୍ଯ୍ୟନ୍ତ ।

| ଅଧ୍ୟାୟ/ମନ୍ତ୍ର | ଅଧ୍ୟାୟ/ମନ୍ତ୍ର |
|---|---|
| ୧୦।୧ | ୨୭।୨୩ |
| ୧୦।୨ | ୨୦।୭ |
| ୧୦।୩ | ୫।୨୭ |
| ୧୦।୪ | ୧୫।୨୨ |
| ୧୦।୫ | ତୈତ୍ତିରୀୟ ଆରଣ୍ୟକ ୧୦।୪୩।୧ |
| ୧୦।୬ | ୧୦।୪୪।୧ |
| ୧୦।୭ | ୧୦।୪୫।୧ |
| ୧୦।୮ | ୧୦।୪୬।୧ |
| ୧୦।୯ | ୧୦।୪୭।୧ |
| ୧୦।୧୦ | କାଣ୍ୱସଂହିତାରେ ନାହିଁ |
| | କାଣ୍ୱସଂହିତା |
| ୧୦।୧୧ | ୩୪।୩ |
| ୧୦।୧୨ | ୩୬।୧୭ |

—×—

# ଶିବମହିମ୍ନଃ-ସ୍ତୋତ୍ରମ୍

ମିହମ୍ନଃ ପାରଂ ତେ ପରମବିଦୁଷୋ ଯଦ୍ୟସଦୃଶୀ
ସ୍ତୁତିର୍ବ୍ରହ୍ମାଦୀନାମପି ତଦବସନ୍ନାସ୍ତ୍ୱୟି ଗିରଃ ।
ଅଥାବାଚ୍ୟଃ ସର୍ବଃ ସ୍ୱମତିପରିଣାମାବଧି ଗୃଣନ୍
ମମାପ୍ୟେଷ ସ୍ତୋତ୍ରେ ହର ନିରପବାଦଃ ପରିକରଃ ॥୧॥
ଅତୀତଃ ପନ୍ଥାନଂ ତବ ଚ ମହିମା ବାଙ୍ମନସୟୋ-
ରତଦ୍ବ୍ୟାବୃତ୍ତ୍ୟା ଯଂ ଚକିତମଭିଧତ୍ତେ ଶ୍ରୁତିରପି ।
ସ କସ୍ୟ ସ୍ତୋତବ୍ୟଃ କତିବିଧଗୁଣଃ କସ୍ୟ ବିଷୟଃ
ପଦେ ତ୍ୱର୍ବାଚୀନେ ପତତି ନ ମନଃ କସ୍ୟ ନ ବଚଃ ॥୨॥

---

## ଅନୁବାଦ

**୦୧. ମହିମ୍ନଃ ପାରନ୍ତେ :-** ସମସ୍ତ ଆଧ୍ୟାତ୍ମିକ, ଆଧିଭୌତିକ ଓ ଆଧିଦୈବିକ ଦୁଃଖକୁ ହରଣ କରୁଥିବା ହେ ହର ! ବ୍ରହ୍ମାଦି ଦେବତାମାନଙ୍କ କୃତ ସ୍ତୁତି ମଧ୍ୟ ଯାହାଙ୍କ ପାଇଁ ପର୍ଯ୍ୟାପ୍ତ ନୁହେଁ, ସେହି ତ୍ରିଗୁଣାତୀତ ଆପଣଙ୍କ ମହିମାର ଶେଷ ସୀମା ପର୍ଯ୍ୟନ୍ତ ପହଞ୍ଚିବାରେ ଏକାନ୍ତ ଅସମର୍ଥ ମୋ ଭଳି ଜଣେ ଅବିଦ୍ୱାନ୍‌ର ସ୍ତୁତି ଯଦି ଆପଣଙ୍କ ସ୍ୱରୂପଯୋଗ୍ୟ ହୋଇ ନ ପାରିବ ଏହା କୌଣସି ଆଶ୍ଚର୍ଯ୍ୟର ବିଷୟ ନୁହେଁ । ପୁଣି ଏକଥା ମଧ୍ୟ ସତ୍ୟ ଯେ ଯଦି ନିଜ ସୀମୀତ ଅଥଚ ସମର୍ପିତ ବୁଦ୍ଧିଦ୍ୱାରା ପ୍ରସ୍ତୁତ ଆପଣଙ୍କ ସମସ୍ତ ସ୍ତୁତି ନିର୍ଦୁଷ୍ଟ ହୋଇପାରେ ତାହେଲେ ମୋର ଏହି ସ୍ତୁତିଗାନ ରୂପକ ପ୍ରୟାସ ନିଶ୍ଚୟ ଦୋଷଶୂନ୍ୟ ହେବ ।

**୦୨. ଅତୀତଃ ପନ୍ଥାନଂ :-** ଆପଣଙ୍କ ମହିମା ବର୍ଣ୍ଣନାତୀତ,ଏଣୁ ଅବର୍ଣ୍ଣନୀୟ, ସେହିପରି ଚିନ୍ତା ଶକ୍ତିର ମଧ୍ୟ ଊର୍ଦ୍ଧ୍ୱରେ ଏଣୁ ଅଚିନ୍ତ୍ୟ । ଆପଣ ନିର୍ଗୁଣ (ସତ୍ତ୍ୱ, ରଜ ଓ ତମ ଏହି ଲୌକିକ ତ୍ରିଗୁଣ ରହିତ), ଅଥଚ ପୁଣି ସଗୁଣ (ଅଲୌକିକ ମହଦୈଶ୍ୱର୍ଯ୍ୟାଦି ଗୁଣଯୁକ୍ତ) । ଏହିପରି ଆପଣ ବ୍ରହ୍ମ ବା ପରମାତ୍ମା ହେତୁ ଆପଣଙ୍କ ବ୍ୟତିରେକେ ସମସ୍ତ ପ୍ରପଞ୍ଚ (ସଂସାର)କୁ ଉପନିଷଦୁକ୍ତ 'ନେତି ନେତି' ଶବ୍ଦମାନଙ୍କ ମାଧ୍ୟମରେ ନିଷେଧଦ୍ୱାରା ସମସ୍ତ ବେଦ ମଧ୍ୟ ଆପଣଙ୍କ ସ୍ୱରୂପ ପ୍ରତିପାଦନ କରିବାରେ ଆଶ୍ଚର୍ଯ୍ୟଭାବ ପ୍ରକାଶ କରିଥାଆନ୍ତି ଏଣୁ ନିର୍ଗୁଣ ତଥା ସଗୁଣ ସଦାଶିବ

ମଧୁସ୍ଫୀତା ବାଚଃ ପରମମମୃତଂ ନିର୍ମିତବତ-

ସ୍ତବ ବ୍ରହ୍ମନ୍ କିଂ ବାଗପି ସୁରଗୁରୋର୍ବିସ୍ମୟପଦମ୍ ।

ମମ ତ୍ୱେତାଂ ବାଣୀଂ ଗୁଣକଥନପୁଣ୍ୟେନ ଭବତଃ

ପୁନାମୀତ୍ୟର୍ଥେଽସ୍ମିନ୍ ପୁରମଥନ ! ବୁଦ୍ଧିର୍ବ୍ୟବସିତା ॥୩॥

ତବୈଶ୍ୱର୍ଯ୍ୟଂ ଯତ୍ତଜ୍ଜଗଦୁଦୟରକ୍ଷାପ୍ରଳୟକୃତ୍

ତ୍ରୟୀବସ୍ତୁ ବ୍ୟସ୍ତଂ ତିସୃଷୁ ଗୁଣଭିନ୍ନାସୁ ତନୁଷୁ ।

ଅଭବ୍ୟାନାମସ୍ମିନ୍ ବରଦ ରମଣୀୟାମରମଣୀଂ

ବିହନ୍ତୁଂ ବ୍ୟାକ୍ରୋଶୀଂ ବିଦଧତ ଇହୈକେ ଜଡ଼ଧିୟଃ ॥୪॥

---

କାହାର ବା ସ୍ତୁତିବିଷୟ ହେବା ସମ୍ଭବ ? ତଥାପି ଯେହେତୁ ପରମ କାରୁଣିକ ବାବା ଭୋଳାନାଥ ଆମଭଳି ସାମାନ୍ୟ ଭକ୍ତମାନଙ୍କ ଉପରେ ଦୟାପରବଶ ହୋଇ ସଗୁଣ ସାକାର ସ୍ୱରୂପ ଧାରଣ କରିଥାଆନ୍ତି, ଏଣୁ ଏପରି ଭକ୍ତାନୁଗ୍ରାହକଙ୍କ ନିମିତ୍ତ ସ୍ତୁତି କରିବା ପାଇଁ କାହାର ବା ମନ ଓ ବାକ୍ୟ ଅଭିଭୂତ ଓ ଆକର୍ଷିତ ନ ହୋଇ ରହିପାରିବ ?

**୦୩. ମଧୁସ୍ଫୀତା ବାଚଃ :-** ହେ ପରବ୍ରହ୍ମସ୍ୱରୂପ ମହେଶ୍ୱର ! ମହୁଠାରୁ ମଧ ଅଧିକ ମଧୁର, ସର୍ବୋତ୍କୃଷ୍ଟ ଅମୃତମୟ ଯେଉଁ ବେଦବାଣୀ ତାର ନିର୍ମାତା ଆପଣଙ୍କୁ ଦେବଗୁରୁ ବୃହସ୍ପତିଙ୍କ ବାଣୀ କେବେ ଆଶ୍ଚର୍ଯ୍ୟଚକିତ କରିପାରେ କି ? ଏଣୁ ମୋ ଭଳି ସାମାନ୍ୟ ବ୍ୟକ୍ତି ଜଣକ କ'ଣ ବା ସ୍ତୁତିଦ୍ୱାରା ଆପଣଙ୍କୁ ସନ୍ତୁଷ୍ଟ କରିପାରିବ ? ତଥାପି ହେ ତ୍ରିପୁରନାୟକ ! ହେ ଜଗତ୍ ନିୟନ୍ତା ! ଆପଣଙ୍କ ଗୁଣ ପ୍ରଖ୍ୟାପନ ରୂପକ ମୋର ଏହି ପ୍ରୟାସଦ୍ୱାରା ସମୁତ୍ପନ୍ନ ଯେଉଁ ପୁଣ୍ୟ ତାହା ସାଂସାରିକ ବିଷୟଚର୍ଚ୍ଚା ଦୋଷରେ ଦୂଷିତ ମୋର ବାଣୀକୁ ଅବଶ୍ୟ ଶୁଦ୍ଧ କରିବା ସହିତ ସାମର୍ଥ୍ୟ ପ୍ରଦାନ କରିବ, ଯେଣୁ ଏହି ପବିତ୍ର କାର୍ଯ୍ୟରେ ମୋର ବୁଦ୍ଧି ପ୍ରେରିତ ହେଉଅଛି ।

**୦୪. ତବୈଶ୍ୱର୍ଯ୍ୟଂ :-** ହେ ଇପ୍ସିତଫଳପ୍ରଦାୟକ ଶମ୍ଭୁ ! ହେ ଜଗତର ସୃଷ୍ଟି, ପାଳନ ଓ ସଂହାରକର୍ତ୍ତା ପରବ୍ରହ୍ମ ! ବେଦତ୍ରୟରେ ପ୍ରତିପାଦ୍ୟ ବିଷୟବସ୍ତୁଗତ ସତ୍ତ୍ୱାଦି ଗୁଣତ୍ରୟ ଭେଦ ହେତୁ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ଆପଣଙ୍କ ମହତ୍ତ୍ୱକୁ ନେଇ ତିନି ରୂପରେ ଆବିର୍ଭୂତ ହେଲେ । କିନ୍ତୁ ଏହି ତତ୍ତ୍ୱକୁ ଖଣ୍ଡନ କରିବା ପାଇଁ

କିମୀହଃ କିଂ କାୟଃ ସ ଖଲୁ କିମୁପାୟସ୍ତ୍ରିଭୁବନଂ
କିମାଧାରୋ ଧାତା ସୃଜତି କିମୁପାଦାନମିତି ଚ ।
ଅତର୍କ୍ୟୈଶ୍ୱର୍ଯ୍ୟେ ତ୍ୱୟ୍ୟନବସରଦୁଃସ୍ଥୋ ହତଧିୟଃ
କୁତର୍କୋଽୟଂ କାଂଶ୍ଚିନ୍ମୁଖରୟତି ମୋହାୟ ଜଗତଃ ॥୫॥
ଅଜନ୍ମାନୋ ଲୋକାଃ କିମବୟବବନ୍ତୋଽପି ଜଗତା-
ମଧିଷ୍ଠାତାରଂ କିଂ ଭବବିଧିରନାଦୃତ୍ୟ ଭବତି ।
ଅନୀଶୋ ବା କୁର୍ଯ୍ୟାଭୁବନଜନନେ କଃ ପରିକରଃ
ଯତୋ ମନ୍ଦାସ୍ତ୍ୱାଂ ପ୍ରତ୍ୟମରବର ! ସଂଶେରତ ଇମେ ॥୬॥

---

ମୃତ୍ୟୁଲୋକରେ କେତେକ ଜଡ଼ବୁଦ୍ଧି ସମ୍ପନ୍ନ ନାସ୍ତିକ ବ୍ୟକ୍ତି କୁପ୍ରକୃତିର ବଶବର୍ତ୍ତୀ ହୋଇ ତାଙ୍କ ଭଳି କିଛି ମନ୍ଦଭାଗ୍ୟଙ୍କୁ ଭ୍ରାମିତ କରିବା ପାଇଁ ସେମାନଙ୍କୁ ରୁଚିକର ହେଲାଭଳି କପୋଳକଳ୍ପିତ ଅପ୍ରାସଙ୍ଗିକ କଥାବସ୍ତୁକୁ ଆପଣଙ୍କ ଐଶ୍ୱର୍ଯ୍ୟ ବିଷୟରେ ବିରୁଦ୍ଧ ମତରୂପରେ ଉପସ୍ଥାପିତ କରିଥାଆନ୍ତି ।

**୦୫. କିମୀହଃ କିଂ କାୟଃ :-** ପରମେଶ୍ୱର ଶିବଙ୍କ ତ୍ରିଲୋକ ସ୍ରଷ୍ଟୃତ୍ୱକୁ ନେଇ ନାସ୍ତିକମାନେ ପ୍ରଶ୍ନ କରିଥାଆନ୍ତି ଯେ, ସଂସାର ସୃଷ୍ଟି ସମୟରେ ବିଧାତାଙ୍କ (ଶିବଙ୍କ) କ'ଣ ଇଛା ଥିଲା ? କିପରି ତାଙ୍କର ଶରୀର ଥିଲା ? କାହାକୁ ଆଧାର ବା ଆଶ୍ରୟ କରି ସୃଷ୍ଟି ସମ୍ଭବ ହେଲା ? ସେଥିରେ ସାଧନ ସାମଗ୍ରୀ କ'ଣ ଥିଲା ? (ବସ୍ତୁତଃ ଯେ କେହି କର୍ତ୍ତା କୌଣସି ପଦାର୍ଥ ସୃଷ୍ଟି କଲାବେଳେ ଏ ସମସ୍ତ ବିଷୟ ଉପରେ ନିର୍ଭର କରିଥାଏ ମାତ୍ର ଏ ସ୍ଥଳରେ ଏହାର ବ୍ୟତିରେକ ହେତୁ ଏପରି ପ୍ରଶ୍ନ ବା ଆକ୍ଷେପ ହେବା ସ୍ୱାଭାବିକ) । ମାତ୍ର ମହେଶ୍ୱର (ଶିବ)ଙ୍କ ଜଗତ୍ କର୍ତ୍ତୃତ୍ୱ ବିଷୟ ଏଭଳି କୁତର୍କର ବହୁ ଉର୍ଦ୍ଧ୍ୱରେ । କାରଣ ତାଙ୍କର ଇଛାମାତ୍ରକେ ସମସ୍ତ ସୃଷ୍ଟି ସମ୍ଭବ ଯାହାକି ବେଦରେ କୁହାଯାଇଅଛି – 'ଏକୋଽହଂ ବହୁ ସ୍ୟାମ୍ ପ୍ରଜାୟେୟ...' ଇତ୍ୟାଦି । ଏଣୁ ମହେଶ୍ୱରଙ୍କ ଏଭଳି ଅଲୌକିକ ଶକ୍ତି ଓ ଐଶ୍ୱର୍ଯ୍ୟ ସମ୍ବନ୍ଧରେ ଯେଉଁମାନେ ଅଜ୍ଞ ତଥା ଦୁର୍ବୁଦ୍ଧିସମ୍ପନ୍ନ ସେମାନେ ଅନ୍ୟମାନଙ୍କୁ ଭ୍ରାମିତ କରିବା ପାଇଁ ଏଭଳି ଅଯୌକ୍ତିକ ମତ ଉପସ୍ଥାପନ କରନ୍ତି ।

**୦୬. ଅଜନ୍ମାନୋ ଲୋକାଃ :-** ହେ ଦେବଶ୍ରେଷ୍ଠ ! ଅବୟବବାନ୍ ହୋଇ କେବେ କେହି ଅଜନ୍ମା ଅର୍ଥାତ୍ ଉତ୍ପତ୍ତିରହିତ ହେବା ଅସମ୍ଭବ । ଅଧିଷ୍ଠାତା

ତ୍ରୟୀ ସାଂଖ୍ୟଂ ଯୋଗଃ ପଶୁପତିମତଂ ବୈଷ୍ଣବମିତି
ପ୍ରଭିନ୍ନେ ପ୍ରସ୍ଥାନେ ପରମିଦମଦଃ ପଥ୍ୟମିତି ଚ ।
ରୁଚୀନାଂ ବୈଚିତ୍ର୍ୟାଦୃଜୁକୁଟିଳନାନାପଥଜୁଷାଂ
ନୃଣାମେକୋ ଗମ୍ୟସ୍ତ୍ୱମସି ପୟସାମର୍ଣବ ଇବ ॥୭॥
ମହୋକ୍ଷଃ ଖଟ୍ୱାଙ୍ଗଂ ପରଶୁରଜିନଂ ଭସ୍ମ ଫଣିନଃ
କପାଳଞ୍ଚେତୀୟତ୍ତବ ବରଦ ତନ୍ତ୍ରୋପକରଣମ୍ ।
ସୁରାସ୍ତାଂ ତାମୃଦ୍ଧିଂ ଦଧତି ଚ ଭବଦ୍ଭ୍ରୂପ୍ରଣିହିତାଂ
ନ ହି ସ୍ୱାତ୍ମାରାମଂ ବିଷୟମୃଗତୃଷ୍ଣା ଭ୍ରମୟତି ॥୮॥

---

ଅର୍ଥାତ୍ କର୍ତ୍ତା ବ୍ୟତିରେକେ କେବେହେଲେ ଜଗତର ଉତ୍ପତ୍ତି ମଧ୍ୟ ସମ୍ଭବ ନୁହେଁ । ଆଉ ଏକଥା ମଧ୍ୟ ସତ୍ୟ ଯେ ସମଗ୍ର ଚତୁର୍ଦ୍ଦଶ ଭୁବନ ନିର୍ମାଣରେ ସାମଗ୍ରୀ ବା କେଉଁଠାରେ ସମ୍ଭବ ? ଏ ସମସ୍ତ ଦୃଷ୍ଟିରୁ ଈଶ୍ୱରଙ୍କ ବିନା କିଏ ବା ଏ ସମଗ୍ର ସୃଷ୍ଟିର ସ୍ରଷ୍ଟା ହୋଇପାରେ ? ଏଣୁ ଏ ପରିପ୍ରେକ୍ଷୀରେ ଈଶ୍ୱରଙ୍କ ସ୍ରଷ୍ଟୃତ୍ୱ ବିଷୟକୁ ନେଇ ସନ୍ଦେହ ବା ଆଶଙ୍କା କରିବା ମନ୍ଦଭାଗ୍ୟର ପରିଚୟ ମାତ୍ର ।

**୦୭. ତ୍ରୟୀ ସାଂଖ୍ୟଂ ଯୋଗଃ :-** ବେଦତ୍ରୟ ତଥା ସାଂଖ୍ୟଯୋଗ, ଶୈବ, ବୈଷ୍ଣବ ଇତ୍ୟାଦି ଦର୍ଶନ ସମେତ ସମସ୍ତ ଆଗମଶାସ୍ତ୍ରମାନଙ୍କରେ ଭିନ୍ନ ଭିନ୍ନ ମତ ଉପସ୍ଥାପନ କରି ନିଜ ନିଜ ମତକୁ ଶ୍ରେଷ୍ଠ ରୂପରେ ପ୍ରତିପାଦନ କରିବାରେ ଯେଉଁ ବୈଚିତ୍ର୍ୟ ପରିଲକ୍ଷିତ ହୁଏ ଏବଂ ସେହି ସରଳ ତଥା କୁଟିଳ ମତବାଦ ଉପରେ ପରିଚାଳିତ ହୋଇ ମଣିଷମାନେ ବାରମ୍ବାର ଭ୍ରମିତ ହେଉଥିଲେ ମଧ୍ୟ ଭିନ୍ନ ଭିନ୍ନ ଦିଗମାନଙ୍କରୁ ବହି ଆସୁଥିବା ନଦନଦୀଗୁଡ଼ିକର ଯେମିତି ଅନ୍ତିମ ଲକ୍ଷ୍ୟ ସମୁଦ୍ର, ଠିକ୍ ସେହିଭଳି ସମସ୍ତ ମଣିଷଙ୍କର ହେ ଦେବ ! ତୁମେ ହିଁ ଏକମାତ୍ର ଅନ୍ତିମ ଅଭୀଷ୍ଟ ଅଟ ।

**୦୮. ମହୋକ୍ଷଃ ଖଟ୍ୱାଙ୍ଗଂ :-** ହେ ବରଦ (ବରପ୍ରଦାତା) ! ବୃଦ୍ଧ ବୃଷଭ ଆପଣଙ୍କର ବାହନ, ଭଙ୍ଗା ଖଟର ଖୁରା (ଗୋଡ଼) ଉପବେଶନର ସାଧନ, ପରଶୁ ଅର୍ଥାତ୍ ଟାଙ୍ଗିଆ ଅସ୍ତ୍ର, ଅଜିନ ଅର୍ଥାତ୍ ମୃଗଚର୍ମ ଆବରଣ, ଭସ୍ମ ବ୍ୟସନ, ବିଷଧର ସର୍ପ ଆଭୂଷଣ, କପାଳ (ନରମୁଣ୍ଡ) ଗଳାର ମାଳା – ଏସମସ୍ତ ଆପଣଙ୍କ ଶରୀରର ଶୋଭାବର୍ଦ୍ଧନକାରୀ ସାମଗ୍ରୀ । ଅଥଚ ଆପଣଙ୍କ କୃପାକଟାକ୍ଷଦ୍ୱାରା

ଧ୍ରୁବଂ କଶ୍ଚିତ୍ ସର୍ବଂ ସକଳମପରସ୍ତ୍ୱଧ୍ରୁବମିଦଂ
ପରୋ ଧ୍ରୌବ୍ୟାଧ୍ରୌବ୍ୟେ ଜଗତି ଗଦତି ବ୍ୟସ୍ତବିଷୟେ ।
ସମସ୍ତେଽପ୍ୟେତସ୍ମିନ୍ ପୁରମଥନ ତୈର୍ବିସ୍ମିତ ଇବ
ସ୍ତୁବନ୍ ଜିହ୍ରେମି ତ୍ୱାଂ ନ ଖଳୁ ନନୁ ଧୃଷ୍ଟା ମୁଖରତା ॥୯॥
ତବୈଶ୍ୱର୍ଯ୍ୟଂ ଯତ୍ନାଦ୍ୟଦୁପରି ବିରଞ୍ଚିର୍ହରିରଧଃ
ପରିଚ୍ଛେତ୍ତୁଂ ଯାତାବନଲମନଲସ୍କନ୍ଧବପୁଷଃ ।
ତତୋ ଭକ୍ତିଶ୍ରଦ୍ଧାଭରଗୁରୁଗୃଣଦ୍‌ଭ୍ୟାଂ ଗିରିଶ ଯତ୍
ସ୍ୱୟଂ ତସ୍ଥେ ତାଭ୍ୟାଂ ତବ କିମନୁବୃତ୍ତିର୍ନ ଫଳତି ॥୧୦॥

---

ପ୍ରାପ୍ତ ଅଲୌକିକ ଐଶ୍ୱର୍ଯ୍ୟକୁ ଇନ୍ଦ୍ରାଦିଦେବତା ତଥା ପୁଣ୍ୟାତ୍ମା ସାଧୁମାନେ ଭୋଗ କରୁଅଛନ୍ତି । ଏଥିରୁ ସ୍ପଷ୍ଟ ପ୍ରତିଭାତ ହୋଇଅଛି ଯେ, ସ୍ୱାତ୍ମାରାମବିହାରୀ (ନିଜ ସ୍ୱରୂପରେ ସଦା ଭ୍ରମଣ କରୁଥିବା) ଆପଣଙ୍କୁ କଦାପି ବିଷୟରୂପକ ମୃଗତୃଷ୍ଣା ବିମୋହିତ କରିପାରିନାହିଁ ।

**୦୯. ଧ୍ରୁବଂ କଶ୍ଚିତ୍ ସର୍ବଂ :-** ହେ ତ୍ରିପୁରାରୀ ! ସାଂଖ୍ୟାଦି ଦର୍ଶନଶାସ୍ତ୍ର-ମାନଙ୍କରେ ଏ ସମସ୍ତ କାର୍ଯ୍ୟକାରଣାତ୍ମକ ଜଗତ୍ ସତ୍ ଅର୍ଥାତ୍ ଅନାଦି ଓ ଅନନ୍ତ । ବୌଦ୍ଧାଦି ଦର୍ଶନଶାସ୍ତ୍ରକାରମାନଙ୍କମତରେ ପ୍ରଦୀପ ଶିଖା ଯେପରି ପ୍ରତି ମୁହୂର୍ତ୍ତରେ ପରିବର୍ତ୍ତନଶୀଳ ଏଣୁ ଅନିତ୍ୟ ଠିକ୍ ସେହିପରି ଏହି ଦୃଶ୍ୟମାନ ଜଗତ୍ କ୍ଷଣିକ ଓ ପରିବର୍ତ୍ତନଶୀଳ ରୂପରେ ଅନିତ୍ୟ । ଅନ୍ୟ କେତେକ ଶାସ୍ତ୍ରରେ ମୃତ୍ତିକାଦି କାରଣ ରୂପରେ ସତ୍ ମାତ୍ର କାର୍ଯ୍ୟ ଘଟାଦିରୂପରେ ଅସତ୍ । ଏଣୁ ଏଭଳି ନିତ୍ୟ ଅନିତ୍ୟ ମତବାଦର ପରିଧି ଭିତରେ ଥାଇ ଆପଣଙ୍କୁ ସ୍ତୁତି କରିବା ମୋର ବାଚାଳତା ବ୍ୟତିରେକେ ଆଉ କ'ଣ ବା ହୋଇପାରେ ?

**୧୦. ତବୈଶ୍ୱର୍ଯ୍ୟଂ ଯତ୍ନାତ୍ :-** ହେ କୈଳାସପର୍ବତବାସୀ ଶଙ୍କର ! ତେଜପୁଞ୍ଜ ସଦୃଶ ଜ୍ୟୋତିର୍ମୟ ଆକୃତି ସମ୍ପନ୍ନ ଆପଣଙ୍କ ଯେଉଁ ମହଦୈଶ୍ୱର୍ଯ୍ୟ ତାର ସୀମା ଜାଣିବା ପାଇଁ ପ୍ରଯତ୍ନ ପୂର୍ବକ ପିତାମହ ବ୍ରହ୍ମା ଉର୍ଦ୍ଧ୍ୱକୁ ଏବଂ ଶ୍ରୀହରି ଅଧଃଲୋକକୁ ଗମନ କଲେ ମାତ୍ର ସେ ଦୁହେଁ ତାହା ଜାଣିବାକୁ ସକ୍ଷମ ନ ହୋଇପାରି ଭକ୍ତି ଏବଂ ଶ୍ରଦ୍ଧାପୂରିତ ହୃଦୟରେ ପ୍ରାର୍ଥନା କରନ୍ତେ ଦୟାର ଅବତାର ସ୍ୱରୂପ ଆପଣ ତାଙ୍କ ସମ୍ମୁଖରେ ଆବିର୍ଭୂତ ହେଲେ, ଯାହାଦ୍ୱାରା ଆପଣଙ୍କ ଐଶ୍ୱର୍ଯ୍ୟର

ଅଯତ୍ନାଦାସାଦ୍ୟ ତ୍ରିଭୁବନମବୈରବ୍ୟତିକରଂ
ଦଶାସ୍ୟୋ ଯଦ୍‌ବାହୂନଭୃତ ରଣକଣ୍ଡୂପରବଶାନ୍ ।
ଶିରଃପଦ୍ମଶ୍ରେଣୀରଚିତଚରଣାମ୍ଭୋରୁହବଳେଃ
ସ୍ଥିରାୟାସ୍ତ୍ୱଦ୍‌ଭକ୍ତେସ୍ତ୍ରିପୁରହର ବିସ୍ଫୁର୍ଜିତମିଦମ୍ ॥୧ ୧॥
ଅମୁଷ୍ୟ ତ୍ୱତ୍‌ସେବାସମଧିଗତସାରଂ ଭୂଜବନଂ
ବଳାତ୍ କୈଳାସେଽପି ତ୍ୱଦଧିବସତୌ ବିକ୍ରମୟତଃ ।
ଅଲଭ୍ୟା ପାତାଳେଽପ୍ୟଳସଚଳିତାଙ୍ଗୁଷ୍ଠଶିରସି
ପ୍ରତିଷ୍ଠା ତ୍ୱୟ୍ୟାସୀଦ୍‌ଧ୍ରୁବମୁପଚିତୋ ମୁହ୍ୟତି ଖଳଃ ॥୧ ୨॥
ଯଦୃଦ୍ଧିଂ ସୂତ୍ରାମ୍ଣୋ ବରଦ ପରମୋଚ୍ଚୈରପି ସତୀ-
ମଧଶ୍ଚକ୍ରେ ବାଣଃ ପରିଜନବିଧେୟସ୍ତ୍ରିଭୁବନଃ ।

---

ବ୍ୟାପକତା ଓ ଅସୀମତା ତାଙ୍କୁ ଅବଗତ କରାଇବା ସହିତ ଆପଣଙ୍କର ଶରଣାଗତିର ଫଳ ଯେ କଳ୍ପନାତୀତ ଏହା ମଧ୍ୟ ପ୍ରମାଣିତ ହେଲା ।

**୧୧. ଅଯତ୍ନାଦାପାସାଦ୍ୟ :-** ହେ ତ୍ରିପୁରାରି ଶମ୍ଭୁ ! ଲଙ୍କେଶ୍ୱର ରାବଣ ଅନାୟାସରେ ତ୍ରିଭୁବନକୁ ନିଷ୍କଣ୍ଟକ (ଶତ୍ରୁହୀନ)କଲା ପରେ ପ୍ରତିଯୋଦ୍ଧା ଅଭାବରୁ ନିଜର କୋଡ଼ିଏଟି ଭୁଜରେ ଉତ୍ପନ୍ନ କଣ୍ଡୁକୁ ଧାରଣ କରି ପରିଶେଷରେ ଦଶଗୋଟି ମସ୍ତକକୁ କାଟି ଆପଣଙ୍କ ପାଦପଦ୍ମରେ ପଦ୍ମମାଳା ପରି ଲମ୍ବାଇ ଦେଇଥିଲେ, ଯାହା ଆପଣଙ୍କ ପ୍ରତି ନିଶ୍ଚଳ ଭକ୍ତିର ନିଦର୍ଶନ ଥିଲା ।

**୧୨. ଅମୁଷ୍ୟ ତ୍ୱତ୍ସେବା :-** ହେ ମହେଶ୍ୱର ! ଆପଣଙ୍କ ପ୍ରତି ନିରବଚ୍ଛିନ୍ନ ଭକ୍ତି ଓ ସେବାଦ୍ୱାରା ଅତୁଳନୀୟ ବଳ ସମ୍ପନ୍ନ କୋଡ଼ିଏ ଗୋଟି ଭୂଜ ପ୍ରାପ୍ତ ହୋଇ ଅହଙ୍କାରୀ ରାବଣ ଆପଣଙ୍କ ନିବାସସ୍ଥାନ କୈଳାସ ପର୍ବତକୁ ବଳପୂର୍ବକ ଉତ୍ପାଟନ କରିବାକୁ ଯାଉଥିବାବେଳେ ଆପଣଙ୍କ ପାଦର ବୃଦ୍ଧାଙ୍ଗୁଳିର ଅଗ୍ରଭାଗର ସାମାନ୍ୟ ସ୍ପର୍ଶଦ୍ୱାରା ସେ ପାତାଳରେ ମଧ୍ୟ ନିଜର ଅବସ୍ଥିତି ପାଇପାରି ନ ଥିଲା । ତେଣୁ ଯଥାର୍ଥରେ କଥିତ ଅଛି ଯେ, ଦୁର୍ଜନ ଐଶ୍ୱର୍ଯ୍ୟଯୁକ୍ତ ହେଲେ ସେ ନିଶ୍ଚିତ ଭାବରେ ମୋହଗ୍ରସ୍ତ ହୋଇ ହିତାହିତ ଜ୍ଞାନ ହରାଇ ବସେ ।

**୧୩. ଯଦୃଦ୍ଧିଂ ସୂତ୍ରାମ୍ଣୋ :-** ହେ ଅଭୀଷ୍ଟବରପ୍ରଦାତା ଶଙ୍କର ! ତିନି ଭୁବନକୁ ନିଜ ଦାସତ୍ୱର ଅଧୀନ କରିଥିବା ବାଣାସୁର ପ୍ରବଳ ପରାକ୍ରମଶାଳୀ ହୋଇ ଦେବରାଜ ଇନ୍ଦ୍ରଙ୍କ ସମ୍ପତ୍ତିକୁ ମଧ୍ୟ ନ୍ୟୂନ କରି ଦେଇଥିଲା । ଆପଣଙ୍କ ଶ୍ରୀଚରଣ ତଳେ ସେବାବନତ ବାଣାସୁର ପାଇଁ ଏହା କିଛି ବିସ୍ମୟଜନକ ନ

ନ ତଚ୍ଚିତ୍ରଂ ତସ୍ମିନ୍ ବରିବସିତରି ତ୍ୱଚ୍ଚରଣୟୋ-
ର୍ନ କସ୍ୟାପ୍ୟୁନ୍ନତ୍ୟୈ ଭବତି ଶିରସସ୍ତ୍ୱୟ୍ୟବନତିଃ ॥୧୩॥
ଅକାଣ୍ଡବ୍ରହ୍ମାଣ୍ଡକ୍ଷୟଚକିତଦେବାସୁରକୃପା-
ବିଧେୟସ୍ୟାସୀଦ୍ୟସ୍ତ୍ରିନୟନ ବିଷଂ ସଂହୃତବତଃ ।
ସ କଲ୍ମାଷଃ କଣ୍ଠେ ତବ ନ କୁରୁତେ ନ ଶ୍ରିୟମହୋ
ବିକାରୋଽପି ଶ୍ଳାଘ୍ୟୋ ଭୁବନଭୟଭଙ୍ଗବ୍ୟସନିନଃ ॥୧୪॥
ଅସିଦ୍ଧାର୍ଥା ନୈବ କ୍ୱଚିଦପି ସଦେବାସୁରନରେ
ନିବର୍ତ୍ତନ୍ତେ ନିତ୍ୟଂ ଜଗତି ଜୟିନୋ ଯସ୍ୟ ବିଶିଖାଃ ।
ସ ପଶ୍ୟନ୍ନୀଶ ତ୍ୱାମିତରସୁରସାଧାରଣମଭୂତ୍
ସ୍ମରଃ ସ୍ମର୍ତ୍ତବ୍ୟାତ୍ମା ନ ହି ବଶିଷୁ ପଥ୍ୟଃ ପରିଭବଃ ॥୧୫॥

---

ଥିଲା । କାରଣ ଆପଣଙ୍କଠାରେ ଆଶ୍ରିତ ଯେ କୌଣସି ପ୍ରାଣୀଙ୍କ ନିମିତ୍ତ ଏହା ଅତି ସହଜ ଓ ସୁଲଭ ଅଟେ ।

**୧୪. ଅକାଣ୍ଡବ୍ରହ୍ମାଣ୍ଡ :-** ହେ ସୂର୍ଯ୍ୟ, ଚନ୍ଦ୍ର, ଅଗ୍ନିରୂପକ ତ୍ରିନେତ୍ରଧାରୀ ପରମାତ୍ମା ଶିବ ! ଅକାଳରେ ଅଖିଳବ୍ରହ୍ମାଣ୍ଡ ନାଶର ସମ୍ଭାବନା ହେତୁ ଭୀତତ୍ରସ୍ତ ଦେବ-ଦାନବଙ୍କ ପ୍ରତି କୃପା ପରବଶ ହୋଇ ହଳାହଳ ବିଷକୁ ପାନ କରିବାଦ୍ୱାରା ଆପଣଙ୍କ କଣ୍ଠରେ ଯେଉଁ ନୀଳବର୍ଣ୍ଣର ଚିହ୍ନ ସୃଷ୍ଟି ହେଲା ତାହା ଆପଣଙ୍କ ଶୋଭାକୁ ବହୁଗୁଣରେ ପରିଣତ କରିପାରିଛି । କାରଣ ଏପରି ବ୍ରହ୍ମାଣ୍ଡ ବିନାଶ ଜନିତ ଭୟକୁ ଦୂରୀଭୂତ କରିପାରୁଥିବା ଆପଣଙ୍କ ପରି ଦେବତାଙ୍କ ପକ୍ଷରେ ବିକୃତି (କଣ୍ଠର ନୀଳିମା ରୂପକ ବିରୂପତା) ମଧ୍ୟ ପ୍ରଶଂସନୀୟ ଅଟେ ।

**୧୫. ଅସିଦ୍ଧାର୍ଥା ନୈବ :** ହେ ଈଶ (ପରମେଶ୍ୱର) ! ବିଶ୍ୱବିଜୟୀ କାମଦେବଙ୍କ ସୂତୀକ୍ଷ୍ଣ ବାଣ ଦେବ ଦାନବ ମାନବ ଏପରିକି ଜଳ-ସ୍ଥଳ-ପାତାଳ କେଉଁଠାରୁ ହେଲେ ସର୍ବଦା ସର୍ବଥା କାର୍ଯ୍ୟ ସିଦ୍ଧି ନ କରି ଫେରି ନ ଥାଏ । ତେଣୁ (ଅହଙ୍କାରର ବଶବର୍ତ୍ତୀ ହୋଇ) ଅନ୍ୟ ଦେବତାଙ୍କ ଭଳି ଆପଣଙ୍କୁ ସାଧାରଣ ବୋଲି ଭାବୁଥିବାର ପରିଣାମ ସ୍ୱରୂପ ନିଜେ ହିଁ କେବଳ ସ୍ମୃତିମାତ୍ର ରୂପରେ ଅବଶେଷ ରହିଗଲେ ଅର୍ଥାତ୍ ସାକାର ସ୍ୱରୂପ (ଶରୀର) ନଷ୍ଟତ୍ୱକୁ ପ୍ରାପ୍ତ ହେଲେ କାରଣ ଜିତେନ୍ଦ୍ରିୟ ଶିରୋମଣି ପରମ ଯୋଗୀ ଶିବଙ୍କ ପ୍ରତି ଅନାଦର ଏହିଭଳି ବିଷମ ପରିଣତିକୁ ହିଁ ପ୍ରଦାନ କରିଥାଏ ।

ମହୀ ପାଦାଘାତାଦ୍‌ବ୍ରଜତି ସହସା ସଂଶୟପଦଂ
ପଦଂ ବିଷ୍ଣୋର୍ଭ୍ରାମ୍ୟଭୁଜପରିଘରୁଗ୍‌ଣଗ୍ରହଗଣମ୍ ।
ମୁହୁର୍ଦ୍ୟୌର୍ଦୌସ୍ଥ୍ୟଂ ଯାତ୍ୟନିଭୃତଜଟା ତାଡ଼ିତତଟା
ଜଗଦ୍ରକ୍ଷାୟୈ ତ୍ୱଂ ନଟସି ନନୁ ବାମୈବ ବିଭୁତା ॥୧୬॥
ବିୟଦ୍‌ବ୍ୟାପୀ ତାରାଗଣଗୁଣିତଫେନୋଦ୍ଗମରୁଚିଃ
ପ୍ରବାହୋ ବାରାଂ ଯଃ ପୃଷତଲଘୁଦୃଷ୍ଟଃ ଶିରସି ତେ ।
ଜଗଦ୍‌ଦ୍ୱୀପାକାରଂ ଜଲଧିବଲୟଂ ତେନ କୃତମି-
ତ୍ୟନେନୈବୋନ୍ନେୟଂ ଧୃତମହିମ ଦିବ୍ୟଂ ତବ ବପୁଃ ॥୧୭॥
ରଥଃ କ୍ଷୋଣୀ ଯନ୍ତା ଶତଧୃତିରଗେନ୍ଦ୍ରୋ ଧନୁରଥୋ
ରଥାଙ୍ଗେ ଚନ୍ଦ୍ରାର୍କୌ ରଥଚରଣପାଣିଃ ଶର ଇତି ।

---

**୧୬. ମହୀପାଦାଘାତାଦ୍ :-** ଆପଣଙ୍କ ନୃତ୍ୟ ସମୟର ପାଦପ୍ରହାରଦ୍ୱାରା ପୃଥିବୀ ହଠାତ୍ ସନ୍ଦିଗ୍ଧ ସ୍ଥିତିକୁ ପ୍ରାପ୍ତ ହୋଇଥାଏ । ନୃତ୍ୟରତ ଆପଣଙ୍କ ଲୌହ ମୁଦ୍ଗର ସଦୃଶ ଘୂର୍ଣ୍ଣାୟମାନ ବାହୁଯୁଗଳର ଆଘାତରେ ଆକାଶସ୍ଥ ପୁଷ୍ପମାଲ୍ୟ ସଦୃଶ ନକ୍ଷତ୍ରମଣ୍ଡଳ ଖଣ୍ଡବିଖଣ୍ଡିତ ହୋଇ ବିଛୁରିତ ଅବସ୍ଥାକୁ ପ୍ରାପ୍ତ ହୁଏ । ସେହିପରି ଦୋଳାୟମାନ ଆପଣଙ୍କ ଜଟାଜୁଟର ବାରମ୍ବାର ଆଘାତରେ ସ୍ୱର୍ଗଲୋକ ମଧ ଦୁରବସ୍ଥାକୁ ପ୍ରାପ୍ତ ହୋଇଥାଏ । ଏହି ପ୍ରକାର ସମଗ୍ର ବିଶ୍ୱର ରକ୍ଷା ନିମିତ୍ତ ଉଦ୍ଦିଷ୍ଟ ଆପଣଙ୍କ ତାଣ୍ଡବନୃତ୍ୟ ସମସ୍ତ ପ୍ରାଣୀମାନଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କରେ, ଏପରିକି ବେଳେବେଳେ ଆପଣଙ୍କ ବ୍ୟାପକତା ଅନ୍ୟର ପ୍ରତିକୂଳ ସ୍ୱରୂପରେ ପରିଣତ ହୁଏ ।

**୧୭. ବିୟଦ୍‌ବ୍ୟାପୀ :-** ସମଗ୍ର ଆକାଶମଣ୍ଡଳରେ ପରିବ୍ୟାପ୍ତ ନକ୍ଷତ୍ରଗଣଙ୍କ ପ୍ରତିବିମ୍ବଦ୍ୱାରା ଫେନଯୁକ୍ତ ଗଙ୍ଗା ପ୍ରବାହର କାନ୍ତି ଆପଣଙ୍କ ମସ୍ତକ ଉପରେ ଜଳବିନ୍ଦୁ ସଦୃଶ ପ୍ରତୀୟମାନ ହେଉଅଛି । ସେହି ଜଳବିନ୍ଦୁ ସମୂହ ସମୁଦ୍ର ଭଳି ବଳୟ ବିଶିଷ୍ଟ ଜଗତକୁ ଦ୍ୱୀପାକାରରେ ପରିଣତ କରୁଅଛି । ତାହାଦ୍ୱାରା ଆପଣଙ୍କ ଶରୀର ଦିବ୍ୟ ମହିମାନ୍ୱିତ ସ୍ୱରୂପରେ ପ୍ରତୀୟମାନ ।

**୧୮. ରଥଃ କ୍ଷୋଣୀ :-** ତୃଣସ୍ୱରୂପ ତ୍ରିପୁରାସୁରକୁ ଦଗ୍ଧ (ହତ୍ୟା) କରିବା ପାଇଁ ପୃଥିବୀକୁ ରଥ ରୂପରେ, ବ୍ରହ୍ମାଙ୍କୁ ରଥର ଚାଳକ, ସୁମେରୁ ପର୍ବତକୁ

ଦିଧକ୍ଷୋସ୍ତେ କୋଽୟଂ ତ୍ରିପୁରତୃଣମାଡ଼ମ୍ବରବିଧି-
ର୍ବିଧେୟୈଃ କ୍ରୀଡ଼ନ୍ତ୍ୟୋ ନ ଖଲୁ ପରତନ୍ତ୍ରାଃ ପ୍ରଭୁଧିୟଃ ॥୧୮॥
ହରିସ୍ତେ ସାହସ୍ରଂ କମଳବଳିମାଧାୟ ପଦୟୋ-
ର୍ଯଦେକୋନେ ତସ୍ମିନ୍ ନିଜମୁଦହରନ୍ନେତ୍ରକମଳମ୍ ।
ଗତୋ ଭକ୍ତ୍ୟୁଦ୍ରେକଃ ପରିଣତିମସୌ ଚକ୍ରବପୁଷା
ତ୍ରୟାଣାଂ ରକ୍ଷାୟୈ ତ୍ରିପୁରହର ଜାଗର୍ତ୍ତି ଜଗତାମ୍ ॥୧୯॥
କ୍ରତୌ ସୁପ୍ତେ ଜାଗ୍ରତ୍ତ୍ୱମସି ଫଳଯୋଗେ କ୍ରତୁମତାଂ
କ୍ୱ କର୍ମ ପ୍ରଧ୍ୱସ୍ତଂ ଫଳତି ପୁରୁଷାରାଧନମୃତେ ।
ଅତସ୍ତ୍ୱାଂ ସଂପ୍ରେକ୍ଷ୍ୟ କ୍ରତୁଷୁ ଫଳଦାନପ୍ରତିଭୁବଂ
ଶ୍ରୁତୌ ଶ୍ରଦ୍ଧାଂ ବଧ୍ୱା ଦୃଢ଼ପରିକରଃ କର୍ମସୁ ଜନଃ ॥୨୦॥

---

ଧନୁ, ସୂର୍ଯ୍ୟ ଓ ଚନ୍ଦ୍ର ଦୁହିଁଙ୍କୁ ରଥର ଚକ୍ରଦ୍ୱୟ, ଚକ୍ରପାଣି ବିଷ୍ଣୁଙ୍କୁ ବାଣ ରୂପରେ ଏପରି ସବୁ ଆଡ଼ମ୍ବର ଆପଣଙ୍କ ପାଇଁ କଣ ବା ଆବଶ୍ୟକ ? କାରଣ ସ୍ୱାଧୀନ ଭାବରେ ଭୃତ୍ୟର ସହିତ କ୍ରୀଡ଼ା ରଚନା କରୁଥିବା ପରମେଶ୍ୱରଙ୍କ ସଙ୍କଳ୍ପ କଦାପି ପରାଧୀନ ହୁଏ ନାହିଁ ।

**୧୯. ହରିସ୍ତେ ସାହସ୍ରଂ :-** ହେ ତ୍ରିପୁରାରି ! ଏକଦା ଭଗବାନ୍ ବିଷ୍ଣୁ ଆପଣଙ୍କୁ ପୂଜା କରିବା ସମୟରେ ଆପଣଙ୍କ ପଦଯୁଗଳରେ ନିୟତ ରୂପରେ ଏକହଜାର ପଦ୍ମଫୁଲ ସମର୍ପଣ କରୁଥିଲେ । ଦିନେ ଅକସ୍ମାତ୍ ସେଥିରୁ ଗୋଟିଏ ପଦ୍ମଫୁଲ କମିଯିବା ହେତୁ ନିଜ କମଳ (ପଦ୍ମ) ରୂପକ ନେତ୍ରକୁ ଉତ୍ପାଟନ କରି ଆପଣଙ୍କୁ ସମର୍ପଣ କରିଥିଲେ । ଏପରି ତାଙ୍କ ଭକ୍ତିର ଉତ୍କର୍ଷତାର ପରିଣାମ ସ୍ୱରୂପ ତାହା ସୁଦର୍ଶନ ଚକ୍ର ରୂପରେ ପରିଣତ ହୋଇ ସବୁଦିନ ପାଇଁ ସେ ତିନି ଲୋକରେ ସୁରକ୍ଷା ପ୍ରଦାନ କରି ଆସୁଛନ୍ତି ।

**୨୦. କ୍ରତୌ ସୁପ୍ତେ ଜାଗ୍ରତ୍ :-** ପ୍ରତ୍ୟେକ କର୍ମର ସ୍ୱତନ୍ତ୍ର ଭାବରେ ଫଳପ୍ରାପ୍ତି ହୁଏ, କିନ୍ତୁ କର୍ମ ଅଚେତନ ହେତୁ ତାହାର ସ୍ୱତଃ ଫଳ ପ୍ରଦାନ କରିବାର ଶକ୍ତି ନ ଥାଏ ଏବଂ ପ୍ରତ୍ୟେକ କର୍ମର ପ୍ରଥମ କ୍ଷଣରେ ଉତ୍ପତ୍ତି ଓ ପରବର୍ତ୍ତୀ ଦ୍ୱିତୀୟ କ୍ଷଣରେ ସମାପ୍ତି ଘଟୁଥିବାରୁ ଶ୍ରୌତ ସ୍ମାର୍ତ୍ତ ଯାଗାଦି ଅନୁଷ୍ଠାନଗୁଡ଼ିକର ସମାପ୍ତି ଘଟିଲା ପରେ କାଳାନ୍ତରରେ (ମୃତ୍ୟୁ ପରେ) ତତ୍ତତ୍ କର୍ମଜନ୍ୟ ନିର୍ଦ୍ଦିଷ୍ଟ ଫଳମାନଙ୍କ

କ୍ରିୟାଦକ୍ଷୋ ଦକ୍ଷଃ କ୍ରତୁପତିରଧୀଶସ୍ତନୁଭୃତା-
ମୃଷୀଣାମାର୍ତ୍ତ୍ୱିଜ୍ୟଂ ଶରଣଦ ସଦସ୍ୟାଃ ସୁରଗଣାଃ ।
କ୍ରତୁଭ୍ରଂଶସ୍ତ୍ୱତ୍ତଃ କ୍ରତୁଷୁ ଫଳଦାନବ୍ୟସନିନୋ
ଧ୍ରୁବଂ କର୍ତୁଃ ଶ୍ରଦ୍ଧାବିଧୁରମଭିଚାରାୟ ହି ମଖାଃ ॥୨୧॥
ପ୍ରଜାନାଥଂ ନାଥ ପ୍ରସଭମଭିକଂ ସ୍ୱାଂ ଦୁହିତରଂ
ଗତଂ ରୋହିଭୂତାଂ ରିରମୟିଷୁମୃଷ୍ୟସ୍ୟ ବପୁଷା ।
ଧନୁଷ୍ପାଣେର୍ଯାତଂ ଦିବମପି ସପତ୍ରାକୃତମମୁଂ
ତ୍ରସନ୍ତଂ ତେଽଦ୍ୟାପି ତ୍ୟଜତି ନ ମୃଗବ୍ୟାଧରଭସଃ ॥୨୨॥

---

ସହିତ କର୍ତ୍ତାର ସମ୍ବନ୍ଧ ସ୍ଥାପନ କରିବା ନିମିତ୍ତ ହେ ଶଙ୍କର ! ତୁମେ ହିଁ ଜାଗ୍ରତ ରହି ସଂଯୋଜକ ଭାବରେ ସେହି ସମ୍ବନ୍ଧ ସ୍ଥାପନ କରିଥାଅ । ଏଣୁ ଏହା ଚେତନ ପରମାତ୍ମା ସ୍ୱରୂପ ତୁମର ଆରାଧନା ବିନା ଅସମ୍ଭବ । ଏହା ଜାଣି ଯାଗାଦି କର୍ମର ଅଲୌକିକ ଫଳ ସ୍ୱର୍ଗାଦି ପ୍ରାପ୍ତି ନିମିତ୍ତ ତୁମ ଉପରେ ଭରସା ରଖି ସେ ସମସ୍ତ ଅନୁଷ୍ଠାନରେ ଲୋକମାନେ ଦୃଢ ବିଶ୍ୱାସ ସହିତ ପ୍ରବୃତ୍ତ ହୁଅନ୍ତି ।

**୨୧. କ୍ରିୟାଦକ୍ଷୋ ଦକ୍ଷଃ :-** ହେ ଶରଣପ୍ରଦାତା ମହେଶ୍ୱର ! ଯାଗାଦି କ୍ରିୟାଗୁଡ଼ିକର ଅନୁଷ୍ଠାନରେ ସୁତରାଂ ଦକ୍ଷ (ଯୋଗ୍ୟ), ସମସ୍ତ ପ୍ରଜାମାନଙ୍କର ସ୍ୱାମୀ ଦକ୍ଷପ୍ରଜାପତି ସ୍ୱୟଂ ଯଜ୍ଞକର୍ତ୍ତା ଯଜମାନ ଥିଲେ । ତ୍ରିକାଳଦର୍ଶୀ ଭୃଗୁ ଇତ୍ୟାଦି ପ୍ରମୁଖ ଋଷିମାନେ ସେହି ଯଜ୍ଞାନୁଷ୍ଠାନରେ ପୁରୋହିତ ରୂପରେ, ବ୍ରହ୍ମାଦି ସମସ୍ତ ଦେବତାଗଣ ତାଙ୍କର ତତ୍ତ୍ୱାବଧାରକ ତଥା ପର୍ଯ୍ୟବେକ୍ଷକ ଭାବରେ ଥାଇ ମଧ୍ୟ ଦକ୍ଷଯଜ୍ଞ ବିଧ୍ୱଂସ ହୋଇ ଯାଇଥିଲା । ଯାହାର ଏକମାତ୍ର କାରଣ ଯଜ୍ଞକର୍ତ୍ତା ଅହଙ୍କାରୀ ଯଜମାନ ଦକ୍ଷପ୍ରଜାପତିଙ୍କର ଆପଣଙ୍କଠାରେ ଶ୍ରଦ୍ଧାର ଅଭାବ । ଏଣୁ ଶ୍ରଦ୍ଧା ବିରହିତ ଓ ତମୋଭାବାପନ୍ନ ହୋଇ ଯାଗାଦି କର୍ମର କର୍ତ୍ତା ନିଃସନ୍ଦିଗ୍ଧ ଭାବରେ ନିଜର ବିନାଶକୁ ହିଁ ପ୍ରାପ୍ତ ହୋଇଥାଏ ।

**୨୨. ପ୍ରଜାନାଥଂ ନାଥ :-** ହେ ଅନାଥଜନଙ୍କର ନାଥ ! ହେ ପ୍ରଭୁ ! ପ୍ରଜାପିତା ବ୍ରହ୍ମା କାମାତୁର ହୋଇ ଯେତେବେଳେ ନିଜର କନ୍ୟା ସନ୍ଧ୍ୟାକୁ ରମଣ କରିବା ଇଚ୍ଛାରେ ତାଙ୍କ ଆଡ଼କୁ ଦୌଡ଼ୁଥିଲେ, ସେତେବେଳେ ସନ୍ଧ୍ୟା ଆତ୍ମରକ୍ଷା

ସ୍ୱଲାବଣ୍ୟାଶଂସା ଧୃତଧନୁଷମହ୍ନାୟ ତୃଣବତ୍
ପୁରଃ ପ୍ଲୁଷ୍ଟଂ ଦୃଷ୍ଟ୍ୱା ପୁରମଥନ ପୁଷ୍ପାୟୁଧମପି ।
ଯଦି ସ୍ତ୍ରୈଣଂ ଦେବୀ ଯମନିରତଦେହାର୍ଦ୍ଧଘଟନା-
ଦବୈତି ତ୍ୱାମଦ୍ଧା ବତ ବରଦ ମୁଗ୍ଧା ଯୁବତୟଃ ॥୨୩॥
ଶ୍ମଶାନେଷ୍ୱାକ୍ରୀଡ଼ା ସ୍ମରହର ପିଶାଚାଃ ସହଚରା-
ଶ୍ଚିତାଭସ୍ମାଲେପଃ ସ୍ରଗପି ନୃକରୋଟୀପରିକରଃ ।
ଅମଙ୍ଗଲ୍ୟଂ ଶୀଳଂ ତବ ଭବତୁ ନାମୈବମଖିଳଂ
ତଥାପି ସ୍ମର୍ତ୍ତୃଣାଂ ବରଦ ପରମଂ ମଙ୍ଗଳମସି ॥୨୪॥

---

ନିମିତ୍ତ ମୃଗୁଣୀର ରୂପ ଧାରଣ କରନ୍ତେ ବ୍ରହ୍ମା ପୁଣି ମୃଗରୂପ ଧାରଣ କରି ପଶ୍ଚାଦ୍ଧାବନ କଲାରୁ ଆପଣ ଜଣେ ଦକ୍ଷ ଶିକାରୀ ଭଳି ହାତରେ ଧନୁଶର ଧରି ସେହି ମୃଗରୂପଧାରୀ ବ୍ରହ୍ମାଙ୍କୁ ଅନୁସରଣ କଲେ । ଆପଣଙ୍କ ଭୟରେ ସେ ଆଜି ପର୍ଯ୍ୟନ୍ତ ଆକାଶରେ ମୃଗଶିରା ନାମକ ନକ୍ଷତ୍ର ରୂପରେ ବିରାଜମାନ କରିଅଛନ୍ତି ଏବଂ ଆଜି ବି ଆପଣଙ୍କ ବାଣ ଆଦ୍ରା ନକ୍ଷତ୍ର ରୂପରେ ତାହାଙ୍କର (ମୃଗରୂପଧାରୀ ବ୍ରହ୍ମାଙ୍କର) ପଶ୍ଚାଦ୍ଧାବନ କରୁଅଛି ।

**୨୩. ସ୍ୱଲାବଣ୍ୟାଶଂସା :-** ହେ ପୁରମନ୍ଥନ ତ୍ରିପୁରାରି ! ହେ ଯମନିୟମାଦି ଯୋଗରେ ନିମଗ୍ନ ପରମଯୋଗୀ ମହେଶ୍ୱର ! ପାର୍ବତୀଙ୍କ ଅତିଶୟ ସୌନ୍ଦର୍ଯ୍ୟଦ୍ୱାରା ଆପଣଙ୍କୁ ଆକୃଷ୍ଟ କରିବାର ଯେଉଁ ପୁଷ୍ପଧନ୍ୱା କାମଦେବଙ୍କ ଦୁର୍ବାର ପ୍ରଚେଷ୍ଟା ଏବଂ ଯାହାର ପରିଣାମ ସ୍ୱରୂପ ତାଙ୍କୁ ଶୁଷ୍କ ତୃଣ ଭଳି ଆଗରେ ଜଳିଯିବାର ଦେଖି ଅଥଚ ଶିବଙ୍କ ବାମାର୍ଦ୍ଧରେ ସାକ୍ଷାତ୍ ଉମାଙ୍କ ବିଦ୍ୟମାନ କାରଣରୁ ଯଦି ପାର୍ବତୀ ଆପଣଙ୍କୁ ସ୍ତ୍ରୀ ଲମ୍ପଟ ବୋଲି ବୁଝିଥାଆନ୍ତି ତାହାଲେ ହେ ବରଦ ! ଏହା କହିବା ବାହୁଲ୍ୟ ହେବ ନାହିଁ ଯେ ସ୍ତ୍ରୀମାନେ ସ୍ୱଭାବତଃ ଅବୁଝା ଅଟନ୍ତି ।

**୨୪. ଶ୍ମଶାନେଷ୍ୱାକ୍ରୀଡା :-** ହେ ସ୍ମରହର (କାମଦେବଙ୍କ ପ୍ରାଣକୁ ହରଣ କରିଥିବା ଶଙ୍କର) ! ଶ୍ମଶାନରେ ଭୂତପ୍ରେତଙ୍କ ସାଥୀରେ କ୍ରୀଡାରତ, ଚିତାଗ୍ନିଦଗ୍ଧଶବର ଭସ୍ମ ଆଭୂଷଣ, ଶବ କପାଳରେ ଗୁମ୍ଫିତ ଗଳାର ମାଳା, ଗଜଚର୍ମାଦି ଆବରଣ ବସନ - ଏହିପରି ଆପଣଙ୍କ ସମଗ୍ର ଶରୀରର ଆଭୂଷଣମାନ

ମନଃ ପ୍ରତ୍ୟକ୍ ଚିତ୍ତେ ସବିଧମଭିଧାୟାତ୍ତମରୁତଃ

ପ୍ରହୃଷ୍ୟଦ୍ରୋମାଣଃ ପ୍ରମଦସଲିଳୋତ୍ସଙ୍ଗିତଦୃଶଃ ।

ଯଦାଲୋକ୍ୟାହ୍ଲାଦଂ ହ୍ରଦ ଇବ ନିମଜ୍ଜ୍ୟାମୃତମୟେ

ଦଧତ୍ୟନ୍ତସ୍ତତ୍ତ୍ୱଂ କିମପି ଯମିନସ୍ତତ୍ କିଲ ଭବାନ୍ ॥୨୫॥

ତ୍ୱମର୍କସ୍ତ୍ୱଂ ସୋମସ୍ତ୍ୱମସି ପବନସ୍ତ୍ୱଂ ହୁତବହ-

ସ୍ତ୍ୱମାପସ୍ତ୍ୱଂ ବ୍ୟୋମ ତ୍ୱମୁ ଧରଣିରାତ୍ମା ତ୍ୱମିତି ଚ ।

ପରିଚ୍ଛିନ୍ନାମେବଂ ତ୍ୱୟି ପରିଣତା ବିଭ୍ରତି ଗିରଂ

ନ ବିଦ୍ମସ୍ତତ୍ତତ୍ତ୍ୱଂ ବୟମିହ ତୁ ଯତ୍ ତ୍ୱଂ ନ ଭବସି ॥୨୬॥

---

ତଥା ପରିବେଶ ମଧ୍ୟ ଅମଙ୍ଗଳ ଜନକ ହୋଇଥିଲେ ବି ହେ ବରଦ ! ହେ ବାଞ୍ଛିତ ଫଳପ୍ରଦାତା ମହେଶ୍ୱର ! ସ୍ମରଣମାତ୍ରକେ ଭକ୍ତକୁ ଆପଣ ସର୍ବୋତ୍କୃଷ୍ଟ ମଙ୍ଗଳ ପ୍ରଦାନ କରନ୍ତି ।

**୨୫. ମନଃ ପ୍ରତ୍ୟକ୍ ଚିତ୍ତେ :-** ଶାସ୍ତ୍ରସମ୍ମତ ପ୍ରାଣାୟାମଦ୍ୱାରା ପ୍ରାଣ (ବାୟୁ)ର ଗତିକୁ ଆୟତ୍ତରେ ରଖି, ମନୋବୃତ୍ତିକୁ ଅନ୍ତରାତ୍ମାରେ ସମାହିତ କରି, ଅନ୍ୟାନ୍ୟ ଉପାୟରେ ସଚ୍ଚିଦାନନ୍ଦସ୍ୱରୂପର ଆଭାସ ପାଇ, ରୋମାଞ୍ଚିତ ଦେହରେ ଆନନ୍ଦାଶ୍ରୁ ପ୍ଲାବିତ ନେତ୍ରରେ ତଥା ଆନନ୍ଦାମୃତପୂର୍ଣ୍ଣ ସରୋବରରେ ନିମଗ୍ନ ହେବା ସହିତ ଅନ୍ତର୍ନିହିତ ସୁଖାସ୍ୱାଦନ ପୂର୍ବକ ଶ୍ରୁତି ପ୍ରସିଦ୍ଧ ଯେଉଁ ଅନୁଭବଗମ୍ୟ ବ୍ରହ୍ମାନନ୍ଦତତ୍ତ୍ୱ ତାହା କେବଳ ଆପଣ ହିଁ ଅଟନ୍ତି ।

**୨୬. ତ୍ୱମର୍କସ୍ତ୍ୱଂ ସୋମଃ :-** ହେ ସର୍ବବ୍ୟାପକ ମହାଦେବ ! ସୂର୍ଯ୍ୟ, ଚନ୍ଦ୍ର, ବାୟୁ, ଅଗ୍ନି, ଜଳ, ଆକାଶ, ପୃଥିବୀ ଏବଂ ଆତ୍ମା ଏହିପରି ଅଷ୍ଟଧା ମୂର୍ତ୍ତିରେ ତୁମକୁ ସୀମିତ ରଖି ବିଦ୍ୱାନ୍‌ମାନେ ଯେଉଁଭଳି ବର୍ଣ୍ଣନା କରନ୍ତୁ ପଛକେ ଆମେ କିନ୍ତୁ ଜାଣିଛୁ ଯେ ସମଗ୍ର ସଂସାରରେ ଏଭଳି କୌଣସି ବସ୍ତୁ ନାହିଁ, ଯାହାକି ଆପଣଙ୍କ ଅଗୋଚର ଏବଂ ଏପରି କୌଣସି ସ୍ଥାନ ନାହିଁ ଯେଉଁଠାରେ ଆପଣଙ୍କର ଅବିଦ୍ୟମାନତା ଥିବ ।

ତ୍ରୟୀଂ ତିସ୍ରୋ ବୃତ୍ତୀସ୍ତ୍ରିଭୁବନମଥୋ ତ୍ରୀନପି ସୁରା-
ନକାରାଦ୍ୟୈର୍ବର୍ଣ୍ଣୈସ୍ତ୍ରିଭିରଭିଦଧତ୍ତୀର୍ଣ୍ଣବିକୃତି ।
ତୁରୀୟଂ ତେ ଧାମ ଧ୍ୱନିଭିରବରୁନ୍ଧାନମଣୁଭିଃ
ସମସ୍ତଂ ବ୍ୟସ୍ତଂ ତ୍ୱାଂ ଶରଣଦ ଗୃଣାତ୍ୟୋମିତି ପଦମ୍ ॥୨୭॥
ଭବଃ ଶର୍ବୋ ରୁଦ୍ରଃ ପଶୁପତିରଥୋଗ୍ରଃ ସହ ମହାଂ-
ସ୍ତଥା ଭୀମେଶାନାବିତି ଯଦଭିଧାନାଷ୍ଟକମିଦମ୍ ।
ଅମୁଷ୍ମିନ୍ ପ୍ରତ୍ୟେକଂ ପ୍ରବିଚରତି ଦେବ ଶ୍ରୁତିରପି
ପ୍ରିୟାୟାସ୍ମୈ ଧାମ୍ନେ ପ୍ରଣିହିତନମସ୍ୟୋଽସ୍ମି ଭବତେ ॥୨୮॥

---

**୨୭. ତ୍ରୟୀଂ ତିସ୍ରୋ ବୃତ୍ତୀଃ :-** ହେ ଶରଣଦ ! ହେ ଅଭୟ ଶରଣ ପ୍ରଦାତା! ଅକାର, ଉକାର ଓ ମକାର ଏହି ତିନିଗୋଟି ବର୍ଣ୍ଣଦ୍ୱାରା ସୃଷ୍ଟ 'ଓଁ' ପ୍ରଣବପଦବାଚ୍ୟ । ଏହି ପ୍ରଣବ ରୂପକ ପଦରେ ଋକ୍-ସାମ-ଯଜୁଃ ତିନିଗୋଟି ବେଦ ଜାଗ୍ରତ୍-ସ୍ୱପ୍ନ ସୁଷୁପ୍ତି ତିନିଗୋଟି ଅବସ୍ଥା, ସୃଷ୍ଟି-ସ୍ଥିତି-ଲୟ ସଂସାରର ତିନି ପ୍ରକାର ସ୍ୱରୂପ, ଭୂଲୋକ-ଭୁବଲୋକ-ସ୍ୱର୍ଗଲୋକ ଏହି ତିନିଗୋଟି ଲୋକ, ବ୍ରହ୍ମା-ବିଷ୍ଣୁ-ରୁଦ୍ର ଏହି ତିନିଜଣ ଦେବତା - ଏ ସମସ୍ତ ଅନ୍ତର୍ଗତ । ଏଣୁ ଅବିଭକ୍ତ ରୂପରେ ସମସ୍ତ ବିକାର ରହିତ ଯେଉଁ 'ଓଁ'କାର ତାହା ଆପଣଙ୍କ ତୁରୀୟ ବା ତ୍ରିତ୍ୱାତୀତ ଚତୁର୍ଥରୂପ ଯାହାକି ତତ୍ତ୍ୱଜ୍ଞାନୀଙ୍କ ମତରେ ସୂକ୍ଷ୍ମ ଅର୍ଦ୍ଧମାତ୍ରାରୂପ ଧ୍ୱନିତତ୍ତ୍ୱ ଓ ଲକ୍ଷଣା ଶକ୍ତିଦ୍ୱାରା ସମସ୍ତ ଓ ବ୍ୟସ୍ତ ରୂପରେ କେବଳ ତୁମକୁ ହିଁ ବୁଝାଇଥାଏ ।

**୨୮. ଭବଃ ଶର୍ବୋ ରୁଦ୍ରଃ :-** ହେ ଦେବ ! ହେ ଦିବ୍ୟରୂପଧାରୀ ଭଗବନ୍! ଆପଣ (ଭବ) ଏ ଜଗତର ସୃଷ୍ଟିକର୍ତ୍ତା, (ଶର୍ବ) ସଂହାରକର୍ତ୍ତା, (ରୁଦ୍ର) ଦୁଷ୍ଟ ଓ ପାପୀମାନଙ୍କ ପାଇଁ ରୋଦନର କାରଣ, (ପଶୁପତି) ସମସ୍ତ ପ୍ରାଣୀମାନଙ୍କର ସ୍ୱାମୀ, (ଉଗ୍ର) ଅଜ୍ଞାନାଦି ଦୋଷସମୂହକୁ ନାଶ କରିବାରେ ପ୍ରଚଣ୍ଡ, (ସହ ମହାନ୍) ଦେବାଧିଦେବ ମହାଦେବ, (ଭୀମ) ପାପୀମାନଙ୍କ ପାଇଁ ଭୟଙ୍କର, (ଈଶାନ) ଅପରାଧୀମାନଙ୍କ ପାଇଁ କଠୋର ଶାସକ - ଏହିପରି ଆପଣଙ୍କ ଯେଉଁ ଆଠଗୋଟି ବିଶେଷ ନାମ ତାହା ମୋକ୍ଷପ୍ରାପ୍ତିକାରକ ବୋଲି ବେଦାଦି ଶାସ୍ତ୍ରସମୂହ ତଥା ନାରଦାଦି ଦିବ୍ୟ ଋଷିମାନେ ପ୍ରତିପାଦନ କରିଅଛନ୍ତି । ଏଣୁ ଏହି ପ୍ରିୟ ରୂପରେ ସର୍ବତ୍ର ବିଦ୍ୟମାନ ଜ୍ୟୋତିଃସ୍ୱରୂପ ଶଙ୍କରଙ୍କୁ କାୟମନୋବାକ୍ୟରେ ବାରମ୍ବାର ନମସ୍କାର କରୁଅଛି ।

ନମୋ ନେଦିଷ୍ଠାୟ ପ୍ରିୟଦବ ଦବିଷ୍ଠାୟ ଚ ନମୋ-
ନମଃ କ୍ଷୋଦିଷ୍ଠାୟ ସ୍ମରହର ମହିଷ୍ଠାୟ ଚ ନମଃ ।
ନମୋ ବର୍ଷିଷ୍ଠାୟ ତ୍ରିନୟନ ଯବିଷ୍ଠାୟ ଚ ନମଃ
ନମଃ ସର୍ବସ୍ମୈ ତେ ତଦିଦମିତି ଶର୍ବାୟ ଚ ନମଃ ॥୨୯॥
ବହଳରଜସେ ବିଶ୍ୱୋତ୍ପତ୍ତୌ ଭବାୟ ନମୋ ନମଃ
ପ୍ରବଳତମସେ ତତ୍ସଂହାରେ ହରାୟ ନମୋ ନମଃ ।
ଜନସୁଖକୃତେ ସତ୍ତ୍ୱୋଦ୍ରିକ୍ତୌ ମୃଡ଼ାୟ ନମୋ ନମଃ
ପ୍ରମହସି ପଦେ ନିସ୍ତ୍ରୈଗୁଣ୍ୟେ ଶିବାୟ ନମୋ ନମଃ ॥୩୦॥

---

**୨୯. ନମୋ ନେଦିଷ୍ଠାୟ :-** ହେ ପ୍ରିୟଦେବ ! ହେ ନିର୍ଜନପ୍ରିୟ ଭଗବାନ୍ ଶିବ! ଆପଣ ଅତ୍ୟନ୍ତ ସମୀପବର୍ତ୍ତୀ ପୁଣି ଅତ୍ୟନ୍ତ ଦୂରବର୍ତ୍ତୀ ମଧ୍ୟ (ଜ୍ଞାନୀ ଓ ଭକ୍ତଙ୍କ ପାଇଁ ସମୀପବର୍ତ୍ତୀ, ମାତ୍ର ଅଜ୍ଞାନୀ ଓ ନାସ୍ତିକଙ୍କ ପାଇଁ ଦୂରବର୍ତ୍ତୀ) ଆପଣଙ୍କୁ ବାରମ୍ବାର ନମସ୍କାର । ହେ ସ୍ମରହର ! (କାମଦେବ ବିନାଶକ !) ଆପଣ ସୂକ୍ଷ୍ମାତିସୂକ୍ଷ୍ମ ପୁଣି ମହାନ୍‌ରୁ ମଧ୍ୟ ଅତିଶୟ ମହାନ୍ । ଏପରି ସ୍ୱରୂପଧାରୀ ଆପଣଙ୍କୁ ପୁନଃ ପୁନଃ ପ୍ରଣାମ । ହେ ତ୍ରିନୟନ ! (ସୂର୍ଯ୍ୟ-ଚନ୍ଦ୍ର-ବହ୍ନିରୂପକ ତ୍ରିନେତ୍ରଧାରୀ ଭଗବାନ୍ ଶିବ !) ଆପଣ ବୟସ୍କଙ୍କ ଭିତରେ ଅତିବୃଦ୍ଧ, ପୁଣି ତରୁଣମାନଙ୍କ ମଧ୍ୟରେ ଅତିତରୁଣ, ଏଣୁ ଆପଣଙ୍କୁ ବାରମ୍ବାର ନମସ୍କାର । ଆପଣ ସର୍ବାତ୍ମ ରୂପରେ ସର୍ବତ୍ର ବ୍ୟାପ୍ତ, ଏଣୁ ଆପଣଙ୍କୁ ନମସ୍କାର । ଆପଣ ପରୋକ୍ଷ ଓ ଅପରୋକ୍ଷ ମଧ୍ୟ ଏହିପରି ଆପଣ ଅନିର୍ବଚନୀୟ, ସମ୍ପୂର୍ଣ୍ଣ ପ୍ରପଞ୍ଚାଧିଷ୍ଠାନ ଆପଣଙ୍କୁ ନମସ୍କାର । ଅଥବା ପରୋକ୍ଷ-ଅପରୋକ୍ଷ ଭାବରେ ସମ୍ପୂର୍ଣ୍ଣ ପ୍ରପଞ୍ଚର ଊର୍ଦ୍ଧ୍ୱରେ ଅସଙ୍ଗ ନିର୍ବିକାର ସ୍ୱରୂପରେ ଆପଣଙ୍କୁ ଆମର ଅନେକାନେକ ନମସ୍କାର ।

**୩୦. ବହଳରଜସେ :-** ଚରାଚର ଜଗତର ଉତ୍ପତ୍ତି ନିମିତ୍ତ ରଜୋଗୁଣ ପ୍ରଧାନ 'ଭବ' ଅର୍ଥାତ୍ ବ୍ରହ୍ମାସ୍ୱରୂପ, ଆପଣଙ୍କୁ ନମସ୍କାର । ସମସ୍ତ ପ୍ରାଣୀମାନଙ୍କୁ ସୁଖ ପ୍ରଦାନ ଲାଗି ସତ୍ତ୍ୱଗୁଣପ୍ରଧାନ 'ମୃଡ' ଅର୍ଥାତ୍ ବିଷ୍ଣୁସ୍ୱରୂପ ଆପଣଙ୍କୁ ପ୍ରଣାମ । ପୁଣି ତମୋଗୁଣ ପ୍ରଧାନ 'ହର' ଅର୍ଥାତ୍ ଆପଣଙ୍କ ଜଗତ୍ ସଂହାରକ ରୂପକୁ ଅନେକାନେକ ପ୍ରଣାମ । ଆପଣ ନିସ୍ତ୍ରୈଗୁଣ୍ୟ ଅର୍ଥାତ୍ ଗୁଣତ୍ରୟାତୀତ, ଅବିଦ୍ୟାର ଲେଶମାତ୍ର ସତ୍ତା ମଧ୍ୟ ଯାହାଙ୍କ ପାଖରେ ନ ଥାଏ, ସେହିଭଳି ନିତ୍ୟମୁକ୍ତ ସ୍ୱରୂପଧାରୀ ଭଗବାନ୍ ଶିବଙ୍କୁ ବାରମ୍ବାର ନମସ୍କାର ।

କୃଶପରିଣତିଚେତଃ କ୍ଲେଶବଶ୍ୟଂ କ୍ୱ ଚେଦଂ
କ୍ୱ ଚ ତବ ଗୁଣସୀମୋଲ୍ଲଙ୍ଘିନୀ ଶଶ୍ୱଦୃଦ୍ଧିଃ ।
ଇତି ଚକିତମମନ୍ଦୀକୃତ୍ୟ ମାଂ ଭକ୍ତିରାଧାଦ୍-
ବରଦ ଚରଣୟୋସ୍ତେ ବାକ୍ୟପୁଷ୍ପୋପହାରମ୍ ॥୩୧॥
ଅସିତଗିରିସମଂ ସ୍ୟାତ୍ କଜ୍ଜଳଂ ସିନ୍ଧୁପାତ୍ରେ
ସୁରତରୁବରଶାଖା ଲେଖନୀ ପତ୍ରମୁର୍ବୀ ।
ଲିଖତି ଯଦି ଗୃହୀତ୍ୱା ଶାରଦା ସର୍ବକାଳଂ
ତଦପି ତବ ଗୁଣାନାମୀଶ ପାରଂ ନ ଯାତି ॥୩୨॥
ଅସୁରସୁରମୁନୀନ୍ଦ୍ରୈରର୍ଚ୍ଚିତସ୍ୟେନ୍ଦୁମୌଳେ-
ର୍ଗ୍ରଥିତଗୁଣମହିମ୍ନୋ ନିର୍ଗୁଣସ୍ୟେଶ୍ୱରସ୍ୟ ।

---

**୩୧. କୃଶପରିଣତି :-** ହେ ବରଦ **!** (ଭକ୍ତଙ୍କ ମନୋବାଞ୍ଛିତ ବରପ୍ରଦାତା ଶିବ**!**) ଅତି ଅଳ୍ପଜ୍ଞ, ଶକ୍ତିହୀନ, ଅବିଦ୍ୟା-ଅସ୍ମିତାଦି ପଞ୍ଚ କ୍ଲେଶର ଅଧୀନ ମୋର ଏହି ଚିତ୍ତ (ମନ) ପକ୍ଷରେ ସମସ୍ତ ଗୁଣମାନଙ୍କର ସୀମାକୁ ଅତିକ୍ରମଣ କରିଥିବା ନିଃସୀମ ଆପଣଙ୍କ ମହିମା ଏକାନ୍ତ କଳ୍ପନାତୀତ । ଏଣୁ ଏ ଅକିଞ୍ଚନ ଭୀତତ୍ରସ୍ତ ହୋଇ ମଧ୍ୟ ଆପଣଙ୍କ ପ୍ରତି ମୋର ଅନନ୍ୟଭକ୍ତି ମୋତେ ଏହି ସ୍ତୋତ୍ର ବାକ୍ୟରୂପକ 'ମହିମ୍ନସ୍ତୋତ୍ର' ପ୍ରଣୟନ କରିବା ପାଇଁ ପ୍ରୋତ୍ସାହିତ କଲା ଯାହାକୁ ମୁଁ ଆପଣଙ୍କ ଚରଣକମଳରେ ବାକ୍ୟପୁଷ୍ପାଞ୍ଜଳି ସ୍ୱରୂପ ସମର୍ପଣ କଲି ।

**୩୨. ଅସିତଗିରି :-** ହେ ଈଶ **!** (ହେ ସର୍ବନିୟାମକ ମହେଶ୍ୱର **!**) ଯଦି ସମୁଦ୍ରଭଳି କାଳିର ପାତ୍ରରେ (ଆଧାରରେ) ନୀଳଗିରି ସମାନ ପରିମାଣର କାଳି, କଳ୍ପବୃକ୍ଷର ଶାଖା ଲେଖନୀ, ସମଗ୍ର ପୃଥିବୀ କାଗଜ ଏବଂ ଏ ସମସ୍ତ ଉପାଦାନକୁ ନେଇ ଯଦି ସାକ୍ଷାତ୍ ଭଗବତୀ ସରସ୍ୱତୀ ସର୍ବଦା ନିରବଚ୍ଛିନ୍ନ ଭାବରେ ଲେଖିବସିବେ ତଥାପି ଆପଣଙ୍କ ଦିବ୍ୟ ଅନନ୍ତ ଗୁଣାବଳୀକୁ ଶେଷ ସୀମାରେ ପହଞ୍ଚାଇ ପାରିବେ ନାହିଁ ।

**୩୩. ଅସୁରସୁର :-** ଦେବ ଦାନବ ତଥା ଶ୍ରେଷ୍ଠ ମୁନିଋଷିଙ୍କଦ୍ୱାରା ପୂଜିତ, ଶାସ୍ତ୍ର ପ୍ରତିପାଦିତ ଗୁଣାବଳୀର ମହିମାରେ ମହିମାନ୍ୱିତ ଅଥଚ ନିର୍ଗୁଣ ସ୍ୱରୂପ ଭଗବାନ୍

ସକଳଗୁଣବରିଷ୍ଠଃ ପୁଷ୍ପଦନ୍ତାଭିଧାନୋ

ରୁଚିରମଲଘୁବୃତ୍ତୈଃ ସ୍ତୋତ୍ରମେତଚ୍ଚକାର ॥୩୩॥

ଅହରହରନବଦ୍ୟଂ ଧୂର୍ଜଟେଃ ସ୍ତୋତ୍ରମେତତ୍

ପଠତି ପରମଭକ୍ତ୍ୟା ଶୁଦ୍ଧଚିତ୍ତଃ ପୁମାନ୍ ଯଃ ।

ସ ଭବତି ଶିବଲୋକେ ରୁଦ୍ରତୁଲ୍ୟସ୍ତଥାଽତ୍ର

ପ୍ରଚୁରତରଧନାୟୁଃ ପୁତ୍ରବାନ୍ କୀର୍ତ୍ତିମାଂଶ୍ଚ ॥୩୪॥

କୁସୁମଦଶନନାମା ସର୍ବଗନ୍ଧର୍ବରାଜଃ

ଶିଶୁଶଶିଧରମୌଳେର୍ଦେବଦେବସ୍ୟ ଦାସଃ ।

ସ ଖଲୁନିଜମିହମ୍ନୋ ଭ୍ରଷ୍ଟ ଏବାସ୍ୟ ରୋଷାତ୍

ସ୍ତବନମିଦମକାର୍ଷୀଦ୍ଦିବ୍ୟଦିବ୍ୟଂ ମହିମ୍ନଃ ॥୩୫॥

---

ଚନ୍ଦ୍ରଶେଖରଙ୍କ ଏହି ମନୋହାରି 'ଶିବମହିମ୍ନସ୍ତୋତ୍ର' ରୂପକ ଗ୍ରନ୍ଥକୁ ପୁଷ୍ପଦନ୍ତ ନାମକ ସମସ୍ତ ଗନ୍ଧର୍ବଗଣଙ୍କ ରାଜା ଅଲଘୁ ବୃତ୍ତରେ ଅର୍ଥାତ୍ ଶିଖରିଣୀ ଆଦି ବୃହତ୍ ଛନ୍ଦରେ ରଚନା କରିଅଛନ୍ତି ।

**୩୪. ଅହରହରନବଦ୍ୟଂ :-** ଯେଉଁ ମନୁଷ୍ୟ ଶୁଦ୍ଧାନ୍ତଃକରଣରେ ଗଭୀର ଭକ୍ତି ଓ ଶ୍ରଦ୍ଧା ସହିତ ଜଟାଧାରୀ ଶଙ୍କରଙ୍କ ଏହି ଅନିନ୍ଦ୍ୟ ପବିତ୍ର ସ୍ତୋତ୍ରକୁ ପ୍ରତିଦିନ ପାଠ କରନ୍ତି, ସେ ଏହି ମନୁଷ୍ୟଲୋକରେ ପ୍ରଚୁର ଆୟୁ ଓ ଧନଧାନ୍ୟାଦିରେ ଯୁକ୍ତ ହେବା ସହିତ ପୁତ୍ରପୌତ୍ରାଦି ସମ୍ପନ୍ନ ଓ ଯଶସ୍ୱୀ ହୁଅନ୍ତି ତଥା ମୃତ୍ୟୁ ପରେ ମଧ ଶିବଲୋକ କୈଳାସଧାମରେ ଶିବ ସଦୃଶ ସମସ୍ତ ମହିମାନ୍ୱିତ ହୁଅନ୍ତି ଅର୍ଥାତ୍ ସାରୂପ୍ୟ ମୁକ୍ତିଲାଭ କରନ୍ତି ।

**୩୫. କୁସୁମଦଶନନାମା :-** ଜଟାଜୁଟରେ ବାଳଚନ୍ଦ୍ରମାଙ୍କୁ ଧାରଣ କରିଥିବା ଯେଉଁ ଦେବାଧିଦେବ ମହାଦେବଙ୍କ ଦାସ ପୁଷ୍ପଦନ୍ତ ନାମଧାରୀ ସମସ୍ତ ଗନ୍ଧର୍ବଗଣଙ୍କ ରାଜା, ଶିବଙ୍କ କୋପ ହେତୁ ନିଜ ମହିମାରୁ ବିଚ୍ୟୁତ ହୋଇ ଶିବଙ୍କୁ ପ୍ରସନ୍ନ କରିବା ପାଇଁ ଶିବଙ୍କ ଦିବ୍ୟାତିଦିବ୍ୟ ଏହି ମହିମ୍ନସ୍ତୋତ୍ରକୁ ରଚନା କରିଅଛନ୍ତି ।

ସୁରବରମୁନିପୂଜ୍ୟଂ ସ୍ୱର୍ଗମୋକ୍ଷୈକହେତୁଂ

ପଠତି ଯଦି ମନୁଷ୍ୟଃ ପ୍ରାଞ୍ଜଳିର୍ନାନ୍ୟଚେତାଃ ।

ବ୍ରଜତି ଶିବସମୀପଂ କିନ୍ନରୈଃ ସ୍ତୂୟମାନଃ

ସ୍ତବନମିଦମୋଘଂ ପୁଷ୍ପଦନ୍ତପ୍ରଣୀତମ୍ ॥୩୬॥

ଶ୍ରୀପୁଷ୍ପଦନ୍ତମୁଖପଙ୍କଜନିର୍ଗତେନ

ସ୍ତୋତ୍ରେଣ କିଲ୍ବିଷହରେଣ ହରପ୍ରିୟେଣ ।

କଣ୍ଠସ୍ଥିତେନ ପଠିତେନ ସମାହିତେନ

ସୁପ୍ରୀଣିତୋ ଭବତି ଭୂତପତିର୍ମହେଶଃ ॥୩୭॥

ଆସମାପ୍ତମିଦଂସ୍ତୋତ୍ରଂ ପୁଣ୍ୟଂ ଗନ୍ଧର୍ବଭାଷିତମ୍ ।

ଅନୌପମ୍ୟଂ ମନୋହାରି ଶିବମୀଶ୍ୱରବର୍ଣ୍ଣନମ୍ ॥୩୮॥

ମହେଶାନ୍ନାପରୋ ଦେବୋ ମିହମ୍ନୋ ନାପରା ସ୍ତୁତିଃ ।

ଅଘୋରାନ୍ନାପରୋ ମନ୍ତ୍ରୋ ନାସ୍ତି ତତ୍ତ୍ୱଂ ଗୁରୋଃ ପରମ୍ ॥୩୯॥

---

**୩୬. ସୁରବରମୁନିପୂଜ୍ୟଂ :-** ଶ୍ରେଷ୍ଠ ଦେବତା ଓ ବରିଷ୍ଠ ମୁନିମାନଙ୍କଦ୍ୱାରା ପ୍ରଶଂସିତ, ସ୍ୱର୍ଗ ଓ ମୋକ୍ଷପ୍ରାପ୍ତିର ମଧ୍ୟ ଶ୍ରେଷ୍ଠ ସାଧନ, ପୁଷ୍ପଦନ୍ତଙ୍କଦ୍ୱାରା ପ୍ରଣୀତ ଅମୋଘ ଫଳପ୍ରଦାତା ଏହି ମହିମ୍ନସ୍ତୋତ୍ରକୁ ଯଦି କେହି ମନୁଷ୍ୟ ଅନନ୍ୟମନସ୍କରେ ଅଞ୍ଜଳିବଦ୍ଧ ହୋଇ ପାଠ କରନ୍ତି, ତେବେ ସେ କିନ୍ନରଗଣଙ୍କଦ୍ୱାରା ପ୍ରଶଂସିତ ହୋଇ ଅବଶ୍ୟ ଶିବଙ୍କ ସାନ୍ନିଧ୍ୟଲାଭ କରନ୍ତି ଓ ଅନ୍ତେ ଶିବଙ୍କ ସାମୀପ୍ୟମୁକ୍ତିପ୍ରାପ୍ତ ହୁଅନ୍ତି ।

**୩୭. ଶ୍ରୀପୁଷ୍ପଦନ୍ତ :-** ଶ୍ରୀପୁଷ୍ପଦନ୍ତାଚାର୍ଯ୍ୟଙ୍କ ମୁଖପଦ୍ମରୁ ନିର୍ଗତ ଏହି ଶିବଙ୍କ ପ୍ରିୟ ଦିବ୍ୟ ମହିମ୍ନସ୍ତୋତ୍ରକୁ ଯେ ଶ୍ରଦ୍ଧାର ସହିତ ପାଠ କରନ୍ତି, ତାଙ୍କର ସମସ୍ତ ପାପ ନଷ୍ଟ ହୋଇଥାଏ । ଯେଉଁ ବ୍ୟକ୍ତି ଏହି ସ୍ତୋତ୍ରକୁ କଣ୍ଠସ୍ଥ କରି ସମାଧିସ୍ଥ ହୋଇ ଉଚ୍ଚାରଣ କରନ୍ତି ଭୂତନାଥ ମହେଶ୍ୱର ତାଙ୍କ ଉପରେ ଅତ୍ୟନ୍ତ ପ୍ରୀତ ହୁଅନ୍ତି ।

**୩୮. ଆସମାପ୍ତମିଦଂ :-** ପୁଷ୍ପଦନ୍ତ ନାମକ ଗନ୍ଧର୍ବଶ୍ରେଷ୍ଠଙ୍କ ଦ୍ୱାରା ରଚିତ ଏହି ପବିତ୍ର ଶିବମହିମ୍ନସ୍ତୋତ୍ର ସମାପ୍ତି ପର୍ଯ୍ୟନ୍ତ ଅନୁପମ ମନୋହର ତଥା କଲ୍ୟାଣମୟ ମହେଶ୍ୱରଙ୍କ ମହିମା ଓ ସ୍ୱରୂପ ବର୍ଣ୍ଣନାତ୍ମକ ଅଟେ ।

**୩୯. ମହେଶାନ୍ନାପରଃ :-** ମହେଶ୍ୱର ଶିବଙ୍କ ଭଳି ଦ୍ୱିତୀୟ ଦେବତା କେହି ନାହାଁନ୍ତି । ଶିବଙ୍କ ମହିମ୍ନସ୍ତୋତ୍ରଠାରୁ ଅଧିକ ଫଳପ୍ରଦ ଦ୍ୱିତୀୟ ସ୍ତୋତ୍ର କିଛି ନାହିଁ, ପ୍ରଣବାକ୍ଷରାତ୍ମକ ଅଘୋର (ଶିବ)ଙ୍କଠାରୁ ବଡ଼ ଅନ୍ୟ ମନ୍ତ୍ର କିଛି ନାହିଁ ଏବଂ ସଦ୍‌ଗୁରୁଙ୍କଠାରୁ ଅଧିକ ତତ୍ତ୍ୱ ଇହଲୋକରେ କେହି ନାହାଁନ୍ତି ।

ଦୀକ୍ଷାଦାନଂ ତପସ୍ତୀର୍ଥଂ ଜ୍ଞାନଂ ଯୋଗାଦିକାଃ କ୍ରିୟାଃ ।
ମହିମ୍ନସ୍ତବପାଠସ୍ୟ କଳାଂ ନାର୍ହନ୍ତି ଷୋଡ଼ଶୀମ୍ ॥୪୦॥
ଇତ୍ୟେଷା ବାଙ୍‌ମୟୀ ପୂଜା ଶ୍ରୀମଚ୍ଛଙ୍କରପାଦୟୋଃ ।
ଅର୍ପିତା ତେନ ଦେବେଶଃ ପ୍ରୀୟତାଂ ମେ ସଦାଶିବଃ ॥୪୧॥
ଏକକାଳଂ ଦ୍ୱିକାଳଂ ବା ତ୍ରିକାଳଂ ଯଃ ପଠେନ୍ ନରଃ
ସର୍ବପାପବିଶୁଦ୍ଧାତ୍ମା ଶିବଲୋକେ ମହୀୟତେ ॥୪୨॥
ଇତି ଶ୍ରୀପୁଷ୍ପଦନ୍ତାଚାର୍ଯ୍ୟବିରଚିତଶିବମହିମ୍ନଃ ସ୍ତୋତ୍ରଂ ସମ୍ପୂର୍ଣ୍ଣମ୍ !

---

**୪୦. ଦୀକ୍ଷାଦାନଂ :-** ମନ୍ତ୍ରଦୀକ୍ଷା, ଗୋଧନାଦିଦାନ, ତପସ୍ୟା, ତୀର୍ଥଯାତ୍ରା, ବ୍ୟାବହାରିକ ଓ ପାରମାର୍ଥିକ ଜ୍ଞାନାହରଣ, ଯାଗାଦି ପୁଣ୍ୟକର୍ମାନୁଷ୍ଠାନ ଏପରି ସମସ୍ତ କର୍ମ ଶିବମହିମ୍ନସ୍ତୋତ୍ର ପାଠ ଫଳର ଷୋଳ କଳାରୁ ଏକକଳା ମାତ୍ରକେ ମଧ୍ୟ ଯୋଗ୍ୟ ନୁହଁନ୍ତି ।

**୪୧. ଇତ୍ୟେଷା ବାଙ୍‌ମୟୀ :-** ଏହି ପ୍ରକାର ବାଙ୍‌ମୟ ପୂଜାକୁ ଆପଣ (ଶ୍ରୀଶଙ୍କର)ଙ୍କ ପାଦତଳେ ସମର୍ପଣ କଲି, ଯାହାଦ୍ୱାରା ହେ ଦେବଶ୍ରେଷ୍ଠ ! ଆପଣ-ମୋ ଉପରେ ପ୍ରସନ୍ନ ହୁଅନ୍ତୁ ।

**୪୨. ଏକକାଳଂ :-** ଯେଉଁ ମନୁଷ୍ୟ ଏକକାଳରେ (ସକାଳେ), ଦ୍ୱିତୀୟକାଳରେ (ମଧ୍ୟାହ୍ନରେ) ଅଥବା ତୃତୀୟକାଳରେ (ସନ୍ଧ୍ୟାରେ) ଏହାକୁ ପାଠ କରନ୍ତି, ସେ ସମସ୍ତ ପାପରୁ ମୁକ୍ତ ହୋଇ ବିଶୁଦ୍ଧ ଆତ୍ମାସ୍ୱରୂପରେ ଶିବଲୋକରେ ବିରାଜମାନ କରନ୍ତି ।

ଇତି ଶ୍ରୀପୁଷ୍ପଦନ୍ତାଚାର୍ଯ୍ୟ ବିରଚିତ ଶିବମହିମ୍ନସ୍ତୋତ୍ରର ଓଡ଼ିଆ ଭାବାନୁବାଦ ସମାପ୍ତ ।

— x —

# ରାବଣକୃତଶିବତାଣ୍ଡବସ୍ତୋତ୍ରମ୍

ଜଟାଟବୀଗଲଜ୍ଜଲପ୍ରବାହପାବିତସ୍ଥଳେ

ଗଲେଽବଲମ୍ବ୍ୟ ଲମ୍ବିତାଂ ଭୁଜଙ୍ଗତୁଙ୍ଗମାଲିକାମ୍ ।

ଡମଡ୍ ଡମଡ୍‌ଡମଡ୍‌ଡମନ୍ନିନାଦବଡ୍‌ଡମର୍ବୟଂ

ଚକାର ଚଣ୍ଡତାଣ୍ଡବଂ ତନୋତୁ ନଃ ଶିବଃ ଶିବମ୍ ॥୧॥

ଜଟାକଟାହସମ୍ଭ୍ରମଭ୍ରମନ୍ନିଲିମ୍ପନିର୍ଝରୀ-

ବିଲୋଲବୀଚିବଲ୍ଲରୀବିରାଜମାନମୂର୍ଦ୍ଧନି ।

ଧଗଦ୍ଧଗଦ୍ଧଗଜ୍ଜ୍ୱଲଲ୍ଲଲାଟପଟ୍ଟପାବକେ

କିଶୋରଚନ୍ଦ୍ରଶେଖରେ ରତିଃ ପ୍ରତିକ୍ଷଣଂ ମମ ॥୨॥

---

## ଅନୁବାଦ

**୦୧. ଜଟାଟବୀଗଲଜ୍ଜଲ :-** ଭଗବାନ୍ ଶଙ୍କରଙ୍କ ଜଟାରୁ ନିର୍ଗତ ପ୍ରବହମାନ ଗଙ୍ଗାଜଳଧାରାଦ୍ୱାରା ତାଙ୍କ ଗଳା ପବିତ୍ର ହେଉଅଛି । ଗଳାରେ ମାଳା ପରି ସର୍ପମାନ ପରିବେଷ୍ଟିତ ହୋଇ ରହିଅଛନ୍ତି । ଶଙ୍କରଙ୍କ ହାତରେ ବାଜୁଥିବା ଡ଼ମ୍ବରୂରୁ ଡମଡ୍-ଡମଡ୍-ଡମଡ୍ ଧ୍ୱନି ନିର୍ଗତ ହେଉଅଛି ଏବଂ ସେହି ଧ୍ୱନି ଅନୁସାରେ ସେ ନୃତ୍ୟରତ । ଯାହାକୁ ଆମେ ତାଣ୍ଡବ ନୃତ୍ୟ ବୋଲି ଜାଣିଥାଉ । ଏହିଭଳି ତୀବ୍ର ବେଗରେ ନୃତ୍ୟରତ ଶିବ ଆମ ସମସ୍ତଙ୍କ କଲ୍ୟାଣସାଧନ କରନ୍ତୁ ।

**୦୨. ଜଟାକଟାହ :-** ଗଭୀରୋଦର ଓ ବର୍ତ୍ତୁଳାକାର କଟାହ ଅର୍ଥାତ୍ କରେଇ ବା କଡ଼ା (ରୋଷେଇ କରିବା ପାତ୍ରବିଶେଷ)ର ଆକୃତି ଭଳି ଶିବଙ୍କ ମସ୍ତକରେ ଗଭୀର ଓ ଗୋଲାକାର ଜଟା ଶୋଭା ପାଉଅଛି । ଯେଉଁ ଜଟା-ମଧ୍ୟବର୍ତ୍ତୀ ଗଭୀର ଖାତ ଭିତରେ ପ୍ରଖର ବେଗବତୀ ଗଙ୍ଗାର ଲହରୀଗୁଡ଼ିକ ପବନରେ ଦୋଳାୟମାନ ଲତା ସଦୃଶ ପ୍ରତୀୟମାନ ହେଉଅଛନ୍ତି । ଶିବଙ୍କର ଲଲାଟସ୍ଥ ତୃତୀୟ ନେତ୍ରରୁ ନିର୍ଗତ ଲେଲିହମାନ ଅଗ୍ନିର 'ଧଗଦ୍ ଧଗଦ୍ ଧଗଦ୍' ଶବ୍ଦ ସମସ୍ତ ଦିଗକୁ ପ୍ରକମ୍ପିତ କରୁଥିବାବେଳେ ମସ୍ତକ ଉପରେ ଆଭରଣ ସ୍ୱରୂପ ବିରାଜମାନ ଦ୍ୱିତୀୟା ତିଥିର ଚନ୍ଦ୍ରମାଙ୍କ କମନୀୟ କାନ୍ତି ସର୍ବତୋଭାବରେ ସୌନ୍ଦର୍ଯ୍ୟବର୍ଦ୍ଧକ ହେଉଅଛି । ଏହିପରି ଅଲୌକିକ ଶୋଭାର ଆଧାର ଭଗବାନ୍ ଶଙ୍କରଙ୍କଠାରେ ମୋର ପ୍ରୀତି ନିରନ୍ତର ରହିଥାଉ ।

ଧରାଧରେନ୍ଦ୍ରନନ୍ଦିନୀବିଳାସବନ୍ଧୁବନ୍ଧୁର-
ସ୍ଫୁରଦ୍ଦୃଗନ୍ତସନ୍ତତିପ୍ରମୋଦମାନମାନସେ ।
କୃପାକଟାକ୍ଷଧୋରଣୀନିରୁଦ୍ଧଦୁର୍ଦ୍ଧରାପଦି
କ୍ୱଚିଦ୍ଦିଗମ୍ବରେ ମନୋ ବିନୋଦମେତୁ ବସ୍ତୁନି ॥୩॥
ଜଟାଭୁଜଙ୍ଗପିଙ୍ଗଳସ୍ଫୁରତ୍‌ଫଣାମଣିପ୍ରଭା-
କଦମ୍ବକୁଙ୍କୁମଦ୍ରବପ୍ରଲିପ୍ତଦିଗ୍‌ବଧୂମୁଖେ ।
ମଦାନ୍ଧସିନ୍ଧୁରାସୁରତ୍ୱଗୁତ୍ତରୀୟମେଦୁରେ
ମନୋ ବିନୋଦମଦ୍ଭୁତଂ ବିଭର୍ତ୍ତୁ ଭୂତଭର୍ତ୍ତରି ॥୪॥

---

**୦୩. ଧରାଧରେନ୍ଦ୍ରନନ୍ଦିନୀ :-** ଧରାଧରେନ୍ଦ୍ର ଅର୍ଥାତ୍ ପର୍ବତଶ୍ରେଷ୍ଠ ହିମାଳୟ, ତାଙ୍କ କନ୍ୟା ପାର୍ବତୀଙ୍କର ଆହ୍ଲାଦ ପ୍ରଦାୟକ ଓ କେଳିପରକ କଟାକ୍ଷାଦି ମନୋରଞ୍ଜକ କ୍ରିୟାକଳାପକୁ ଅବଲୋକନ କରି ଯାହାଙ୍କର ମନ ଅତ୍ୟନ୍ତ ବିମୋହିତ ତଥା ଯାହାଙ୍କ କୃପାଦୃଷ୍ଟିରେ ସର୍ବବିଧ ବିପତ୍ତି କ୍ଷଣମାତ୍ରକେ ଦୂର ହୋଇଯାଏ ସେହି ଦିଗମ୍ବର (ଦିଗ ହୋଇଛି ଯାହାଙ୍କ ବସନ ଅର୍ଥାତ୍ ବିବସନ) ସ୍ୱରୂପ ଭଗବାନ୍ ଶଙ୍କରଙ୍କଠାରେ ସନ୍ନିବିଷ୍ଟ ମୋର ମନ ଅତ୍ୟନ୍ତ ଆନନ୍ଦକୁ ପ୍ରାପ୍ତ ହେଉ ।

**୦୪. ଜଟାଭୁଜଙ୍ଗପିଙ୍ଗଳ :-** ଶିବଙ୍କର ମସ୍ତକରେ ଥିବା ସୁଦୀର୍ଘ ଜଟାସମୂହ ତାମ୍ରବର୍ଣ୍ଣ ବିଶିଷ୍ଟ ସର୍ପଦ୍ୱାରା ପରିବେଷ୍ଟିତ ହୋଇଥିବା ହେତୁ ତାହା ସର୍ପ ସଂସ୍ପର୍ଶରେ ତାମ୍ରବର୍ଣ୍ଣ ଧାରଣ କରିଅଛି । ପୁଣି ସର୍ପମାନଙ୍କ ଫଣାରେ ଥିବା ଅରୁଣ ବର୍ଣ୍ଣ ମଣିର ପ୍ରଭାବରେ ଜଟା ସମୂହ କୁଙ୍କୁମବର୍ଣ୍ଣ ଅର୍ଥାତ୍ ଅରୁଣିମାରେ ମଧ ପରିଶୋଭିତ ଏବଂ ଏହା ସବୁ ଦିଗରେ ପ୍ରତିଫଳିତ ହେବାଦ୍ୱାରା ଦିଗ୍‌ବଧୂମାନଙ୍କ ମୁଖରେ କୁଙ୍କୁମ ପ୍ରଲେପ ହେଲାଭଳି ପ୍ରତୀତ ହେଉଅଛି । (ବେଦରେ ମଧ ଶିବଙ୍କ ଏପରି ସ୍ୱରୂପ ବିଷୟରେ କୁହାଯାଇଅଛି, ଯଥା- 'ନମସ୍ତାମ୍ରାୟ ଚାରୁଣାୟ ଚ...' ଶୁ.ଯ.ବେ.ଅ:୧୬/୩୯) । ଏଣୁ ପ୍ରାତଃକାଳୀନ ଅରୁଣୋଦୟ ସମୟର ତଥା ସୂର୍ଯ୍ୟାସ୍ତକାଳୀନ ଆକାଶର ଯେଉଁ ଆକର୍ଷଣୀୟ ମନମୋହନ ଶୋଭା ଯାହାକୁ ମେଦୁର ଅର୍ଥାତ୍ ସାନ୍ଦ୍ରସ୍ନିଗ୍ଧ ରୂପ ବୋଲି କୁହାଯାଏ, ସେହି ସମସ୍ତ ଶୋଭାତିଶୟକୁ ଧାରଣ କରି ଓ ମଦର ମାଦକତାବଶତଃ ବିବେକହୀନ ଓ ଅତ୍ୟନ୍ତ ଅଭିମାନୀ ନିହତ ଗଜାସୁରର ଚର୍ମକୁ ଉତ୍ତରୀୟ ବସ୍ତ୍ର ଭାବରେ ପରିଧାନ କରି ତାଣ୍ଡବ ନୃତ୍ୟରତ ଓ ପ୍ରାଣୀମାନଙ୍କ ଧାରଣ ପୋଷଣକର୍ତ୍ତା ଭଗବାନ୍ ଶିବଙ୍କ ଠାରେ ମୋ ମନ ଅଦ୍‌ଭୂତ ଆନନ୍ଦକୁ ପ୍ରାପ୍ତ ହୋଇ ନିରନ୍ତର ଆସକ୍ତ ଥାଉ ।

ଲଲାଟଚତ୍ୱରଜ୍ୱଲଦ୍ଧନଞ୍ଜୟସ୍ଫୁଲିଙ୍ଗଭା-

ନିପୀତପଞ୍ଚସାୟକଂ ନମନ୍ନିଲିମ୍ପନାୟକମ୍ ।

ସୁଧାମୟୂଖଲେଖୟା ବିରାଜମାନଶେଖରଂ

ମହଃ କପାଳିସମ୍ପଦେ ସରିଜ୍ଜଟାଳମସ୍ତୁ ନଃ ॥୫॥

ସହସ୍ରଲୋଚନପ୍ରଭୃତ୍ୟଶେଷଲେଖଶେଖର-

ପ୍ରସୂନଧୂଳିଧୋରଣୀବିଧୂସରାଙ୍ଘ୍ରିପୀଠଭୂଃ ।

ଭୂଜଙ୍ଗରାଜମାଳୟା ନିବଦ୍ଧଜାଟଜୂଟକଃ

ଶ୍ରିୟୈ ଚିରାୟ ଜାୟତାଂ ଚକୋରବନ୍ଧୁଶେଖରଃ ॥୬॥

---

**୦୫. ଲଲାଟ ଚତ୍ୱରଜ୍ୱଳଦ୍ :-** ଯାହାଙ୍କ ଜ୍ଞାନନେତ୍ର ସ୍ୱରୂପ ଲଲାଟସ୍ଥ ତୃତୀୟ ନେତ୍ରରୁ ନିର୍ଗତ ଦେଦୀପ୍ୟମାନ ବହ୍ନିଶିଖା କାମଦେବଙ୍କୁ ଭସ୍ମୀଭୂତ କରି ଅନଙ୍ଗ ରୂପରେ ପରିଣତ କରିଥିଲା ଏବଂ ଯେଉଁ ଅଗ୍ନିଶିଖା ତାଙ୍କ ଶରଣାଗତଙ୍କ ସମସ୍ତ କାମବାସନାକୁ ଭସ୍ମୀଭୂତ କରିଦିଏ, ଯାହାଙ୍କ ମହିମା ନିକଟରେ ଇନ୍ଦ୍ରାଦି ଶ୍ରେଷ୍ଠ ଦେବଗଣ ନତମସ୍ତକ ହୁଅନ୍ତି, ଯାହାଙ୍କ ମସ୍ତକରେ ପୀୟୂଷବର୍ଷୀ ଚନ୍ଦ୍ରମା ସୁଶୋଭିତ, ଜଟାରେ ପତିତପାବନୀ ଗଙ୍ଗାଙ୍କ ନିବାସ, ଯେ ସ୍ୱୟଂ ନିରୀହ ଓ ନିଃସ୍ପୃହ ହେତୁ ନର କପାଳକୁ ଧାରଣ କରିଥାଆନ୍ତି, ସେହି ପ୍ରକାଶସ୍ୱରୂପ ଶିବ ଆମ ପାଇଁ ଧର୍ମ-ଅର୍ଥ-କାମ-ମୋକ୍ଷରୂପକ ପୁରୁଷାର୍ଥଚତୁଷ୍ଟୟ ଅଥବା ସର୍ବବିଧ ସଫଳତା, ସମସ୍ତ ପ୍ରକାର ସମୃଦ୍ଧି ଓ ବୈଭବ ପ୍ରଦାୟକ ହୁଅନ୍ତୁ ।

**୦୬. ସହସ୍ରଲୋଚନ :-** ଇନ୍ଦ୍ରାଦି ସମସ୍ତ ଦେବଗଣ ଶିବଙ୍କୁ ପ୍ରଣାମ କରିବା ସମୟରେ ସେମାନଙ୍କ ମୁକୁଟସ୍ଥିତ ପୁଷ୍ପରୁ ସ୍ଖଳିତ ପରାଗରେଣୁଗୁଡ଼ିକ ଶିବଙ୍କ ପାଦପୀଠିକା ଉପରେ ପଡ଼ିବା ହେତୁ ତାହା ଈଷତ୍ ପାଣ୍ଡୁରବର୍ଣ୍ଣକୁ ପ୍ରାପ୍ତ ହୁଅନ୍ତି ଅଥବା ଶିବଙ୍କୁ ଆରାଧନା ସମୟରେ ଦେବତାମାନେ ଯେଉଁ ପୁଷ୍ପାଞ୍ଜଳି ପ୍ରଦାନ କରିଥାଆନ୍ତି ତାହାଦ୍ୱାରା ପୁଷ୍ପଗୁଡ଼ିକରୁ ଝଡ଼ିପଡୁଥିବା ପରାଗରେଣୁ ଶିବଙ୍କ ପାଦ ଉପରେ ପଡ଼ିବା ହେତୁ ତାଙ୍କ ପାଦଦ୍ୱୟ କିଞ୍ଚିତ୍ ପାଣ୍ଡୁରବର୍ଣ୍ଣ ଧାରଣ କରିଥାଆନ୍ତି । ଶିରୋ ଦେଶରେ ସୁଶୋଭିତ ଜଟାରେ ସର୍ପଙ୍କ ମାଳାବେଷ୍ଟିତ ହୋଇଥାଏ, ମସ୍ତକରେ ଚକୋରବନ୍ଧୁ ଚନ୍ଦ୍ରମା ବିରାଜିତ । ଏହିପରି ସମସ୍ତ ନୈସର୍ଗିକ ଶୋଭାର ଭଣ୍ଡାର ସ୍ୱରୂପ ଭଗବାନ୍ ଶିବ ଆମ୍ଭମାନଙ୍କୁ ସୁଖ ଓ ଶାନ୍ତି ପ୍ରଦାନ କରନ୍ତୁ ।

କରାଳଭାଲପଟ୍ଟିକାଧଗଦ୍ଧଗଦ୍ଧଗଜ୍ଜ୍ୱଲ-
ଦ୍ଧନଞ୍ଜୟାହୁତୀକୃତପ୍ରଚଣ୍ଡପଞ୍ଚସାୟକେ ।
ଧରାଧରେନ୍ଦ୍ରନନ୍ଦିନୀକୁଚାଗ୍ରଚିତ୍ରପତ୍ରକ-
ପ୍ରକଳ୍ପନୈକଶିଳ୍ପିନି ତ୍ରିଲୋଚନେ ରତିର୍ମମ ॥୭॥
ନବୀନମେଘମଣ୍ଡଲୀନିରୁଦ୍ଧଦୁର୍ଦ୍ଧରସ୍ଫୁରତ୍
କୁହୂନିଶୀଥିନୀତମଃ ପ୍ରବନ୍ଧବଦ୍ଧକନ୍ଧରଃ ।
ନିଲିମ୍ପନିର୍ଝରୀଧରସ୍ତନୋତୁ କୃତ୍ତିସୁନ୍ଦରଃ
କଳାନିଧାନବନ୍ଧୁରଃ ଶ୍ରିୟଂ ଜଗଦ୍ଧୁରନ୍ଧରଃ ॥୮॥

---

**୦୭. କରାଳଭାଲପଟ୍ଟିକା :-** କାମଦେବ ନିଜ ଶକ୍ତିର ଅହଙ୍କାରରେ ବଶୀଭୂତ ହୋଇ ପରମଯୋଗୀ ଶିବଙ୍କ ପ୍ରତି କାମବାଣ ନିକ୍ଷେପ କରିଥିଲେ । ପରିଣାମରେ ଶିବଙ୍କ କପାଳଦେଶସ୍ଥିତ ତୃତୀୟ ନେତ୍ରରୁ ନିର୍ଗତ କ୍ରୋଧାଗ୍ନିରେ ସେ ଭସ୍ମୀଭୂତ ହୋଇଥିଲେ ଅଥଚ କାମଦେବଙ୍କ ବିୟୋଗରେ ମର୍ମାହତ ରତିଙ୍କ ଶୋକ ପ୍ରତି ଶିବ କରୁଣା ପ୍ରଦର୍ଶନ ମଧ୍ୟ କରିଥିଲେ । ପୁଣି ସେ ମଧ୍ୟ ପତ୍ନୀ ପାର୍ବତୀଙ୍କ ପ୍ରତି ଶୃଙ୍ଗାରଭାବସ୍ୱରୂପ ତାଙ୍କ କୁଚାଗ୍ରକୁ ଚିତ୍ରିତ କରୁଥିଲେ । ଏଥିରୁ ପ୍ରତୀତ ହେଉଅଛି ଯେ ତ୍ରିଲୋଚନଙ୍କ ଅଗ୍ନି, ସୂର୍ଯ୍ୟ ଓ ଚନ୍ଦ୍ରରୂପକ ତିନିଗୋଟି ନେତ୍ରରୁ ଅଗ୍ନିରୂପକ ତୃତୀୟନେତ୍ର ଦ୍ୱାରା କାମଦହନ ରୂପକ ବୀରତ୍ୱ, ଚନ୍ଦ୍ରସୂର୍ଯ୍ୟ ରୂପକ ଅନ୍ୟ ଦୁଇ ନେତ୍ରଦ୍ୱାରା ରତିଙ୍କ ଶୋକ ପ୍ରତି କରୁଣା ଏବଂ ପତ୍ନୀ ପାର୍ବତୀଙ୍କ ପ୍ରତି ରତି ଭାବ ପ୍ରଦର୍ଶନ - ଏହିଭଳି ଏକାଧାରରେ ଅନେକ ବିରୋଧାଭାସର ମୂର୍ତ୍ତିମାନ୍ ବିଗ୍ରହ ଭଗବାନ୍ ଶିବ । ସେହି ତ୍ରିଲୋଚନଧାରୀ ଶିବଙ୍କ ପାଖରେ ମୋର ମନ ସର୍ବଦା ଆସକ୍ତ ହୋଇ ରହିଥାଉ ।

**୦୮. ନବୀନମେଘମଣ୍ଡଳୀ :-** ଜଳ ଭାରରେ ଭାରାକ୍ରାନ୍ତ ବର୍ଷଣମୁଖର ନୂତନ ମେଘର ଯେଉଁ ଶ୍ୟାମଳ ପ୍ରଭା ତଥା ଅମାବସ୍ୟା ରଜନୀର ଗାଢ଼ ନୀଳ ବର୍ଣ୍ଣର ଯେଉଁ କାନ୍ତି ଏ ସମସ୍ତ ନୀଳବର୍ଣ୍ଣଠାରୁ ଅଧିକ ଶୋଭା ଧାରଣ କରି ଅଛନ୍ତି ମହେଶ୍ୱରଙ୍କର ବିଷପାନ ଜନିତ କଣ୍ଠର ଗାଢ଼ ନୀଳିମା । ଯାହାଦ୍ୱାରା ସେ ନୀଳକଣ୍ଠ ନାମରେ ବିଶ୍ୱବିଦିତ । ପବିତ୍ର ଗଙ୍ଗାନଦୀକୁ ଜଟାରେ ଧାରଣ କରିଅଛନ୍ତି । ସେ ପୁଣି କୃତ୍ତିବାସ ଅର୍ଥାତ୍ ମୃଗଚର୍ମ ଅଥବା ଗଜାସୁରର ଚର୍ମ ପରିହିତ। ସମସ୍ତ କଳାରେ ସୁଶୋଭିତ ଚନ୍ଦ୍ରମାଙ୍କୁ ସେ ସଦୈବ ମସ୍ତକରେ ଧାରଣ କରିଅଛନ୍ତି । ଏହିପରି ନୀଳଜଳଦକାନ୍ତି ସମ ନୀଳକଣ୍ଠ, ଗଙ୍ଗାଧର, କୃତ୍ତିବାସ ଏବଂ ଚନ୍ଦ୍ରମୌଳି ଶଙ୍କର ଆମର ସମସ୍ତ ବୈଭବ ଅର୍ଥାତ୍ ଧର୍ମାର୍ଥକାମରୂପକ ତ୍ରିବର୍ଗ ସମ୍ପତ୍ତିର ଅଭିବୃଦ୍ଧି ସାଧନ

ପ୍ରଫୁଲ୍ଲନୀଳପଙ୍କଜପ୍ରପଞ୍ଚକାଳିମପ୍ରଭା-
ବଲମ୍ବିକଣ୍ଠକନ୍ଦଳୀରୁଚିପ୍ରବଦ୍ଧକନ୍ଧରମ୍ ।
ସ୍ମରଚ୍ଛିଦଂ ପୁରଚ୍ଛିଦଂ ଭବଚ୍ଛିଦଂ ମଖଚ୍ଛିଦଂ
ଗଜଚ୍ଛିଦାନ୍ଧକଚ୍ଛିଦଂ ତମନ୍ତକଚ୍ଛିଦଂ ଭଜେ ॥୯॥
ଅଖର୍ବସର୍ବମଙ୍ଗଳାକଳାକଦମ୍ବମଞ୍ଜରୀ-
ରସପ୍ରବାହମାଧୁରୀବିଜୃମ୍ଭଣାମଧୁବ୍ରତମ୍ ।
ସ୍ମରାନ୍ତକଂ ପୁରାନ୍ତକଂ ଭବାନ୍ତକଂ ମଖାନ୍ତକଂ
ଗଜାନ୍ତକାନ୍ଧକାନ୍ତକଂ ତମନ୍ତକାନ୍ତକଂ ଭଜେ ॥୧୦॥

---

କରନ୍ତୁ ।

**୦୯. ପ୍ରଫୁଲ୍ଲନୀଳପଙ୍କଜ :-** ପୂର୍ଣ୍ଣ ବିକସିତ ନୀଳପଦ୍ମର ନୀଳିମା ଭଳି ଯାହାଙ୍କର କଣ୍ଠ ସୁଶୋଭିତ ଏବଂ ଧରାପୃଷ୍ଠରେ ପ୍ରଥମ ବର୍ଷାର ସ୍ପର୍ଶଦ୍ୱାରା ନୀଳବର୍ଣ୍ଣ ବିଶିଷ୍ଟ କନ୍ଦଳୀ (ମଧ୍ୟ ପ୍ରଦେଶର ବୁନ୍ଦେଲଖଣ୍ଡ ଅଞ୍ଚଳରେ ବିଶେଷ ଭାବରେ ମିଳୁଥିବା କୃମିନାଶକ ଓ ଅତ୍ୟନ୍ତ ସ୍ନିଗ୍ଧ ହେତୁ 'ସ୍ନିଗ୍ଧ କନ୍ଦ' ନାମକ ଔଷଧି ବିଶେଷ, ବର୍ଷା ଋତୁର ପ୍ରଥମ ବର୍ଷା ବେଳେ ତାହାର ମୂଳରୁ ଆକର୍ଷଣୀୟ ନୀଳ ବର୍ଣ୍ଣ ବିଶିଷ୍ଟ ଅଙ୍କୁର ଉଦ୍‌ଗମ ହୋଇଥାଏ ।) ଗୁଳ୍ମର ଅଙ୍କୁରୋଦ୍‌ଗମ ସଦୃଶ ସୁଷମା ସମନ୍ୱିତ ସେହି ନୀଳକଣ୍ଠ ଶିବଙ୍କ ମୁଁ ଆରାଧନା କରୁଅଛି । ସେ ଯେପରି କାମଦେବ, ତ୍ରିପୁରାସୁର ଇତ୍ୟାଦି ଦୁଷ୍ଟସମୂହଙ୍କ ବିନାଶକାରୀ ସେହିପରି ସେ ସର୍ବବିଧ ସାଂସାରିକ ବନ୍ଧନକୁ ଖଣ୍ଡନକରି ଆମକୁ ମୁକ୍ତି ପ୍ରଦାନ କରିବେ । ସେ ଦକ୍ଷଯଜ୍ଞ ବିଧ୍ୱଂସକାରୀ, ଗଜାସୁର ଓ ଅନ୍ଧକାସୁରଙ୍କ ପ୍ରାଣହର୍ତ୍ତା, କାଳର ମଧ୍ୟ କାଳସ୍ୱରୂପ ଅର୍ଥାତ୍ ମହାକାଳ ଏଣୁ ସେ ସମସ୍ତ ଦୁଷ୍ଟଙ୍କ ପାଇଁ ଅନିଷ୍ଟକାରୀ ଅଥଚ ଆମ ପାଇଁ ସେ କରାଳ କାଳ କବଳରୁ ରକ୍ଷାକାରୀ ଅଟନ୍ତି ।

**୧୦. ଅଖର୍ବସର୍ବମଙ୍ଗଳା :-** ସର୍ବବିଧ ମଙ୍ଗଳକାରକ, କଦମ୍ବ ବୃକ୍ଷର ବିକାଶମାନ ମଞ୍ଜରି (ଶାଖାର ପଲ୍ଲବିତ ଅଗ୍ରଭାଗ)ରୁ ନିର୍ଗତ ରସାସ୍ୱାଦନ ଲୋଲୁପ, ନୃତ୍ୟଗୀତାଦି ଚଉଷଠି କଳା ଓ ଚଉଦ ପ୍ରକାର ବିଦ୍ୟାରସରେ ଆମୋଦିତ ପରମାତ୍ମା ଶିବ । ସେ କାମଦେବ, ତ୍ରିପୁରାସୁର, ଦକ୍ଷଯଜ୍ଞ, ଗଜାସୁର, ଅନ୍ଧକାସୁର ଇତ୍ୟାଦିଙ୍କର ବିନାଶକ ତଥା ସଂସାରର ମଧ୍ୟ ପ୍ରଳୟକର୍ତ୍ତା ଓ ସର୍ବତୋପରି ଅନ୍ତକର ଅନ୍ତକ

ଜଟାଟବୀଗଲଜ୍ଜଲପ୍ରବାହପାବିତସ୍ଥଳେ

ଜୟତ୍ୟଦଭ୍ରବିଭ୍ରମଦ୍‌ଭ୍ରମଭୁଜଙ୍ଗମଶ୍ୱସଦ୍

ବିନିର୍ଗମକ୍ରମସ୍ଫୁରତ୍‌କରାଳଭାଲହବ୍ୟବାଟ୍ ।

ଧିମିଂ ଧିମିଂ ଧିମିଂ ଧ୍ୱନନ୍‌ମୃଦଙ୍ଗତୁଙ୍ଗମଙ୍ଗଳ-

ଧ୍ୱନିକ୍ରମପ୍ରବର୍ତ୍ତିତପ୍ରଚଣ୍ଡତାଣ୍ଡବଃ ଶିବଃ ॥୧୧॥

ଦୃଷଦ୍‌ବିଚିତ୍ରତଳ୍ପୟୋର୍ଭୁଜଙ୍ଗମୌକ୍ତିକସ୍ରଜୋ-

ର୍ଗରିଷ୍ଠରତ୍ନଲୋଷ୍ଟୟୋଃ ସୁହୃଦ୍‌ବିପକ୍ଷପକ୍ଷୟୋଃ ।

ତୃଣାରବିନ୍ଦଚକ୍ଷୁଷୋଃ ପ୍ରଜାମହୀମହେନ୍ଦ୍ରୟୋଃ

ସମପ୍ରବୃତ୍ତିକଃ କଦା ସଦାଶିବଂ ଭଜାମ୍ୟହମ୍ ॥୧୨॥

କଦା ନିଲିମ୍ପନିର୍ଝରୀନିକୁଞ୍ଜକୋଟରେ ବସନ୍

ବିମୁକ୍ତଦୁର୍ମତିଃ ସଦା ଶିରସ୍ଥମଞ୍ଜଳିଂ ବହନ୍ ।

ବିଲୋଳଲୋଳଲୋଚନାଲଲାମଭାଲଲଗ୍ନକଃ

ଶିବେତି ମନ୍ତ୍ରମୁଚ୍ଚରନ୍ ସଦା ସୁଖୀ ଭବାମ୍ୟହମ୍ ॥୧୩॥

---

ଅର୍ଥାତ୍ କାଳର ମଧ୍ୟ କାଳସ୍ୱରୂପ । ସେହି ମହେଶ୍ୱର ଶିବଙ୍କୁ ମୁଁ ଭଜନ କରୁଅଛି ।

**୧୧. ଜୟତ୍ୟଦଭ୍ର :-** ଭଗବାନ୍ ଶିବଙ୍କର ଜୟ ହେଉ, ଯାହାଙ୍କର ତୀବ୍ର ବେଗର ତାଣ୍ଡବନୃତ୍ୟ ସମୟରେ ନିରନ୍ତର ଘୂର୍ଣ୍ଣାୟମାନ ମସ୍ତକସ୍ଥିତ ସର୍ପମାନଙ୍କର 'ଫଁ ଫଁ' ଶବ୍ଦଦ୍ୱାରା ନିର୍ଗତ ଦୀର୍ଘଶ୍ୱାସରୁ ମସ୍ତକ ଚତୁଃପାର୍ଶ୍ୱରେ ଭୟଙ୍କର ତେଜ ପ୍ରକାଶିତ ହେଉଅଛି । ଏହା ସହିତ 'ଧିମ୍ ଧିମ୍' ଧ୍ୱନିରେ ନିନାଦିତ ମୃଦଙ୍ଗର ତାଳ ଓ ସ୍ୱରଲହରୀ ବହୁଦୂର ପର୍ଯ୍ୟନ୍ତ ଆନନ୍ଦ ଉଲ୍ଲାସରେ ପ୍ରବାହିତ ହେଉଅଛି । ସେହି ଶିବଙ୍କର ଜୟ ହେଉ ।

**୧୨. ଦୃଷଦ୍‌ବିଚିତ୍ର :-** କଠିନ ପଥରର ଶଯ୍ୟା ହେଉ ଅଥବା ସୁକୋମଳ ପୁଷ୍ପ ଶଯ୍ୟା, ଗଳାରେ ଭୟଙ୍କର ବିଷଧର ସର୍ପମାଳା ଅଥବା ମୁକ୍ତାର ମାଳା, ପାଖରେ ବହୁ ମୂଲ୍ୟବାନ୍ ରତ୍ନ ଅଥବା ମାଟିର ଟେକାଟିଏ, ଶତ୍ରୁ ହେଉ ବା ମିତ୍ର, ତୁଚ୍ଛ ଘାସଟିଏ ହେଉ ଅଥବା କମଳନୟନା ସୁନ୍ଦରୀ ସ୍ତ୍ରୀ ହୋଇଥାଉ, ସାଧାରଣ ପ୍ରଜା ହେଉ ଅଥବା ଚକ୍ରବର୍ତ୍ତୀ ସମ୍ରାଟ୍ - ଏ ସମସ୍ତଙ୍କ ମଧ୍ୟରେ ସମାନ ଦୃଷ୍ଟି ରଖି ନିର୍ବିକାର ଭାବରେ ମୁଁ କେବେ ସଦାଶିବଙ୍କୁ ଭଜନ କରିପାରିବି - ଏତିକି କାମନା ।

**୧୩. କଦା ନିଲିମ୍ପନିର୍ଝରୀ :-** ଗଙ୍ଗା କୂଳରେ କୌଣସି ଘଞ୍ଚ

ନିଲିମ୍ପନାଥନାଗରୀକଦମ୍ବମୌଳିମଲ୍ଲିକା-
ନିଗୁମ୍ଫନିର୍ଭରକ୍ଷରନ୍ମଧୂଲିକାମନୋହରଃ ।
ତନୋତୁ ନୋ ମନୋମୁଦଂ ବିନୋଦିନୀମହର୍ନିଶଂ
ପରଶ୍ରିୟଃ ପରଂ ପଦଂ ତଦଙ୍ଗଜତ୍ୱିଷାଂ ଚୟଃ ॥୧୪॥
ପ୍ରଚଣ୍ଡବାଡ଼ବାନଳପ୍ରଭାଶୁଭପ୍ରଚାରିଣୀ-
ମହାଷ୍ଟସିଦ୍ଧିକାମିନୀଜନାବହୂତଜଳ୍ପନା ।
ବିମୁକ୍ତବାମଲୋଚନାବିବାହକାଳିକଧ୍ୱନିଃ
ଶିବେତି ମନ୍ତ୍ରଭୂଷଣା ଜଗଜ୍ଜୟାୟ ଜାୟତାମ୍ ॥୧୫॥

---

ଲତାକୁଞ୍ଜରେ ନିବାସ କରି, ସମସ୍ତ କୁବୁଦ୍ଧି (ଦୁର୍ବାସନା)ର ତ୍ୟାଗ ପୂର୍ବକ ହସ୍ତଦ୍ୱୟକୁ ଅଞ୍ଜଳିବଦ୍ଧ ମୁଦ୍ରାରେ ଶିରରେ ଲଗାଇ, ମୁହଁରେ 'ଶିବ-ଶିବ' ନାମ ଉଚ୍ଚାରଣ କରି କେବେ ମୁଁ ସୁଖୀ ହେବାର ସୌଭାଗ୍ୟ ପ୍ରାପ୍ତ ହେବି ? ଯେଉଁ ଶିବମନ୍ତ୍ର ନାରୀ ଜାତିର ଆଦର୍ଶସ୍ଥାନୀୟା ପାର୍ବତୀଙ୍କ ସୌଭାଗ୍ୟସୂଚକ ସିନ୍ଦୂର ସ୍ୱରୂପ ସୀମନ୍ତର ଶୋଭାବର୍ଦ୍ଧକ ଅଟନ୍ତି ।

**୧୪. ନିଲିମ୍ପନାଥନାଗରୀ :-** ବିଶ୍ୱସ୍ରଷ୍ଟା ମହେଶ୍ୱର ଶିବଙ୍କ ତାଣ୍ଡବନୃତ୍ୟ ସୃଷ୍ଟି ଓ ପାଳନ ନିମିତ୍ତ ନିରନ୍ତର ଚାଲିଛି । ସେହି ତାଣ୍ଡବ ନୃତ୍ୟରେ ଯୋଗଦେବା ପାଇଁ ସମୁପସ୍ଥିତ ଦେବଲୋକର ଅପ୍ସରାମାନଙ୍କ କେଶପାଶରେ ଖଚିତ ମଲ୍ଲିକା ପ୍ରଭୃତି ସୁଗନ୍ଧିତ ପୁଷ୍ପର କେଶରରୁ ନିରନ୍ତର ପରାଗ ଓ ମଧୁସ୍ଖଳିତ ହେଉଅଛି । ଯାହା ପ୍ରକାଶାତ୍ମକ ଶିବଙ୍କ ଶ୍ରୀଅଙ୍ଗରୁ ପ୍ରକଟ ହେଉଥିବା ପ୍ରକାଶପୁଞ୍ଜ ସଂସ୍ପର୍ଶରେ ଆସି ଅତ୍ୟନ୍ତ ଶୋଭାବର୍ଦ୍ଧନ କରୁଅଛି । ଭଗବାନ୍ ଶିବଙ୍କ ଏହି ଦିବ୍ୟସ୍ୱରୂପ ଆମ୍ଭମାନଙ୍କୁ ସର୍ବଦା ଆନନ୍ଦମୁଖରିତ କରନ୍ତୁ ।

**୧୫. ପ୍ରଚଣ୍ଡବାଡ଼ବାନଳ :-** ପାର୍ବତୀଙ୍କ ସହିତ ବିବାହ ଅବସରରେ ଅଣିମାଦି ଅଷ୍ଟସିଦ୍ଧିଙ୍କ ଦ୍ୱାରା ମଙ୍ଗଳ ସ୍ତୁତିଗାନ କରାଯାଉଅଛି । ଯାହାକି ଦେଦୀପ୍ୟମାନ ବାଡ଼ବାନଳର ପ୍ରଭା ଭଳି ଅଶୁଭ ନାଶ କରିବା ପାଇଁ ଯଥେଷ୍ଟ । ଅଣିମାଦି (ଅଣିମା, ଲଘିମା, ପ୍ରାପ୍ତି, ପ୍ରାକାମ୍ୟ,ମହିମା, ଈଶୀତ୍ୱ, ବଶୀତ୍ୱ ଓ କାମାବସାୟିତା) ଆଠଗୋଟି ସିଦ୍ଧି ଅଷ୍ଟମାତୃକା ରୂପରେ ସେହି ଗୀତକୁ ଗାନ କରୁଅଛନ୍ତି । ଏହି ବିବାହକାଳୀନ ମଙ୍ଗଳଧ୍ୱନି ଯେଉଁଥିରେ 'ଶିବ-ଶିବ'- ଏହି ନାମମନ୍ତ୍ରର ବୈଚିତ୍ର୍ୟ ତଥା ଗୂଢ଼ ଅର୍ଥଗର୍ଭକ ବୈଶିଷ୍ଟ୍ୟ ସାଧକଙ୍କ ପାଇଁ ସଂସାର ଜୟକାରକ ତଥା ସାମାନ୍ୟ ସଂସାରୀ ଲୋକଙ୍କ ପାଇଁ ସମସ୍ତ ବୈଭବର ଅଭିବୃଦ୍ଧିକାରକ ହୁଅନ୍ତୁ ।

ପୂଜାବସାନସମୟେ ଦଶବକ୍ତ୍ରଗୀତଂ
ଯଃ ଶମ୍ଭୁପୂଜନପରଂ ପଠତି ପ୍ରଦୋଷେ ।
ତସ୍ୟ ସ୍ଥିରାଂ ରଥଗଜେନ୍ଦ୍ରତୁରଙ୍ଗଯୁକ୍ତାଂ
ଲକ୍ଷ୍ମୀଂ ସଦୈବ ସୁମୁଖୀଂ ପ୍ରଦଦାତି ଶମ୍ଭୁଃ ॥୧୬॥

ଇତି ଶ୍ରୀରାବଣବିରଚିତଂ ଶିବତାଣ୍ଡବସ୍ତୋତ୍ରଂ ସମ୍ପୂର୍ଣ୍ଣମ୍ ।

---

**୧୬. ପୂଜାବସାନ :-** ରାବଣଙ୍କ ଦଶଗୋଟି ମୁଖଦ୍ୱାରା ଗାନ କରାଯାଇଥିବା ଏହି ଶିବସ୍ତୋତ୍ରକୁ ପୂଜା ସମାପ୍ତି ପରେ ବିଶେଷକରି ସନ୍ଧ୍ୟା ସମୟରେ ଯେ ପୂଜକ ବା ଶିବଭକ୍ତ ପାଠ କରନ୍ତି ତାଙ୍କ ପ୍ରତି ଶିବ ପ୍ରସନ୍ନ ହୋଇ ରଥ, ହାତୀ ଓ ଘୋଡ଼ା ପ୍ରଭୃତି ସମସ୍ତ ବୈଭବ ପ୍ରଦାନ କରନ୍ତି ।



## ଉପମନ୍ୟୁକୃତଶିବସ୍ତୋତ୍ରମ୍

ଜୟ ଶଙ୍କର ପାର୍ବତୀପତେ ମୃଡ଼ ଶମ୍ଭୋ ଶଶିଖଣ୍ଡମଣ୍ଡନ ।
ମଦନାନ୍ତକ ଭକ୍ତବତ୍ସଳ ପ୍ରିୟକୈଳାସ ଦୟାସୁଧାମ୍ବୁଧେ ॥
ସଦୁପାୟକଥାସ୍ୱପଣ୍ଡିତୋ ହୃଦୟେ ଦୁଃଖଶରେଣ ଖଣ୍ଡିତଃ ।
ଶଶିଖଣ୍ଡଶିଖଣ୍ଡମଣ୍ଡନଂ ଶରଣଂ ଯାମି ଶରଣ୍ୟମୀଶ୍ୱରମ୍ ॥
ମହତଃ ପରିତଃ ପ୍ରସର୍ପତସ୍ତମସୋ ଦର୍ଶନଭେଦିନୋ ଭିଦେ ।
ଦିନନାଥ ଇବ ସ୍ୱତେଜସା ହୃଦୟବ୍ୟୋମ୍ନି ମନାଗୁଦେହି ନଃ ॥
ନ ବୟଂ ତବ ଚର୍ମ୍ମଚକ୍ଷୁଷା ପଦବୀମପ୍ୟୁପବୀକ୍ଷିତୁଂ କ୍ଷମାଃ ।
କୃପୟାଽଭୟଦେନ ଚକ୍ଷୁଷା ସଦୟେନେଶ ବିଲୋକୟାଶୁ ନଃ ॥
ତ୍ୱଦନୁସ୍ମୃତିରେବ ପାବନୀ ସ୍ତୁତିଯୁକ୍ତା ନ ହି ବକ୍ତୁମୀଶ ସା ।
ମଧୁରଂ ହି ପୟଃ ସ୍ୱଭାବତୋ ନନୁ କୀଦୃକ୍ ସିତଶର୍କରାନ୍ୱିତମ୍ ॥
ସବିଷୋଽପ୍ୟମୃତାୟତେ ଭବାନ୍ ଶବମୁଣ୍ଡାଭରଣୋଽପି ପାବନଃ ।
ଭବ ଏବ ଭବାନ୍ତକଃ ସତାଂ ସମଦୃଷ୍ଟିର୍ବିଷମେକ୍ଷଣୋପି ସନ୍ ॥
ଅପି ଶୂଳଧରୋ ନିରାମୟୋ ଦୃଢ଼ବୈରାଗ୍ୟରତୋଽପି ରାଗବାନ୍ ॥
ଅପି ଭୈକ୍ଷ୍ୟଚରୋ ମହେଶ୍ୱରଶ୍ଚରିତଂ ଚିତ୍ରମିଦଂ ହି ତେ ପ୍ରଭୋ ॥
ବିତରତ୍ୟଭିବାଞ୍ଛିତଂ ଦୃଶା ପରିଦୃଷ୍ଟଃ କିଲ କଳ୍ପପାଦପଃ ।
ହୃଦୟେ ସ୍ମୃତ ଏବ ଧୀମତେ ନମତେଽଭୀଷ୍ଟଫଳପ୍ରଦୋ ଭବାନ୍ ॥

ସହସୈବ ଭୁଜଙ୍ଗପାଶବାନ୍ ବିନିଗୃହ୍ଣାତି ନ ଯାବଦନ୍ତକଃ ।
ଅଭୟଂ କୁରୁ ତାବଦାଶୁ ମେ ଗତଜୀବସ୍ୟ ପୁନଃ କିମୌଷଧୈଃ ॥
ସବିଷୈରିବ ଭୀମପନ୍ନଗୈର୍ବିଷୟୈରେଭିରଲଂ ପରିକ୍ଷତମ୍ ।
ଅମୃତୈରିବ ସମ୍ଭ୍ରମେଣ ମାମଭିଷିଞ୍ଚାଶୁ ଦୟାବଲୋକନୈଃ ॥
ମୁନୟୋ ବହବୋଽଦ୍ୟ ଧନ୍ୟତାଂ ଗମିତାଃ ସ୍ୱାଭିମତାର୍ଥଦର୍ଶିନଃ ।
କରୁଣାକର ଯେନ ତେନ ମାମବସନ୍ନଂ ନନୁ ପଶ୍ୟ ଚକ୍ଷୁଷା ॥
ପ୍ରଣମାମ୍ୟଥ ଯାମି ଚାପରଂ ଶରଣଂ କଂ କୃପଣାଭୟପ୍ରଦମ୍ ।
ବିରହୀବ ବିଭୋ ପ୍ରିୟାମୟଂ ପରିପଶ୍ୟାମି ଭବନ୍ମୟଂ ଜଗତ୍ ॥
ବହବୋ ଭବତାଽନୁକମ୍ପିତାଃ କିମିତୀଶାନ ନ ମାନୁକମ୍ପସେ ।
ଦଧତା କିମୁ ମନ୍ଦରାଚଲଂ ପରମାଣୁଃ କମଠେନ ଦୁର୍ଦ୍ଧରଃ ॥
ଅଶୁଚିଂ ଯଦି ମାନୁମନ୍ୟସେ କିମିଦଂ ମୂର୍ଦ୍ଧ୍ନି କପାଲଦାମ ତେ ।
ଉତ ଶାଠ୍ୟମସାଧୁସଙ୍ଗିନଂ ବିଷଲକ୍ଷ୍ମାସି ନ କିଂ ଦ୍ୱିଜିହ୍ୱଧୃକ୍ ॥
କ୍ୱ ଦୃଶଂ ବିଦଧାମି କିଂ କରୋମ୍ୟନୁତିଷ୍ଠାମି କଥଂ ଭୟାକୁଳଃ ।
କ୍ୱନୁ ତିଷ୍ଠସି ରକ୍ଷ ରକ୍ଷ ମା ମୟି ଶମ୍ଭୋ ଶରଣାଗତୋଽସ୍ମି ତେ ॥
ବିଲୁଠାମ୍ୟବନୌ କିମାକୁଳଃ କିମୁରୋ ହନ୍ମି ଶିରଶ୍ଛିନଦ୍ମି କିମ୍ ! ।
କିମୁ ରୋଦିମି ରାରଟୀମି କିଂ କୃପଣଂ ମାଂ ନ ଯଦୀକ୍ଷସେ ପ୍ରଭୋ ॥
ଶିବ ସର୍ବଗ ଶର୍ବ ଶର୍ମ୍ମଦ ପ୍ରଣତାୟାଜ ଦୟାଂ କୁରୁଷ୍ୱ ମେ ।
ନମ ଈଶ୍ୱର ନାଥ ଦିକ୍ପତେ ପୁନରେବେଶ ନମୋ ନମୋଽସ୍ତୁ ତେ ॥
ଶରଣଂ ତରୁଣେନ୍ଦୁଶେଖରଃ ଶରଣଂ ମେ ଗିରିରାଜକନ୍ୟକା ।
ଶରଣଂ ପୁନରେବ ତାବୁଭୌ ଶରଣଂ ନାନ୍ୟଦୁପୈମି ଦୈବତମ୍ ॥
ଉପମନ୍ୟୁକୃତଂ ସ୍ତବୋତ୍ତମଂ ଜପତଃ ଶମ୍ଭୁସମୀପବର୍ତ୍ତିନଃ ।
ଅଭିବାଞ୍ଛିତଭାଗ୍ୟସମ୍ପଦଂ ପରମାୟୁଃ ପ୍ରଦଦାତି ଶଙ୍କରଃ ॥
ଉପମନ୍ୟୁକୃତଂ ସ୍ତବୋତ୍ତମଂ ପ୍ରଜପେଦ୍ୟସ୍ତୁ ଶିବସ୍ୟ ସନ୍ନିଧୌ ।
ଶିବଲୋକମବାପ୍ୟ ସୋଽଚିରାତ୍ ସହ ତେନୈବ ଶିବେନ ମୋଦତେ ॥

ଇତ୍ୟୁପମନ୍ୟୁକୃତଂ ଶିବସ୍ତୋତ୍ରଂ ସମ୍ପୂର୍ଣ୍ଣମ୍ ।

—x—

# କଣ୍ୱମହର୍ଷିଙ୍କ ପରିଚୟ

ଶୁକ୍ଳ ଯଜୁର୍ବେଦାନ୍ତର୍ଗତ କାଣ୍ୱସଂହିତା ବା କାଣ୍ୱଶାଖାର ପ୍ରବକ୍ତା ଓ ପ୍ରବର୍ତ୍ତକ କଣ୍ୱମୁନି ଅଟନ୍ତି । ତାଙ୍କ ପରିଚୟ ବିଷୟରେ ବିଶେଷ କିଛି ମିଳୁ ନଥିବା ବେଳେ କେବଳ ଆଦିତ୍ୟ ପୁରାଣରେ ଉଲ୍ଲେଖ ଅଛି ଯେ –

ବୋଧାୟନପିତୃତ୍ୱାଚ୍ଚ ପ୍ରଶିଷ୍ୟତ୍ୱାଦ୍ ବୃହସ୍ପତେଃ ।

ଶିଷ୍ୟତ୍ୱାଦ୍ ଯାଜ୍ଞବଲ୍କ୍ୟସ୍ୟ କଣ୍ୱୋଽଭୂନ୍ ମହତୋ ମହାନ୍ ॥

ଏଥିରୁ ଜଣାପଡୁଅଛି ଯେ କଣ୍ୱ ଯାଜ୍ଞବଲ୍କ୍ୟଙ୍କ ଶିଷ୍ୟ, ଶୁକ୍ଳଯଜୁର୍ବେଦାଚାର୍ଯ୍ୟ ଆଦିତ୍ୟଙ୍କ ପ୍ରଶିଷ୍ୟ । ବୋଧାୟନଋଷିଙ୍କ ପୁତ୍ର । ସେ ପ୍ରଥମେ ଶାକଲ୍ୟ ମୁନିଙ୍କ ପାଖରୁ ଶିଷ୍ୟତ୍ୱ ଗ୍ରହଣକରି ତାଙ୍କ ଆଶ୍ରମରେ କିଛିକାଳ ଋଗ୍ ବେଦାଧ୍ୟୟନ କରିଥିଲେ । ଯାଜ୍ଞବଲ୍କ୍ୟଙ୍କ ପୂର୍ବରୁ ଶାକଲ୍ୟମହର୍ଷି ଥିଲେ ଯେ କି ଋଗ୍‌ବେଦର ଶାକଲ୍ୟ ସଂହିତା ପ୍ରବକ୍ତା । ମାତ୍ର ଏହି ଋଗ୍‌ବେଦପ୍ରସଙ୍ଗରେ ଆସିଥିବା କଣ୍ୱ ଶୁକ୍ଳଯଜୁର୍ବେଦର କାଣ୍ୱସଂହିତା ପ୍ରବର୍ତ୍ତକଙ୍କଠାରୁ ଭିନ୍ନ । ଏଣୁ ଏ ସମସ୍ତ ପ୍ରକାର ବିଚାର ବିମର୍ଶରୁ ଜଣାପଡୁଅଛି କି କଣ୍ୱ ବୋଧାୟନଙ୍କ ପୁତ୍ର ତଥା ମହର୍ଷି ଯାଜ୍ଞବଲ୍କ୍ୟଙ୍କ ଶିଷ୍ୟ ଥିଲେ । ତାଙ୍କ ନିବାସ ସ୍ଥାନ ମଧ୍ୟ ଗୁଜୁରାଟ୍ ପ୍ରାନ୍ତର ପ୍ରାଚୀବୃଦ୍ଧନଗର ଯାହାର 'ବଡ଼ନଗର' ବୋଲି ପ୍ରସିଦ୍ଧି ଅଛି । ଯେଉଁ ବୃଦ୍ଧନଗରର ନାମାନ୍ତର ଯଥା – ଆନନ୍ଦପୁର, ଆନତିପୁର, ବର୍ଦ୍ଧମାନପୁର ଏହିପରି ଅନେକ ନାମ ଶୁଣିବାକୁ ମିଳେ । ଯେଉଁଠାରେ କଣ୍ୱଙ୍କ ଗୁରୁ ଯାଜ୍ଞବଲ୍କ୍ୟଙ୍କ ଆଶ୍ରମ ଥିଲା; ଯେଉଁ ଆଶ୍ରମରେ ରହି କଣ୍ୱ ଗୁରୁ ଯାଜ୍ଞବଲ୍କ୍ୟଙ୍କଠାରୁ ଶୁକ୍ଳଯଜୁର୍ବେଦ ଅଧ୍ୟୟନ କରିଥିଲେ । ତାଙ୍କ ସମୟ ମଧ୍ୟ ପାଞ୍ଚହଜାର ବର୍ଷ ପୂର୍ବରୁ ଥିଲା ବୋଲି ଗବେଷକ ଓ ଐତିହାସିକଙ୍କ ଅଭିମତ ।

—×—

ପ୍ରଫେସର୍ ଡକ୍ଟର୍ ନୀଳକଣ୍ଠ ପତି
ପୂର୍ବତନ କୁଳପତି
ଶ୍ରୀଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟ
ଶ୍ରୀବିହାର, ପୁରୀ-୨

ଲେଖକଙ୍କ ରଚନାବଳୀ :-

* ସାମାନ୍ୟଦର୍ଶନମ୍
* ଦର୍ଶନେଷୁତତ୍ତ୍ୱଚତୁଷ୍ଟୟମ୍
* ତତ୍ତ୍ୱମୁକ୍ତାବଲ୍ୟାଃ ସମୀକ୍ଷାତ୍ମକମଧ୍ୟୟନମ୍
* ବିଶୁଦ୍ଧଜ୍ଞାନପରୀକ୍ଷାବାଦଃ (A Brief work in Sanskrit on Immanuel Kant's Critique of Pure Reason)
* ଆଚାର୍ଯ୍ୟବିଜ୍ଞାନଭିକ୍ଷୁଃ ତଦୀୟାବିଭାଗାଦ୍ୱୈତବାଦଃ
* ଶିବାର୍ଚ୍ଚନ ଚନ୍ଦ୍ରିକା (ଓଡ଼ିଆ)
* ଜାଗର ବ୍ରତକଥା (ଓଡ଼ିଆ)
* ଭାରତୀୟ ଦର୍ଶନ କୌସ୍ତୁଭ (ଓଡ଼ିଆ)
* ଶିକ୍ଷାପଦ୍ଧତି (ପ୍ରାଚୀନ ଓ ଆଧୁନିକ : ଏକ ମୂଲ୍ୟାୟନ) (ଓଡ଼ିଆ)
* ରୁଦ୍ରାଭିଷେକ ପଦ୍ଧତି (ଶ୍ରୌତମନ୍ତ୍ରାନୁବାଦ ସହିତ) (ଓଡ଼ିଆ)

books
अध्यात्मविद्या विद्यानां

*Published By :*

AUM BOOKS
Dolamandapa Sahi, Puri,
ODISHA 752001, (06752 232323)
info@aumbooks.in
www.aumbooks.in

9 789391 510794

Price: ₹ 249/- pb